# ଶ୍ରଦ୍ଧା ସମର୍ପଣ

ଅଖଣ୍ଡ ମଣ୍ଡଳ ପରି ଯେ ଚରାଚର ବ୍ୟାପି ରହିଛନ୍ତି ଏବଂ ତାଙ୍କୁ ଯେ ଦର୍ଶନ କରି ଅନ୍ୟକୁ ଦର୍ଶନକରାଇଛନ୍ତି ସେ ପିତା, ମାତା, ଗୁରୁ, ବନ୍ଧୁ, ଶୁଭେଚ୍ଛୁ ଯେକେହି ହୁଅନ୍ତୁ; ସେହି ଅଦେଖା ହାତ ଯେ କି ଏ ଜୀବନକୁ ସବୁବେଳେ ଆଲୁଅ ଓ ଅନ୍ଧାରରେ ବାଟ କଢ଼ାଇ ନେଇଛନ୍ତି; ତାଙ୍କରି ପାଦରେ ଏ ସୃଷ୍ଟିକୁ ଶ୍ରଦ୍ଧା, ସମ୍ମାନ ଓ ଦୃଢ଼ବିଶ୍ୱାସ ସହ ସମର୍ପଣ କରି ନିଜକୁ ଧନ୍ୟ ମନେ କରୁଛି ।

ଏହି ଭକ୍ତି ଅର୍ଘ୍ୟକୁ ସେ ସାଦରେ ନେବେ କି ନନେବେ ସେହିଁ ଜାଣନ୍ତି ।

ବିନୟାବନତ

ଲେଖକ - **ପର୍ଶୁରାମ ଦ୍ୱିବେଦୀ**

# ଅରକ୍ଷିତଙ୍କୁ ଦଇବ ସାହା

**ପ୍ରଥମ ସଂସ୍କରଣ - ୫୦୦**

**୨୦୦୯**

ପ୍ରକାଶକ - ପ୍ରାପ୍ତିସ୍ଥାନ

**ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀ ମଣ୍ଡଳ**

ଦୀନବନ୍ଧୁ କୁଟୀର (ପ୍ଲଟ୍ -୨୩୬)

୨ୟ ସରଣୀ

ନିଉ ବାପୁଜୀନଗର - ବିମାନଘାଟୀ ଅଞ୍ଚଳ

ଭୁବନେଶ୍ୱର - ୭୫୧୦୨୦

ପ୍ରଚ୍ଛଦ ପଟ ଶିଳ୍ପୀ

**ଶ୍ରୀଯୁକ୍ତ ଅସୀମ ବସୁ**

ଲେଖକ - **ଶ୍ରୀ ପର୍ଶୁରାମ ଦ୍ୱିବେଦୀ**

ମୂଲ୍ୟ :- ଟ୨୦୦ଙ୍କା (ଦୁଇଶହ ଟଙ୍କା ମାତ୍ର)

ଅକ୍ଷର ରୂପ - **ଓଁ କେରକ୍ସ**, ବାପୁଜୀ ନଗର, ଭୁବନେଶ୍ୱର -୯

ମୁଦ୍ରଣ :- **ବିଭୂତି ପ୍ରିଣ୍ଟର୍ସ**, ସରଣୀ ନଂ-୬, ବିମାନଘାଟୀ ଅଞ୍ଚଳ, ଭୁବନେଶ୍ୱର -୯

# ଆଶିର୍ବାଣୀ



ଆଜିର ଅକୃତଜ୍ଞ ଯୁଗରେ ପୁଅଝିଅ ବାପାମା ଓ ଛାତ୍ରଛାତ୍ରୀ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ପାଖରେ କୃତଜ୍ଞତା ପ୍ରକାଶ କରିବା ଦୂରେ ଥାଉ ସର୍ବନିମ୍ନ ସମ୍ମାନ ପ୍ରଦାନ ମଧ କଷ୍ଟକର ହେଲାଣି । ପର୍ଶୁକଥା ନିଆରା । ମୁଁ ତା'ର ଶିକ୍ଷକ ଥିବା ବେଳେ ତା'ପ୍ରତି ଧାପେ ମଧ ଅଧିକ ଦୃଷ୍ଟି ଦେଉନଥିଲି ବା ଅନୁଗ୍ରହ ପ୍ରଦର୍ଶନ କରିନଥିଲି । ମାତ୍ର କେଜାଣି କାହିଁକି ସେ ମୋର ଆଦର୍ଶରେ ଅନୁପ୍ରାଣିତ ଓ ମୋର ଶିକ୍ଷାଦାନ ପ୍ରତି ଆକୃଷ୍ଟ ହୋଇ କୃତଜ୍ଞ ହୋଇ ପଡିଛି । ସେ ଯେତେ ବହି ଲେଖିଛି ମୁଁ ତା'ର ସବୁ ବହିର ମୁଖବନ୍ଧ ଲେଖିଛି, ଖୁବ୍ ଆଗ୍ରହରେ ଏବଂ ଲେଖାର ସରଳ ଶୈଳୀ ଓ ବିଷୟ ବସ୍ତୁ ପ୍ରତିପାଦନରେ ପ୍ରୀତହୋଇ । ତାଙ୍କ ଗାଁରେ ତାଙ୍କ ବିଦ୍ୟାଳୟରେ ଓ ତା'ର ଶିକ୍ଷକ ଥିଲେ ବି ମୁଁ ଦୂରରୁ ତାକୁ ଯାହା ଅନ୍ୟ ଛାତ୍ରମାନଙ୍କ ପରି ଦେଖିଥିଲି ସେଥିରୁ ତା'ର ବ୍ୟକ୍ତିଗତ ସୁବିଧା ଅସୁବିଧା ସମ୍ବନ୍ଧରେ ବିଶେଷ କିଛି ଅବଗତ ନଥିଲି । ସାଧାରଣ ଭାବରେ ଜାଣିଥିଲି ଯେ ତାଙ୍କର ଅଭାବି ପରିବାର ।

ଏବେ "ଅରକ୍ଷିତକୁ ଦଇବ ସାହା" ବହିର ପାଣ୍ଡୁଲିପି ତା'ଠାରୁ ଆଣି ପଢାଇ ଶୁଣିବାରେ ମୁଁ ନିଜକୁ ଓ ତା'ର ଅବସ୍ଥା ସମ୍ବନ୍ଧରେ ବିଶ୍ୱାସ କରିପାରୁନି । ଆଉ ମଧ ବିଶ୍ୱାସ କରିପାରୁନି କିପରି ଜଣେ ଦାରିଦ୍ର୍ୟର ଚରମ ସୀମାରୁ, ମୂଲିଆ-ପାନିଆ, ପୂଜାରି-ଚାକର ସ୍ତରରୁ ସାଧନା ଓ ଈଶ୍ୱର ବିଶ୍ୱାସ ବଳରେ ଏତେ ଉପରକୁ ଉଠିପାରେ ! ପୁଣି କଲେଜ ପିଣ୍ଡା ନମାଡି କିପରି ଜଣେ ବିଶ୍ୱ ବିଦ୍ୟାଳୟର ସର୍ବୋଚ୍ଚ ସ୍ନାତକୋତ୍ତର ସମ୍ମାନ ହାସଲ କରିପାରେ !! ମୁଁ ପୁଣି ଆଶ୍ଚର୍ଯ୍ୟ ହୁଏ କିପରି କଠୀନ କର୍ମ ଜୀବନକୁ ସରସ ସୁନ୍ଦର କରି ତା'ରି ମଧ୍ୟରେ ଲେଖାଲେଖି ଓ କବିତ୍ୱ ହାସଲ କରିପାରେ !!! ମୁଁ ବହୁ ମହାତ୍ମାଙ୍କ ଜୀବନି ପଢିଛି ଓ ଶୁଣିଛି । ଏ ଜୀବନ ଇତିହାସ କୌଣସି ଗୁଣରେ ତା'ଠାରୁ ତ' କମ୍ ନୁହେଁ ! ବରଂ ଏଥିରେ ଆହୁରି କିଛି ବିଶେଷତ୍ୱ ଅଛି । ଲେଖକଙ୍କ ମତରେ ଅରକ୍ଷିତକୁ ଦଇବ ସାହା । ମାତ୍ର ମୋ ମତରେ ଦୁଃଖ ସହିବାର ଶକ୍ତି, ଧୈର୍ଯ୍ୟ, କର୍ମନିଷ୍ଠା, କଠିନଶ୍ରମ, ଗୁରୁଜନଙ୍କ ପ୍ରତି ସମ୍ମାନ ଓ କୃତଜ୍ଞତା ସହ ଦରିଦ୍ର ଓ ଅସହାୟଙ୍କ ପ୍ରତି ସେବା ମନୋଭାବ ମାତୃଭୂମି ଓ ମାତୃଭାଷା ପ୍ରତି ଅତୁଟ ମମତା ଯୋଗୁଁ ହିଁ ସେ ଈଶ୍ୱରଙ୍କ ସହାୟତା ପାଇବାକୁ ସକ୍ଷମ ହୋଇପାରିଛି । ଗୀତାର ବ୍ୟାସଦେବ ଓ ଦୂରଦ୍ରଷ୍ଟା ସଞ୍ଜୟଙ୍କ ମତ ଶେଷ ଶ୍ଳୋକ "ଯତ୍ର ଯୋଗେଶ୍ୱର କୃଷ୍ଣ ଯତ୍ର ପାର୍ଥ ଧନୁର୍ଦ୍ଧର - ତତ୍ର ଶ୍ରୀ ବିଜୟ ଭୂତି ଧ୍ରୁବାନ୍ନିତି ମତିର୍ମମ" ଏହି ଠାରେ ବାସ୍ତବ ସତ୍ୟରେ ପରିଣତ ହୋଇଛି ।

ଥରେ ମୋର ରୋଗଶଯ୍ୟା ପାଖରେ ବସିଥିବା ପର୍ଶୁଙ୍କୁ ମୁଁ ପାଦସେବା କରିବାକୁ ନିର୍ଦ୍ଦେଶ ଦେବାରେ ମୋ ସ୍ତ୍ରୀ ମୋତେ ବାରଣ କରି ସେ କାମ ସେ ନିଜେ କରିବେ ବୋଲି କହିବାରେ ମୁଁ କହିଲି "ସେ ମୋ ଭାଇ, ପୁଅ ଓ ଛାତ୍ର ମଧ" । ଜଣେ ଶିକ୍ଷକ, ଜଣେ ରାଜନେତା, ଜଣେ ସମାଜସେବୀ ଓ ଜଣେ ବୟସ୍କ ଶୁଭେଚ୍ଛୁ ହିସାବରେ ମୋର ମତ ଆଜିକାର ଯୁବକ ଯୁବତୀ ମାନେ ସମସ୍ତେ ଏହି ପୁସ୍ତକଟି ଯେମିତି ଭାବରେ ପଢ଼ିଲେ ବି ନିଶ୍ଚିତ ଭାବେ ଉପକୃତ ହେବେ ଓ ଆମର ଅଧୋଗାମୀ ସମାଜ ସୁଧୁରିଯିବ; ବହିଟିର ଶିକ୍ଷଣୀୟ ବିଷୟ ଗୁଡିକର ସୁପ୍ରଭାବରେ । ବହିଟିର ଛତ୍ରେ ଛତ୍ରେ ଆଧାତ୍ମିକତାର ଛାପ ବିଦ୍ୟମାନ ଓ ସମଗ୍ର ସୃଷ୍ଟିଟି ତତ୍କାଳୀନ ସାମାଜିକ ଅବସ୍ଥା ଓ ବ୍ୟବସ୍ଥାର ଏକ ନିଖୁଣ ଚିତ୍ର । ବ୍ୟକ୍ତିଗତ ଦୁଃଖ କଷ୍ଟ ଓ ଦାରିଦ୍ର୍ୟର ଅନୁଭୂତିକୁ ଏତେ ନିଷ୍କପଟ ଭାବେ ପ୍ରକାଶ କରିବା ଏକ ବିରଳ କାର୍ଯ୍ୟ । ଏହି ଅନବଦ୍ୟ ସୃଷ୍ଟିପାଇଁ ଲେଖକ ଶ୍ରୀ ପର୍ଶୁରାମ ଦ୍ୱିବେଦୀଙ୍କୁ ମୋର ଅନ୍ତରର ଗଭୀରତମ ପ୍ରଦେଶରୁ କୋଟି ଆଶିର୍ବାଦ ।

ଶ୍ରୀ ରାଜକିଶୋର ନାୟକ
ପାଟକୁରାର ପ୍ରାକ୍ତନ ପଞ୍ଚାୟତ ସମିତି ଅଧକ୍ଷ,
ପ୍ରାକ୍ତନ ବିଧାୟକ, ଶିକ୍ଷାବିତ୍, ସମାଜ ସେବକ,
ଅସୁରେଶ୍ୱର ଗୋ ରକ୍ଷଣୀର ସଂପାଦକ,
ଓଡିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ ତଥା
ପୂର୍ବାଞ୍ଚଳ ପରିଷଦର ପ୍ରାକ୍ତନ ଅଧକ୍ଷ

## ✓ ସଚ୍ଚିଦାନନ୍ଦ ମିଶ୍ର କହନ୍ତି:



ବରିଷ୍ଠ ସାଧୀନତା ସଂଗ୍ରାମୀ, ସାଂମ୍ବାଦିକ, ଲେଖକ, ଶିକ୍ଷାବିତ୍, ନିଷ୍ଠାପର ସମାଜସେବୀ କହନ୍ତି – "ବିଚ୍ଛିନ୍ନାଞ୍ଚଳ (ଷଢ଼େଇକଳା-ଖରସୂଆଁ) ଓଡ଼ିଶାର ଅବିଚ୍ଛେଦ୍ୟ ଅଙ୍ଗ । ଆର୍ଥିକ, ଐତିହାସିକ, ଭାଷାଗତ ଓ ସାଂସ୍କୃତିକ ଦୃଷ୍ଟିରୁ ଏବେବି ଏହିଖଣ୍ଡ ଓଡ଼ିଶାର ଅଂଶ ହୋଇ ରହିଛି ଓ ରହିବ । ରାଜନୀତିର ପଶାପାଲିଆଙ୍କ ଦ୍ୱାରା ଅଙ୍କିତ କୃତ୍ରିମ ସୀମାରେଖାର ବାସ୍ତବତା ନାହିଁ । ଯେତେଦିନ ପର୍ଯ୍ୟନ୍ତ ଓଡ଼ିଆ ଭାଷା ଓ ସଂସ୍କୃତି ସେଠାରେ ବଞ୍ଚିଥିବ ସେତେଦିନ ତାହା ଓଡ଼ିଆର ଓ ଓଡ଼ିଶାର ଅଙ୍ଗ ହୋଇ ରହିଥିବ । ଏହା କାହାର ପୈତୃକ ସମ୍ପତ୍ତି ନୁହେଁ ଯେ କି କଥା ପଦକରେ ଏହା ଉପରେ ଆମର ଦାବୀକୁ ପ୍ରତ୍ୟର୍ପଣ ବା ଅସ୍ୱୀକାର କରିଯିବା ।"



# ମୋ ମତରେ

ପର୍ଶୁରାମ ଦ୍ୱିବେଦୀଙ୍କ ଆତ୍ମଚରିତ 'ଅରକ୍ଷିତକୁ ଦଇବ ସାହା' ପଢି ମୁଗ୍ଧ ହେଲି । ବାସ୍ତବିକ ସରଳ ସାବଲୀଳ ଭାଷାରେ ଲିଖିତ ସୁଦୀର୍ଘ ଆତ୍ମଚରିତଟି ନାମକରଣର ସାର୍ଥକତା ପ୍ରତିପାଦିତ କରୁଅଛି ।

ତାଙ୍କର ବାଲ୍ୟକାଳର ଉତ୍କଟ ଦାରିଦ୍ର୍ୟ ସହିତ ସଂଘର୍ଷ କରି ନାନା ଘାତ ପ୍ରତିଘାତ ଗଭୀର ଆତ୍ମ ବିଶ୍ୱାସ ଓ ଦେବଦତ୍ତ ଗଭୀର ଭଗବତ୍ ବିଶ୍ୱାସ ସହିତ, ନିଷ୍ଠାର ସହିତ ନିଜର କର୍ତ୍ତବ୍ୟ କରି ସେ ଅବଶେଷରେ ପ୍ରଶାସନିକ ସେବା ପଦବୀକୁ ଉନ୍ନୀତ ହୋଇ ଅବସର ଗ୍ରହଣ କଲେ । କର୍ମକ୍ଷେତ୍ରରେ ଯେଉଁଠି କିଛି ପ୍ରକାରର ଅନ୍ୟାୟ ଦେଖିଛନ୍ତି ଅକୁଣ୍ଠ ଚିତ୍ତରେ ତା ବିରୁଦ୍ଧରେ ସଂଗ୍ରାମ କରିଛନ୍ତି । ସେଥିପାଇଁ ଦୁଃଖ ଭୋଗ କରିଛନ୍ତି, ଅଯଥା ଦଣ୍ଡର ଶିକାର ହୋଇଛନ୍ତି; କିନ୍ତୁ ଭାଙ୍ଗି ପଡିନାହାଁନ୍ତି; ଦଇବ ସାହା ହୋଇଛି । ସେ କଥା ଅବଶେଷରେ ବାରମ୍ବାର ତାଙ୍କର ଜୀବନ କହାଣୀରେ ପ୍ରକଟିତ ହୋଇଛି । ସେ ତାଙ୍କର ଭକ୍ତିଭାବ ସବୁ ଭଗବାନଙ୍କ ଠାରେ ମୁଗ୍ଧଅବସ୍ଥାରେ ଆତ୍ମସମର୍ପଣ ଭାବ ଅତିକ୍ରମ କରିଛନ୍ତି । ଆଚାର୍ଯ୍ୟ ହରିହରଙ୍କର ଗୀତା ଭଗବତ କୃପାରୁ ତାଙ୍କୁ ଆବଲ୍ୟରୁ ପ୍ରଭାବିତ କରିଅଛି । ଭାଗବତ ତାଙ୍କୁ ସର୍ବଦା ପ୍ରେରଣା ଦେଇଛି । କାଳିଆର ମହିମା ବାରମ୍ବାର ସେ ଗାଇଛନ୍ତି । ବାରମ୍ବାର ଉଲ୍ଲେଖ କରିଛନ୍ତି ପ୍ରଗାଢ ବିଶ୍ୱାସ। ଆବାଲ୍ୟରୁ ସେବା ଭାବ ତାଙ୍କ ମଧ୍ୟରେ ଉଜ୍ଜୀବିତ ହୋଇଥିଲା । ଉତ୍କଳପ୍ରାଣ ସଚ୍ଚିଦାନନ୍ଦ ମିଶ୍ର ତଥା ରାଜକିଶୋର ନାୟକଙ୍କ ପରି ଆଦର୍ଶ ଶିକ୍ଷକଙ୍କ ପ୍ରେରଣାରେ ସରକାରୀ କର୍ମକ୍ଷେତ୍ରରେ ସେ ନିଜକୁ (ହାକିମ) ବୋଲି ନଭାବି ନିଜକୁ ସର୍ବ ସାଧାରଣ ଲୋକଙ୍କ ସେବକ ରୂପେ କାର୍ଯ୍ୟ କରୁଥିଲେ । ବର୍ତ୍ତମାନ ଅବସର କାଳରେ ମଧ୍ୟ ସେ ସେହିପରି ସେବା ମନୋଭାବନେଇ କାର୍ଯ୍ୟ କରୁଛନ୍ତି । ଗୀତା ଜୟନ୍ତୀ ପ୍ରତି ବର୍ଷ ଆୟୋଜନ କରୁଛନ୍ତି । ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀ ମଣ୍ଡଳର ସଂପାଦକଭାବେ ବିଚ୍ଛିନ୍ନାଞ୍ଚଳରେ ଓଡିଆ ଭାଷାଭାଷୀଙ୍କର ସମୃଦ୍ଧ ବିକାଶ ପାଇଁ ଓଡିଆ ଭାଷା ଓ ସଂସ୍କୃତିକୁ ଜୀବନ୍ତ କରିବାପାଇଁ ଅକ୍ଲାନ୍ତ ପରିଶ୍ରମ କରିଛନ୍ତି । ଅର୍ଥ ଓ ଶ୍ରମଦାନ କରୁଛନ୍ତି; ଉତ୍ସର୍ଗୀକୃତ ଭାବନେଇ ଆପାତତଃ ବାର୍ଦ୍ଧକ୍ୟ ସତ୍ତ୍ୱେ ଚଳଚଞ୍ଚଳ ରହିଛନ୍ତି । ଯଥାର୍ଥରେ ସେ ଜଣେ କର୍ମବୀର । ତାଙ୍କର ଆତ୍ମ କାହାଣୀରୁ ଏକ ଅନନ୍ୟ ବ୍ୟକ୍ତିତ୍ୱର ପରିଚୟ ମିଳେ ।

ଆତ୍ମ ଚରିତଟି ଏକ ଦୀର୍ଘ ଉପନ୍ୟାସ ପରି ସୁଖ ପାଠ୍ୟ ହୋଇଅଛି । ସେ ତହିଁରେ ଅଗଣିତ ଚରିତ୍ର ଉପସ୍ଥାପନ କରିଛନ୍ତି । ଚିନ୍ତା ଅବଧାନଠାରୁ ବିଜୁପଟ୍ଟନାୟକ ପର୍ଯ୍ୟନ୍ତ, ଫକୀର ମୋହନଙ୍କ ଠାରୁ ପ୍ୟାରିମୋହନଙ୍କ ପର୍ଯ୍ୟନ୍ତ କେହି ବାଦ ପଡିନାହାନ୍ତି । ବହୁ ଚରିତ୍ରଙ୍କର ଚରିତ୍ରର ବିଶେଷତ୍ୱ ସହିତ ବାହ୍ୟରୂପ ବର୍ଣ୍ଣନାକରି କାହାଣୀକୁ ଜୀବନ୍ତ କରିଛନ୍ତି । ଗାଁ ଗହଳିର ଦୃଶ୍ୟପଟ ସହ ସମାଜ ଚିତ୍ର ଯେପରି ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି ସେହିପରି କର୍ମକ୍ଷେତ୍ରରେ ବିଭିନ୍ନ ଦପ୍ତର ଓ ସଚିବାଳୟ ଚିତ୍ରମଧ୍ୟ ନିଖୁଣଭାବେ ଉପସ୍ଥାପିତ କରିଛନ୍ତି । ଭାଷା ମଧ୍ୟେ ମଧ୍ୟେ କାବ୍ୟିକ ଶୋଭା ମଣ୍ଡିତ ହୋଇଅଛି । ସାହିତ୍ୟରୂପେ ଆତ୍ମ ଚରିତଟିର

ସ୍ଥାନ ଉଲ୍ଲେଖଯୋଗ୍ୟ । ତେବେ ତାଙ୍କର ଅସଲ ଲକ୍ଷ ସାହିତ୍ୟରଚନା ନୁହେଁ ବରଂ ଉପକ୍ରମଣିକାରେ ସେ ଲେଖିଛନ୍ତି 'ଅରକ୍ଷିତକୁ ଦଇବ ସାହା' ଯଥା ଏହି ନିରାଟ, ବିରାଟ, ନିଷ୍କପଟ, ନିଛକ, ନିରୋଳା, ନିରବଛିନ, ନିରାଧାର, ନିଃଶଙ୍କ ସତ୍ୟ ପ୍ରକାଶ । ଏହି ଲେଖାର ଉଦ୍ଦେଶ୍ୟ ବାସ୍ତବରେ ଆତ୍ମ ଚରିତ୍ରରେ ତାଙ୍କର ଏହି ଲକ୍ଷ୍ୟ ସାଧିତ ହୋଇଅଛି । ସେହି ଉପକ୍ରମ ଶୈଳୀରେ ସେ ଲେଖିଛନ୍ତି ଆଶା; ଏହା କୋଟିପ୍ରାଣକୁ ପ୍ରେରଣା ଓ ଆତ୍ମବିଶ୍ୱାସ ଦେବାସହ ଅନ୍ଧକାରରେ ପଡିଥିବା ଲୋକଙ୍କୁ ଆଲୋକ, ଅବାଟରେ ପଡିଥିବା ବ୍ୟକ୍ତିଙ୍କୁ ବାଟ ଓ ଅସତ୍ୟରେ ପଡିଥିବା ଲୋକଙ୍କୁ ସତ୍ୟର ସନ୍ଧାନ ଦେବ ।

ମୋର ଏକାନ୍ତ ବିଶ୍ୱାସ ତାଙ୍କର ଆତ୍ମଚରିତ୍ରଟି "ଅରକ୍ଷିତକୁ ଦିଇବ ସାହା" ତାଙ୍କର ଏ ଆଶା ପୂରଣ କରିବ । ଶ୍ରୀ ପର୍ଶୁରାମ ଦ୍ୱିବେଦୀଙ୍କ ଦୀର୍ଘାୟୁ କାମନା କରୁଛି ଓ ତାଙ୍କ ଲେଖନୀରୁ ଆହୁରି ଅନେକ ପ୍ରେରଣା ଦାୟକ ରଚନା କାମନା କରୁଛି ।

ମୋ ଜୀବନର ଏ ଅନ୍ତିମ ଅବସ୍ଥାରେ ମୁଁ ପ୍ରେରଣା ପାଇଛି ତାଙ୍କର ରଚନାରୁ । ପ୍ରାର୍ଥନା କରୁଛି; କିପରି ତାଙ୍କରି ପରି "ଦୃଢ ବିଶ୍ୱାସ ଓ ଆତ୍ମ ସମର୍ପଣ ଭାବ" ଭଗବାନ ମୋତେ ଦିଅନ୍ତୁ ।

ପ୍ରଫେସର ସର୍ବେଶ୍ୱର ଦାଶ
ଅଭିମନ୍ୟୁ ସ୍ମୃତି, ନିଉ ବାପୁଜୀ ନଗର,
ବିମାନଘାଟୀ ଅଞ୍ଚଳ, ଭୁବନେଶ୍ୱର - ୨୦



## ଶେଷ - ଜୀବନର ବିଶେଷ କଥା

ଚାଳିଶିବର୍ଷରୁ ଅଧିକ କାଳ ଶିକ୍ଷକତା କରି ଏଇ ହାତରେ ହଜାର ହଜାର ଜୀବନ ଗଢ଼ିଛି ଓ ଖୁବ୍ ପାଖରୁ ସେସବୁ ଜୀବନର କ୍ରମ ବିକାଶକୁ ଲକ୍ଷ କରିଛି। ହେଲେ ପର୍ଶୁର ଜୀବନ ଏକ ବ୍ୟତୀକ୍ରମ, ସତନ୍ତ ଓ ଅନନ୍ୟ । ପୂଜ୍ୟ ରମାକାନ୍ତ ମିଶ୍ର ଏପରି ଏକ ଜୀବନ ଇତିହାସକୁ ଲିପିବଦ୍ଧ କରିବାକୁ ପ୍ରେରଣା ଦେଇ ଗୋଟିଏ ବଡ଼କାମ କରାଇ ପାରିଛନ୍ତି। ଏହା ଯୁଗ ଯୁଗକୁ କୋଟି ପ୍ରାଣକୁ ସାନ୍ତ୍ୱନା ଦେଇପାରିବ ଓ ଅନ୍ଧକାରରେ ଆଲୋକ ବର୍ତ୍ତୀକା ପରି କାମ କରିବ। ପର୍ଶୁ ମୃତପ୍ରାୟ "ଉତ୍କଳ ବାହିନୀ"କୁ ମୃତ ସଞ୍ଜୀବନି ଦେଇ ସଞ୍ଚି ଏବଂ ମୋତେ ଧନ୍ୟ କରି ଦେଇଛି; ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀମଣ୍ଡଳ ଜରୀଆରେ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତି ପାଇଁ କାର୍ଯ୍ୟକରି ଉତ୍କଳ ଜନନୀର ସେ ଯୋଗ୍ୟ ସନ୍ତାନ ଓ ପ୍ରହରୀ ସଦୃଶ। ଠାକୁରେ ତାକୁ ଆଶୀର୍ବାଦ କରନ୍ତୁ। ସେ ଆହୁରି ବଡ଼ ହୋଇ ଦେଶର ଓ ଦଶର ସେବା କରୁ।

ଭଗବାନ ରଥ
ଶିକ୍ଷାବିତ୍ ଓ ସମାଜସେବୀ
ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତି ବିକାଶର ଜୀବନ୍ତ ଇତିହାସ



# ଟି'କେ ରୁହନ୍ତୁ

ଆମେ କୌଣସି ମହାନ୍ ବ୍ୟକ୍ତି ବା ମହାପୁରୁଷଙ୍କ ଜୀବନୀ ପଢୁ । ସ୍କୁଲ କଲେଜରେ ପିଲାମାନଙ୍କୁ ପଢାଇ ପରୀକ୍ଷାରେ ପ୍ରଶ୍ନ ପଚରାଯାଏ । ସେମାନଙ୍କ ଜୀବନ ଚକ୍ରରୁ ପିଲା କ'ଣ ଶିଖିଲା, ତାହା ଲକ୍ଷ କରାଯାଏ । ମହାପୁରୁଷ ମାନଙ୍କ ଜୀବନ ଶୁଦ୍ଧ ସୁବର୍ଣ୍ଣ ପରି ଜାଜ୍ୱଲ୍ୟମାନ । ଆବାଲ୍ୟରୁ ମୃତ୍ୟୁଯାଏ ସମୟର ରଥଚକ୍ରରେ ସେମାନେ ପେଷିହୋଇ ଯାଆନ୍ତି ନାହିଁ । ସଂସାର ବା ସମାଜର ଘାତ ପ୍ରତିଘାତ ମଧ୍ୟରେ ମଧ୍ୟ ସେମାନେ ଜୀବନର ଲକ୍ଷ ବା ଆଦର୍ଶଠାରୁ ଦୂରେଇ ଯାଆନ୍ତି ନାହିଁ । ଏହା ନିଶ୍ଚିତ ଭାବେ ପାଠକକୁ ପ୍ରେରଣା ଦିଏ ଏବଂ ଅବାଟରେ ଗୋଡ ନଖସେଇ ନିଜର ଓ ସମାଜର ମଙ୍ଗଳମୟ କାମରେ ଅଗ୍ରସର ହେବାକୁ ଉତ୍ସାହ ଦିଏ ।

ଭାରତ ସାଧୀନତା ପୂର୍ବରୁ ମହାପୁରୁଷ ମାନଙ୍କ ଜୀବନୀ କହିଲେ ଆମେ ରାମକୃଷ୍ଣ, ବିବେକାନନ୍ଦ ଆଦି କେତେକଙ୍କ ଜୀବନୀ ପଢୁଥିଲୁ । ସାଧୀନତା ଆନ୍ଦୋଳନକୁ ଦମନ କରିବା ଉଦ୍ଦେଶ୍ୟରେ ସେ ସମୟର ମହାପୁରୁଷ ବାଲଗଙ୍ଗାଧର ତିଳକ, ମହାତ୍ମାଗାନ୍ଧୀ, ବୀର ସୁରେନ୍ଦ୍ର ସାଏ ବା ଗୋପବନ୍ଧୁଙ୍କ ଜୀବନୀ ପ୍ରକାଶ ପାଉନଥାଏ । ଏ ସବୁ ସାଧୀନତା ପରେ ପ୍ରକାଶ ପାଇ ଭାରତୀୟ ତଥା ପ୍ରାନ୍ତୀୟ ଜନଜୀବନକୁ ଉଦ୍‌ବୁଦ୍ଧ କଲା । ଅନେକ ଏହି ମହାପୁରୁଷ ମାନଙ୍କ ଜୀବନ ଚର୍ଯ୍ୟାରୁ ଶିକ୍ଷାଲାଭ କରିବାକୁ ପ୍ରେରଣା ଦେଲେ ଏବଂ ଅନେକ ଗ୍ରହଣ କରିନେଲେ । ଫଳରେ ବହୁ ମହାନ୍ ବ୍ୟକ୍ତିଙ୍କ ଜୀବନି ପାଠକ ପାଖକୁ ଆସିଲା ଏବଂ ପାଠକଙ୍କ ସଂଖ୍ୟା ବଢିଲା ।

ମାତ୍ର ସାଧୀନତାର ପ୍ରାୟ ତିରିଶି ବା ଚାଳିଶି ବର୍ଷ ପରେ ଭାରତୀୟ ଜନଜୀବନରେ ଏକ ପରିବର୍ତ୍ତନ ଦେଖାଦେଲା । କ୍ରମ ବର୍ଦ୍ଧମାନ ଅନ୍ୟାୟ, ଅତ୍ୟାଚାର ଅସତ୍ୟ ଅସହିଷ୍ଣୁତା ଅତିମାତ୍ରାରେ ଲୋଭ, ଦୁର୍ନୀତି, ନାରୀଧର୍ଷଣ, ନାରୀ ଅତ୍ୟାଚାର, ହତ୍ୟା ଆଦି କୁକର୍ମ ଅଗ୍ନି ସଂଚରଣ ହେବା ପରି ବ୍ୟାପିଯାଇ ଆଜି ପ୍ରାୟ ଚରମ ସୀମାରେ ଉପନୀତ । ପୃଥିବୀର ଦୁଇଶହ ଦୁଇଟି ଦେଶ ମଧ୍ୟରୁ ଦୁର୍ନୀତିପୂର୍ଣ୍ଣ ରାଷ୍ଟ୍ରଭାବେ ଭାରତର ସ୍ଥାନ ବହୁ ଉପରେ । ସାଧାରଣ ନିରୀହ, ସରଳ ବ୍ୟକ୍ତିଟିଏ ଆଜି, ଉପରୋକ୍ତ ପେଷଣାରେ ପେଷିହୋଇଯାଇଛି । ଫଳରେ ଅତିମାତ୍ରାରେ ହତାଶ ଭାବ ତାକୁ ଗ୍ରାସ କରୁଛି । ଅନନ୍ୟୋପାୟ ହୋଇ ସେ ଚାଷୀହେଉ, ମୂଲିଆ ହେଉ ବା ବେରୋଜଗାରୀଟିଏ ହେଉ ନିଜକୁ ଡ଼କାୟତ ବା ସନ୍ତ୍ରାସବାଦୀ ସାଜୁଛି କିମ୍ବା ଆତ୍ମହତ୍ୟା କରୁଛି । ନିଜକୁ ସମାଜର କର୍ଣ୍ଣଧାର ବୋଲି ବୋଲାଉଥିବା ବ୍ୟକ୍ତିମାନେ ଏହାକୁ ଅଧିକ ଅଧିକ ପ୍ରଲୁବ୍ଧ କରାଉଛନ୍ତି । ତେଣୁ ସେମାନଙ୍କ ଜୀବନୀ ବା ଆତ୍ମଜୀବନୀ ପ୍ରକାଶ ପାଉନାହିଁ କିମ୍ବା ପ୍ରକାଶ ପାଇଲେବି କେହି ପଢୁନାହାଁନ୍ତି । ଏପରିକି 'ରାଜା ରାମମୋହନ ଟ୍ରଷ୍ଟ' ତରଫରୁ ଏଗୁଡିକୁ ମଫସଲ ଅଞ୍ଚଳର ପାଠାଗାର ମାନଙ୍କୁ ଯୋଗାଯାଉଥିଲେବି ସେଠାରେ କେହି ପଢୁନାହାଁନ୍ତି ।

ଦେଖାଯାଉଛି ଏବେ ଜୀବନୀ ପାଠକର ନିଶା ବଦଳି ଯାଇଛି । ଅଭାବ, ଅନଟନ, ସାଂସାରିକ ବା ସାମାଜିକ ଦୁଃଖ, କଷ୍ଟ, ଅବ୍ୟବସ୍ଥା ମଧ୍ୟରେ ମଣିଷ କିପରି ବଞ୍ଚି ରହି ପାରିବ,

ତା'ର ରାହା ଖୋଜିବାରେ ଲାଗିଛି । ପୂର୍ବରୁ ଥିବା ଐଶୀବାଣି ବା ଧର୍ମାଚାର୍ଯ୍ୟ ମୂଳକ ଜୀବନୀ ତାକୁ ସମ୍ମୋହିତ କରୁନାହିଁ ।

ଏହିପରି ଏକ ଆତ୍ମଜୀବନୀ ହେଲା "ଅରକ୍ଷିତରକୁ ଦଇବ ସାହା" । ଏହାର ଲେଖକ ଶ୍ରୀ ପର୍ଶୁରାମ ଦ୍ୱିବେଦୀ ଜଣେ ସାଧାରଣ ରକ୍ତ ମାଂସର ବ୍ୟକ୍ତି । ମାତ୍ର, ଅସାଧାରଣ ତାଙ୍କ ଜୀବନ ଚରିତ । ଅନେକ ବଣମଲ୍ଲୀ ବଣରେ ଫୁଟି ମଉଳି ଯାଆନ୍ତି । ମାତ୍ର ଯେଉଁ କେତୋଟି ଏକ ପ୍ରଲୁବ୍ଧ ମାଳୀର ଝଙ୍କୁଡିରେ ଆସି ଦେବତାର ପଦଚୁମ୍ବନ କରେ ସେ ଦେବତା ଦର୍ଶନକାରୀର ଚିତ୍ତ ବିମୋହିତ କରେ ।

ଜୀବନୀର ପୃଷ୍ଠଭୂମୀ ପ୍ରଥମ ଓ ଦ୍ୱିତୀୟ ମହାଯୁଦ୍ଧର ମଧ୍ୟବର୍ତ୍ତୀ ସମୟ । ଏହି ସମୟରେ ଦାରିଦ୍ର୍ୟ ଓଡ଼ିଶାର ସାଧାରଣ ଲୋକଟିର ଦୈନ୍ୟ ଅଙ୍ଗେଳିଭେଇନଥିବା ବ୍ୟକ୍ତି ଅନୁଭବ କରିପାରିବ ନାହିଁ । ସେଥିରେ ପୁଣି ଓଡ଼ିଶାର ଉପକୂଳ ଅଞ୍ଚଳ । ପାଗଯୋଗ, ବର୍ଷା ଅନୁକୂଳତ ଚଷାପିଲାର କପେପୁଅରବାର । ବର୍ଷକ ଖାଇବା ପିନ୍ଧିବା ଉଠିଯାଏ । ନଚେତ୍ ବନ୍ୟା, ଅନାବୃଷ୍ଟି ବା ଅତିବୃଷ୍ଟି "ଦୀନ ପଞ୍ଚାକ୍ଷର" ମନ୍ତ୍ରରେ ସମାବିଷ୍ଟ । ପୁନଶ୍ଚ ତତ୍କାଳୀନ ସମାଜରେ ଏକ ବ୍ରାହ୍ମଣ ପରିବାର ଦିନ ମଜୁରିଆ ହୋଇ ପାରିବ ନାହିଁ । ଚଳନୀ ତାକୁ ଏବେକାର କ୍ରସର ଯନ୍ତ୍ରପରି ପେଷି ବଜୁରୀରେ ପରିଣତ କରି ଦେଉଥାଏ । ଏହିପରି ଏକ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଘନଘଟା ମଧ୍ୟରେ ୧୯୩୫ ମସିହା ମଇମାସ ଦୁଇ ତାରିଖରେ କଟକ ଜିଲ୍ଲା ସାଲେପୁର ଥାନା ଅଧୀନସ୍ଥ ଖଣ୍ଡସାହୀ ଗ୍ରାମରେ ତାଙ୍କର ଜନ୍ମ ।

ବନ୍ଧୁପାଠକ ପାଠିକାମାନେ ! ଆପଣ ଯଦି ଏହାକୁ ଛାର ଏକ ପର୍ଶୁରାମର ଜୀବନ ଚରିତ ଭାବି ପଢ଼ିବେ କିମ୍ବା କିଛିବାଟ ପାଠକରି ଫୋପାଡିଦେବେ, ତେବେ ଭୁଲ୍ କରିବେ । ଓଡ଼ିଆ ସାହିତ୍ୟର ବ୍ୟାସକବି ଫକୀର ମୋହନଙ୍କ ପ୍ରଥମ ଗଳ୍ପ "ରେବତୀ" । କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର କାଳଜୟୀ ଉପନ୍ୟାସ "ମାଟିର ମଣିଷ" କିମ୍ବା ସଚ୍ଚି ରାଉତ ରାୟଙ୍କର ଚୀର ସବୁଜ କବିତା "ଛୋଟ ମୋର ଗାଁଟି" ପଢ଼ିଥିବେ । କ'ଣ ଅଛି ରେବତୀର ଜୀବନରେ କିମ୍ବା ବରଜୁ ବା ହାରାମଣି ଜୀବନରେ । ଓଡ଼ିଶାରେ ତ ଅନେକ ଗାଁ ଅଛି, କାହିଁକି ସଚ୍ଚିରାଉତ ରାୟଙ୍କର ଗାଁ ? ଏ ସବୁଥିରେ ତତକାଳୀନ ସାମାଜିକ ସାଂସ୍କୃତିକ ଜୀବନ, ଚରିତ୍ର ଚିତ୍ରଣ, ପ୍ରକାଶ ଶୈଳୀ ଓ ଭାଷା ଆପଣଙ୍କୁ ପ୍ରଲୁବ୍ଧ କରି ସେମାନଙ୍କୁ ଓ ତାଙ୍କ କୃତୀକୁ ଆପଣଙ୍କ ମନରେ ମୋହର ମାରିଛିନା ?

ଠିକ୍ ସେହିପରି ଭାବେ "ଅରକ୍ଷିତକୁ ଦଇବ ସାହା"ରେ ଥିବା ବିଷୟବସ୍ତୁ, ଗତ ଶହେ ବର୍ଷର ଶିକ୍ଷା, ସାହିତ୍ୟ, ସଂସ୍କୃତି, ଅର୍ଥନୀତି, ଦୈନ୍ୟ, ଦୁଃଖ, ସୁଖ, ରାଜନିତୀ, ସଂସ୍କାର, କର୍ମମୟ ଜୀବନ ଆଦିର ଚିତ୍ର ସୁରକ୍ଷିତ । ଏହାର ବର୍ଣ୍ଣନ ଶୈଳୀ ଏବଂ ଭାଷା ଅତ୍ୟନ୍ତ ସରଳ ଏବଂ ଏବେକାର ଇଂରେଜୀ ହିନ୍ଦୀମିଶା ଭାଷା ଠାରୁ ପୃଥକ୍ । ଓଡ଼ିଶାର ଗାଁ ଗହଳୀରେ ତଥା ଗୋପାଳଚନ୍ଦ୍ର ପ୍ରହରାଜଙ୍କ "ପୂର୍ଣ୍ଣଚନ୍ଦ୍ର ଭାଷାକୋଷ"ର ଶବ୍ଦମାନ ଏବେ ଏବେ ଓଡ଼ିଆ ସାହିତ୍ୟରେ ଦୃଶ୍ୟମାନ ହେଉନଥିବା ବେଳେ ଶ୍ରୀ ଦ୍ୱିବେଦୀ "ଅରକ୍ଷିତକୁ ଦଇବ ସାହା"ରେ ସେ ସବୁକୁ ଗୋଟେଇ ଯଥା ସ୍ଥାନରେ ଗୁନ୍ଥିଛନ୍ତି । ଆଶା, ଏ ପୁସ୍ତକଟି ପାଠକୀୟ ସମ୍ମାନ ପାଇବ ।

ନାରାୟଣ ବ୍ରହ୍ମା

୨୪୦/୨୫, ରୋ.ନଂ-୯, ଏରୋଡ୍ରମ ଏରିଆ,ଭୁବନେଶ୍ୱର - ୨୪

# ଅନନ୍ୟ



ଶ୍ରୀପର୍ଶୁରାମ ଦ୍ୱିବେଦୀଙ୍କର ଅମ୍ଳାନ ଜୀବନାଦର୍ଶ, ସାଧନାମୟ ଜୀବନ ପଙ୍କରେ ପଦ୍ମ ସଦୃଶ। ଭାରତୀୟ ଜନଜୀବନରେ ପଦ୍ମର ଆଦର ଯେପରି ଅପରିହାର୍ଯ୍ୟ ଶ୍ରୀ ଦ୍ୱିବେଦୀଙ୍କ ଆଦର୍ଶ ଜୀବନ ସେହିପରି ସର୍ବଗ୍ରାହ୍ୟ, ଅନୁକରଣୀୟ ଓ ଅପରିହାର୍ଯ୍ୟ। ଏହା ଏ ଯୁଗର ପଥଭ୍ରଷ୍ଟ ଯୁବକମାନଙ୍କୁ ଆଲୋକର ବର୍ତ୍ତିକା ଦେଖାଇ ନିରାଶାର ଅନ୍ଧକାର ମଧ୍ୟରୁ ଆଶା ଓ ପ୍ରତ୍ୟୟ ଦିଗକୁ ଟାଣିନେବ; ଏଥିରେ ସନ୍ଦେହର ଅବକାଶ ନାହିଁ। ଏହି ଅନନ୍ୟ ପ୍ରକାଶନଟି ପାଠକୀୟ ଆଦରଲାଭ କରୁ ଏହା ହିଁ କାମନା; କାରଣ ଏହା କୋଟିକରେ ଗୋଟିଏ।

ପ୍ର.ଧୀରେନ୍ଦ୍ର ନାଥ ଶତପଥୀ



# ସୃଜନ କାହାଣୀ

ଏ ସଂସାରରେ କୋଟି କୋଟି ଜୀବ ଅହରହ ଗତାୟତ କରୁଛନ୍ତି । ଅଳ୍ପ କେତେକ ଏଠାରେ ତାଙ୍କର କିଛି ଛାପ ରଖିଯାଆନ୍ତି । ଯେଉଁମାନେ ଜୀବନ ସଂଗ୍ରାମ ଚଳାଇ ରଖିବା ସହ ସାଧୁତା, ସମାଜ ସେବା, ପରୋପକାରୀତା ଓ ଈଶ୍ୱର ନିଷ୍ଠାକୁ ଆଦର୍ଶ କରିପାରନ୍ତି ସେମାନଙ୍କ ଜୀବନ ଅନ୍ୟମାନଙ୍କ ପାଇଁ ଶିକ୍ଷଣୀୟ ହୋଇଯାଏ । ଖବରକାଗଜରୁ ଦ୍ୱିବେଦୀଙ୍କର କେତୋଟି ଲେଖାପଢିଛି । ତାଙ୍କର କର୍ମନିଷ୍ଠା ଯୋଗୁଁ କର୍ମଜୀବନରେ ସେ ମୋର ବିଶ୍ୱାସଭାଜନ ହୋଇଛନ୍ତି । ତେଣୁ ତାଙ୍କର ଲେଖାସବୁକୁ ବହିଆକାରରେ ଛପାଇ ରଖିବାକୁ ଓ ଜୀବନ କାହାଣୀକୁ ରୂପ ଦେବାକୁ ମୁଁ ତାଙ୍କୁ ଆର୍ଥିକ ଓ ମାନସିକ ପ୍ରେରଣା ଯୋଗାଇ ପାରିଥିବାରୁ ଆନନ୍ଦିତ । ଜୀବନ ଦୃଷ୍ଟିରୁ ନୁହେଁ ତେତ୍କାଳୀନ ସାମାଜିକ ପରିସ୍ଥିତି, ସମାଜଗଠନ ଓ ଜାତୀୟ କର୍ତ୍ତବ୍ୟ ସମ୍ବନ୍ଧେ କିଛି ପ୍ରେରଣା ଆହରଣ ପାଇଁ ଏ ପୁସ୍ତକଟିକୁ କିଛିସମୟ ଦେଇ ସମସ୍ତେ ପଢିବା ଆବଶ୍ୟକ । ନିଶ୍ଚିତ ଭାବରେ ଏହା ତତ୍କାଳୀନ ସମାଜ ଜୀବନର ଏକ ଦସ୍ତାବିଜ ହୋଇ ରହିବ ।

(ଶ୍ରୀ ରମାକାନ୍ତ ମିଶ୍ର)
ଆଇ.ଏ.ଏସ୍
ପ୍ରାକ୍ତନ ମୁଖ୍ୟ ଶାସନ ସଚିବ, ଓଡ଼ିଶା ସରକାର
୨୦୦, ଫରେଷ୍ଟପାର୍କ, ଭୁବନେଶ୍ୱର -୯

# ଉପକ୍ରମଣିକା

ଭଗବାନ ଅଛନ୍ତି, ନିଶ୍ଚିତ ଅଛନ୍ତି । ଏହା ଖାଲି ଶାସ୍ତ୍ର ପୁରାଣର କଥା ନୁହେଁ । ଏହା ଅଙ୍ଗେ ନିଭାଇବା କଥା । ସବୁବେଳେ ଅଛନ୍ତି ।ସଂପୂର୍ଣ୍ଣ ଭାବରେ ଅଛନ୍ତି । ସେ ସର୍ବଶକ୍ତିମାନ ଅଟନ୍ତି । ସେ ଦୟାମୟ, କରୁଣା ସାଗର ଓ ଦୀନବନ୍ଧୁ । ତାଙ୍କୁ ଡ଼ାକିଲେ ସେ ଶୁଣନ୍ତି । ଦୁଃଖୀର ଦୁଃଖ ହରଣ କରନ୍ତି । ସୁଖ ଦିଅନ୍ତି । ଆଖିର ଲୁହ ପୋଛି ଦିଅନ୍ତି । ମୁହଁରେ ହସ ଫୁଟାନ୍ତି । ତାଙ୍କ ପାଦତଳେ ଆଶ୍ରୟ ଦିଅନ୍ତି । ଯେ ତାଙ୍କୁ ଭକ୍ତିରେ, ଶ୍ରଦ୍ଧାରେ, ମନ ପ୍ରାଣ ଦେଇ ଡ଼ାକିବ, ସେ ତାଙ୍କୁ ନିଶ୍ଚୟ ପାଇବ । ତାଙ୍କର କରୁଣା ତାକୁ ନିଶ୍ଚୟ ମିଳିବ । ଏହା ନିଃସନ୍ଦେହ । ହେଲେ ଡ଼ାକିବା ପରି ଡ଼ାକିବା ଦରକାର । ଆମେ ଆମର ପୁଅ, ଝିଅ, ସ୍ତ୍ରୀ, ପିତା, ମାତା, ଗାଡ଼ି, ଘର ଓ ସମ୍ପତ୍ତିକୁ ଖୁବ୍ ଭଲପାଉ । ସେତିକି ପରିମାଣର ସ୍ନେହ ଶ୍ରଦ୍ଧା ଓ ଆନ୍ତରିକତା ସହିତ ଭଗବାନଙ୍କୁ ଡ଼ାକିଲେ ସେ ନିଶ୍ଚୟ ଶୁଣିବେ । ସଂପୂର୍ଣ୍ଣ ଭାବରେ ତାଙ୍କ ଉପରେ ଯେ ନିର୍ଭର କରିବ, ସେ ତା କଥା, ତା ପ୍ରାର୍ଥନା, ତା ଅନୁରୋଧ ନିଶ୍ଚୟ ଗ୍ରହଣ କରିବେ । ଏଥିରେ ଆଦୌ ସନ୍ଦେହ ନାହିଁ ।

ଏତେବଡ଼ ଅନୁଭବସିଦ୍ଧ ବିରାଟ ସତ୍ୟ ସ୍ୱରୂପ ଅମୃତର ସ୍ୱାଦ ନିଜେ ଚାଖି ଆଉ କାହାକୁ ନ ଦେଲେ, ନଜଣାଇଲେ ତାହା ସଂପୂର୍ଣ୍ଣ ସ୍ୱାର୍ଥପରତା ହେବ । ସବୁ ସଂସାରୀ ଲୋକେ ସୁଖ ଦୁଃଖରେ ଭଗବାନଙ୍କୁ ଡ଼ାକିଥାନ୍ତି । କିଏବା ଅନ୍ତରରେ ଆଉ କିଏବା ମୁହଁରେ । ଭଗବାନ ମଧ ତାଙ୍କର ପ୍ରାର୍ଥନା ଶୁଣିଥାନ୍ତି । ଫଳ ମଧ ଦେଇଥାନ୍ତି । ପ୍ରସବ ବୈରାଗ୍ୟ ପରି ଲୋକେ ତାଙ୍କୁ ବିସ୍ମୃତ ହୋଇଯାନ୍ତି । କାଳ ଚକ୍ରରେ ସବୁକିଛି ଘଟି ଚାଲିଛି ବୋଲି ତାଙ୍କର ଧାରଣା ଜନ୍ମେ । ଆଉ କିଏ କିଏ ନିଜର ପୁରୁଷକାରରୁ ସବୁକିଛି ହେଉଛି ବୋଲି ଭାବନ୍ତି । ରାବଣ ପରି ବାରମ୍ବାର ହାରି ମଧ ଗାଲଫାମ୍ପୁଡ଼ିମାରି ମୁଁ ସବୁ କିଛି କରୁଛି, ଓ କରିପାରିବି ବୋଲି ଅହଂ ପ୍ରକାଶ କରିଥାନ୍ତି । କିନ୍ତୁ ଅସଲ ସତ କଥାଟି ହେଉଛି ଭଗବାନ ଇଚ୍ଛାନକଲେ ଶୁଖିଲା ପତ୍ରଟିଏ ମଧ ହଲିବ ନାହିଁ । ସେ ଇଚ୍ଛା କଲେ ପର୍ବତ ଚଳିବ, ଶବରେ ଜୀବନ ସଞ୍ଚାର ହେବ ଏବଂ ପଙ୍ଗୁ ପର୍ବତକୁ ଲଙ୍ଘନ କରିପାରିବ ।

ଅଣ୍ଟାଯାଏ ଲୁଗାକୁ ଟେକି ଟେକି ଭଗବାନ୍ ଭବ ଜଳଧିର ଏ ଜଳରୁ ରକ୍ଷା କରିବେ ବୋଲି ରଟିବାଟା ସଂପୂର୍ଣ୍ଣ ଆତ୍ମସମର୍ପଣର ଲକ୍ଷଣ ନୁହେଁ । ମହାନ୍ୟାୟୀ ଧର୍ମ, ମହାବଳୀ ଭୀମ, ମହାଗାଣ୍ଡିବୀ ଅର୍ଜୁନ, ସ୍ୱର୍ଗରେ ପାଟ ବାନ୍ଧିଥିବା ନକୁଳ ଓ ତ୍ରିକାଳଜ୍ଞ ସହଦେବଙ୍କର ସହାୟ ଓ ବଳଭିକ୍ଷା କରି ଯେତେବେଳେ ନିରାଶ ହେଲେ ନିଜ ବଳ ପ୍ରୟୋଗକରି ନିଜର ବେଶଭୂଷଣକୁ ଯାବୁଡ଼ି ଧରିବାକୁ ଚେଷ୍ଟା କଲେ ଦ୍ରୌପଦୀ । ହେଲେ, ଦୁଃଶାସନର ବଳ ଆଗରେ ଅବଳାର ଚେଷ୍ଟା ସ୍ୱାଭାବିକ ଭାବେ ପରାହତ ହେବା ପରେ ଦୁଇହାତ ଟେକି ଯେତେବେଳେ ଦ୍ରୌପଦୀ

ଭଗବାନଙ୍କୁ ସଂପୂର୍ଣ୍ଣ ସମର୍ପିତ ହୋଇ ଲଜ୍ଜା ନିବାରଣପାଇଁ ପ୍ରାର୍ଥନା କଲେ ସେତେବେଳେ ସେ ସଂପୂର୍ଣ୍ଣ ସୁରକ୍ଷିତା ହୋଇଗଲେ ।

ପିଲାଟି ଦିନରୁ ହଇଜା ଓ ଆନ୍ତ୍ରିକ ଜ୍ୱରରେ ପ୍ରଥମେ ଦେହବଳ ସଂପୂର୍ଣ୍ଣ ଭାଙ୍ଗିଯାଇଥିଲା । ତା ପରେ ପରେ ମାତ୍ର ଦେଢ଼ଟା ବର୍ଷ ମଧ୍ୟରେ ଜେଜେମା, ବାପା, ଜେଜେବାପା ଓ ନାନୀ ଅନାଥ କରିଚାଲିଗଲେ । କକେଇ ଗୃହତ୍ୟାଗୀ ହୋଇଗଲେ । ଦେହବଳ ଓ ମଣିଷ ବଳ ଗଲା । ତା ଆଗରୁ ଜମିବାଡ଼ି ପ୍ରାୟ ଯାଇଥିଲା । ଘରଖଣ୍ଡେ ଥିଲା । ସେ ମଧ୍ୟ ଭୁଷୁଡ଼ି ପଡ଼ିଲା ଭଗାରୀଙ୍କ ଅଦଉତିରେ । ନିଜରତ ମାମୁଁ ନଥିଲେ । ମାମୁଘରୁ ମଧ୍ୟ କିଛି ସାହାଯ୍ୟ ମିଳିବାର ଆଶା ନଥିଲା । ଆଉ ରହିଲା କ'ଣ ?

କେବଳ ରହିଥିଲେ ଦୁଃଖିନୀ ଜନନୀ; ପଞ୍ଚୁପାଣ୍ଡବଙ୍କୁ ଧରି ରହିଥିଲା ପରି କୁନ୍ତୀ । ନଥିଲା ରାଜ୍ୟ, ନଥିଲା ଘର, ନଥିଲା ଲୋକବଳ, ନଥିଲା ଧନ ବା ମାନ । ଏକମାତ୍ର ସହାୟ ଭଗବାନ । ଯାହାର କେହି ସହାୟ ନଥାନ୍ତି, ଭଗବାନ ତାର ସହାୟ ହୁଅନ୍ତି । ବିଚାରନ୍ତୁ ଭଲା ସଦ୍ୟଜାତ ନିଶ୍ଚେଷ୍ଟ କ୍ରନ୍ଦନରତ ଶିଶୁପାଇଁ କିଏ ସେ ମାତୃବକ୍ଷର ପୟୋସିନୀ - ଅମୃତର ଧାରା ରଖିଥାଏ ! ଏଠାରେ ଖାଇବାବାଲାଠାରୁ ଖୁଆଇବା ବାଲାର୍ ବେଶୀ ଉତ୍କଣ୍ଠା ଓ ବେଶୀ ପ୍ରୟୋଜନ । ହାତ ଗୋଡ଼ ଛିଡ଼ିଯାଇଥିବା କୁଷ୍ଠରୋଗୀଟିର ପେଟ କଣ ଖାଲିରହେ ? ଗୁରୁ ରାମଦାସଙ୍କ ଇଙ୍ଗିତରେ ଶିବାଜୀ ମହାରାଜ ଭାଙ୍ଗିଥିବା ପଥର ଖଣ୍ଡ ଭିତରେ ଥିବା କୁଜାବେଙ୍ଗ ପାଇଁ ପାଣି ଟୋପିଏ କିଏ ରଖିଥିଲା ?

ଯେଉଁ ଠାକୁରେ ପେଟ ଦେଇ ଜନ୍ମ ଦେଇଛନ୍ତି ସେ ତା ଆଗରୁ ଦାନାର ବନ୍ଦୋବସ୍ତ କରିଛନ୍ତି । ସେତିକି ନୁହେଁ ଲଜ୍ଜାନିବାରଣ ପାଇଁ ବସ୍ତ୍ର ଓ ମୁଣ୍ଡଗୁଞ୍ଜିବା ପାଇଁ ଘର ଓ ଉତ୍ତରୋତ୍ତର ଉନ୍ନତି ପାଇଁ ବୁଦ୍ଧି ବିଚାର ଓ ପ୍ରଚେଷ୍ଟା ଖଞ୍ଜି ଦିଅନ୍ତି । କିଏ ବିଶ୍ୱାସ କରନ୍ତୁ ବା ନକରନ୍ତୁ, କିଏ ଅନୁଭବ କରିଥାନ୍ତୁ ବା ନଥାନ୍ତୁ, କିଏ ଦେଖିଶୁଣିଥାନ୍ତୁ କି ନଥାନ୍ତୁ, ଯେ ହେଉଛି ଜଣେ ଅଙ୍ଗେ ନିଭାଇବାବାଲାର ଅଭିବ୍ୟକ୍ତି । ଏଥିରେ ତିଳାର୍ଦ୍ଧେ ସନ୍ଦେହ ନାହିଁ । ଅସତ୍ୟ ନାହିଁ । ତାର୍କିକତା ନାହିଁ । "ଅରକ୍ଷିତକୁ ଦଇବ ସାହା" । ଏହି ନିରାଟ, ବିରାଟ, ନିଷପଟ, ନିଛକ, ନିରୋଳା, ନିରବଚ୍ଛିନ୍ନ, ନିରାଧାର, ନିଶଙ୍କ ସତ୍ୟ ପ୍ରକାଶ ହିଁ ଏ ଲେଖାର ଉଦ୍ଦେଶ୍ୟ । ଆଶା; ଏହା କୋଟି ପ୍ରାଣକୁ ପ୍ରେରଣା ଓ ଆତ୍ମ ବିଶ୍ୱାସ ଦେବା ସହ ଅନ୍ଧକାରରେ ପଡ଼ିଥିବା ଲୋକଙ୍କୁ ଆଲୋକ, ଅବାଟରେ ପଡ଼ିଥିବା ବ୍ୟକ୍ତିଙ୍କୁ ବାଟ ଓ ଅସତ୍ୟରେ ପଡ଼ିଥିବା ବ୍ୟକ୍ତିଙ୍କୁ ସତ୍ୟର ସନ୍ଧାନ ଦେବ ।

ଯେଉଁ ଭଗବାନଙ୍କ ଅସୀମ କରୁଣା ଓ ପ୍ରେରଣାରୁ ଯେ ଲେଖାଟିର ପ୍ରାଣ ପ୍ରତିଷ୍ଠା ସମ୍ଭବ ହୋଇ ପାରିଲା ତାଙ୍କରି ପାଦରେ ବିନମ୍ର ପଣତି ଜଣାଇ କୃତଜ୍ଞତା ପ୍ରକାଶ କରିବା

ବ୍ୟତୀତ ଆଉ କାହାକୁ ଖୋଜି ପାଉନି । ପ୍ରକାଶନ ଓ ମୁଦ୍ରଣ ପାଇଁ ସଂପୃକ୍ତ କର୍ତ୍ତୃପକ୍ଷଙ୍କ ପ୍ରତି ଶ୍ରଦ୍ଧା ଜ୍ଞାପନ ଅବଶ୍ୟ କର୍ତ୍ତବ୍ୟ । କେଉଁ ଅଦେଖା ହାତର ଇଙ୍ଗିତରେ ଅଯାଚିତ ଭାବରେ ଯେଉଁ ମହାନୁଭବ ସ୍ୱତଃସ୍ଫୂର୍ତ୍ତ ଭାବେ ନିଜେ ଏ ପ୍ରସଙ୍ଗ ଉଠାଇ, ପ୍ରଶ୍ନ କରି, ପ୍ରେରଣା ଦେଇ ସହାଯ୍ୟର ହାତ ବଢ଼ାଇ ଦେଇ ସାତବର୍ଷ ତଳୁ ପଡ଼ିରହିଥିବା ଏ ଲେଖାକୁ ଲୋକ ଲୋଚନକୁ ଆଣିବାକୁ ଆଗେଇ ଆସିଲେ; ସେ ହେଉଛନ୍ତି, ଅନ୍ଧାରୀ ମୂଳକ ଆଠମଲ୍ଲିକର ଆଲୋକରେଖା - ଓଡିଶାର ପ୍ରାକ୍ତନ ମୁଖ୍ୟ ଶାସନ ସଚିବ, ଶ୍ରୀଯୁକ୍ତ ରମାକାନ୍ତ ମିଶ୍ର । ତାଙ୍କୁ ସେହି ଅଦେଖା ହାତ ଅନ୍ଧାରରେ ଆଲୁଅ ଦେଖାଇ ନିଷ୍କାମ କର୍ମ ପଥରେ ଆଗେଇ ନେଇ ଅଧିକ ଯଶସ୍ୱୀ ଓ ଅମର କରନ୍ତୁ । ପାଠକବର୍ଗ ଭଗବାନଙ୍କର ଆଶିର୍ବାଦ ଅବଶ୍ୟ ଲାଭ କରିବେ; ଏହାକୁ ପାଠ କରି ଏବଂ ତାଙ୍କ ପାଖରେ କୃତଜ୍ଞତା ପାଶରେ ଆବଦ୍ଧ କରିବେ ମଧ୍ୟ ।

- ଲେଖକ -



ଲେଖକ ପର୍ଶୁରାମ ଦ୍ୱିବେଦୀ ଓ ପତ୍ନୀ ଅନ୍ନପର୍ଣ୍ଣା ଦ୍ୱିବେଦୀ ପାଖରେ ନାତୁଣୀ

## ସୂଚୀପତ୍ର

# ପୂର୍ବାର୍ଦ୍ଧ

## ୧ . ଶୂନ୍ୟଶୂନ୍ୟ ମହାଶୂନ୍ୟ

ମହାଶୂନ୍ୟ ମଧ୍ୟରେ ଯେଉଁ ଜ୍ୟୋତି ଦେଖାଯାଏ ତାହାହିଁ ସୃଷ୍ଟିର ବୀଜ, ନିରାଶା ମଧ୍ୟରେ ଆଶାର ସଞ୍ଚାର, ଦୁଃଖର ସାଗର ମଧ୍ୟରେ ଭାସୁଥିବା ତରୀ ପାଇଁ ସୁଖର ମିଞ୍ଜି ମିଞ୍ଜି ସଳିତାର ଶିଖା । ବୈଶାଖର ଝାଞ୍ଜି ଖରାରେ ଜମି, ଭୂମି, ନଈ ପୋଖରୀ ଶୁଖିଯାଇଥାଏ । ତା ସହିତ ନିମ୍ନମଧ୍ୟବିତ୍ତ ବ୍ରାହ୍ମଣ ପରିବାରଟିର ସର୍ବସ୍ୱ ଚାଲିଯାଇ ଆସିଯାଇ ଥାଏ ଦାରୁଣ ଦାରିଦ୍ର୍ୟ । ଖଣ୍ଡେ ଖଣ୍ଡେ କରି ଜମି ସବୁ ବିକ୍ରୀହୋଇ ପ୍ରାୟ ଶେଷ ହୋଇଯାଇଥାଏ । ଦିହ ମିହନ୍ତ କରିବା ବାଲା କେହି ନଥାନ୍ତି । ବାପା ଚୀର ରୁଗ୍ଣ । ଶ୍ୱାସ ରୋଗୀ । କକେଇ ଅଧା ପାଠରୁ ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଗୃହ ତ୍ୟାଗୀ ହୋଇଥାନ୍ତି । ଆଉ ବୃଦ୍ଧ ଜେଜେବାପା ନବେ ଦଶକଟପି ଶହେ ଦଶକରେ ପଦାର୍ପଣ କରିଥାନ୍ତି । ଘରେ ଥିବା ଗୋଠେଗୋଇ ବିକ୍ରୀବଟା ହୋଇ ଆଉ ଥାଏ ଗୋଟେ ମାତ୍ର ବରଡ଼ିଆ ଗାଈ । ବଳଦ ମଧ୍ୟ ବିକ୍ରୀ ସରିଥାଏ । ଯତ୍ ସାମାନ୍ୟ ଚଷ ଜମିକୁ ଭାଗଚାଷରେ ଲଗାଇ ଦିଆଯାଇଥାଏ । ଏହିଭଳି ନିଃସ୍ୱ ପରିବାରରେ ଶୁଷ୍କ ବୈଶାଖର ଅମାବାସ୍ୟାରେ ଜନ୍ମ ନେଇଥିବା ବିଷୟ ବୋଉ (ମା) ମୁହଁରୁ ଶୁଣାଯାଏ ଓ ପ୍ରମାଣ ମିଳେ ତତ୍‌କାଳୀନ ତାଳପତ୍ର ଜାତକରୁ । ଆହୁରି ନିଦାରୁଣ ଯେ, ତୃତୀୟ ସନ୍ତାନ ବେଳକୁ ଦାରିଦ୍ର୍ୟର ତୀବ୍ର କଷାଘାତରେ ମାତୃବକ୍ଷର ଅମୃତ ଧାରର ମଧ୍ୟ ଅନାଟନ ପଡ଼ିଥିଲା । ତେଣୁ ଗାଁର ଶେଷ ଭାଗରେ ଥିବା ପଣ୍ଡିତଙ୍କ ଘରୁ (ପଣ୍ଡିତ ଆକୁଳ ମିଶ୍ର ଯେ କି ୧୯୧୪ରେ ଆରମ୍ଭ ହୋଇଥିବା କଟକ ଟ୍ରେଡ଼ିଂ କମ୍ପାନୀର ପ୍ରତିଷ୍ଠାତା) କ୍ଷୀର ଟିକିଏ ଆଣି ଶିଶୁଚର୍ଯ୍ୟା କରା ଯାଇଥିଲା । ଏହି ପରି ଦେଖିଲେ ଓ ହିସାବ କରି ବସିଲେ ନଈନାଳରେ ପାଣି ନାହିଁ; ମାତୃବକ୍ଷରେ ଅମୃତ ନାହିଁ, ଗାଈଟି ବରଡ଼ିଆ । ବୈଶାଖର ଦାରୁଣ ଦୁଃଖରେ ସବୁ ଶୁଖିଲାକୁ ଅମାବାସ୍ୟା ଯୋଗୁଁ ଚନ୍ଦ୍ରର ଆଲୋକ ମଧ୍ୟ ଦୁଃଷ୍ପ୍ରାପ୍ୟ । ଏହାହିଁ ଶୂନ୍ୟ ଶୂନ୍ୟ ମହାଶୂନ୍ୟ; ଆଉ ତାରି ମଧ୍ୟରେ ଜ୍ୟୋତିଟିଏ ହେଉଛି ଏକ ଶିଶୁପୁତ୍ରର ନବୀନ ଜୀବନ; ଯାହାକି କେବଳ ସେହି ଦୟାମୟଙ୍କର ଅମୂଲ୍ୟ ଦାନ । ବୁଢ଼ୀ ମା'ଙ୍କର ବିଚାରରେ ଲକ୍ଷେ ଟଙ୍କାର ପୁଅଟିଏ' ତ ମିଳିଛି । ଆଉ ଅଧିକ କ'ଣ ଦରକାର । ଯେ ଜନ୍ମ ଦେଇଛି ସେ ଦାନା ଦେବ । ସେଥି ପାଇଁ ବ୍ୟସ୍ତ ନାହିଁ । କାହିଁ ଗୋପବନ୍ଧୁ ମିଶ୍ର ତ (ଗାଁ ଜମିଦାର) ଲକ୍ଷେ ଶିବ ପୂଜା କରି ପୁଅଟିଏ ପାଇ ପାରୁନି । ଷଠି ଯଦି ପରମାୟୁ ଦେଇଥିବ ଶାଗପେଜ ଖାଇ ସେ ମଣିଷ ହେବ । ବଡ଼ ହେବ, ନାଁ ରଖିବ । ସମସ୍ତେ କ'ଣ ଚାରିତୁଲା ଘରେ ଜନ୍ମ

ହୋଇଛନ୍ତି ? ସମସ୍ତେ କ'ଣ ଦୋଳିରେ ଝୁଲି ବଢୁଛନ୍ତି ? ସମସ୍ତଙ୍କ ଦେହରେ କ'ଣ ସୁନା ଛାଉଣି ହେଉଛି ? ଆମଠାରୁ ଗରିବ, ନିରାହ, ମଳିମୁଣ୍ଡିଆ ଆଉ ଦୁଃଖୀ ଦରିଦ୍ର ପରିବାରରେ କ'ଣ ସନ୍ତାନ ଜନ୍ମ ହେଉନି ନା ବଢ଼ିକୁଢ଼ି ମଣିଷ ହେଉନି ! ଏଥିପାଇଁ ଏତେ ବ୍ୟସ୍ତ କ'ଣ ! ସବୁଥାଇ ରାଜାଘରେ ଜନ୍ମ ହୋଇ ପଞ୍ଚୁପାଣ୍ଡବ ପୁଣି ବଣ ଜଙ୍ଗଲରେ ଦିନକାଟି ଭୀକମାଗି ମଣିଷ ହେଲେ । ରାଜ୍ୟ ପାଇଲେ, ରାଜା ହେଲେ । ଦୁଃଖିନୀ ମା କୁନ୍ତୀ କେତେ କଷ୍ଟ ନ କରିଛନ୍ତି ! ଦରିଦ୍ରର ସଖା ଯାହାକୁ ସାହା ହେବେ ସେ ମଣିଷ ହେବ । ଯଶ, କୀର୍ତ୍ତୀ, ଧନ ଦରବ, ଜମିବାଡ଼ି, ଟଙ୍କାସୁନା, କୋଠାବାଡ଼ି ଏସବୁ ଅଢ଼େଇଦିନିଆ ସ୍ୱପ୍ନ, ଅଳିକ ଓ ଅସାର ।

ବାର୍ଦ୍ଧକ୍ୟର ଏକସ୍ତରୀ ବର୍ଷରେ ବୁଦ୍ଧି ଦିଶିଲା; ମୋର ବଂନ୍ଧୁ ନାରାୟଣ ବ୍ରହ୍ମାଙ୍କ ଠାରୁ ତାଙ୍କ ଅଭିଜ୍ଞତା ଶୁଣିଲା ପରେ । ଜାତକରେ ସନ ୧୩୪୨ ସାଲ ଅଶ୍ୱିନୀ ମେଷ ବୈଶାଖ ଅମାବାସ୍ୟ ଜନ୍ମ ତିଥି ବୋଲି ଲେଖାଥିଲେ ମଧ ଜନ୍ମ ତାରିଖଟି ବିଦ୍ୟାଳୟ ପ୍ରମାଣ ପତ୍ରାନୁଯାୟୀ ୧୯୩୬ ଅକ୍ଟୋବର ୬ ତାରିଖ । ଜାତକ ସହ ଏହାର ମେଳ ନଥିବାରୁ ଜୟଦେବ ରାଜ୍ୟ ସଂଗ୍ରହାଳୟରୁ ପୁରୁଣା ପାଞ୍ଜି ଦେଖିବାରେ ଜଣାଗଲା ଯେ ୧୯୩୫ ମସିହା ମଇ ମାସ ଦୁଇ (୨) ତାରିଖଟି ବାସ୍ତବ ଜନ୍ମ ଦିନ । ସେ ଦିନ ମେଷ ଚନ୍ଦ୍ର ଓ ଅଶ୍ୱିନୀ ନକ୍ଷତ୍ରରେ ଜନ୍ମ କୃଷ୍ଣ ଚତୁର୍ଦ୍ଦଶୀ- ଅମାବାସ୍ୟା କ୍ଷୟ । ସଂକ୍ରାନ୍ତି ଗଣନାନୁଯାୟୀ ଏମାସରେ ଜନ୍ମ ଶିଶୁ ଦୁଃଖୀ ହେବା ବାସ୍ତବରେ ସତ୍ୟ ହୋଇଛି । ବୈଶାଖ ୨୧ ଦିନ; ଅର୍ଥାତ୍ ମେଷ ମାସର ସଂକ୍ରାନ୍ତୀ ଠାରୁ ୨୧ ଦିନରେ ଜନ୍ମ ।

ଆଜିକାଲିର ପିଲାଙ୍କର ଜନ୍ମ ତାରିଖ ମୁଖସ୍ଥ । କେତେ ଚାକଚକ୍ୟରେ ପାଳନ ହେଉଛି ଜନ୍ମଦିନ । ନୂଆ ପୋଷାକ, କେକ୍‌କଟା, ବେଲୁନ୍ ଟଙ୍ଗା, ଓ ମହମବତୀ ଜଳାଇବା ସାଙ୍ଗକୁ ନିଜ ଶ୍ରେଣୀର ପିଲାଙ୍କୁ ମିଠେଇ ଖୁଆ ଗୋଟିଏ ଧାରା ହୋଇଗଲାଣି । ତା ସାଙ୍ଗକୁ ଜନ୍ମଦିନରେ ଭୋଜୀ ଓ ଭେଟି ତାକୁ ଆହୁରି ରଙ୍ଗିଲା କରି ଦେଉଛି । ଆଗେ ନୂଆ ଲୁଗା ପିନ୍ଧା, କଳସ ବସାଇ ଷଠୀପୂଜା, ସତ୍ୟନାରାୟଣ ପାଲା ଓ ଚକୁଳି ପିଠା ଏବଂ ଜାଉରେ ଜନ୍ମଦିନ ସୀମିତ ଥିଲା । କେଉଁ ଆଦିମ କାଳରୁ କେଉଁ ସ୍ୱଜ୍ଞାୟୁଙ୍କର ବିୟୋଗ ଯୋଗୁଁ ଜନ୍ମ ଦିନ ପାଳନ ପୁରୁଣା କଣ ନୂଆ ରିତିରେ ମଧ ପୁରାପୁରି ବନ୍ଦ ଥିବାରୁ ଜନ୍ମ ତାରିଖ ଜାଣିବା ସ୍ୱପ୍ନ ପ୍ରାୟ ଥିଲା । ତେଣୁ ଏକସ୍ତରୀ (୭୧) ବର୍ଷ ବୟସରେ ରାଜ୍ୟ ସଂଗ୍ରହାଳୟରେ ପୁରୁଣା ପାଞ୍ଜି ଦେଖି ଜନ୍ମ ତାରିଖ ଶୁଦ୍ଧ ଭାବେ ଜାଣିବା, ୧୦୦ ବର୍ଷ ଚାଷ କରୁଥିବା ଜମିରୁ ଶିବଲିଙ୍ଗ ପାଇଲା ପରି । ତେବେ ମଧ ତାର କିଛି ଗୁରୁତ୍ୱ ନିଜ ପାଇଁ, ପିଲାଙ୍କ ପାଇଁ ଓ ପରିବାର ସଦସ୍ୟଙ୍କ ପାଇଁ ପ୍ରାୟ ନଥିଲା । ଏ ଘଟଣାଟି ମଧ ଈଶ୍ୱରଙ୍କ ଇଚ୍ଛାର, ପ୍ରେରଣାର ଓ କରୁଣାର ଏକ ପରିପ୍ରକାଶ ଛଡ଼ା ଅନ୍ୟକିଛି ନୁହେଁ । ଏହା ପଛରେ ଆଉ କଣ ଅଛି ସେହି ସର୍ବମୟ ଈଶ୍ୱରଙ୍କୁ ହିଁ ଜଣା । ଅନ୍ତତଃ ସତ୍ୟର ପରିପ୍ରକାଶ ହେଲା ।

# ୨ . ଏ ପିଲା ଦିନେନା ଦିନେ ବଡ଼ ହେବ

ପ୍ରାଥମିକ ବିଦ୍ୟାଳୟରେ ଜୀବନର କେତୋଟି ସ୍ମୃତି ଯାହାକି ଈଶ୍ୱରଙ୍କ ଅହେତୁକ କୃପାର ଫଳ ତାହା ଅବଶ୍ୟ ବର୍ଣ୍ଣନୀୟ । ସେ କାଳରେ ଆଜିକାଲିପରି ପିଲାଙ୍କ ସାଇକେଲ ବା ଗାଡି ନଥିଲା । ଦିନକର କଥା । ଚନ୍ଦରା କେଉଟ ତା ସାନଭାଇକୁ ଗୋଟିଏ ଛୋଟ ଚକଲଗା ଚାରି ଚକିଆ କାଠ ଗାଡ଼ିରେ ବସାଇ ଡ଼ୋର ଲଗାଇ ଭିଡ଼ି ଭିଡ଼ି ଖେଳାଇବାକୁ ସ୍କୁଲ ଆଗକୁ ଆସିଥିଲା । ନାଥ ମାଷ୍ଟ୍ରେ ଓ ଭୋଳିମାଷ୍ଟ୍ରେ ସେ ଗାଡ଼ିକୁ ଦେଖାଇ ସ୍କୁଲ ପିଲାଙ୍କୁ କହିଲେ ଚନ୍ଦରା ସିନା ଡ଼ୋର ଲଗାଇ ଟାଣୁଛି; ତୁମ ଭିତରୁ କିଏ ନିଜେ ସେଥିରେ ବସି ତାକୁ ଚଳାଇ ପାରିବକି ? ଏ କଥାର ଉତ୍ତର କେହି ଦେଇ ନଥିଲେ । କିଛି ନଭାବି ସ୍ୱତଃ ମୋ ମୁହଁରୁ ଉତ୍ତର ଆସିଲା ମୁଁ ତାକୁ ଚଳାଇ ପାରିବି । ତାପରେ ଦୁଇ ମାଷ୍ଟ୍ରେ ଓ ପିଲାଙ୍କ ଭିତରେ ହସର ରୋଳ ଛୁଟିଲା । ସାଙ୍ଗେ ସାଙ୍ଗେ ପରୀକ୍ଷା ଦେବାକୁ କୁହାଗଲା । ଈଶ୍ୱର ମନ ମଧରେ ବୁଦ୍ଧି ଓ ବଳ ଦେଲେ । ଗାଡ଼ିଟିକୁ ଟାଣିନେଇ ଗୋଟେ ଗଡ଼ାଣିରେ ରଖି ତା ଉପରେ ବସିପଡ଼ି ହୁଙ୍କି ମାରିବାରେ ସେ ଛାଏଁ ଗଡ଼ିଲା ଓ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ମାତ୍ର ଭୋଳି ମାଷ୍ଟ୍ରେ ଛାଡ଼ିବା ଲୋକ ନୁହଁନ୍ତି । ସେ ତାଙ୍କ ପ୍ରଶ୍ନର ସଂଶୋଧନ କରି କହିଲେ; ଗଡ଼ାଣିରେ ନୁହେଁ ସମାନ ଯାଗରେ ଚଲା । ସମାନ ଯାଗାରେ ମଧ ଗାଡ଼ି ଉପରେ ବସି ହୁଙ୍କି ମାରିବାରୁ ଅଳ୍ପ ଟିକିଏ ଗଡ଼ିଲା । ଏତ ଜଣେ ଶିଶୁ ବୁଦ୍ଧିର ବାହାର କଥା । ଈଶ୍ୱରଙ୍କ ପ୍ରେରଣାରେ ଏହା ସମ୍ଭବ ହେଲା । ହେଲେ ଏଥିରୁ ଗୋଟିଏ ଲାଭ ହେଲା । ସବୁ ଶିକ୍ଷକ ଓ ପିଲାଙ୍କର ଦୃଷ୍ଟି ଅନ୍ତତଃ ପଡ଼ିଲା । ଯାହା ଫଳରେ ସେହିବର୍ଷ ପ୍ରଥମ ଶ୍ରେଣୀରୁ ବାଛି ବାଛି କେତେ ଜଣ ପିଲାଙ୍କୁ ଅଧାବର୍ଷରୁ ୨ୟ ଶ୍ରେଣୀକୁ ଉତ୍ତୀର୍ଣ୍ଣ କରାଗଲା; କାରଣ ସେ ବର୍ଷରୁ ଜୁଲାଇରୁ ଜୁନ୍ ଯାଏ ଶିକ୍ଷା ବର୍ଷ ପୁନଃ ନିର୍ଦ୍ଧାରିତ ହେଲା । ଆଗରୁ ଜାନୁୟାରୀରୁ ଡ଼ିସେମ୍ବର ଥିଲା ଶିକ୍ଷା ବର୍ଷ । ସେଥି ମଧରେ ମୋ ନାମଟି ରହିଲା । ଈଶ୍ୱରଙ୍କ ସଂପୂର୍ଣ୍ଣ ଇଚ୍ଛା ବୁଝିବା ମଣିଷ ଶକ୍ତିର ବାହାରେ । ମଣିଷ ତାଙ୍କ ହାତର କଣ୍ଢେଇ । ସେ ତାକୁ ନଚାନ୍ତି, କନ୍ଦାନ୍ତି, ହସାନ୍ତି, ଟେକନ୍ତି ଓ କଚାଡ଼ନ୍ତି । ମୂର୍ଖ ମଣିଷ ଭାବେ ମୁଁ ହସିଲି, ମୁଁ କାନ୍ଦିଲି, ମୁଁ ନାଚିଲି, ମୁଁ ଉପରକୁ ଉଠିଲି ଓ ମୁଁ ତଳକୁ ଖସିଲି । ହେଲେ ତାଙ୍କ ଇଚ୍ଛା ନ ହେଲେ ଗଛର ଶୁଖିଲା ପତ୍ରଟିଏ ମଧ ହଲି ପାରେନା । ଖଣ୍ଡିଆ ଭୂତରେ ପଡ଼ିଥିବା ଶୁଖିଲା ପତ୍ରଟି ପବନ ବେଗରେ ଉପରକୁ ଉଠେ, ଚକା ଭଉଁରୀ ଖେଳେ ପୁଣି ତଳେ ପଡ଼େ । ସେ ଯଦି ଏସବୁ ତାର କରାମତି ବୋଲି କହି ଡ଼ିଣ୍ଡିମ ପିଟିବ ଲୋକେ ତାକୁ ହସିବେ ସିନା ! ସେହିପରି ସାମାନ୍ୟ ବୁଦ୍ଧିର ପରିଚୟ ଦେଇ ଅଧାବର୍ଷରେ ଉତ୍ତୀର୍ଣ୍ଣ ପିଲାଟିକୁ ଠିକ୍ ତା ପରେ ପରେ ହଇଜା ଓ ହଇଜା ଉଠାଣି ଆନ୍ତ୍ରିକ ଜ୍ୱରରେ ପୀଡ଼ିତ ହୋଇ ଉତ୍ତୀର୍ଣ୍ଣ ହୋଇଥିବା ଶ୍ରେଣୀରେ ଅଧିକ ୬ମାସ ରହିବାକୁ ପଡ଼ିଥିଲା । ଏହା ହାରିଯିବାର ଲକ୍ଷଣ ନୁହଁ । ଠାକୁରେ ସାମାନ୍ୟ ଗାଡ଼ିଖେଳ

ମାଧମରେ ଦୂରାରୋଗ୍ୟ ରୋଗ ଯୋଗୁଁ ୬ ମାସରୁ ଅଧିକ ଅନୁପସ୍ଥିତ ରହିବା ସମୟଟିକୁ ଆଗରୁ ଶିହାଟି ସୂତ୍ରେ ଦାନ କରି ତାଙ୍କର ଖେଳ ଦେଖାଇ ଦେଲେ । ନହେଲେ ଛାତ୍ର ଜୀବନରେ ଅଧିକ ବର୍ଷଟିଏ ଅତିବାହିତ କରିବାକୁ ପଡ଼ିଥାନ୍ତା । ଲୀଳାମୟଙ୍କର ଯେ କି ବିଚିତ୍ର ଲୀଳା ? ଛ ମାସ ପରେ ସ୍କୁଲକୁ ଆସିବାରେ ନାଥମାଷ୍ଟ୍ରେ କହିଲେ, "ଏ ପିଲା ନିଷେ ଦିନେ ବଡ଼ ହେବ" ।

ବିଦ୍ୟାଳୟର ଯେଉଁ ଶିକ୍ଷକ ମନ୍ତବ୍ୟ ଛଳରେ ଆଶିର୍ବାଦ ବର୍ଷଣ କଲେ ତାଙ୍କ ବିଷୟରେ ଦୁଇପଦ ନକହିଲେ ଋଣ ପରିଶୋଧ ହେବନି । ପାଞ୍ଚଖଣ୍ଡିପଦା ଗାଁର ସମଷ୍ଟି ହେଉଛି-ଖଣ୍ଡସାହୀ, ବାଲିଆପଦା ଓ ବଡ଼ଥାକନର ମେଳକ ଜାଗାରେ ରାମ ବ୍ରହ୍ମାଙ୍କ ପ୍ରତିଷ୍ଠିତ ରାମେଶ୍ୱର ମହାଦେବ ଓ ରାମେଶ୍ୱରୀ ଗ୍ରାମଦେବୀଙ୍କ ଚାଳ ଛପର ମନ୍ଦୀର । ତା କଡ଼କୁ ଗୋପବନ୍ଧୁ ମିଶ୍ରଙ୍କ ପ୍ରତିଷ୍ଠିତ ବୃନ୍ଦାବନ ଚନ୍ଦ୍ରଙ୍କ ମନ୍ଦୀର ଯାହା ଏବେ ବିକ୍ରିପରେ ଭାଙ୍ଗି ଗଲାଣି ଓ ସେଠି ଗାଁ ପିଲାଏ ଦଶହରାରେ ଦୁର୍ଗାପୂଜା କରୁଛନ୍ତି । ଏବେବି ଥିବା ସେହି ରାମେଶ୍ୱର ଓ ରାମେଶ୍ୱରୀଙ୍କ ମନ୍ଦୀର ସାମନାରେ ଆମ ଗାଁର କଡ଼ିପକା କୋଠାଘର ଯେଉଁଠି ଗୋବବନ୍ଧୁ ମିଶ୍ରଙ୍କ ପିତା ଜମିଦାର ଜଗନ୍ନାଥ ମିଶ୍ରଙ୍କ ନାମରେ "ବାଲିଆପଦା-ଖଣ୍ଡସାହୀ ଜଗନ୍ନାଥ ଆଦର୍ଶ କେନ୍ଦ୍ର ବିଦ୍ୟାଳୟ" ଲେଖାଥିଲା । ସେତେବେଳେ ପ୍ରଧାନ ଶିକ୍ଷକ ଥାନ୍ତି ଆମ ଗାଁ ବଡ଼ ମାଷ୍ଟର ଜୟକୃଷ୍ଣ ରଥଙ୍କ ପଛକୁ ଗୋରଦ୍ୱାର ଭୋଳାନାଥ ମିଶ୍ର, ବେବର୍ତ୍ତା ସୋମନାଥ ରାୟଗୁରୁ ଓ ହରିହର ନନ୍ଦ ଏବଂ ତାପରେ କୃଷ୍ଣ ଦାଶ । ଭୋଳିମାଷ୍ଟ୍ରେ ଗୋଟିଏ ସ୍କୁଲରେ ୫୮ ବର୍ଷ ଅଖଣ୍ଡ ପ୍ରଧାନ ଶିକ୍ଷକତା କରି ସରକାରଙ୍କର ନୂଆ ନିୟମରେ ଅବସର ନେଲେ । ତାଙ୍କ ଅବସର କାଳୀନ ସମ୍ବର୍ଦ୍ଧନା ସଭାରେ ମୁଁ ଉପସ୍ଥିତ ରହି ଦୁଇପଦ କୃତଜ୍ଞତା ଜଣାଇବାର ସୁଯୋଗ ପାଇଥିଲି । ସେତେବେଳକୁ ମୁଁ ବି.ଡି.ଓ ଥାଏ । ସେ ପାଠ ସାଙ୍ଗକୁ ଗ୍ରାମ ଇତିହାସ, ଗ୍ରାମ ଭୂଗୋଳ, ଜମିଦାର ବଂଶର ଗାରିମା କଥା ପିଲାଙ୍କୁ ଘୋରିବାଟି ପିଆଇ ଦିଅନ୍ତି । ନାଥମାଷ୍ଟ୍ରେ ନିଜେ ଗାର ପକାଇଦେଇ ସୁନ୍ଦର ହସ୍ତାକ୍ଷର ଲେଖା ସାଙ୍ଗକୁ ସାହିତ୍ୟ ପଢ଼ାନ୍ତି । ବିଦ୍ୟାଳୟର ଗଣେଶ ଓ ସରସ୍ୱତୀ ପୂଜା ସାଙ୍ଗକୁ ବଢ଼ି ମଗୁଡ଼ିରେ ଚାନ୍ଦା ମାଗିବାକୁ ପିଲାଙ୍କୁ ସାଥୀ ଦିଅନ୍ତି ଓ ନିଜେ ମର୍ମସ୍ପର୍ଶୀ ଗୀତ ଲେଖି ବୋଲିବାକୁ ଶିଖାଇ ଦିଅନ୍ତି । ପ୍ରତିବର୍ଷ ଭୋଳିମାଷ୍ଟଙ୍କ ଚେଷ୍ଟାରେ ଜଣେ ଦୁଇଜଣ ପିଲା ବୃତ୍ତି ପରୀକ୍ଷାରେ ପାଶ କରନ୍ତି । ବିଦ୍ୟାଳୟ କାନ୍ଥରେ ତାଙ୍କ ନାମ ଭରିଯାଇଥାଏ । ଏ ପିଲାମାନଙ୍କୁ ସେ ଦିନରାତି ଲାଗି ପଢ଼ାଇ ଗୁରୁକୁଳ ଆଶ୍ରମ ପରି ଘରେ ରଖି ଯୋଗ୍ୟ କରାନ୍ତି । କେବଳ ଈଶ୍ୱରଙ୍କ କରୁଣା ନଥିଲେ ଏ ପରି କର୍ତ୍ତବ୍ୟନିଷ୍ଠ ଛାତ୍ରବତ୍ସଳ ଶିକ୍ଷକ ଥିବା ବିଦ୍ୟାଳୟରେ ପଢ଼ିବାର ସୁଯୋଗ ମିଳେନା । ସେତେବେଳେ ପାଖ ଗାଁରେ ସ୍କୁଲ ନଥିବାରୁ ୧୦/୧୨ ଖଣ୍ଡଗାଁର ପିଲାଏ ଏଠାକୁ ପଢ଼ିବାକୁ ଆସୁଥିଲେ । ସବୁ ସେହି କରୁଣାମୟଙ୍କ କରୁଣା । ଠାକୁରେ ତାଙ୍କର ଆଶୀର୍ବାଦ ଏହିପରି କୃତୀ ଶିକ୍ଷକଙ୍କ ଜରୀଆରେ ବର୍ଷା କରନ୍ତି ।

# ୩. ଚିନ୍ତା ଅବଧାନ

ଗେଡ଼ା ଓ ଅଳ୍ପ ମୋଟା ସାବନା ଲୋକଟିଏ । ସ୍କୁଲ ପିଣ୍ଡାରେ ବସେ, ସେଇଠି ଖାଏ, ସେଇଠି ଶୁଏ । ସେଇ ଜାଣ ତାର ଘର । ତାର ମୁଣ୍ଡ, ହାତ ସବୁବେଳେ ଥରୁଥାଏ । ବେଳେବେଳେ ଦେହ ଓ ଗୋଡ଼ ମଧ ଥରେ । ଘର ନାହିଁ, ବାପ, ମା, ଭାଇ, ଭଉଣୀ, ସ୍ତ୍ରୀ ବା ପିଲା କେହି ନାହାନ୍ତି । ହେଲେ ପାଟି ଓ ପେଟ ଅଛି । ସେଇ ଥର ଥର ଅବସ୍ଥାରେ ବସି ବସି, ଘୁସୁରି ଘୁସୁରି ନାଳବଂଧ ଯାଏ ଯାଇ ଝାଡ଼ା ଫେରେ । ପାଣି ପାଖକୁ ଯାଇ ସେହି ଥର ଥର ହାତରେ ପାଣି ଆଣି ଶୌଚ ହୁଏ, ଗାଧାଏ ଇତ୍ୟାଦି । ତେଣୁ ପରିଷ୍କାର ରହିବା ଅସମ୍ଭବ । ବରଂ ଦୁର୍ଗନ୍ଧ ତା ଦେହରୁ ବାହାରେ ।

ଠାକୁରେ ଯାହାକୁ ପେଟ ଦେଇଛନ୍ତି ତା ପାଇଁ ଦାନା ମଧ ଦେଇଛନ୍ତି । ଗାଁ ଜମିଦାର ଘର ଦିପହର ବେଳା ତା ପାଇଁ ବଖତେ ଖାଇବାକୁ ଦିଅନ୍ତି । ହେଲେ, ସେତ ଯାଇ ଖାଇ ପାରିବନି । ଜାତିରେ ଅବଧାନ (ନାୟକ) । ନା ତାର ଚିନ୍ତା ଅବଧାନ । ପାଖରେ ଦେଲେ ବି ଖାଇବା କଷ୍ଟ । ହାତ ଓ ମୁହଁ ଥରିବାରୁ ଭାତ ଓ ତରକାରୀ ଏଣେ ତେଣେ ଛିଟିକି ଅଧେ ତଳେ ପଡ଼େ ଓ କିଛି ଅଂଶ ପେଟକୁ ଯାଏ । ପାଣି ମଧ ସେମିତି କଷ୍ଟରେ ପିଏ । ତାକୁ କିଏ ଆଣି ଖାଇବାକୁ ଦେବ, ଥାଳି ଧୋଇବ ଓ ପାଣି ଦେବ ? ଭାଳେଣି ପଡ଼ିଲା । ଅନ୍ୟଜାତି ପିଲାତ ଆଣିଦେଲେ ତା ଜାତି ଯିବ । ଆଉ ବ୍ରାହ୍ମଣ ପିଲାତ ସମସ୍ତେ ପ୍ରାୟ ବଡ଼ ଲୋକିଆ । ଏ କାମଟି କିଏ କରିବ ? ଠାକୁରଙ୍କ ପରମକରୁଣାରୁ ମା ସରସ୍ୱତୀ ମାଷ୍ଟ୍ରଙ୍କ ଜଣ୍ଠରେ ବସିଲେ । ମତେ ହୁକୁମ ହେଲା ଏ କାମଟି କରିବାକୁ । ଖାଇବାକୁ ଆଣି ଦେବି ଏବଂ ଥାଳୀ ଧୋଇବି ଏବଂ ପାଣୀ ପିଇବାକୁ ଦେବି । ଯାଗାଟି ଓଳାଇ ଦେବି । କେଜାଣି କାହିଁକି ଏକଥାରେ ଏକାଥରେ ରାଜି ହୋଇଗଲି ଏବଂ ନିୟମିତ ଏ କାର୍ଯ୍ୟଟି ଖୁବ୍ ଆନନ୍ଦ ମନରେ କରିବାକୁ ଲାଗିଲି । ବହୁତ ଲୋକ କହନ୍ତି ଖୁବ୍ ଭଲକାମ । ଖୁବ୍ ଧର୍ମ କାମ । କିନ୍ତୁ ନିଜେ କେହି ଏ ଧର୍ମ କାମଟି କରନ୍ତିନି । ମୁଁ କିନ୍ତୁ ତାଙ୍କ କଥାରେ ବେଶ୍ ଉତ୍ସାହିତ ହୋଇ ଶ୍ରଦ୍ଧାର ସହ ଏ କାମଟି କରି ଖୁବ୍ ଆନନ୍ଦ ପାଉଥିଲି । ବୋଧହୁଏ ଭଗବାନ ପାଠପଢ଼ା ସହ ସେବା କାର୍ଯ୍ୟର ଶିକ୍ଷା ଦେବା ଉଦ୍ଦେଶ୍ୟରେ ଏକାମଟି ଦେଲେ । ଏହାର ପ୍ରଭାବ ଏବେ ପର୍ଯ୍ୟନ୍ତ ସମଗ୍ର ଜୀବନରେ ରହି ଆସିଛି । ସେ ଅନୁଭୂତି ମନେ ପଡ଼ିଲେ ଖୁବ୍ ଆତ୍ମ ସନ୍ତୋଷ ଆସେ ଓ ଏବେ ମଧ ଆତ୍ମବିଭୋର ହୋଇଯାଏ । ନିଜରତ ସେବା କରିବାକୁ ଧନ ନଥିଲା । ଘରୁ ଭାତ ଆଣି ଖାଇବାକୁ ଦେବାର ଶକ୍ତି ନଥିଲା । ହେଲେ ଠାକୁରେ ଯେଉଁ ଦେହଟିକୁ ଦେଇଥିଲେ ଓ ଏତେ ଏତେ ରୋଗ ବେମାରୀରୁ ବଞ୍ଚାଇ ରଖିଥିଲେ ତା ଦ୍ୱାରା ମାନବ ସେବା ମଧରେ ମାଧବ ସେବା ସୁଯୋଗ ଖଞ୍ଜି ଦେଇ ଜୀବନକୁ ଧନ୍ୟ କରିଦେଇଥିଲେ । ଚିନ୍ତା ଅବଧାନ ଗଣନା କରି କିମ୍ବା ଠାସୁକ ମାରି ପିଲାଙ୍କ ପାଶଫେଲ୍ କଥା କହିପାରେ । ମନେ ମନେ ଗଣି କେଉଁଦିନ

ଏକାଦଶୀ, କେଉଁଦିନ ପୂର୍ଣ୍ଣମୀ ସେସବୁ ମଧ କହିପାରେ । କିଏ ଅଧଲା କି ପାହୁଲାଏ ଦେଲେ ସେ ଥର ଥର ହାତରେ ଧରୁ ଧରୁ ଛିଟିକି ପଡ଼େ ଓ ଆଉ କିଏ ତାକୁ ନେଇ ପଳାଏ । ଚିନ୍ତାର ସେଥିପାଇଁ ଚିନ୍ତା ନଥାଏ । ତାକୁ ତ ଠାକୁରେ ଦେହ ଓ ଜୀବନ ଦେଇଛନ୍ତି । କୋଠାଘର ବିଦ୍ୟାଳୟର ଓସାରିଆ ପିଣ୍ଡାଟ ତାର ଘର ହୋଇଛି । ଜମିଦାର ଘରୁ ତ ଥରେ ହେଲେ ବି ଖାଇବାକୁ ମିଳୁଛି ଓ ଜଣେ ତ ଆଣି ଦେଇ ଦଉଚି । ଏହାଠୁଁ ବଳି ଆଉ ତାର କଣ ଦରକାର ? କେଉଁ ପୂର୍ବ ଜନ୍ମର ପୁଣ୍ୟଫଳ ? ଅଧିକ କିଛି ପାଇବାର ଆଶା କେବେ ତା ମୁହଁରେ ଶୁଣା ଯାଇନି । ଦୈବାତ୍ ଛୁଟି ବା କେଉଁଦିନ ଖାଇବାକୁ ନମିଳିଲେ ମଧ ଚିନ୍ତାର ଚିନ୍ତା ନାହିଁ । ଏକାଦଶୀର ଉପବାସତ ଲୋକେ କରୁଛନ୍ତି । ଗୀତା ଧର୍ମର ପ୍ରକୃତ ଉପାସକ ଚିନ୍ତା ଅବଧାନର କାହାରି ପ୍ରତି ଈର୍ଷା ନାହିଁ, ଦ୍ୱେଷ ନାହିଁ । ଦୁଃଖରେ ଅନୁଦ୍‌ବିଗ୍ନ, ସୁଖରେ ବିତସ୍ପୃହ ଓ ଅନିକେତ ହେଲେ ମଧ ସେ ସ୍ଥିରମତି । ଈଶ୍ୱରଙ୍କୁ ଥର ଥର ହାତ ଓ ଦେହରେ ସେ କେତେଥର କୃତଜ୍ଞତାର ପ୍ରଣାମ ଜଣାଏ । ଧନ୍ୟ ହେ ଈଶ୍ୱର ! ତୁମେ ଏତେ ସୁନ୍ଦର ସୃଷ୍ଟି ଗଢ଼ିଛ । ପୁଣି ଚିନ୍ତାକୁ କାହିଁକି ? କାହିଁକି ଏପରି ସୃଷ୍ଟି ? କାହିଁକି ତାକୁ ଗଢ଼ିଛ ? କଣ ପାଇଁ ? ତୁମକୁ ଜଣା ତୁମର ଇଚ୍ଛା - ହେ ଇଚ୍ଛାମୟ ! ଚିନ୍ତା ଅବଧାନର ସୃଷ୍ଟିକର୍ତ୍ତା ଦୈବ ହିଁ ତାର ରକ୍ଷକ । ବୋଧହୁଏ ସେବା ଗ୍ରହଣ କରି ଅନେକଙ୍କୁ ଧନ୍ୟ କରିବାକୁ ଓ ଆଶିଷ ଦାନ କରିବାକୁ ଚିନ୍ତା ଅବଧାନଙ୍କ ରୂପରେ ଠାକୁରେ ଅବତରଣ କରିଥିଲେ । ପରବର୍ତ୍ତୀ କାଳରେ ଚିନ୍ତା ଅବଧାନ ନାମରେ ଗୋଟିଏ କବିତା ଗୋଦାବରୀଶ ସାହିତ୍ୟ ସଂସଦରେ ପାଠ କରିଥିଲି ଓ 'ବଡ଼ମୋର ଗାଁଟି' କବିତା ପୁସ୍ତକରେ ତାହା ସନ୍ନିବେଶିତ ହୋଇଥିଲା । ଏବେ ମଧ୍ୟ ମୋର ବାର୍ଦ୍ଧକ୍ୟରେ ସେତେ ବେଳର କେତେଲୋକ କହନ୍ତି ଯେ ଚିନ୍ତା ଅବଧାନର ଆଶିର୍ବାଦ ଯୋଗୁଁ ମୁଁ ମଣିଷ ହୋଇଚୁ ।

## ୪. ବେଢ଼ା ଉଖୁଡ଼ା

ଆମ ଗାଁରେ ରାମେଶ୍ୱର ମହାଦେବଙ୍କ ନିକଟରେ ପ୍ରତିମାସ କୃଷ୍ଣ ପକ୍ଷ ଚତୁର୍ଦ୍ଦଶୀରେ ବେଢ଼ା ପାଳି ହୁଏ । ମୌଖିକ ତାଲିକା ଅନୁଯାୟୀ ଗୋଟିଏ ଘର ପରେ ଅନ୍ୟ ଘରର ପାଳି ପଡ଼େ । ଯାହାର ପାଳି ପଡ଼େ ସେ ବେଢାରେ ବେତାଏ ଉଖୁଡ଼ା ଓ କିଛି ଛେନା-ଗୁଡ଼-ନଡ଼ିଆ ଭୋଗ ଦିଏ । ଘଣ୍ଟ ଘଣ୍ଟା ବାଜି ଠାକୁର ଓ ଦୀପ ବେଢ଼ା ବୁଲନ୍ତି । ଶେଷରେ ଦୀପ ଉଠେ ଓ ପ୍ରସାଦ ବଣ୍ଟନ ହୁଏ । ପ୍ରତି ପରିବାରକୁ ଗୋଟିଏ ନିର୍ଦ୍ଦିଷ୍ଟ ପିତଳ ସରାରେ ସରାଏ ଉଖୁଡ଼ା ଭୋଗ ମିଳେ । ଆଗ ଥରକୁ ଯାହାର ପାଳି ପଡ଼ିବ ତାକୁ ଅଧିକ ଗୋଟିଏ ସରା ହାକରା ବାବଦକୁ ମିଳେ । ସେତେବେଳେ ବର୍ଷାଦିନ । ଆମର ଆଗଥରକୁ ବେଢ଼ା ପାଳି ପଡ଼ିବ ବୋଲି ଅଧିକ ସରାଏ ହାକରା ସହ ୨ ସରା ଉଖୁଡ଼ା ଆମକୁ ମିଳିଥାଏ ।

ବେଢ଼ା ବିଲମ୍ବରେ ସରେ । ବାପା ଦୋକାନ ସାରି ଉଖୁଡ଼ା ନେଇ ଆସିବା ବେଳକୁ ଆମେ ପିଲାଏ ଶୋଇ ପଡ଼ିଥାଉ । ସେଦିନ ବେଢ଼ାବାସୀ ସକାଳୁ ପିଲାଯାକ ଉଠି ଦାନ୍ତ ଘସି ଧାଡ଼ି ଧରି ଦୁଆର ପିଣ୍ଡାରେ ବସିଗଲୁ । ବୋଉ ପଚାରିଲା ଆଛା ପିଲାଏ କାଲି ବେଢ଼ା ହୋଇଥିଲା ଜାଣିଛ । ସମସ୍ତେ ହଁ କଲେ । ବୋଉ କହିଲା ଆମକୁ ଏଥର ୨ ସରା ଉଖୁଡ଼ା ମିଳିଛି; କାରଣ ଆସନ୍ତା ପାଳି ବେଢ଼ା ଆମର । ତୁମେ ସବୁ ଉଖୁଡ଼ା ଖାଇବ ? ସମସ୍ତେ ହଁ କଲେ । ବୋଉ କହିଲା କାଲି ରାତିରେ ଆସିଥିବା ଉଖୁଡ଼ା କେଉଁଠି ଅଛି ଯେ କହିଦେବ ତାକୁ ଅଧିକ ଉଖୁଡ଼ା ଖାଇବାକୁ ଦିଆଯିବ । ପିଲାଏ ତୁମେ ସବୁ ଯେଉଁଠି ବସିଛ ସେଇଠି ବସି ଉଖୁଡ଼ା କେଉଁଠି ଅଛି କହିବାକୁ ହେବ । କିଏ କିହଲା ଠାକୁର ଘର ଶିକାରେ ତ କିଏ କହିଲା ଶୋଇବା ଘର ଖଟ ତଳେ । କାହାରି କଥା ଠିକ୍ ହେଲାନି । ମୁଁ ଦେଖିଲି ଦୁଆର ଚୁଲି ଉପରେ ଗୋଟେ ପିତଳ କୁଣ୍ଡ ଘୋଡ଼ା ହୋଇଛି । ବର୍ଷାଦିନ ଉଖୁଡ଼ା ସିପିଯିବ । ଏ ଭୟରେ ଲିଭିବା ଚୁଲି ଉପରେ ଉଷୁମରେ ଉଖୁଡ଼ା ରଖାଯାଇ ବିରାଡ଼ି ଭୟରେ ଓ ବର୍ଷା ହେଲେ ତା ଦାଉରୁ ରକ୍ଷା କରିବାକୁ ପିତଳ ନନ୍ଦିଆ ଘୋଡ଼ା ଯାଇଛି । ଭାବି ଭାବି ସେଇଠି ଉଖୁଡ଼ା ଅଛି ବୋଲି କହିବାରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ବୋଉ ଖୁସିହୋଇ ମୋତେ ସତକୁ ସତ ପୋଷେ ଅଧିକ ଉଖୁଡ଼ା ସେଦିନ ଜଳଖିଆରେ ଖାଇବାକୁ ଦେଲା ଓ ଏକଥାଟି ଘରର ପ୍ରାୟ ସମସ୍ତଙ୍କୁ କହି ବୁଦ୍ଧିର ପ୍ରଶଂସା କରିବାରେ "ଜେଜେ" କହିଲେ; "ତାକୁ ଠାକୁରେ ପରମାୟୁ ଦେଇ ବଡ଼ କରିବେ ।"

ବାସ୍ତବରେ ଉପରେ ୨ ଜଣ ବଡ଼ ଭାଇ ଭଉଣୀ ଥିବାବେଳେ ଏତକ ବୁଦ୍ଧି ଖଟାଇ ଉତ୍ତର ଦେବା କେବଳ ସେହି ପରମେଶ୍ୱରଙ୍କ ଇଛା । "ଦଦାମି ବୁଦ୍ଧି ଯୋଗଂ ତଂ ।" ଏହା ଜଗାଆରେ ସିଦ୍ଧ ବୃଦ୍ଧ ଜେଜେଙ୍କର ଯେଉଁ କଲ୍ୟାଣ ପ୍ରଛନ୍ନରେ ମିଳିଲା ତାହା ଦିନକ ଭିତରେ କାର୍ଯ୍ୟରେ ପ୍ରତିପାଦିତ ହେଲା । ସଂସାରରେ ଠାକୁରେ ସୁଖଦୁଃଖ ଏପରି ଖଞ୍ଜିଛନ୍ତି ଠିକ୍ ଗୋଟିକ ପରେ ଗୋଟିଏ ଆସିଥାଏ । "ଚକ୍ରବତ୍ ପରିବର୍ତ୍ତନ୍ତି, ସୁଖାନି ଚ ଦୁଃଖାନିଚ" । ସୁଖ ଦୁଃଖର ଚକ ଘୂରିବାରେ ମଣିଷ ସୁଖ ପାଇଁ ଗର୍ବିତ ଓ ସ୍ପୃହା ପ୍ରକାଶ ଓ ଦୁଃଖପାଇଁ ଉଦ୍‌ବିଗ୍ନ ଓ ଦୁଃଖ ପ୍ରକାଶ ଅନାବଶ୍ୟକ । ଏ ଉଭୟେ ଏହିପରି ସମୟର ସ୍ରୋତରେ ଆସୁଥିଲେ ଓ ଆସୁଥିବେ । କେବଳ ଈଶ୍ୱରଙ୍କ ଆଶିର୍ବାଦ ହେଲେ ସବୁପାର ହୋଇଯିବ । "ଦୁଃଖେଷ୍ଟୁ ନୁଦ୍‌ବିଗ୍ନମନା ସୁଖେଷ୍ଟୁ ବିଗତ ସ୍ପୃହ ।"

## ୫. ଦେବଦୂତ-ଆବାମିଆଁ

ସକାଳ ଜଳଖିଆର ବେଢ଼ା ଉଖୁଡ଼ା ଖାଇସାରି ଟିକିଏ ଚଗଲାମି କରିବାକୁ ଯାଇ ଗୋଟେ ପଡ଼ିଆବିଲରେ ଥିବା ପିଜୁଳି ଗଛ ପାଖରେ ପହଞ୍ଚି ଗୋଟେ ପିଜୁଳି ଖାଇ ଫେରିବା ପରେ ନାଳବନ୍ଧରେ ଖୁବ୍ ଗୋଟାଏ ଖୋଲାଝାଡ଼ା ହୋଇଗଲା । ତା ପରେ ଘରକୁ ଫେରି ବାରମ୍ବାର ତରଳ ପାଣିପରି ଝାଡ଼ା ସାଙ୍ଗକୁ ବାନ୍ତି ଆରମ୍ଭ ହୋଇଗଲା । ଏତେବେଳକୁ ଅବସ୍ଥା

ବେହାଲ । ଆମ ସାହି ଗୋହରୀ ବାଟେ ଆବାମିଆଁ (ଆଲୋନବିଖାନ) ନାଳରେ ଗାଧୋଇ ସାରି ଫେରୁଥିଲେ । ସେ ଯେ ଅବସ୍ଥା ଦେଖି ପଚାରି ବୁଝି କହିଲେ ନୂଆବୋଉ ଇଏତ ହଇଜା ! ଏହା କହି ସେ ଔଷଧ ଆଣିବାକୁ ତାଙ୍କ ଘରକୁ ଦୌଡ଼ିଲେ । ଏତିକି ପରେ ଆରମ୍ଭ ହେଲା ବାକୁଲି ପଶିବା ଓ ବେହୋସ ହେବା । ଆଉ କିଛି ଜାଣେନି । କେବଳ ମଝିରେ ମଝିରେ ଦେହର ବିଭିନ୍ନ ସ୍ଥାନରେ ବିଶେଷତଃ ହାତ ଓ ଗୋଡ଼ର ଯେ କୌଣସି ଜାଗାର ହାଡ଼ ଫାଟି ଯିବା ଭଳି ଯନ୍ତ୍ରଣା । ସେ ଜାଗାକୁ ମାଡ଼ିବସିଲେ ଅନ୍ୟଠାରେ ସେହିପରି ଯନ୍ତ୍ରଣା ଓ ତା ପରେ ଅଜ୍ଞାନାବସ୍ଥା । ଏ ମଧ୍ୟରେ ଆବାମିଆଁ ଦେବ ଦୂତପରି ଆସି ଇଞ୍ଜେକ୍‌ସନଟି ଦେଇଯାଇଥାନ୍ତି । କେହି ଡାକିନି କି ପଇସା ଦେଇନି । ନିଜେ ଦେଖି ନିଜେ ଯାଇ ଔଷଧ ଆଣି ଦେଇ ଚାଲିଯିବା ଟା ଭଗବାନଙ୍କ ଦେବଦୂତର କାମ ନୁହେଁତ ଆଉ କ'ଣ ହୋଇପାରେ ? ତେଣୁ ଏ ଜୀବନ ସଂପୂର୍ଣ୍ଣ ରୂପେ ସେହି ଈଶ୍ୱରଙ୍କ ଦତ୍ତ ଓ ଈଶ୍ୱର ରକ୍ଷିତ । ସେ ଦିନ ମା ଚମ୍ପତି ପାଟଣା ପିଉସୀ ଘରେ ଥିବାରୁ ତାଙ୍କୁ ଡ଼ାକିଆଣି ବାଟରେ ଏ ଖବର କୁହାଗଲା । ସେ ସେହି ରାସ୍ତାରେ କାନିପାତି ମୁଣ୍ଡ ବାଡ଼େଇ ମାନସିକ କଲେ; " ମା ହରଚଣ୍ଡି ମୋ ନାତୀ ବଞ୍ଚିଲେ ଜାଉଁଳୀ କାଳିଆ ବୋଦା ପକାଇବି । ଗରିବର ଧନକୁ ବଞ୍ଚାଇ ଦେ ।" ଜେଜେ ପ୍ରତିଦିନ ପରି ସକାଳୁ କୋଶେବାଟ ଯାଇ ନିତ୍ୟକର୍ମସାରି ଫୁଲ ତୁଳସୀ ଆଣି ଠାକୁର ବସାଇ, ଫୁଲ, ତୁଳସୀ ନୈବେଦ୍ୟ ଦେଇ, ଜପଧ୍ୟାନ ପରେ ଚଉଁରାରେ ପାଣିଦେଇ ସାରି ସେହି ଢ଼ାଳଟି ଧରି ଗାଁ ମଧ୍ୟରେ ଥିବା ବୃନ୍ଦାବନ ଚନ୍ଦ୍ରଙ୍କ ଦର୍ଶନ ଓ ରାମେଶ୍ୱର ମହାଦେବଙ୍କ ଉପରେ ପାଣି ଦେବାକୁ ଯାଇଥାନ୍ତି । ତାଙ୍କୁ ଠାକୁର ଘରୁ ଡ଼ାକିବାରେ ସେ କହିଲେ; "ଆରେ ଠାକୁରଙ୍କୁ ଛାଡ଼ି ଘରେ ଯାଇ କ'ଣ କରିବି ? ରାମେଶ୍ୱର ମୋ ନାତୀ "ପରା"କୁ ଭଲ କଲେ ଯାଇ ଘରକୁ ଯିବି । ଏଇଠି ବସି ପାଣି ଢ଼ାଳୁଥିବି । ସେ ହିଁ ରଖିଲେ ରଖିବେ । ରଖିବା ବାଲାଙ୍କୁ ଛାଡ଼ି ଘରକୁ ଗଲେ ରଖିବ କିଏ ?'' ଘରର ଆଉମାନେ କାନ୍ଦିବା ଓ ସେବା କାମରେ ଲାଗିଥାନ୍ତି । ଦିନ ୩ଟାକୁ ଅଳ୍ପ ଟିକିଏ ପରିସ୍ରା ହେବାରୁ ସମସ୍ତେ ଖୁସିହେଲେ ଓ ଜୀବନ ରକ୍ଷା ହୋଇଗଲା ବୋଲି ଖାଲି ତୁହାକୁ ତୁହା ଠାକୁରଙ୍କୁ ଜୁହାର କରି କୃତଜ୍ଞତା ଜଣାଇଲେ । ଜେଜେ ଓ ମା ଘରକୁ ଆସି ତାଙ୍କ ନାତୀକୁ ଦେଖିଲେ ଓ ମୂର୍ଚ୍ଛାର ପ୍ରାୟ ଦେହଟିକୁ ଠାକୁରଙ୍କୁ ସଁପି ଦେଲେ ।

ବିଚାର କରନ୍ତୁ । କିଏ ରଖିଲା । ଏକମାତ୍ର ଦୈବୀଶକ୍ତି ବ୍ୟତିରେକେ ଏଠି କିଏ ସେ ରଖିଲା ? ସେ ଯାହାକୁ ରଖନ୍ତି କେହି ମାରି ପାରେନି । ସେତେବେଳେ ହଇଜାର ସଫଳ ଚିକିତ୍ସା ପାଇଁ ଔଷଧ ବାହାରି ନଥାଏ । ଆଜିକାଲି ପରି ସାଲାଇନ୍ ବ୍ୟବସ୍ଥା ମଧ୍ୟ ନଥିଲା । ଏକମାତ୍ର ଭରସା ହରି । ସମସ୍ତ ପରିବାର ତାଙ୍କରି ଉପରେ ନିର୍ଭର କରି ତାଙ୍କର ଭରସା ପାଇ ପାରିଲେ ଓ ଆଶ୍ୱସ୍ତ ହେଲେ । ଏହି ଆବାମିଆଁ ଆମ ଗାଁର । ପଠାଣ ସାହିର ସବୁଲୋକେ ସେତେବେଳେ ଆମରି ଗୋହିରୀ ରାସ୍ତା ଦେଇ ନାଳକୁ ଗାଧୋଇ ଆସନ୍ତି । ଆବାମିଆଁ ବା

"ଆଲୋନବିଖାନ୍" କଛା ମାରି ହିନ୍ଦୁଙ୍କ ପରି ଲୁଗା ପିନ୍ଧନ୍ତି । ତାଙ୍କର ୩ଟି ସ୍ତ୍ରୀ ମଧ୍ୟରୁ ୨ଟି ହିନ୍ଦୁ ଥିଲେ । ଡ଼ାକ୍ତରୀ ପଢ଼ି ନାହାନ୍ତି କି ଡାକ୍ତରଙ୍କ ପାଖରେ ଚାକିରୀ ମଧ୍ୟ କରି ନାହାନ୍ତି । ହେଲେ ସେ ଡ଼ାକ୍ତରଠାରୁ ବଳି ବଡ ଡ଼ାକ୍ତର । କେବଳ ଅଭ୍ୟାସ ବଳରେ ବିଭିନ୍ନ ରୋଗ ଚିହ୍ନି ଔଷଧ ଦେଇ ସେ ତିନି ଜାଗାରେ ଘର କରିଥିଲେ । ଭଲ ପଇସା ରୋଜଗାର କରିବା ସହ ବହୁ ଲୋକଙ୍କୁ ସାହାଯ୍ୟ ମଧ କରିଛନ୍ତି । ସେ ଗୋଟିଏ ଅନୁଷ୍ଠାନ ଗଢ଼ି ଏହି ପରି ଔଷଧ ବିତରଣକାରୀଙ୍କୁ ପ୍ରମାଣ ପତ୍ର ମଧ ଦେଉଥିଲେ । ସେ ନିଃସନ୍ତାନ ଥିଲେ । ତାଙ୍କର ଜାତିଆଣ ଭାବ ଆଦୌ ନଥିଲା । ସେ ମୋ ବୋଉକୁ ନୂଆବୋଉ ମାନି ସମ୍ମାନ ଦେଉଥିଲେ । ତାଙ୍କ ସାନ ଭାଇ ଦୁନା ବା ଅୟୁବନବି ମୋର ସହପାଠୀ ଥିଲେ । ହେଲେ ଜାତିଆଣ ଗଣ୍ଡଗୋଳ ବେଳେ ଏଣ୍ଡର ଠାରେ ଥିବା ତାଙ୍କ ଘର ଓ ଦୋକାନ ପୋଡ଼ି ଯିବାରେ ସେ ବ୍ୟସ୍ତ ହୋଇ ନଥିଲେ । ପୁଣି ଘର କରି ରୋଗୀ ସେବା ଚଳାଇ ରଖିଥିଲେ । କେନ୍ଦ୍ରାପଡ଼ା ବିଡ଼ିଓ ଥିବାବେଳେ ତାଙ୍କ ପାଖକୁ ଯାଇ କୃତଜ୍ଞତା ଜଣାଇଥିଲି, ପୂର୍ବସ୍ମୃତି ଜଣାଇଥିଲି ଓ ସମ୍ମାନ ଜଣାଇଥିଲି । ଈଶ୍ୱର ଅରକ୍ଷର ରକ୍ଷକ । ସେ ଏହିପରି ଦେବଦୂତ ହୋଇଆସି ଦୁଃଖୀ, ରୋଗୀ, ଦରିଦ୍ର ଓ ମୁମୂର୍ଷୁଙ୍କ ସେବା କରି ତାଙ୍କୁ ବଞ୍ଚାନ୍ତି;  ନହେଲେ ଏ ସଂସାରରେ ଏ  ଶ୍ରେଣୀର ଲୋକେ ମୋଟେ ନଥାନ୍ତେ ।

## ୬. ବାଲ୍ୟବନ୍ଧୁ-ଦୁନା

ଆଲୋନବି ବା ଆବା ମିଆଁଙ୍କ ସାନଭାଇ ମୋର ବାଲ୍ୟବନ୍ଧୁ । ସେ ପ୍ରତିଦିନ ତାଙ୍କଘରୁ ଆସି ଆମଘର ପାଖରେ ମୋତେ ଡାକେ ଓ ସାଙ୍ଗହୋଇ ଆମେ ବିଦ୍ୟାଳୟକୁ ଯାଉ । ପୁଣି ଫେଂରିଲାବେଳେ ଆମ ଘରଯାଏ ସାଙ୍ଗହୋଇ ଆସୁ । ଫେଂରିଲାବେଳେ ବୋଉ ଦୁନାକୁ ଆମଘରେ ବେଳେ ବେଳେ ଖାଇବାକୁଡାକେ ।  ବିଦ୍ୟାଳୟରୁ ଫେଂରିବା ବେଳେ ଭୋକ ବେଳ । ତେଣୁ ଦୁନା ମଧ୍ୟ ବୋଉର ସ୍ନେହଂ ଏଡି ନପାରି ଆମ ଘରେ ଖାଇନିଏ । ଆମ ଅବସ୍ଥା କହିଲେ ନ ସରେ । ଗିନାରେ ଗଣ୍ଡେ ପଖାଳ ସାଙ୍ଗକୁ ଆମ୍ବୁଲ ଓ ଲୁଣ ଲଙ୍କା । ଏଠିତ ଖାଦ୍ୟର ବିଚାର ନଥାଏ । ଥାଏ ସ୍ନେହ ଶ୍ରଦ୍ଧାର ବିଚାର । ଦୁନା ଖାଇଦେଇ ଚାଲି ଯାଏ । ମୋ ବୋଉ ବିଧବା ବ୍ରାହ୍ମଣୀ ।  ରକ୍ଷଣଶୀଳ ବ୍ରାହ୍ମଣ ଗାଁରେ ଘର । ଏ ସବୁକିଛି ନମାନି ମୋ ବୋଉ ପିଲା ଜ୍ଞାନରେ ଜାତି ଗୋତ୍ର କଥା ମନେ ନ ପକାଇ ଗିନା ଖଣ୍ଡକ ଫିଙ୍ଗିଦେଇ ଦିଏ । ଦିନକର ଘଟଣା ନୂଆଙ୍ଗରୁ  ମୂଷା ମାଉସୀ ଆସିଥିଲେ । ସେ ଆମକୁ ଖାଇବାକୁ ଦେଲେ । ଖାଇବା ପରେ ଗିନା ଧୋଇ ଦେବାକୁ ଦୁନାକୁ କହିଲେ ଓ ପାଣି ଦେଲେ ।  ଦୁନା ସିନା ଗିନା ଧୋଇ ଦେଲା; ଆଉ ଦିନେବି ଆମଘରେ ଖାଇଲାନି । ମୁଁ ଦିନେ ଏକଥା ତାଙ୍କଘରେ ତାଙ୍କ ମା'ଙ୍କୁ କହିଲି । ସେ ଭାରି ସ୍ନେହୀ ଲୋକଥିଲେ । ମତେ ଦେଖିଲେ "ଅନାମ କି ବେଟା" କହି

ସ୍ନେହ କରନ୍ତି । ତାଙ୍କ ବାଡିରୁ କେତେବେଳେ ମଞ୍ଜାତ କେତେବେଳେ ଅମୃତ ଭଣ୍ଡା ବା ସଜନା ଶାଗ ଦିଅନ୍ତି । ଦୂନା ଆଉ ଆମ ଘରକୁ ଯାଉନି କି କେବେ ଖାଉନି ବୋଲି ମୁଁ କହିବାରେ ଆମ ମାଉସୀ ତାକୁ ଖାଇସାରି ଗିନା ଧୋଇବାକୁ କହିଥିବାର ସେ ତାଙ୍କ ମା'ଙ୍କୁ କହିଛି ବୋଲି ସେ କହିଲେ । ମୁଁ ବି ପିଲା ଲୋକ । ଜାତି କଥା ମୋ ମୁଣ୍ଡକୁ ଏତେ ଛୁକି ନଥିଲା । ମୁଁ ମାଉସୀଙ୍କ ଦୋଷ ଦେଲି । ଏମିତିରେ ବୋଉର ଚଳଭଉଣୀ । ମୂଷା ମାଉସୀ ତାଙ୍କ ଭଉଣୀ ମାନଙ୍କ ମଧ୍ୟରେ ଖୁବ୍ ସ୍ନେହୀ, ବୁଦ୍ଧି ମତୀ ଓ ଆଗୁଆ ବୋଲି ତାଙ୍କ ଗଲି ଚଳଣୀରୁ ସମସ୍ତେ କହନ୍ତି ଓ ତାଙ୍କୁ ପ୍ରଂଶସା କରନ୍ତି । ସେ ଆମକୁ ଖୁବ୍ ଶ୍ରଦ୍ଧା କରନ୍ତି । କିନ୍ତୁ ମୋର ବାଲ୍ୟ ବନ୍ଧୁ ଦୂନାକୁ ଏପରି କହିବାରୁ ସେ ଆମଘରକୁ ଆସୁ ନଥିବା କଥା ବୋଉତାଙ୍କୁ କହି ବୁଝାଇ ଦେଲେ । ଅବୋଧ ପିଲାଙ୍କର କି ଜାତି ? ବୋଉର ଏକଥା ମୋର ଏବେ ବି ସ୍ମରଣ ଅଛି । ପ୍ରକୃତରେ ଜାତି, ଭେଦ, ଧର୍ମ ଏସବୁ ବି ମଣିଷଙ୍କ ପାକଳ ମୁଣ୍ଡରେ ପାଚିଲା ଫଂଳ ଯାହାକି ଗଛରୁ ଝଡି ଯିବାର ଆଶଙ୍କା ବେଶୀ । ଆଜି ଆମେ ସମସ୍ତେ ତା'ର ଫଂଳ ସାରା ଭାରତ ବର୍ଷରେ ଭୋଗୁଛେ । ଈଶ୍ୱର ଆମ ସମସ୍ତଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ । ଜାତିଆଣ ଭାବକୁ ବିଦ୍ୟାଳୟରେ ବା ଘରେ ପିଲାଙ୍କ ମୁଣ୍ଡରେ ଠାବ ଦିଆନଯାଉ । ଦୂନା (ଅଯୁବନବି) ସହ ବନ୍ଧୁତା ଏବେ ମଧ୍ୟ ରହିଛି । ତା ପୁଅ ଗିନି ଏବେ ମଧ୍ୟ ତା ବାପାଙ୍କବାଲ୍ୟ ବନ୍ଧୁ ହିସାବରେ ଆମ ଘରକୁ ମୋ ପାଖକୁ ଆସେ । ମୋର ଦୂନା କଥା ମନେପଡେ । ଈଶ୍ୱର ବୋଉର ଶିକ୍ଷାରୁ ଅନ୍ତତଃ ମୃତ୍ୟୁ ଯାଏ ବି ସେହି ସଦ୍‌ବୁଦ୍ଧି ମୋହୃଦୟରେ ଜୀବିତ ରଖନ୍ତୁ । ଆବା ମିଆଁଙ୍କ ପ୍ରତି କୃତଜ୍ଞତାରୁ ଆମର ଏବନ୍ଧୁତା ନୁହେଁ, ଏହା ସଂପୂର୍ଣ୍ଣ ବାଲ୍ୟ ବନ୍ଧୁତା ଓ ଅନାବିଳତା ପରିପୂର୍ଣ୍ଣ । ବୋଉର ଏଶିକ୍ଷା ଆଜିଯାଏ ଆମ ପରିବାର ଉପରେ ରହିଛି । ଯେଉଁ ଜାତିର ହେଲେ ମଧ୍ୟ ଅତିଥି ଆମର ଦେବତା । ଆମ ଘରେ ଆତିଥ୍ୟଗ୍ରହଣ କରିଥିବା କୌଣସି ଜାତିର ହେଲେ ମଧ୍ୟ ଆମେ ତାଙ୍କୁ ଦେବତା ଜ୍ଞାନ କରିବା ବାସ୍ତବ ଧର୍ମ । ଠାକୁର ରାମକୃଷ୍ଣ ମଧ୍ୟ ଏହି ଶିକ୍ଷା ଦିଅନ୍ତି ଓ ଏହା ଭାଗବତର ଧର୍ମ ମଧ୍ୟ ।

## ୭. ଏକସ୍ୟ ଦୁଃଖସ୍ୟ ନଯାବଦନ୍ତଂ ମିତ୍ରଂ ଦ୍ୱିତୀୟଂ ସମୁପସ୍ଥିତଂ ମେ

ହଇଜା ଭଲ ହୋଇଗଲେ ମଧ ଶରୀର ଏତେ ଦୁର୍ବଳ ହୋଇପଡ଼ିଥିଲା ଯେ ୩ ମାସ ପର୍ଯ୍ୟନ୍ତ ଶଯ୍ୟାଶାୟୀ ହୋଇ ରହିବାକୁ ପଡ଼ିଥିଲା । ସ୍ୱାସ୍ଥ୍ୟର ପୁନର୍ଗଠନ ପାଇଁ ସୁସମ ଖାଦ୍ୟର ମଧ ଅଭାବ ଥିଲା । ଆସ୍ତେ ଆସ୍ତେ ସେବା ସୁଶୃଷା ପରେ ୩ ମାସ ଲାଗିଗଲା ଦେହର ପୁନର୍ଗଠନ ପାଇଁ । ଏହି ଅବସ୍ଥାରେ ଦିନେ ସକାଳେ ବୋଉ ଆଣି ପିଣ୍ଡାରେ ବସାଇ ଦେବାବେଳେ କହିଲା ଯେ ପୁଅ ଦେହ ଜାହିଁକି ଉଷୁମ ଲାଗୁଛି ? କ'ଣ ଜର ଅଛି କି ? ଦେଖେ ଦେଖେ ପରୀକ୍ଷା ନିରିକ୍ଷା ହୋଇ ବୁଝାଗଲା ଯେ ଆନ୍ତ୍ରିକଜ୍ୱର ଆରମ୍ଭ ହୋଇଯାଇଛି ।

ସେତେବେଳେ ଏ ଜ୍ୱର ପାଇଁ ଉଦ୍ଦିଷ୍ଟ ଔଷଧ ବାହାରି ନଥାଏ । ପଦ୍ମନାଭ ଦେବତା, ମୋର ମାମୁଁ, ବୈଦ୍ୟ ଥିଲେ । ସେ ଆସିଦେଖିଲେ । ଦଦେଇ ପୁଅ ଭାଇ ଡ଼ାକ୍ତର ଅଭିରାମ ଦ୍ୱିବେଦୀଙ୍କ ସହ ପରାମର୍ଶ କରି ଭିଟାମିନ୍ ସି ଓ ଆଲକାସଲ ଔଷଧ ଭାବେ ଖାଇବାକୁ, ଯଥେଷ୍ଟ ସିଝାଥଣ୍ଡା ପାଣି ପିଇବାକୁ, ଖଇମଣ୍ଡ ଖାଇବାକୁ ଏବଂ ସଂପୂର୍ଣ୍ଣ ଶୋଇ ବିଶ୍ରାମରେ ରହିବାକୁ, ବ୍ୟବସ୍ଥା କରିଦେଲେ । ବହୁଦିନ ପରେ କ୍ଲୋରୋମାଇସିନ୍ ଔଷଧ ବାହାରିଲା । ଏହିପରି ଦୀର୍ଘ ୨୧ ଦିନର ଚିକିତ୍ସା ପରେ ଜ୍ୱର ସିନା କମିଗଲା; ଦୁର୍ବଳତା ବହୁଗୁଣରେ ବଢ଼ିଯାଇଥାଏ । ଏପରି ଅବସ୍ଥାରେ ତିନିମାସ ପଡ଼ି ରହିବାକୁ ପଡ଼ିବା ଫଳରେ ପାଠପଢ଼ା ସ୍ୱର୍ଗକୁ ଗଲା । ଏହି ସମୟର କେତୋଟି ଦୈବୀ ଅନୁଭୂତି ପ୍ରଣିଧାନ ଯୋଗ୍ୟ । ଅଧା ଶୋଇ ରହିବା ଅବସ୍ଥାରେ (ସୁଶୁପ୍ତି) ଉଡ଼ି ଉଡ଼ି ଉଚ୍ଚ ଆକାଶକୁ ଚାଲିଯାଇ ସେଠି ବୁଲିବୁଲି ନାନା ବିଚିତ୍ର ଦର୍ଶନ ପରେ ତଳକୁ ଖସି ପଡ଼ି ଚିରିଚିରେଇ ଉଠିବା ବହୁଥର ଦେଖାଯାଇଛି । ତା ଛଡ଼ା ବହୁ ଦେବାଦେବୀଙ୍କ ଦର୍ଶନ ମଧ୍ୟ ଏହି ସୁଶୁପ୍ତି ଅବସ୍ଥାରେ ହୋଇଥିଲା ଓ ସେମାନେ ସର୍ବଦା ବରଦ ହସ୍ତରେ ହିଁ ଦର୍ଶନ ଦେଇଥିଲେ । ସେଥିପାଇଁ ଉଷୁନାଧାନ ଗଜା ହେଲା ଓ ଅସମ୍ଭବ ସମ୍ଭବ ହେଲା ।

ଖୁବ୍ ଭୋକ ଲାଗୁଥିଲା ଏବଂ ଖାଇବାକୁ ମାଗି ମାଗି କାନ୍ଦି କାନ୍ଦି ପୁଣି ଅର୍ଦ୍ଧବାହ୍ୟ ଜ୍ଞାନଶୂନ୍ୟ ହୋଇ ଯାଉଥାଏ । ପଡ଼ିଶାର ରାମାବୋଉ ଖୁଡ଼ୀ ମଉକା ବେଳେ ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ଯେକି ପରେ ପରମ ଶତ୍ରୁତା ପ୍ରଦର୍ଶନ କଲେ ସେହିଁ ଖୁବ୍ ସ୍ନେହ ଶ୍ରଦ୍ଧା କରୁଥାନ୍ତି । ଆଉଁସି ଦେବା, ଆଶ୍ୱାସନା ବାଣୀ ଶୁଣାଇବା ଓ ବୁଝାଇ ସୁଝାଇ ଖୋଇଦେବା ଇତ୍ୟାଦି ବହୁତ କାମ କରିଛନ୍ତି । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ବାପାଙ୍କର ଆନ୍ତରିକ ପ୍ରାର୍ଥନା ଓ ଶ୍ରେଷ୍ଠ ଉପଦେଶ । ମୁଣ୍ଡ ପାଖରେ ସେ କେତେଥର ଏକୁଟିଆ ବସି କାନ୍ଦି କାନ୍ଦି ସୁସ୍ଥ ହେବା ଲାଗି ଠାକୁରଙ୍କୁ ଆକୁଳ ପ୍ରାର୍ଥନା କରନ୍ତି । ମୁଣ୍ଡରେ ହାତ ବୁଲାଇ କହନ୍ତି "ବରଂ ଭିକ୍ଷାକରି ବଞ୍ଚିବ ଚୋରୀ କରିବନି । ଠାକୁରେ ଜନ୍ମ ଦେଇଛନ୍ତି । ସେ ନିଶ୍ଚୟ ବଞ୍ଚାଇ ରଖିବେ ଓ ଦାନା ଦେବେ । ତାଙ୍କ ଉପରେ ନିର୍ଭର କଲେ ସେ ଅବଶ୍ୟ ସାହାଯ୍ୟ କରିବେ । ତାଙ୍କ ପାଦରେ ଅଚଳାଭକ୍ତି ରଖିବା ଦରକାର । ଆମର ଆଉ କିଏ ଅଛି ଓ କଣ ଅଛି ।" ତାଙ୍କର କେତେ ବୁନ୍ଦା ଲୁହ ଦେହରେ ପଡ଼ି ଜୀବନର କଳୁଷକୁ ଚିରଦିନ ପାଇଁ ଧୋଇ ଦେଇଛି ଓ ଈଶ୍ୱର ବିଶ୍ୱାସ ବଢ଼ାଇ ଦେଇଛି । ଏହା ହିଁ ଗଢ଼ିଛି ଜୀବନାଦର୍ଶ । ଭବିଷ୍ୟତ ଜୀବନରେ ଏହି ଉପଦେଶ ବହୁ ସମୟରେ ଖାଲି ମନେ ପଡ଼ିନି କାମରେ ମଧ୍ୟ ଆସିଛି ଠିକଣା ବେଳରେ । ସେତେବେଳର ଉପଦେଶର ମର୍ମ ପରବର୍ତ୍ତୀ କାଳରେ ଉପଲବ୍ଧି ହୋଇଛି ସେହି ଈଶ୍ୱରଙ୍କ ଇଚ୍ଛାରୁ । ଆଉ ବୈଦ୍ୟମାମୁଁ ପଦ୍ମନାଭ ଦେବତା ଓ ଡ଼ାକ୍ତର ଅଭିରାମ ଦ୍ୱିବେଦୀ ଯେକି ସେତେବେଳେ ଚିକିତ୍ସା

ଦାୟିତ୍ୱ ନେଇଥିଲେ ତାଙ୍କ କଥା କିଛି ନକହିଲେ ଅଧ୍ୟାୟଟି ଅଧାରହିଯିବ । ବୁହାଳର ବୈଦ୍ୟ ପଦ୍ମନାଭ ଦେବତା ଥିଲେ ମୋର ବଡ଼ ମାମୁଁ । ତାଙ୍କର ଏକମାତ୍ର ପୁଅ ଚତୁର୍ଭୁଜ ଦେବତା କବିରାଜୀ ଓ ପରେ ସଂକ୍ଷିପ୍ତ ଡ଼ାକ୍ତରୀ ପାଠପଢ଼ି ଚାକିରି ଶେଷ କରି ଏବେ ଗାଁରେ ଅଛନ୍ତି । ସାନ ମାମୁଁ ଉପେନ୍ଦ୍ର ଦେବତା ସର୍ବଦା ଶଯ୍ୟାଶାୟୀ ପ୍ରାୟ ଥିଲେ । ବଡ ମାମୁଁ ତାଙ୍କ କବିରାଜୀ ଔଷଧ ନିଜେ ପ୍ରସ୍ତୁତ କରନ୍ତି ଓ ତାରି ସାହାଯ୍ୟରେ ଚିକିତ୍ସା କରନ୍ତି । କେବେ ସେ କାହାକୁ ପଇସା ମାଗନ୍ତିନି । ତେଣୁ ଆର୍ଥିକ ଅବସ୍ଥା ବଡ଼ ଶୋଚନୀୟ ଥିଲା । ଜମି ବିକି ପୁଅକୁ ପାଠପଢ଼ା ଓ ଝିଅ ବିଭା କରେଇଥିଲେ । ପରବର୍ତ୍ତୀକାଳରେ ସେ ଡ଼ା. ବ୍ରଜନାଥ ମିଶ୍ରଙ୍କ ଶାନ୍ତି ଔଷଧାଳୟରେ ସେହି ଔଷଧ ପ୍ରସ୍ତୁତି ଓ ଚିକିତ୍ସା କାମ ଦିନାକେତେ କରିଥିଲେ । ତାଙ୍କ ପରି ପରୋପକାରୀ ଦରଦୀ ଚିକିତ୍ସକ କ୍ୱଚିତ ମିଳନ୍ତି । ସେ ମରିଯିବା ଖବର ପାଇଁ ପାଖ ଆଖ ୫ ଖଣ୍ଡ ଗାଁରୁ ଲୋକେ ଆସି ସଂକୀର୍ତ୍ତନ କରି ନେଇ ପୂତ ଚିତ୍ରୋତ୍ପଳାର ତିନିମୁହାଁଣୀ ହରିବୋଲିଆ କୁଦରେ ସଂସ୍କାର କରିଥିଲେ । ଏହିଥିରୁ ଜଣାଯାଏ- "ପ୍ରାଣୀର ଭଲ ମନ୍ଦ ବାଣୀ - ମରଣ କାଳେ ତାହା ଜାଣି ।"

ଆଉ ଗୁରିଆନା ବା ଡା. ଅଭିରାମ ଦ୍ୱିବେଦୀ ଥିଲେ ରାମକୃଷ୍ଣ ଭକ୍ତ । ସ୍ୱାମୀ ବିବେକାନନ୍ଦ ଥିଲେ ତାଙ୍କର ଆଦର୍ଶ । ସେ ଜିଲ୍ଲାବୋର୍ଡ଼ ସଦସ୍ୟ ମଧ ଥିଲେ । ଦିନା କେତେ ପରିଣତ ବୟସରେ (୪୫ପରେ) ସରକାରୀ ଡ଼ାକ୍ତର ଭାବେ ଚାକିରୀ କରି ସୁନାମ ଅର୍ଜନ କରିଥିଲେ । ସେ ମଧ କାହାକୁ ଚିକିତ୍ସା କଲେ କି ଔଷଧ ଦେଲେ ପଇସା ମାଗନ୍ତି ନି । ସେଥିପାଇଁ ତାଙ୍କ ଦୋକାନରେ ପଇସାପତ୍ର କଥା ବୁଝିବାକୁ ତାଙ୍କ ଭିଣୋଇ ହିସାବ ଗୋପୀଦାଶଙ୍କୁ ରଖିଥିଲେ । ରୋଗୀର ଡ଼ାକରା ପହଞ୍ଚିଲେ ତାଙ୍କ ସାଇକେଲ ଗଡ଼େ । ସେ ବେଳ ଅବେଳ ଜାଣନ୍ତିନି । ଗୋଟିଏ ପେଡ଼ାଲ ମାରିଲେ ଗାଡ଼ି ଯେତିକି ଗଡ଼ିବ ସେତକି ଗଲା ପରେ ହିଁ ଅନ୍ୟ ପେଡ଼ାଲଟି ସେ ମାରନ୍ତି । ତାଙ୍କର ଅନାବିଳ ସହାୟତା ଓ ରୋଗୀ ସେବାର ଫଳ ସ୍ୱରୂପ ତାଙ୍କର ସବୁପିଲା ଠହୁଁ ବଳି ଠହୁଁ ବଳି ଯୋଗ୍ୟ ହୋଇଛନ୍ତି । ସେ ମଧ ବିନାକଷ୍ଟରେ ଦେହ ତ୍ୟାଗ କରିଛନ୍ତି । ଈଶ୍ୱର କ'ଣ ଆକାଶରୁ ଆସନ୍ତି ? ଏହିପରି ମଣିଷମାନଙ୍କ "ହୃଦେଷ୍ୱର୍ଜୁନତିଷ୍ଠତି"।

## ୮. ଖଇଧୋଇ ବୁଢ଼ୀର ମହାଯାତ୍ରା

ଜେଜେମା ତାରାଦେବୀ ସେହି ଗାଁର ଝିଅ ଓ ବୋହୂ । ନନ୍ଦସାହୀ ବୃନ୍ଦାବନ ନନ୍ଦଙ୍କ ଝିଅ ଓ ଦିବ୍ୟସିଂହ ନନ୍ଦଙ୍କ ଭଉଣୀ । ସେ ବ୍ରହ୍ମା ବଂଶରେ ଶିକ୍ଷକତା କରୁଥିବାରୁ ତାଙ୍କୁ ଗାଁର ମାନ୍ୟଗଣ୍ୟ ଲୋକେ ନାଁ ଧରି ନଡ଼ାକି ଆପଣେ ବୋଲି କହନ୍ତି । ବିଦ୍ୟାନଗରୀ ଖଣ୍ଡସାହୀର ମୂଳ ବିଦ୍ୟାପୀଠ ସେହି ନନ୍ଦସାହି । ଆମ ଗାଁରେ କାଳେ ଆଗେ ଗୋଟିଏ ମାତ୍ର ସ୍କୁଲ ସେହି

ନନ୍ଦ ସାହିରେ ଥିଲା । ସମସ୍ତେ ସେହିଠି ପଢୁଥିଲେ । ଖଡ଼ିପାଠ, ପୋଥିଲେଖା ଓ ପାଠ ସେଇ ନନ୍ଦଘରର ପାଠ । ତେଣୁ ସେମାନେ ଗୁରୁ ବଂଶ । ସାନ ଅଜା ହରିନନ୍ଦ ତାଙ୍କ ସାଇ ସ୍କୁଲ ଭାଙ୍ଗିବା ପରେ ଜଗନ୍ନାଥ ବିଦ୍ୟାଳୟରେ କେତେ ବର୍ଷ ଚାକିରୀ କରିଥିଲେ । ଏବେ ପୁଣି ଗାଧା କକେଇ ସେହି ସ୍କୁଲ ତଳି ଯାଗାଟି ସରକାରଙ୍କୁ ଦେଇ ସେଠି ପ୍ରାଥମିକ ବିଦ୍ୟାଳୟ କରାଇଛନ୍ତି । ଜେଜେମା ସେହି ବଂଶର ମର୍ଯ୍ୟାଦା ରଖି ଉଚ୍ଚ ହିନ୍ଦୁ ସଂସ୍କାରର ଜୀବନ୍ତ ପ୍ରତିମୂର୍ତ୍ତୀ ଥିଲେ । ଛୁଆଁ ଅଛୁଆଁ ବାରୁଥିଲେ ମଧ ଭୀମ ବାରିକ ଓ ଭୋଳାଚନ୍ଦ୍ରୀଙ୍କୁ ଧର୍ମଭାଇ ଓ ହାଡ଼ିଆ କେଉଟଙ୍କୁ ଧର୍ମପୁଅର ସ୍ନେହ ଆମ ପରିବାରରୁ ଦାନ କରିଥିଲେ । ବାପଘରକୁ ଗଲେ ସେ ସାଇରୁ ଏ ସାଇକୁ ଆସିବା ପରେ ଖାଲି ଗୋଡ଼ ଧୁଆ ନୁହେଁ ସଂପୂର୍ଣ୍ଣ ଗାଧୋଇ ପଶୁଥିଲେ । ସାଙ୍ଗରେ ଥିବା ସମସ୍ତ ଲୁଗାପଟା ସହ, ଆଣିଥିବା ଜିନିଷ ପତ୍ର ସହ ଖଇ ଉଖୁଡ଼ାକୁ ମଧ ଧୋଇ ପକାଉ ଥିବାରୁ ନାଟୀ ନାତୁଣୀ ବୟସର ପିଲାଙ୍କ ପାଖରେ ତାଙ୍କ ନା "ଖଇଧୋଇ ବୁଢ଼ୀ" ଥିଲା ।

ଠାକୁର ଘରଟି ୩ଭାଗରେ ବିଭକ୍ତ । ଭାଗକରେ ଧାନ ଚାଉଳ ଭାଡ଼ିରେ ରହେ, ଆଉ ଭାଗକର ଅଧେରେ ଠାକୁର ଓ ଆଉ ଅଧକରେ ମାର ଶୋଇବାସ୍ଥାନ । ଦୁଧ ଦହି ଘିଅ ସେହି ଘରେ ଶିକାରେ ରହେ । ବୁଢ଼ୀ ସେ ଘରୁ ବାହାରିଲେ ବାହାର ଦାନ୍ତିଆରେ ଥିବା ଲୁଗା ପାଲଟି ପଦାକୁ ଯାନ୍ତି ଓ ଫେରିଲେ ସେ ଲୁଗା ସେଇଠି ବଦଳାଇ ଗୋଡ଼ ହାତ ଧୋଇ ଘରେ ପ୍ରବେଶ କରନ୍ତି । ତେଣୁ ସେ ଦୁଆର ମୁହଁ ପାଖପିଣ୍ଡା ତଳଟି ସବୁବେଳେ ସନ୍ତସନ୍ତିଆ ଥାଏ । ସକାଳେ ଉଠିବାବେଳେ, ଗାଧୁଆବେଳେ ଗାଧୋଇବା ପରେ ଓ ସଂଧାରେ ଜେଜେଙ୍କ ଜପଧ୍ୟାନ ଓ ଭଜନ ବେଳେ ମା ବସି ଶୁଣନ୍ତି ।

ମାଛ, ମାଂସ, ଦୁଧ, ଘିଅ ଏସବୁ ପାଖ ମାଡ଼ନ୍ତି ନି । କେବଳ ଘୋଳ ଦହିଟିକେ ଖାନ୍ତି । ଶାଗୁଆତି ବା ମାଂସ ତ ସେତେବେଳେ ଗାଁରେ ଏତେ ପ୍ରଚଳନ ନଥିଲା । ରଜ ବା ଆଉ କେବେ ଶାଗୁଆତି ଆସିଲେ ବୁଢ଼ୀଙ୍କର କବାଟ ପଡ଼ିଯାଏ । ଆମର ଗାଁ ବାହାରେ ଏକୁଟିଆ ବରଗଛ ମୂଳେ ମାଂସକାଟି ଟଙ୍କିକିଆ, ଆଠଣିଆ ଭାଗ ଲଗାଇ କଞ୍ଚା ବରଡ଼ାପତ୍ରରେ ବାନ୍ଧି ବିକେ । ଘର ବାହାରେ ଖଳା ଶେଷରେ ବାହାରେ ଚୁଲି ପକାଇ ମାଟି ପଲମରେ ଏ ଶାଗୁଆତି ରନ୍ଧା ହୋଇ କଦଳୀ ପତ୍ରରେ ଖିଆ ହୋଇ ପଲମ ଓ ପତ୍ରସବୁ ଫିଙ୍ଗି ଦିଆଯାଏ । ଚୁଲି ପୋତି ଗୋବର ଲଗାଇ ରାନ୍ଧିବା ଓ ଖାଇବା ସ୍ଥାନ ଲିପାଯାଏ । ସମସ୍ତେ ଭଲ ଭାବେ ହାତ, ମୁହଁ ଓ ଗୋଡ ଧୋଇ ଘରେ ପଶନ୍ତି । ଜେଜେଙ୍କ ପରି ଜେଜିମା ମଧ ଦ୍ୱିପହରରେ ପଖାଳ ଓ ଶାଗଟିକେ ଖାଇବାକୁ ଭଲ ପାଆନ୍ତି । ଏହାହିଁ ଥିଲା ତାଙ୍କର ଦୈନନ୍ଦୀନ ଆହାର ।

ଭାଦ୍ର ଶୁକ୍ଳ ବଡ଼ ଏହକାଦଶୀ ଦିନ ସକାଳେ ବୁଢ଼ୀ ଉଠିବାରେ ବିଳମ୍ବ ହେଲା । ସବୁ ଦିନେ ଭୋର ୫ଟାରୁ ସେ ଉଠି ଦାଣ୍ଡ ଦୁଆରେ ଗୋବର ପାଣି ଛେରା ପକାଇବା ଲୋକ । ୫ଟାରୁ ୭ଟା ହେଲା କାହିଁକି ? କବାଟ ଖୋଲି ଦେଖାଗଲା ବୁଢ଼ୀଙ୍କର ଅଳ୍ପ ଜ୍ୱର ଅଛି ।

ଆଦେଶ ହେଲା, "ଏ ଠାକୁର ଘରୁ ନେଇଯା, ଦାଣ୍ଡଘରେ ଶୋଇ ଦିଅ । ଝିଅକୁ ଖବର ଦିଅ । ବାବୁରୀଟିଏ ଟେକି ଦିଅ । ସନ୍ଧ୍ୟା ପୂର୍ବରୁ ଚାଲିଯିବି" । ସତକୁ ସତ ମୁଁ ଯାଇ ଚମ୍ପତିପାଟଣାରୁ ପିଉସୀ ନାନୀକୁ ନେଇ ଆସିବା ବେଳକୁ ବାବୁରୀଟେକା ହେଉଛି । ଦିନ ପ୍ରାୟ ୩ଟା । ତାଙ୍କ ବାଟଧରି ସେ ଚାଲିଗଲେ । ମୋ ଆଖିରେ ଲୁହ ଆସିବାର ଚେଷ୍ଟା ନଥିଲା ବରଂ ଥିଲା ଶବ ସତ୍କାର ଦେଖିବାର ଆଗ୍ରହ । ଏହା ଥିଲା ମୋ ଜୀବନର ପ୍ରଥମ ମୃତ୍ୟୁ ଓ ଶବସତ୍କାର ଦର୍ଶନ । ଦିନରେ ହିଁ ଶବ ସତ୍କାର ହେଲା । ୮୬ ବର୍ଷର ଅଧ୍ୟବୃଦ୍ଧାଙ୍କର ମହାପ୍ରୟାଣ ଓ ଚିତା ଦର୍ଶନ ପାଇଁ ଭିଡ଼ । ଆଶ୍ଚର୍ଯ୍ୟର କଥା ଚନ୍ଦ୍ର ଉଦିଆ ଖସି ଚିତାଗ୍ନିକୁ ଦ୍ୱିଗୁଣିତ କଲା । ସମସ୍ତେ ଧନ୍ୟ ଧନ୍ୟ କଲେ । ଏ ପ୍ରକୃତ ସତୀ । ଜେଜୀମାଙ୍କ ମୃତ୍ୟୁସହ ପରିବାରକୁ ମାଡ଼ି ଆସିଲା ଦୁଃଖ ଦୁର୍ଦ୍ଦିନ । ମୃତ୍ୟୁର ଦ୍ୱାର ଖୋଲିଗଲା, ସୁଖର ଦିନ ସରିଗଲା । ଈଶ୍ୱର ବୋଧେ ଜେଜେମାଙ୍କ କପାଳରେ ଦୁଃଖ ଭୋଗିବାକୁ କି ଦେଖିବାକୁ ଲେଖି ନଥିଲେ । ମା ମଲାବେଳକୁ ୨ୟ ବିଶ୍ୱଯୁଦ୍ଧ ଆରମ୍ଭ, ଲୁଗା ଓ କିରୋସିନି ମିଳୁନଥାଏ । ମାର୍କିନଥାନ ଓ ଲୁଗାରେ କାମ ଚଳାଗଲା । ଶୁକ୍ଳପକ୍ଷ ବଡ଼ ଏକାଦଶୀ ଦିନ ସମୟରେ ମାଙ୍କ ମୃତ୍ୟୁସ୍ଥଳରେ ଈଶ୍ୱର ଆମ ପରିବାରକୁ ମୃତ୍ୟୁର ସ୍ୱାଦ ଚଖାଇଦେଲେ । ସେ ମୃତ୍ୟୁରେ ରୋଦନ ଅପେକ୍ଷା ଅଧିକ ଥିଲା ଶାସ୍ୱତ ଚିନ୍ତା ।

## ୯. ଏଣୁଅ ଯାଇଯାଇ ସିଜୁବୁଦା ମୂଳକୁ

ଜେଜିମା'ଙ୍କ ବର୍ଷିକିଆ ଭାଦ୍ରବ ଶୁକ୍ଳ ଏକାଦଶୀରେ ଶେଷ ହେବା ପୂର୍ବରୁ ଦିନକର ଘଟଣା । ରାତିରେ ଆମେ ସମସ୍ତେ ଦୁଆରେ ଖାଇବସିଛୁ । ବାପା ଓ ଜେଜେ ମଧ ବସିଛନ୍ତି । ବାଡ଼ିପଟ ଦୁଆର ମୁହଁରେ କଠୋଉ ଶବ୍ଦ ଶୁଣାଗଲା । କକେଇ କସ୍ତୁରୀ ଚରଣ ଦ୍ୱିବେଦୀ ଭିତରକୁ ପ୍ରବେଶ କରି ପିଣ୍ଡାରେ ବସିବାକ୍ଷଣି ଜେଜେ କହିଲେ ଆଜି ଫେଣ ମୁହଁ ବିଲରୁ କଚଡ଼ା ଉଠିବାର ଥିଲା । କେତେ କଚଡ଼ା ହେଲା । କକେଇ କହିଲେ ମୁଁ ସେ ଆଡ଼େ ଯାଇନି । ଉତ୍ତରରେ ଜେଜେ କହିଲେ ଆଉ ଖାଇବାକୁ ଚାଲି ଆସିଲ ଯେ, କେଉଁଠୁ ଖାଇବାକୁ ଆସିବ ? ଏତିକି ଶୁଣୁ ଶୁଣୁ କକେଇ ଉଠିଚାଲିଗଲେ । ଗଲାବେଳେ ଆଉଟିକେ ଶୁଣାଇ ଜେଜେ କହିଲେ ଯାଉ କୋଉଠିକି ଯିବ । ଏଣୁଅ ଯାଇ ଯାଇ ସିଜୁବୁଦା ମୂଳକୁ । ଅର୍ଥାତ୍ ଚମ୍ପତିପାଟଣା ପିଉସୀ ନାନୀ ଘରଯାଏ ଯିବ ।

କେନ୍ଦୁ ପାଟଣା ସେତେବେଳେ ଖଦି କେନ୍ଦ୍ର ଭାବେ ପରିଚିତ ଥାଏ । କଂଗ୍ରେସ ଆନ୍ଦୋଳନର ପ୍ରାଣ କେନ୍ଦ୍ର । ତାକୁ ହିଁ କେନ୍ଦ୍ର କରି କକେଇଙ୍କର ସ୍ୱାଧୀନତା ସଂଗ୍ରାମ । ରହିବାକୁ ପାଖରେ ଚମ୍ପତିପାଟଣା ନାନୀଘର ଥାଏ । ଡ଼ାକ୍ତର ବ୍ରଜନାଥ ମିଶ୍ର ଆମ ଅଞ୍ଚଳକୁ କଂଗ୍ରେସ କରିଆରେ ପଥମେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ଆଣିଥିଲେ । ସେ ଜଣେ ଏଲ୍.ଏମ୍.ପି. ଡ଼ାକ୍ତର ହେଲେ ମଧ ଦୀର୍ଘ କାରା ଜୀବନ ମଧରେ ସେ ଭାରତୀୟ ବୈଦ୍ୟଶାସ୍ତ୍ର

ପାଠ ଓ ଚର୍ଚ୍ଚା କରି ମାତୃଶକ୍ତି ପରି ଏକ ଔଷଧର ଆବିଷ୍କାର କରିଥିଲେ ଯାହାକି ଅନ୍ୟୁନ ୬୪ଟି ରୋଗରେ ଆଶୁପ୍ରତିକାର ଭାବେ ବ୍ୟବହୃତ ହେଉଥିଲା । ସେ ଥିଲେ ଠାକୁର ରାମକୃଷ୍ଣ ପରମହଂସଙ୍କର ଦୀକ୍ଷିତ ଗୃହୀ ଶିଷ୍ୟ । ସେ ଆମ ଗାଁ ଛାଡ଼ି କେନ୍ଦୁପାଟଣା ଠାରେ ଘରକରି ରହିବା ସହ ମହାତ୍ମା ଗାନ୍ଧୀଙ୍କ ଡ଼ାକରାରେ ଏକ ଖଦୀ କେନ୍ଦ୍ର ପ୍ରତିଷ୍ଠା କରି ହଜାର ହଜାର ତନ୍ତୀଙ୍କୁ କାମ ଯୋଗାଇଥିଲେ ଓ ଖଦିର ପ୍ରଚାର ପ୍ରସାର ପାଇଁ ବହୁତ ଲୋକଙ୍କୁ ମଧ୍ୟ କାମରେ ଲଗାଇଥିଲେ । ସ୍ୱାଧୀନତା ପରେ ସେ ରାଜ୍ୟ ଆୟୁର୍ବେଦ ସୁପରିଟେଣ୍ଡେଣ୍ଟ ହୋଇଥିଲେ । ଏଇ କକେଇ ପରିବାରର ଏକମାତ୍ର ସାହା ଭରସା ଥିଲେ । ଆଶା ଥିଲା; ପାଠପଢ଼ି, ଚାକିରୀ କରି ପରିବାରର ଅବସ୍ଥା ସୁଧାରିବେ । ମାତ୍ର ଦଦେଇ ପୁଅ ଭାଇ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ସୁରେନ୍ଦ୍ର ନାଥ ପଟ୍ଟନାୟକଙ୍କ ସମସାମୟିକ ଏହି କଣ୍ଡୁରୀ କକେଇ ନବମରୁ ପାଠପଢ଼ା ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଘରଛାଡ଼ିଥିଲେ । ମଝିରେ ମଝିରେ କେବେ କେଉଁଠି ଚିଉସନ କରିବା ଇତ୍ୟାଦିରେ କିଛି ସମୟ କଟାଉଥିଲେ ମଧ୍ୟ ଏସବୁରେ ମନ ନଥିଲା । ତାଙ୍କରି ପ୍ରେରଣାରେ ତାଙ୍କ ମୁଣିରୁ କପା ମଞ୍ଜି ନେଇ ଆମ ବାଡ଼କଡ଼ରେ ବୁଣିବା ସହ ପାଖ ପଡ଼ିଶାଙ୍କ ବାଡ଼ କଡ଼ରେ ବୁଣିବାର ସୁଯୋଗ ମଧ୍ୟରେ ସ୍ୱାଧୀନତା ସଂଗ୍ରାମରେ ପରୋକ୍ଷ ଅଂଶ ଗ୍ରହଣର ସୁଯୋଗ ଠାକୁରେ ଦେଇଥିବାରୁ ସେତେବେଳେ ଅଡୁଆ ଲାଗୁଥିବା ଛୋଟ କାମଟିର ମହତ୍ତ୍ୱ ଏବେ ଉପଲବ୍ଧି ହୋଇ ଯୁଗପତ୍ ଆନନ୍ଦ ଦେଉଛି । ଏହା ମଧ୍ୟ ସେହି ଈଶ୍ୱରଙ୍କର ପ୍ରେରଣା ଛଡ଼ା ଅନ୍ୟକିଛି ନୁହେଁ । ପରବର୍ତ୍ତୀ ଜୀବନରେ ଆମ ସ୍କୁଲରେ ଟାକୁଡି ବା ତକଲି ଧରି ସୂତା କାଟିବା ଗୋଟେ ବାଧ୍ୟତାମୂଳକ ଶିକ୍ଷା ହୋଇଥିଲା । ସଚ୍ଚିବାବୁ ତାକୁ ଆହରି ଦୃଢ଼ କରିଦେଇଥିଲେ । ସୂତା ଗୁଣ୍ଡି ସଞ୍ଚିଲେ, ଗାନ୍ଧିଜୀ ଓ ଅନ୍ୟ ନେତାଙ୍କ ପାଇଁ ସୂତା ହାର ଉପହାର ଦେବା ମୋର ଗୋଟେ ପ୍ରିୟ କାର୍ଯ୍ୟ ହୋଇଥିଲା । ସେତିକି ନୁହେଁ ବାପାଙ୍କ ଅନ୍ତେ ରାଣ୍ଡି ପୁଅ ଅନ୍ତା ସାଜି ଦୁଇ ଚାରିଟି ଗାନ୍ଧି ସଭା (ସ୍ୱାଧୀନତା ପାଇଁ ସଭା) ରେ ବାହାରୁ ଥିବା ପଟୁଆରରେ ଜୟକାର ଦେବା କକେଇଙ୍କର ମୋ ଉପରେ ପରୋକ୍ଷ ପ୍ରଭାବ । ଥରେ ଆମ ଗାଁ ବାଟ ଦେଇ ଜୟପ୍ରକାଶ କେନ୍ଦ୍ରାପଡା ଗଲେ । ତାଙ୍କ ସଭା ପାଇଁ ମଶାଣୀପଡା ସଫା କରିବା , ଜୟ କାର ଦେବା, ସୂତା ମାଳ ଦେବା ସଚ୍ଚି ବାବୁଙ୍କ ପ୍ରେରଣାରେ କରିଥିଲି । ଏହି ପରି ଛୋଟ ଛୋଟ କାର୍ଯ୍ୟ ସ୍ୱାଧୀନତାର ସେତୁରେ ମୋପରି ବହୁ ଗୁଣ୍ଡୁଚି ମୂଷାଙ୍କର ଅବଦାନ ସେତେବେଳେ ପ୍ରାୟ ମିଳୁଥିଲା । ମହାତ୍ମା ଗାନ୍ଧି ସମଗ୍ର ଦେଶର ଆଦର୍ଶ । ସେହି ବାପୁଙ୍କ ଆଦେଶରେ ଆବାଳ ବୃଦ୍ଧ ବନିତା ସ୍ୱାଧୀନତା ପାଇଁ ଅଳ୍ପ ବହୁତେ, ଜ୍ଞାତ ଅଜ୍ଞାତ, ଇଚ୍ଛା ଅନିଚ୍ଛାରେ ମଧ୍ୟ ଲାଗିପଡିଥିଲେ । ଏବେ ଦେଶରେ ସେପରି ଆଦର୍ଶ ନ ଥିବାରୁ କାହାକୁ ଅନୁକରଣ ବା ଅନୁସରଣ କରିବାର ଅବସର ଅଭାବରେ ନବଯୁବକମାନେ ସର୍ବଦା ପଥଭ୍ରଷ୍ଟ ହେବା ସ୍ୱାଭାବିକ । କକେଇ ତ ରୋଜଗାରରେ ମନଦେଇ ନଥିଲେ । ଆମେ ଭାବୁ ସେ

ନିଶ୍ଚୟ କିଛି ପଇସା ପତ୍ର ରଖିଥିବେ ବା ଜେଜିମାଙ୍କୁ ଦେଇଥିବେ । ଜେଜିମା ମରିବା ପରେ ତାଙ୍କ ବେତବୁଣା ପେଟରା ଖୋଲି ଦେଢ଼ଟଙ୍କା ମିଳିଥିଲା । ଏଥିରୁ ରୋଜଗାର ବୁଝାପଡେ । ହେଲେ ତାଙ୍କର ନିଷ୍ପତ୍ତି ଅଟଳ, ଅଚଳ । ସେ ଥିଲେ ମହାନ ଦୃଢ଼ ମନା ଓ ସ୍ୱାଧୀନ ଚେତା ।

ଜେଜେଙ୍କ ନିରାଟ ସତ୍ୟ ବାଣୀ ଏଥର କିନ୍ତୁ ଜେଜେଇଙ୍କ ଛାତିରେ ଶେଳପରି ବିନ୍ଧ ହେଲା । ସେ ସେହି ରାତିରେ ଗାଁ ଛାଡ଼ି ଚମ୍ପତିପାଟଣା ଆସି ସେଠୁ ନିଜର ଲୁଗା ଗାମୁଛା ଦିଖଣ୍ଡ ଧରି କାହିଁ କେଉଁଆଡ଼େ ଚାଲିଗଲେ ଯେ ଗଲେ । ଆଉ ଫେରିଲେନି । ଏପରିକି ସ୍ୱାଧୀନତା ପ୍ରାପ୍ତି ପରେ ମଧ ୧୦ ବର୍ଷଯାଏ ତାଙ୍କର ପତ୍ତା ନଥିଲା । ତାଙ୍କ ନାମରେ ଗିରଫ ପରୱାନା ଥିବାରୁ ବେଳେ ବେଳେ ତାଙ୍କୁ ପୋଲିସ୍ ବାଲା ଆସି ଖୋଜନ୍ତି । କେତେଥର ଗିରଫ ହୋଇ ଜେଲ ଭୋଗିଛନ୍ତି । ଦେଶର ସ୍ୱାଧୀନତା ପାଇଁ ମା, ବାପା ଓ ଗୃହ ତ୍ୟାଗ କରିଥିଲେ ମଧ ସେହି କାମରେ ବ୍ୟସ୍ତ ରହି ସେ ବିଲକୁ ନ ଯାଇ ସେ ଜେଜେଙ୍କ ଠାରୁ ପଦେ ଶୁଣିଲେ । ସେଥିଲେ ଏ ଯୁଗର ଭୀଷ୍ମ । ପଦେ କଥାରେ ଘରଛାଡିଲେ । ଦାର ପରିଗ୍ରହ ମଧ କରିଥିଲେ କନ୍ୟାସୁନା ଦେବାକୁ ଅସ୍ୱୀକାର କରି । ଆମକୁ ନିଜର ପିଲାମନେ କରି ସମ୍ପତ୍ତି ମଧ ତ୍ୟାଗ କଲେ । ମଝିରେ ଅଭ୍ୟସ୍ତ ହୋଇଥିବା ଗୁଡାଖୁ ଓ ଗଞ୍ଜେଇ ମଧ କଥା ପଦକରେ ଛାଡି ଦେଇଥିଲେ । ଶେଷରେ ସଂଗ୍ରାମୀ ଭତ୍ତା, ତାମ୍ରପତ୍ର ଓ ସମ୍ମାନର ଅଧିକାରୀ ହୋଇମଧ ସନ୍ୟାସ ଜୀବନ ଯାପନ କରୁଥିଲେ । ହେଲେ ଖଦଡକୁ ଛାଡି ନଥିଲେ । ଶେଷରେ ସେ କିଣିଥିବା ଖଦଡ କପଡା ମଧ ତାଙ୍କ ସ୍ୱର୍ଗଦ୍ୱାରର ଚିତାରେ ସମର୍ପିତ ହୋଇଥିଲା । ତାଙ୍କ ସ୍ମୃତିରେ ଲିଖିତ "ଏ ଯୁଗର ଭୀଷ୍ମ"କୁ ଓଡିଶା ଓ ଅରୁଣାଚଳର ରାଜ୍ୟପାଳ ମିଳିତ ଭାବେ ଉନ୍ମୋଚନ କରିଥିଲେ ।

## ୧୦. ଶେଷ ଉପଦେଶ

ମାଘ ମାସର ବଡ ଦଶମୀ ଦିନ ମାଗୁଣିଆ ବୋଉ (କମଳୀନାନୀ)ର ଆମ ରାମେଶ୍ୱର ମହାଦେବଙ୍କ ପାଖରେ ହରିହାଟ ହୋଇଥିଲା । ବାପାଥିଲେ ପୁରୁଣା ଶ୍ୱାସରୋଗୀ । ସେ ଓପାସ ରହି ବଖତେ ଅରୁଆଖାଇ ସେହି ହରିହାଟରେ ଭାଗବତର ଏକାଦଶ ସ୍କନ୍ଧ ପଢିଥିଲେ । ସନ୍ଧ୍ୟାରେ ଭାଗବତ ବଢ଼ିଲା । କୀର୍ତ୍ତନ, ପୂଜା, ଅର୍ଚ୍ଚନା ଓ ପ୍ରସାଦ ବଣ୍ଟନ ହେଉ ହେଉ ରାତି ୯ଟା । ବାପା ରାତି ୧୦ଟା ରେ ଫେରିଲା ବେଳକୁ ଆମେ ସବୁ ଶୋଇପଡିଥିଲୁ । ବହୁତ ମଶା ଯୋଗୁଁ ଆଟୁଘର ବଖରାଟିରେ ସନ୍ଧ୍ୟାରେ ଧୂଆଁ ଦିଆଯାଏ । ରାତି ୮ଟା ରୁ ୯ଟା ମଧରେ ଆମେ ସବୁ ଖାଇ ଶୋଇଯାଉ । ବାପାଙ୍କ ଖଟରେ ମୁଁ ଏକା ଶୋଇଥିଲି । ତଳେ ବୋଉ ଓ ଅନ୍ୟ ପିଲାମାନେ ଶୋଇଥିଲେ । ତେଣୁ ବାପା ଆସି ମୋ ପାଖରେ ଶୋଇବା ବେଳେ ମୋ ନିଦ ଭାଙ୍ଗିଗଲା । ଅଳ୍ପ ଅନ୍ୟକିଛି କଥାବାର୍ତ୍ତା ପରେ ବାପା ପ୍ରଶ୍ନକଲେ ତୁମ

ସ୍କୁଲରେ ଭୂଗୋଳ ପଢାଯାଉଛି କି ? ସେଥିରେ ଉତ୍ତରାୟଣ ଓ ଦକ୍ଷିଣାୟନ ବିଷୟ ପଢିଛ କି ? ମୁଁ ଏସବୁ ଜାଣି ନଥିବା କହିବାରୁ ସେ ସବୁ ବୁଝାଇଦେଲେ । ଆଉ କହିଲେ ଉତ୍ତରାୟଣ, ଶୁକ୍ଳପକ୍ଷ, ଦିନରେ ଓ ଏକାଦଶୀ ଇତ୍ୟାଦି ଭଲ ତିଥିରେ ଠାକୁରଙ୍କ ନାମ ବା ଖାଲି ଓଁ ଉଚ୍ଚାରଣ କରି ମଲେ ସ୍ୱର୍ଗବାସ ହୁଏ । ଆଉ ପୁନର୍ଜନ୍ମ ହୁଏନା । କହିସାରି ଜେଜେମା ଉତ୍ତରାୟଣ କି ଦକ୍ଷିଣାୟନରେ ମରିଥିଲେ ବୋଲି ପ୍ରଶ୍ନକଲେ । ବାପ ପୁଅଙ୍କର ଏସବୁ କଥୋପକଥନ ତଳେ ଶୋଇ ବୋଉ ଶୁଣୁଥାଏ । ସେ ସବୁ ଶୁଣି ଶୁଣି ବିରକ୍ତ ହୋଇ କହିଲା, "ଆଚ୍ଛା ତୁମେ ଦିନସାରା ବୁଲିବ । ରାତିରେ ଆସି ଶୋଇଲା ପିଲାଟିକୁ ଉଠାଇ ମଲା, ହଜିଲା, ସ୍ୱର୍ଗ, ନର୍କ ଏତେ କଥା ବୁଝାଉଛ । ତୁମକୁ କ'ଣ ଆଉ ବେଳ ନାହିଁ !" ବାପା କହିଲେ; "ଭଲକାମ କରିବାକୁ ଅପେକ୍ଷା କରାଯାଏନା । କାଳ କାହାକୁ ଅପେକ୍ଷା କରେନା । ମୋର ଗୋଟେ ଭଲକଥା ମନେ ପଡିଲା । କାଲି ଗୋଟେ ଭଲ ଦିନ । ମକର ସଂକ୍ରାନ୍ତି ଓ ବଡ ଏକାଦଶୀ । ଉତ୍ତରାୟଣର ଆରମ୍ଭ ହେବ । ଭଲ ଦିନରେ ଭଲକଥା । ତୋତେ ଯଦି ଏ ସବୁ କଥା ଖରାପ ଲାଗୁଛି ତୁ ତୋର ଶୋଇପଡ । ଆଉ ୪ଟି ପିଲା ଶୋଇଛନ୍ତି । ମୁଁ କ'ଣ ତାଙ୍କୁ ଉଠାଇ କହୁଛି । ଯେ ଚେଇଁଥିଲା ବୋଲି କହିଲି ।"

ଏତକ କଥୋପକଥନ ପରେ ମତେ ପୁଣି ନିଦ ଆସି ଯାଇଛି ଓ ଆଉ କ'ଣ କଥା ହେଲା ମୁଁ ଜାଣେନା । ପରେ ଜାଣିଲି ଏହାଥିଲା ମୋ ପ୍ରତି ଅନ୍ତିମ ଦିନର ବାର୍ତ୍ତା ଓ ଶେଷ ଉପଦେଶ । ପ୍ରତ୍ୟେକ ଲୋକର ଏହିଭଳି ଏକ ଶୁଭବିଦାୟ ଧ୍ୟେୟ ହେବା ଆବଶ୍ୟକ । ଏହିଭଳି ଏକ ମୂହୁର୍ତ୍ତ ପାଇଁ ଅପେକ୍ଷା କରି ପିତାମହ ଭୀଷ୍ମ ଶରଶଯ୍ୟା କରି ଚାହିଁ ରହିଥିଲେ । ଏହା ଗୀତାର ଅଷ୍ଟମ ଅଧ୍ୟାୟର ଗୂଢ ନିଷ୍କର୍ଷ । ଭଗବାନ ମୋପାଇଁ ଏ ଯେଉଁ ଅମୃତମୟୀ ଉପଦେଶର ପରିବେଶ ସୃଷ୍ଟି କରିଥିଲେ ତାହା ବୋଧେ ମୋତେ ତାଙ୍କର ଶ୍ରେଷ୍ଠଦାନ ।

## ୧୧. ଯେ ଯଥା ମାଂ ପ୍ରପଦ୍ୟନ୍ତେ

ରାତିର ଏଭଳି କଥାବାର୍ତ୍ତା ପରେ ପରଦିନ ମାଘମାସ ବଡ ଏକାଦଶୀ ଦିନ ସେ ବର୍ଷ ପଡିଥାଏ ମକର ସଂକ୍ରାନ୍ତୀ । ସକାଳୁ ସକାଳୁ ଉଠି ବାପା ନଡିଆଟିଏ ଛଡେଇଦେଲେ ଆଉ ଦକ୍ଷିଣାପାଇଁ ଗୋଟିଏ ସେ କାଳର କଣା ତମ୍ବା ପଇସା ଦେଲେ । ମୁଁ ଶୀଘ୍ର ଶୀଘ୍ର ଗାଧୋଇ ପଡି ପେମୁନି ସହିତ ସାଙ୍ଗହୋଇ ଚାଲିଲି ବରପଡାର ସୋମନାଥଙ୍କ ପାଖକୁ । ପେମୁନିର ନାଳରକ୍ତ ଝାଡା ଓ ଗୋଡରେ ଫାଟ ଫାଟ ଗାର । ପ୍ରତି ସଂକ୍ରାନ୍ତୀରେ ସୋମନାଥ ପୂଜା ଓ ଦର୍ଶନପାଇଁ ତାଙ୍କ ଘରେ ଯାଚିଥାନ୍ତି । ମୁଁ କାହିଁକି ଯାଉଥିଲି ଜାଣେନା । ତେବେ ପ୍ରତି ସଂକ୍ରାନ୍ତୀ ଦିନ ନଡିଆଟିଏ ଓ ପଇସା ଧରି ସୋମନାଥଙ୍କ ପାଖକୁ ଯାଏ । ପେମୁନି ବା ପ୍ରେମାନନ୍ଦ ନନ୍ଦ ମୋର ବାଲ୍ୟ ସଖା । ସାଙ୍ଗ ହୋଇ ପଢୁ । ମାଟ୍ରିକ ପଢିଲା ବେଳକୁ ସେ ଭୁବନେଶ୍ୱର ଆସି ତା

ଭାଇନାଙ୍କ ପାଖରେ ରହି ପଢିଲା । ବି.ଏ.ବି.ଇ.ଡି କରି ସ୍କୁଲ ଶିକ୍ଷକ ଓ ପରିଦର୍ଶକ ହେଲା । ଅବସରର ଅଳ୍ପ ଦିନ ପରେ ସେ ଦେହ ତ୍ୟାଗ କରିସାରିଥିଲେ ବି ସାଙ୍ଗ ହୋଇ ସୋମନାଥ ଦର୍ଶନର ସ୍ମୃତି ଏବେ ମଧ୍ୟ ମୋ ଭିତରେ ଜାଗ୍ରତ । ମୁଁ, ସଉରୀ (ଶରତ ମିଶ୍ର), ବଇନ (ରାଜକିଶୋର ମିଶ୍ର), ବାବନ (ନୀରଞ୍ଜନ ମିଶ୍ର) ଓ ପେମୁନି (ପ୍ରେମାନନ୍ଦ ନନ୍ଦ) ପାଞ୍ଚ ଜଣ ପରସ୍ପରକୁ ସଙ୍ଗାତ ଡାକୁ ପିଲା ଦିନୁ ।

ସେଦିନ ପୂଜା ସାରି ପେମୁନି ଘରକୁ ଫେରିଲା ଓ ମୁଁ ପାଖ ଗାଁ ବୁହାଳର ଆମ ମାମୁଘରକୁ ଗଲି । ଆଈ ଥାଏ । ସେ ବଡ ଗିନାରେ ଗିନାଏ ପଖାଳ ବାଢିଦେଲା । କାଣେନ୍ଦି ଆଚାର ଦେଲା ଓ ନଡିଆ ଖଣ୍ଡେ ଛଡାଇଦେଲା । କେଜାଣି କାହିଁକି ମୋଟେ ଖାଇବାକୁ ଇଚ୍ଛା ହେଲାନି । ବେଶୀବେଳ ନ ରହି ଅମାନିଆ ହୋଇ ସେଠୁ ଘରକୁ ପଳାଇ ଆସିଲି । ଆସିଲାବେଳେ ନାଳବନ୍ଧରେ ଗୀତବୋଲି ବୋଲି ଏକା ଚାଲିଥାଏ ହନୁପୁର ନାଳବନ୍ଧ ବରଗଛ ପାଖରେ । ଆରପାଖ ବଂଧରେ ଗାଈ ଚରାଉଥିବା ସଙ୍ଗାତଙ୍ଘର ଚାକର ବିଶିଆ କହିଲା ତୁମ ନନା ମଲେଣି । ତୁମେ କ'ଣ ଗୀତ ଗାଇ ଗାଇ ଯାଉଛ । ଆମଘରେ ବଡଭାଇଙ୍କୁ ନନା କହନ୍ତି । ଏକଥା ଶୁଣି ମନରେ ଛାନିଆ ପଶିଲା । ଦୌଡି ଦୌଡି ଆସି ଦେଖିଲି ଆମ ଛନ୍ଦା ପାଖରେ ଢୋଲ ଡଙ୍ଗା ଲାଗି ମଶାଣିକୁ କାଠବୁହା କାମ ଚାଲିଛି । ଯେ ଯଥା ମାଂ ପ୍ରପଦ୍ୟନ୍ତେ । ସେ ଚାହିଁ ଥିଲେ ଉତରାୟଣ ଶୁକ୍ଳପକ୍ଷ, ଭଲ ତିଥି ଓ ଦିନ ତାଙ୍କୁ ତା' ହିଁ ମିଳିଲା । ଘରେ ଯାଇ ଦେଖିଲି ଦାଣ୍ଡ ଘରର ଭିତର ପାଖ ଦୁଆର ମୁହଁ (ଉତ୍ତର) ପାଖକୁ ମୁଣ୍ଡ ଦେଇ ବାପା ଶୋଇଛନ୍ତି । ବୋଉ କାନ୍ଦୁଛି । ଆଉ ସମସ୍ତେ ଇତଃସ୍ତତଃ ଓ ବ୍ୟସ୍ତ । କିନ୍ତୁ ବାପାଙ୍କ ଆଖି ଦୁଇଟି ଖୋଲା ରହିଛି । ମୁଁ ଯେମିତି ତାଙ୍କ ପାଖରେ ଯାଇ ତାଙ୍କୁ ଚାହିଁ ଦେଇଛି ତାଙ୍କ ଆଖି ଦୁଇଟି ବନ୍ଦ ହୋଇଗଲା । ସତେ ଯେମିତି ମୃତ୍ୟୁପରେ ମଧ୍ୟ ସେ ସୋମନାଥଙ୍କ ପାଖୁ ପଠାଇଥିବା ତାଙ୍କର ପୁଅକୁ ଅପେକ୍ଷା କରିଛନ୍ତି । ଏ ଘଟଣାରେ ସମସ୍ତେ ଆବାକ୍ ହୋଇଗଲେ । ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ଈଶ୍ୱରଙ୍କ ଇଚ୍ଛା ଓ ସେ ଇଚ୍ଛା ପ୍ରକଟିତ ହେଲା ବାପାଙ୍କ ସକରୁଣ ଓ ସ୍ୱେଚ୍ଛା ମୃତ୍ୟୁପରର ଦୃଷ୍ଟିପାତରୁ; ଯେଉଁଥିରେ ଭରି ରହିଥିଲା କେବଳ ସ୍ୱର୍ଲୋକର ଆଶିର୍ବାଦ ଆଉ ଆଶିର୍ବାଦ । ମୋ ଆଖିକୁ ଲୁହ ଆସିବାର ଫୁରସତ ନ ଥିଲା । ମୁଁ ଲାଗି ପଡିଲି ଶବଦାହ ଯୋଗାଡରେ, ଜିନିଷ ସଂଗ୍ରହରେ । ତା' ପରେ ଚାଲିଲା ମହାଯାତ୍ରା ଓ ଜଳି ଉଠିଲା ଶ୍ମଶାନରେ ଜୁଈ । ଆମେମାନେ ପାଞ୍ଚଟି ଶିଶୁ ବାପ ଛେଉଣ୍ଡ ହୋଇଗଲୁ । ବୋଉକୁ ହୋଇଥାଏ ବାତଜ୍ୱର, ତା କୋଡରେ ଥାଏ ସାନ ଭଉଣୀ କୁଞ୍ଜ । ସେ କାନ୍ଦି କାନ୍ଦି କହିଲା ଆରେ ବାପ ଛେଉଣ୍ଡ ହୋଇଗଲ । ତୁମେ ଖରାରେ ଠିଆ ହୋଇଥିଲେ କିଏ ଆଉ ଛାଇକୁ ଡାକି ବରେ ? ଈଶ୍ୱର ହିଁ ଏକା ସାହା ଭରସା । ତାହାହିଁ ସାର ହେଲା ।

## ୧୨. ଦୋଳ - ହେଲା କାଳ

ବହୁ କଷ୍ଟରେ ବାପାଙ୍କ କ୍ରିୟା କରାଗଲା । ଜେଜେଙ୍କୁ ଏସବୁ କରାଇବାକୁ ପଡିଲା । କାରଣ ସେ ବଞ୍ଚିଥିଲେ । ଅବଶ୍ୟ ଆମ ଭିତରୁ ଭାଇନା ବ୍ରତ ହୋଇଥିବାରୁ ସେ କ୍ରିୟା ଧରିଲେ ୧୩ ବର୍ଷ ବୟସରେ । ପ୍ରଥମରୁ ମଝିଆଁ ପୁଅ ସନ୍ୟାସୀ ହେବା, ପାଠପଢି ରୋଜଗାର କରି ଘର ଚଳାଇବାକୁ ଆଶାଥିବା ସାନପୁଅ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ଓ ପରେ ଘରଛାଡି ପଳାଇବା, ହାତ ଧରି ବାହା ହୋଇଥିବା ସ୍ତ୍ରୀର ବିୟୋଗ, ଆଉ ଏକ ମାତ୍ର ବାଳୁତ ବିଧବା ଝିଅର ମୁହଁକୁ ଚାହିଁ ଛୟାନବେ ବର୍ଷର ବୁଢା ଧଇଁଆ ହେଲେ ବି ବଡପୁଅକୁ ହରାଇ କିଭଳି ମାନସିକ ପରିସ୍ଥିତିରେ ଥିବେ ତାହା ଯେ କୌଣସି ସଂସାରୀ କାହିଁକି ସଂସାରତ୍ୟାଗୀ ସନ୍ୟାସୀ ମଧ୍ୟ ଅନୁଭବ କରିପାରିବ । ଦୁଃଖ ଏହିପରି ଆସେ । ସେ ସ୍ଥାନ, କାଳ, ପାତ୍ର, ବୟସ କିଛି ବିଚାର କରେନା । ସେ ନିଜର କଷଟିରେ ଗୋଟି ଗୋଟି କରି ତାର ସୁନା ଗୁଡିକୁ ବା ଶରବ୍ୟ ଗୁଡିକୁ ଦାନ୍ତ ଚିପି ନିଠାଇ ନିଠାଇ ଘଷି ଘଷି ପରଖି ନିଏ ।

ସେତେବେଳେ ଆମ ଗାଁରେ ଛଅଦିନ ଧରି ମହା ସମାରୋହରେ ଦୋଳ ଦଶମୀରୁ ଦୋଳ ପୂର୍ଣ୍ଣମୀଯାଏ ଦୋଳଯାତ୍ରା ହୁଏ । ତାହା ନ ଦେଖିଲା ଲୋକ ବିଶ୍ୱାସ କରି ପାରିବନି । ଠାକୁର ଘର ଓ ଜମିଦାର ପରିବାରର ଦୋଳଗୋବିନ୍ଦ ଦୋଳ ଦଶମୀ ଦିନ ବିମାନରେ ବିଜେ ହେବା ସହ ଦୋଳ ଘଣ୍ଟରେ ଗାଁ ଚମକିଯାଏ । ଶୁଖିଲା କାଠରେ ମଧ୍ୟ ପ୍ରାଣ ସଞ୍ଚାର କରେ । ଏକାଦଶୀରୁ ପୂର୍ଣ୍ଣମୀ ଯାଏ ପାଞ୍ଚଦିନ ଦିନରେ ମେଳଣ ହୁଏ । ଆରମ୍ଭ ହୁଏ ଏକାଦଶୀରୁ ରାମେଶ୍ୱର ମେଳଣରୁ ଆମ ଗାଁର ଓ ପୂର୍ବ ପଶ୍ଚିମ, ଦକ୍ଷିଣ ଉତ୍ତର ହୋଇ ଆଉ ଚାରିଦିନେ ଚାରି ଗାଁରେ । ରାତିରେ ଦୁଇଦଳ ବଛାବଛା ଯାତ୍ରା ବା ନାଚ ବାଲା ରାତି ୮ଟାରୁ ସକାଳ ୬ଟା ଯାଏ ଅପେରା କରନ୍ତି । ଅପେରା ଯାତ୍ରା ହୁଏ ବାବୁଘରର ପକା ଦାଣ୍ଡରେ । ତଳେ ପାଲ ଓ ଉପରେ ସାମିଆନା । ଚାରିକଡ ଘର ଓ ପାଚେରି ଘେରା । ଦାଣ୍ଡରେ ଦାଣ୍ଡେ ମଣିଷ ବସି ଯାତ୍ରା ଦେଖନ୍ତି ସିନା ଛୁଞ୍ଚିଟିଏ ପଡିଲେ ମଧ୍ୟ ଶବ୍ଦ ଶୁଭିବ । ଚୁପ୍‌ଚାପ ବସି ଯାତ୍ରା ଦେଖନ୍ତି । ଏବକାର ହୁଇସିଲ ଓ ପାଟିଗୋଳ ସେତେବେଳେ ସ୍ୱପ୍ନ । ଦୋଳ ବେଳେ ଗାଁ ସ୍ୱର୍ଗ ପାଲଟିଯାଏ । ବନ୍ଧୁ ବାନ୍ଧବରେ ଘର ଭରିଯାଏ । ଆନନ୍ଦ ଉତ୍ସବ ଲାଗିଯାଏ ।

ଦୋଳ ଦଶମୀକୁ ବାପା ମରିବା ଠିକ୍ ମାସେ । ସେହିଦିନ ଜେଜେ ହଠାତ୍ ମୋହ ବା ମୂର୍ଚ୍ଛା ହୋଇଗଲେ । ଦଦେଇ ପୁଅ ଭାଇ ଡା: ଅଭିରାମ ଦ୍ୱିବେଦୀ ଆସି ଦେଖିଲେ । ରୋଗ ନାହିଁ । ମାନସିକ ଚିନ୍ତାରୁ ଏପରି ହୋଇଛି । ସଂପୂର୍ଣ୍ଣ ବିଶ୍ରାମ ଲୋଡା ବୋଲି କହିଲେ । କିଛି ସମୟ ପରେ ଜେଜେ ଓଁ ନମଃ ଶିବାୟ କହି ଚେତନା ପାଇଲେ ।

## ୧୩. ଠାକୁର ଆସିଲେଣି ଭୋଗ ଆଣ

ଦୋଳ ଏକାଦଶୀ ଦିନ ସକାଳେ ଜେଜେ କହିଲେ ଦୋଳ ଘଣ୍ଟରେ ଲେଉଟିଆ ବୁଣିଲେ ଭଲ ଶାଗହୁଏ । ଜେଜେଙ୍କର ଦୈନନ୍ଦିନ ଦ୍ୱିପ୍ରହରର ଖାଦ୍ୟ ହେଉଛି ଶାଗ ଓ ପଖାଳ । ଏହା ତାଙ୍କର ଖୁବ୍ ପ୍ରିୟ । ସେ'ତ ମୁର୍ଚ୍ଛାଯାଉଥାନ୍ତି; ଦୁର୍ବଳ ଥାନ୍ତି ଓ ସଂପୂର୍ଣ୍ଣ ବିଶ୍ରାମ ପାଇଁ ଡାକ୍ତରଙ୍କ ପରାମର୍ଶ ଥାଏ । ତେଣୁ ମୁଁ କହିଲି ଜେଜେ ତୁମେ ଚାଲ, ବାଡି ଦୁଆର ମୁହଁରେ ବସି ବତାଇ ଦେବ; ମୁଁ ଖୋଳାରେ ଶାଗ ବୁଣିଦେବି । ସେଇଆ ହେଲା । ସେ ବାଡି ପିଣ୍ଡାରେ ବସି ବତାଇଲେ । ମୁଁ ଛୋଟ ଛୋଟ ଚାରିଟି ପଟାଳୀ ହାଣି ଲେଉଟିଆ ଶାଗମଞ୍ଜି ବୁଣିଦେଲି । ପିଲାହାତ, ମାଟି' ତ ଗହୀର ହଣା ହୋଇନି, ଗୁଣ୍ଡ ହୋଇନି, ଖତ ଦିଆହୋଇନି; ସେ କ'ଣ ହେବ; "ହଉ ଯାହା ହେଲା" ଏତିକି କହି ପୁଣି ମୂର୍ଚ୍ଛା ହୋଇଗଲେ ଓ ଅଳ୍ପ ସମୟ ପରେ ଓଁ ନମଃ ଶିବାୟ କହି ଚେତାପାଇ ଉଠିଲେ ।

ଦ୍ୱାଦଶୀ ଦିନ ମାଛ ଖାଇବାକୁ କହିଲେ । ଯୋଗକୁ ସେଦିନ ଗାଲୁ ପଣ୍ଡିତଙ୍କ ଘର ଶେଉଳ ମାଛ କିଣି ଝୋଳ କରିଥିଲେ । ପଠାଇଲେ । ଅଳ୍ପଟିକେ ନାମକୁମାତ୍ର ଖାଇଲେ ଓ ଶୋଇଲେ । ଦିନରେ ଆଉ ୨ ଥର ମୂର୍ଚ୍ଛା ହୋଇଯାଇଥିଲେ । ତେଣୁ ପାଖେ ପାଖେ ଆମେ ସବୁ ଜଗିରହିଥାଉ । ତା'ରି ମଧରେ ଦୋଳ ଠାକୁରଙ୍କର ଭୋଗଖିଆ ପାଇଁ ଉଖୁଡା, କଦଳୀ, ପଇଡ ଇତ୍ୟାଦିର ବ୍ୟବସ୍ଥା ହୋଇଥାଏ । ସେତେବେଳେ ବାବୁଘର କାହିଁରେ କ'ଣ । ସାଙ୍ଗହୋଇ ତାଙ୍କଘର ଠାକୁର ଓ ବୃନ୍ଦାବନ ଚନ୍ଦ୍ର ଭୋଗ ଖାଇବାକୁ ଆସନ୍ତି । ଆଗେ ଆଗେ ରୂପା ଗଦାଧରି ଦୁଇ ପିଆଦା ଚାଲନ୍ତି । ତାପରେ ମଶାଲଧରି ବାରିକ, ଢୋଲ, ତେଲିଙ୍ଗି, ବ୍ୟାଣ୍ଡପାର୍ଟି, ଘଣ୍ଟିଆ, କୀର୍ତ୍ତନିଆ ଓ ଗୋଟିପିଲା ନାଚ ଚାଲିଥାଏ । ଧୋବା ଆଗରେ ଚାଲି ନଇଁ ପଡିଥିବା ଗଛରେ କାଳେ ବିମାନ ବାଜିବ ବୋଲି ଡାଳ କାଟୁଥାଏ । ଖୁବ୍ ଜାକ ଜମକରେ ଦୁଇ ଠାକୁର ଆସି ଆମ ବ୍ରାହ୍ମଣ ସାଇରେ ଭୋଗ ଖାଇଲେ ।

ସଂଧ୍ୟା ଅଳ୍ପ ଗଡିଯାଇଥାଏ । ଦ୍ୱାଦଶୀ ରାତି । ଦାଣ୍ଡଘରେ ଜେଜେ ଖଟ ଉପରେ ଶୋଇଥାନ୍ତି । ଦାଣ୍ଡ କବାଟ ଖୋଲାଥାଏ । କାନ୍ଥ କୁଡାରେ ଡିବିଟିଏ ଜଳୁଥାଏ । ସମସ୍ତେ ଅପେକ୍ଷା କରିଥାନ୍ତି । ଠାକୁରେ ଆସିଲେ ଭୋଗ ଖାଇବେ । ଆମ ଢିଅଟି ଗାଁ ଗୋହିରୀ ରାସ୍ତାଠାରୁ ଟିକେ ଉଚ୍ଚ । ବାଜାବାଲା ଆସିଗଲେ । ଘଣ୍ଟ ଇତ୍ୟାଦି ବାଜି ଉଠିଲା । ଠାକୁରେ ମଧ ଆସିଗଲେ । ବସିନାହାନ୍ତି କେବଳ । ଖଟ ଉପରୁ ଜେଜେ ଡାକିଲେ ଆରେ "ଠାକୁର ଆସିଲେଣି - ଭୋଗ ଆଣ"। ଏତିକିବେଳେ କାନ୍ଥ କୁଡାରେ ଜଳୁଥିବା ଡିବିଟି ଲିଭିଗଲା । ବାଶ୍ ସେତିକିରେ ସବୁ ଶେଷ । ଯେଉଁ ବୃନ୍ଦାବନ ଚନ୍ଦ୍ରଙ୍କୁ ଦୈନିକ ଦର୍ଶନ ନକଲେ ପାଣି ଛୁଉଁ ନଥିଲେ ତାଙ୍କୁ ଦୋଳ ଘଣ୍ଟ ମଧରେ ଦୋଳ ବିମାନରେ ଦେଖି ଭୋଗ ପାଇଁ ଡାକିଦେଇ

ତାଙ୍କରି ଦେହରେ ମିଶିଗଲେ ସବୁଦିନ ପାଇଁ । ଠାକୁରେ ଆଉ ବସିଲେନି କି ଭୋଗ ଖାଇଲେନି । ସେଇଠୁ ଫେରିଗଲେ । କୋଟି ଜନ୍ମ ତପସ୍ୟାକରି କିଏ ଏପରି ପାଇଛି ? ସେହି ବୃନ୍ଦାବନ ଚନ୍ଦ୍ରଙ୍କ ପରମ କରୁଣାରୁ ଏ ସିଦ୍ଧି ମିଳିଲା ସିନା ! ମୁଁ ଦୁଃଖରେ ଭାଙ୍ଗିପଡିବା ଦେଖି ସନା କେଇ କହିଲେ ହଇରେ ତୁ ସେମିତି ହେଲେ ଶବ ସତ୍କାର କିପରି ହେବ । ଯା, ଯା, ଲାଗିପଡ, ହେଳା କଲେ ଚଳିବନି ।

ବୋଉ ଓ ପିଉସି ନାନୀ  କାନ୍ଦିବାକୁ ଆରମ୍ଭ କରିଦେଲେ । ହେଲେ ମୋଟେ କାନ୍ଦିବାକୁ ଫୁରସତ କାହିଁ ! ମୁଁ ଲାଗିଗଲି ଶବସତ୍କାର ଜିନିଷ ସଂଗ୍ରହରେ । ବାବୁଘର ଦାଣ୍ଡକୁ ଯାତ୍ରା ଦେଖିବାକୁ ଯାଇଥିବା ଭାଇନାଙ୍କୁ ଧରି ଅଣାଗଲା କ୍ରିୟା କରିବାକୁ । ସେହି ରାତିରେ ସବୁକାମ ଶେଷ ହୋଇଗଲା । ଦୋଳ ଆମର କାଳ ହେଲା । ହେଲେ ଯୁଗଯୁଗକୁ ନାମ ରଖିଦେଲେ ଗୋଲକ ବିହାରୀ ବୃନ୍ଦାବନ ଚନ୍ଦ୍ର ଗାଁର ଦରିଦ୍ରତମ ସର୍ବଜ୍ୟେଷ୍ଠ ବୃଦ୍ଧଙ୍କୁ ଦୟାକରି ଦର୍ଶନ ଦେଇ ଶେଷ ଜୀବନରେ ।

## ୧୪. ମୃତ୍ୟୁର ତାଣ୍ଡବ ଲୀଳା

ଆମେ ତିନିଭାଇ ଓ ତିନି ଭଉଣୀ । ବଡ ଭଉଣୀ ହେମନାନୀ । ଦେଖିବାକୁ ଖୁବ ସୁନ୍ଦର । କୋକିଳ କଣ୍ଠୀ । ସଂଧ୍ୟାରେ ଖୁବ୍ ମଧୁର ସ୍ୱରରେ ପ୍ରାର୍ଥନା ବୋଲେ । ତୃତୀୟ ଶ୍ରେଣୀଯାଏ ପାଠ ପଢିଥିଲା । ଆମ ଭିତରେ ସେ ସବୁଠାରୁ ବଡ । ସେତେବେଳେ' ତ ସାନ ଝିଅ ପିଲାଙ୍କୁ ବିଭା ଦିଆଯାଉଥିଲା । ତଥାପି ଅନୁମାନ  ତେର କି ଚଉଦ ବର୍ଷ ବୟସରେ ତାକୁ ବାପା ମରିବା ପୂର୍ବରୁ ବିଭା କରି ଦେଇ ଯାଇଥିଲେ ।

ବିଭାଘରରେ ଯାକଯମକ ନଥିଲା । ଦୁଆର ବିଭା । ଶାଢୀ ପିନ୍ଧି, ସୁଆରି ଚଢି ଗୋଟେ ପରଶୁଣିରେ ଗୁଡଭରି ସାଙ୍ଗରେ ଧରି ବିଭା ହେବାକୁ ଯାଇଥିଲା । ବାପା ତ କନ୍ୟାଦାନ କରିବାକୁ ଯାଇଥିଲେ । ମୁଁ ଯାଇଥିଲି କୁଣିଆ ହୋଇ । ପନ୍ଦର ଦିନ ରହି ନୂଆ ପେଣ୍ଟ ଜାମା ପିନ୍ଧି ଫେରିଲି । ତାଙ୍କର ପୁରୁଣା ଅବକ୍ଷୟ ମୁଖ୍ଯ ଛୋଟ ଜମିଦାର ପରିବାର । କେବଳ ଜମି ଉପରେ ନର୍ଭର । ତାକୁହିଁ ବିକି ଭାଙ୍ଗି ଭଲରେ ଚଳୁଥିଲେ । ହେଲେ ବସିଖାଇଲେ ନଈବାଲି ସରେ । ପିଲା ହେଲେ ବି ସେ ଜମି ବିକ୍ରି ନ କରିବାକୁ ପରାମର୍ଶ ଦେଇ ସେଥିରୁ ଯାହା ଉପନ୍ନ ହେଉଛି ସେଇ ମଧରେ ଦୁଃଖ କଷ୍ଟରେ ଚଳିବାକୁ ନାନୀ ପରାମର୍ଶ ଦେଇ ଘରଟିକୁ ଭଙ୍ଗୁର ଅବସ୍ଥାରୁ ସୁଧାରିବାକୁ ଚେଷ୍ଟା କରିଥିଲା । ତେଣୁ ତାକୁ ଗୃହର ଲକ୍ଷ୍ମୀ ମର୍ଯ୍ୟାଦା ଘରେ ଓ ଗାଁରେ ଖୁବ୍ କମ୍ ଦିନେ ମିଳିଯାଇ ଥିଲା । ହେଲେ, ତାଙ୍କର ଜଣେ ଭାୟାଘରର ଲୋଲୁପ ଆଖି କ୍ରମେ ବାଲିରେ ତିଆରି ଏ ବନ୍ଧ ଭାଙ୍ଗି ସବୁ ଜମି ଉପରେ ତୀକ୍ଷ୍ଣ ଭାବେ ପଡିଥିଲା ।

ଜେଜେଙ୍କର ଶିଷ୍ୟ ବଂଶ ଦୂରାନ୍ତ ବନ୍ଧୁ  ଶତପଥୀ ବ୍ରାହ୍ମଣ । ତାଙ୍କର ସାଦର ନିମନ୍ତ୍ରଣରେ ମୁଁ ଯାଇ ନରହରିପୁରରେ ପନ୍ଦର ଦିନ ଖଣ୍ଡେ ରହିଗଲି । ସେଠିତ ଉପୁରି ଖାଇବାକୁ ମିଳୁଥିଲା । ତା ସାଙ୍ଗକୁ ଖେଳିବାକୁ ହରେକୃଷ୍ଣ, ରାଧାଶ୍ୟାମ ଇତ୍ୟାଦି ସାଙ୍ଗଥିଲେ । ଚୁଆରୁ ପାଣି ବୋହି ମାଛ ଧରିବା, ଆମ୍ବ ଗୋଟେଇବା, ଗାଁ ପିଲାଙ୍କ ସାଙ୍ଗରେ ଖେଳିବା ଇତ୍ୟାଦିରେ ମାତି ଖରା ଛୁଟିର ଅଧିକାଂଶ ଦିନ ସେଇଠି କଟିଗଲା । ଆସିଲା ବେଳକୁ ନୂଆ ଲୁଗା ଆଉ କ'ଣ କ'ଣ ଦେଇ ଆଣି ଗାଁରେ ଛାଡି ଦେଇଗଲେ । ଘରେ ପହଞ୍ଚି ଦେଖିଲି ବୋଉ ଗାଈକୁ ତୋରାଣି ଖାଇବାକୁ ଦେଉଛି ଓ କାନ୍ଦୁଛି । ପଚାରି ବୁଝିଲି ଯେ ହେମ ନାନୀ ଚାଲିଗଲା । କ'ଣ ଛୁଆପିଲା ହେବାର ଥିଲା । ସେତିକି ବେଳକୁ କ'ଣ ରୋଗ ବେମାର ହେଲା । ପିଉସୀନାନୀ ଯାଇ ତାକୁ କାମ ଦାମରେ ସାହାଯ୍ୟ କରୁଥିଲା । ହେଲେ ଯମ ସହିଲାନି । ସବୁଚେଷ୍ଟା ବିଫଳ ହେଲା ଓ ପ୍ରାୟ ପନ୍ଦର ବର୍ଷ ବୟସରେ  ତା'ର ବହୁ ଆକାଙ୍କ୍ଷିତ ଘର ସଂସାରର ଆଶା ମଉଳି ଗଲା । ଆମର ମଧ କେଉଁଠି ଲୁଚି ଛପି ଗୋଟେ ସହାୟତା କରିବାକୁ ଥିବା ଚେର ଟିକେକ କଟିଗଲା । ଏସବୁ ଶୁଣି ମୁଁ ଅବାକ୍ ହୋଇଗଲି । କାନ୍ଦିବାର ସମୟ ନଥିଲା । ଠାକୁରେ ରଖିବେ କହି ବସି ପଡିଲି । ଏହିପରି ଦେଢବର୍ଷ ମଧରେ ୪ ମୁଣ୍ଡଖାଇ ଘରକୁ ସଫା କରିଦେଲା ମୃତ୍ୟୁ ତାର ତାଣ୍ଡବ ଲୀଳା ଦେଖାଇ । ଏଥିଲା ଠାକୁରଙ୍କର ପରୀକ୍ଷା । ଶେଷରେ ରହିଲୁ ୫ଟି ନାବାଳକ ସନ୍ତାନ; କୁନ୍ତୀ, ପରି ବିଧବା ମାଁଙ୍କ ଉପରେ ବୋଝ ହୋଇ ।

## ୧୫. ବୃକ୍ଷ ଅବତାର

ଭଗବାନ ଦଶ ଅବତାର ହୋଇଥିଲେ ବୋଲି ଗୋସ୍ୱାମୀ ଜୟଦେବ  "ଗୀତ ଗୋବିନ୍ଦ"ରେ ଲେଖିଛନ୍ତି । ମାତ୍ର ଭାଗବତକାର ୨୪ ଅବତାରର ସୂଚନା ଦେଇଛନ୍ତି । ତା ବାହାରେ ଭାଗବାନ ବସ୍ତ୍ରରୂପେ ଅବତାର ଗ୍ରହଣ କରି ଦ୍ରୌପଦୀର ଲଜ୍ଜା ନିବାରଣ କରିଥିଲେ । ଚକ୍ର ରୂପ ଧାରଣ କରି କୁମ୍ଭୀରକୁ ମାରି ଗଜକୁ ଉଦ୍ଧାର କରିଥିଲେ । ଝଡ ବର୍ଷାର ଅବତାର ଗ୍ରହଣ କରି ମୃଗୁଣୀକୁ ଏତେବଡ ବିପତ୍ତିରୁ ରଖିଥିଲେ ଇତ୍ୟାଦି ଇତ୍ୟାଦି ।

ଜେଜେମା ମରିଯିବା ପରେ କକେଇ ଘର ଛାଡିଲେ । ବାପା, ମା ଓ ଜେଜେ ଏବଂ ନାନୀ ତଡାତଡି ହୋଇ ଜଣକ ପରେ ଜଣେ ଚାଲିଗଲେ । ଜମିବାଡି ତ ନଥିଲା । ରୋଜଗାର କରିବାକୁ ମଧ କେହି ନ ଥିଲେ । ଖାଲି ଥିଲେ ଖାଇବାକୁ ପାଞ୍ଚଟି ନାବାଳକ ପିଲା ଓ ବିଧବା ମା । ରାତି ପାହିଲେ ଏମାନଙ୍କର ଖାଇବାକୁ ଖାଦ୍ୟ ଓ ପିନ୍ଧିବାକୁ ବସ୍ତ୍ର ଲୋଡା । ଏହାଛଡା ବ୍ରାହ୍ମଣ ଘରର ବାର ବ୍ରତ ତେର ଓଷା । ସାଙ୍ଗକୁ ଚାରି ଚାରିଟା ଶ୍ରାଦ୍ଧ ମଉଳା, ଦୋଳ, ପାର୍ବଣ, ଗହ୍ମା, ରେଖାପଞ୍ଚମୀ, ମାଣବସା, ପଣ୍ଡୁଓଷା ଓ ଘର ଛପର ଇତ୍ୟାଦି ବଡ ବଡ ଖର୍ଚ୍ଚ । ମା କୁନ୍ତୀ ଏ ପାଞ୍ଚଟି ନାବାଳକଙ୍କୁ ଧରି କେବଳ ଠାକୁରଙ୍କୁ ଡାକି ଲୁହ ଗଡାଇବା ଛଡା ଆଉ

କ'ଣ ବାଟ ଥିଲା ? ନିଃସହାୟ ଦ୍ରୌପଦୀଙ୍କୁ ବସ୍ତ୍ର ଅବତାର ହୋଇ ଠାକୁରେ ରକ୍ଷା କରିବା ପରି ଆମପାଇଁ ସେହି ଦୟାମୟ, ଦୀନବନ୍ଧୁ କରୁଣା ସାଗର ବୃକ୍ଷ ଅବତାର ଗ୍ରହଣ କରିଥିଲେ । ଏ କଥାଟି ଅଙ୍ଗେ ନିଭାଇବା ଲୋକ ଛଡା କେହି ବିଶ୍ୱାସ କରିପାରିବେନି । ଜେଜେଙ୍କ ଅମଳର ଏଗାରଟି ନଡିଆଗଛ ଥିଲା । ସେଥିରୁ ଦୁଇଟି ବୁଢା ଓ ବାକି ୯ଟି ଗଜା ଫଳନ୍ତି । ଆମର ଯେତେବେଳେ ଅନ୍ୟକୌଣସି ଉପାୟ ନ ଥିଲା ଏ ଗଛ ତାଙ୍କର କରୁଣାର ଧାରା ବର୍ଷଣ କରିବାକୁ ଆରମ୍ଭ କରିଦେଲେ । ପ୍ରତି ସପ୍ତାହରେ ଥରେ ବା ଦୁଇ ଥର ଚନ୍ଦରା ଚମାର ଆସି ପାକଳ ବା ଅଧାପାକଳ ନଡିଆ ଯାହାପାଏ ତୋଳିଦିଏ । ବୋଉ ନଡିଆ ଗୁଡିକୁ ପଟଳା କଟା ଛଡାଇ ଖରାକୁ ଡେରି ରଖିଦିଏ । ଆଉ ମୁଁ ଟୋକେଇରେ ପୁରେଇ ତାକୁ ମୁଣ୍ଡେଇ ନେଇ ଦି ମାଇଲି ଦୂର ନିଶ୍ଚିନ୍ତକୋଇଲି ହାଟରେ ବିକି ଟଙ୍କା ଆଣେ । ସେଥିରେ କିଣା ହୁଏ ଖାନମଣ୍ଡି - ଚାଉଳ । ସେତେବେଳେ ନଡିଆ ବହୁତ ଶସ୍ତା । ସେଥିକୁ ଚାହିଁ ଚାଉଳ ମଧ୍ୟ ଶସ୍ତା ଥିଲା । ପିଲାଲୋକ, ଖରାରେ କଞ୍ଚା ନଡିଆ ବୋଝ ମୁଣ୍ଡାଇ ପ୍ରାୟ ସବୁ ପାଳି କୋଶେ ବାଟ ଖରାରେ ଯାଇ ବିକି ସନ୍ଧ୍ୟାକୁ ଫେରିବାକୁ ହୁଏ । ସେହିଦିନୁ ବେକଟି ଟିକେ ଆଗକୁ ବଙ୍କା ହୋଇଯାଇ ଏବେ ମଧ୍ୟ ସେ ଦିନର ଦୁଃଖକୁ ସ୍ମରଣ କରାଇଦିଏ । ଏ ଦୁଃଖ ସେହି ଦୀନବନ୍ଧୁ ଦରିଦ୍ର ସଖାଙ୍କ ଛଡା କିଏ ବୁଝିବ ଓ ଜାଣିବ ? ଏବେ ମୋ ପିଲାଙ୍କୁ ଏକଥା କହିଲେ ସେମାନେ ମିଛବୁଝି ହସୁଛନ୍ତି । ତା ସାଙ୍ଗକୁ ଥିଲା ଗୋଟେ କାଗେଜି ଗଛ । ସେଥିରେ ବର୍ଷକୁ ଦୁଇ ତିନିଥର ଫଳ ଆସେ । ପଇସାକୁ ତିନିଚାରିଟା ବିକ୍ରିହୁଏ । ବେଳେବେଳେ କେହି କେହି ତାକୁ ନେଇ ବଦଳରେ ଶାଗ ବା କିଛି ଶସ୍ତା ପରିବା ମଧ୍ୟ ଦିଅନ୍ତି ।

ଆଉ ଗୋଟିଏ କାଳୀଗାଈ ଥିଲା । ତା କଥା ବଡ ବିଚିତ୍ର । ସେ ନଅଟାରୁ ସନ୍ଧ୍ୟାଯାଏ ଗାଈରଖୁଆଳ ଦାୟିତ୍ୱରେ ନାଳପାରି ହୋଇ ଯାଇ ନଈ କୂଳରେ ଘାସ ଚରି ଆସେ । ଘରେ ତ ପିଲାଙ୍କୁ ତୋରାଣି ମନ୍ଦେ ମିଳେନି; ଆଉ ଗାଈକୁ କୋଉଠୁ ମିଳିବ ? ଯାହା ପାଣି, ଫେନ, କୁଣ୍ଡା, ଘରଛାଁ କଳା ନଡା ମିଳେ ତାହାହିଁ ଖାଏ । ପେଟରେ ଏପଟୁ ଡାମଣ ମାରିଦେଲେ ସେପଟକୁ ଫୁଟିଯିବ । କିନ୍ତୁ ସେ ଏଓଳି ସେଓଳି କ୍ଷୀର ଦିଏ ଦୁଇସେର । ତାର ମୂଲ୍ୟ ବାରଣା କି ଟଙ୍କାଏ । ବୋଧେ କେଉଁ ଜନ୍ମର ଧାରୁଆ ଥିଲା । ବର୍ଷରେ ଥରେ ଗୁଆ ତୋଳି ଶୁଖାଇ ବିକି ଘର ଛପର ପାଇଁ ଛଣ କିଣା ଓ ମୂଲିଆ ମଜୁରୀ ଉଠାଯାଏ । ଏସବୁ ସେହି ଦୀନ ବାନ୍ଧବଙ୍କ ଦାନ ଛଡା ଆଉ କ'ଣ ? ସେବେ' ତ ବୁଝି ନ ଥିଲି । ଏବେ ହାଡେ ହାଡେ ବୁଝୁଛି ଯେ ସେହି ଦୟାମୟ ଦୀନବନ୍ଧୁ କରୁଣା ସାଗର ମା କୁନ୍ତୀଙ୍କ ସହ ପଞ୍ଚୁପାଣ୍ଡବଙ୍କୁ ସଦା ସହାୟ ହେଲାପରି ବୃକ୍ଷ ଅବତାର ହୋଇ ଢୋକେ ପିଇ ଦଣ୍ଡେଜୀଇଁବାର ବ୍ୟବସ୍ଥା କରିଦେଇଥିଲେ । ଆଉ ଆମ କାଳୀଗାଈ । ସେ'ତ ସାକ୍ଷାତ୍ ମା'ପରି, ତା କଥା କ'ଣ କହିବା ! କିଛି ଦାନା ନଖାଇ ସେ କ୍ଷୀର ଦେଇ ସେ ବଞ୍ଚାଇଦେଲା ଏତେ ବଡ ସଂସାରକୁ । ସେ ନାଟୁଆ ବା ଓଲିଆ ନଥିଲା ।

ସେ କାଳୀ ଗାଈର ଦୁଧ ବଡ ମିଠା । ହେଲେ ସେ ପେଟ ବିକଳରେ ବେଳେ ବେଳେ ଯା ତା ବାଡି ବିଲକୁ ପଶି ଦୁଇଚାରି ପାଳୁଳି ଖାଇବା ସାଙ୍ଗକୁ ନୋଳାବସା ଖୁବ୍ ପାହାର ମଧ ଆମପାଇଁ ଖାଏ । ଦିନକର ଅଭୁଲା କଥା । ସେ ଆମ ପଡୋଶୀ କାଳୀଦାଶଙ୍କ ବିଲରେ ପଶିଯିବା ଦେଖି ସେ'ତ ତାକୁ ଯାହା ପିଟିଲେ ପିଟିଲେ । ଗାଣ୍ଡିମୁଣ୍ଡରୁ ଲୁଗା ଟେକି ମୋ ବୋଉକୁ ବହୁତ ଗାଳି ଦେଲେ; ଯାହାକୁ ବୋଉ ବା ଆମେ ସହିନପାରି କେବଳ କାନ୍ଦିଲୁ ଓ ଠାକୁରଙ୍କୁ ଡାକି ତୁନି ରହିଲୁ । ଦୋଷ'ତ ଆମର । ପୁଣି ଆମେ ନିର୍ବଳ । ବାସ୍ତବରେ ସେ ଗାଳି ଅସହ୍ୟ । କିନ୍ତୁ ସେହି ଦାମୋଦର ଯେକି ମା' ଯଶୋଧାରାଙ୍କ ପାଞ୍ଚଣ ମାଡକୁ ବନ୍ଧାହୋଇ ନିର୍ବିକାରରେ ସହିଥିଲେ ସେ ହିଁ ଆମକୁ ଧୈର୍ଯ୍ୟ ଦେବା ସହ ଦୁଃଖକୁ ପୋଛିବାକୁ ବହୁତ ଲୁହଦେଇ ସେ କାଳିମାକୁ ଧୋଇ ଦେଇଥିଲେ । ଦିନଯାଏ, କଥାରହେ । ମଲାଯାଏ ଏ କଥା ମନେ ରହିବ । ତାକୁ ପୁଣି ସେହି ଚକାଡୋଳା ତାଙ୍କ ମୃତ୍ୟୁର ସ୍ପର୍ଶରେ ଲିଭାଇବେ ସିନା । ଏହି ଅଧ୍ୟାୟର ସାର କଥାଟି ହେଉଛି, କେହି ବିଶ୍ୱାସ କରୁ ବା ନ କରୁ; ସେହି ଦିନଠାରୁ କାଳୀ ଆମକୁ ବୋଲଣା କରି କାହା ବାଡିରେ ପଶିନି; ମଲାଯାଏ । ଆମେ ସିନା ଗାଳି ମନ୍ଦ ସହିଗଲୁ । ଠାକୁରେ ସହି ନପାରି କାଳୀଗାଈକୁ ସଦ୍‌ବୁଦ୍ଧି ଦେଇଦେଲେ ।

## ୧୬. ଡାକ୍ତରି ପାଉଣା

ଶାଗଖିଆ ପେଜଖିଆକୁ ଦେଖିପାରେନି । ଗରିବ ଭିତରେ କିଏ ବଡଲୋକ । ଦୁଃଖୀ ଭିତରେ କିଏ ଅତି ଦୁଃଖୀ । ଏ ସବୁ'ତ ବିଚାର ହୁଏ । ଅବଶ୍ୟ ବଡ ଲୋକେ ବା ଏପରିକି ମଧ୍ୟବିତ୍ତ ଲୋକେ ଏ ବିଷୟ ବୁଝି ପାରିବେନି । ହେଲେ ଗରିବଙ୍କୁ ଆଖିରେ ଦେଖି ନଥିବା ଓ ଗରିବ ଶବ୍ଦର ଅର୍ଥ ଜାଣି ନଥିବା ଲୋକେ ଏ ଦେଶର ପ୍ରଧାନମନ୍ତ୍ରୀ ହୋଇ "ଗରିବି ହଟାଓ" କାର୍ଯ୍ୟକ୍ରମ କରି ଅମର ହୋଇ ଯାଇଛନ୍ତି । କାରଣ ତାଙ୍କ ବାପା ରଜା ରାଜୁଡା କଣ, ପ୍ରଜା କ'ଣ ଏସବୁ ବୁଝାଇ ପଢିବା ବେଳେ ଚିଠି ଲେଖି ତାଙ୍କୁ ଏ ଦେଶକୁ ଚିହ୍ନାଇ ଦେଇ ଯାଇଥିଲେ ।

ଆମ ପାଞ୍ଚ ଜଣଙ୍କ ମଧ୍ୟରେ ଭାଇନା ସବୁଠାରୁ ସୁଖୀ; କାରଣ ସେ ହାଇସ୍କୁଲରେ ପଢିବାକୁ ଅସୁରେଶ୍ୱରକୁ ଚାଲିଯାଇଥିଲେ ଓ ସେଠିମଧ୍ୟ ମେସ୍‌ରେ କିଛିଦିନ ରହିଥିଲେ । ସେ ଆଗ ପାଠପଢି ଗଲେ ଆମ ଦୁଃଖ ଯିବ ବୋଲି ବୋଉର ଧାରଣା । ତାଙ୍କ ପାଠପାଇଁ ଘରର ବାସନ କୁସନ, ଗହଣା ଗାଣ୍ଠି ଓ ଶେଷରେ କବାଟ ତଡାଯାଇ ବିକ୍ରୀ ହୋଇ ଟଙ୍କା ଦିଆଯାଉଥିଲା । ଠିକ୍ ଯେପରି ସମସ୍ତଙ୍କ ଛତୁସରା ଖାଇ ଶକୁନି ବଞ୍ଚିଥିଲେ ଗାନ୍ଧାର ସେନଙ୍କ ବଂଶ ନାଶର ପ୍ରତିଶୋଧ ପାଇଁ । ହେଲେ ତାଙ୍କ ସ୍କୁଲ ପାଠ ମଧ୍ୟ ଅଧାରୁ ରହିଲା । ସେ ଶେଷ ପର୍ଯ୍ୟାୟରେ ବୈଷୟିକ ଶିକ୍ଷା ପାଇଁ କଟକ ଚାଲିଆସିଲେ । ଷ୍ଟାଇପେଣ୍ଡ ପାଇ ପାଠପଢିଲେ ।

ସେହିପରି ଆମ ଭିତରେ ସବୁଠାରୁ ଦୁଃଖୀଥିଲା ସାନ ଭଉଣୀ କୁଞ୍ଜ । ସେ କୋଡରେ, ଥାଏ । ବାପା ମଲେ, ଜେଜେ ମଲେ, ନାନୀମଲା, ତା ସାଙ୍ଗକୁ ବୋଉକୁ ବାତଜ୍ୱର ଯୋଗୁଁ

ସେ ମା କ୍ଷୀର ମଧ ଠିକ୍ ଭାବେ ପାଏନି । ଖାଦ୍ୟର'ତ ଘୋର ଅଭାବ । ସେଥିପାଇଁ ସେ ସ୍ୱାସ୍ଥ୍ୟରେ ମଧ ସବୁଠାରୁ ଆମ ମଧରେ ଦୁର୍ବଳ । ଏବେ ମଧ ସେହି ଦୁର୍ବଳତାର ଚିହ୍ନ ସେ ବହନ କରେ ।

ବୋଝ ଉପରେ ନଳିତା ବିଡାପରି ତାକୁ ଥରେ ଆନ୍ତ୍ରିକଜ୍ୱର ବା ଟାଇଫଏଡ ହେଲା । ମୂଳରୁତ ଜଣାନଥିଲା । ବେଶୀଦିନ ଜ୍ୱର ନ ଓହ୍ଲାଇବାରୁ ସନ୍ଦେହ ହେଲା । ସେତେବେଳକୁ ମାମୁଁ ଡାକ୍ତର ଅଜା (ଡା: ବ୍ରଜନାଥ ମିଶ୍ର) ଙ୍କ ଶାନ୍ତି ଔଷଧାଳୟରେ ବୈଦ୍ୟ ଥାଆନ୍ତି । ତାଙ୍କୁ ଯାଇ କହିଲି । ସେ ଡାକ୍ତର ଅଜାଙ୍କୁ ନେଇ ଦେଖାଇବାକୁ କହିଲେ । ସେତେବେଳକୁ ସେ ବୁଢା । ବାଡି ଖଣ୍ଡେ ଧରି ମୋ ସାଙ୍ଗରେ ଚାଲିଲେ ପାଞ୍ଚମାଇଲ ବାଟ । ବାଟରେ ତିନି ଚାରିଜାଗା ବସିବସି ଆସିଲେ । କୁଞ୍ଜକୁ ଦେଖିଲେ । ଟାଇଫଏଡ ବୋଲି ଚିହ୍ନିଲେ । ଔଷଧ ଦେଲେ । କହିଲେ ହେମ ବୋଉ ମୋ ଫିସ୍ କାହିଁ ? ତୋ ପୁଅ' ତ ମତେ ଅଧା ମାରି ସାରିଲାଣି । ମୋର କ'ଣ ପାଞ୍ଚ ମାଇଲ ଚାଲି ଆସିବାକୁ ଆଉ ବଳ ବୟସ ଅଛି ? ବୋଉ କହିଲା - ବକେଇ ମୋର କ'ଣ ଅଛି କ'ଣ ଦେବି । ଏଇ ପିଲାଙ୍କ ଭିତରୁ ଯାହାକୁ ନଉଛ ନିଅ । ସେ କହିଲେ ମୋର ଦରକାର ନାହିଁ । ତୁ ଗଣ୍ଡାଏ କାଗେଜି ତୋଳ ଆଉ ଦୁଇଟା କଖାଲଙ୍କା ଦେ । ସେତିକି ମୋର ଫିସ୍ । ବୋଉ ବହୁତ ବହୁତ ତୋଳି ଦେବାରେ ସବୁ ଫେରାଇ ଦେଇ ୪ଟି କାଗଜି ଓ ୪ଟି କଖାଲଙ୍କା ନେଇ ତାଙ୍କ ପୂତୁରା - ଆମ ପଡୋଶୀ ଗାଲୁ ପଣ୍ଡିତଙ୍କ ଘରକୁ ଗଲେ । ସେ ତାଙ୍କ ପୁରୁଣା ଘର । ସେଠିଖାଇ ଶୋଇଲେ । ତାଙ୍କ ପିଲାଏ ତାଙ୍କୁ ସାଇକେଲ ପଛରେ ବସାଇ ନେଇ ଛାଡିଲେ । ଧନ୍ୟ ସେ ମହାପ୍ରାଣଙ୍କୁ । ବିଦୁର ଘରେ ଶାଗ ଭାଜି ଖାଇ ଶ୍ରୀକୃଷ୍ଣ ସବୁ ଆଶୀର୍ବାଦ ଢାଳିଦେଲା ପରି ଡାକ୍ତର ରୂପରେ ବୃଦ୍ଧ ବ୍ରଜନାଥ ତାଙ୍କରି ଆଶୀର୍ବାଦରେ କୁଞ୍ଜକୁ ଭଲ କରିଦେଲେ ।

ଏଇ ମଣିଷ ଭିତରେ ଈଶ୍ୱର ଅଛନ୍ତି । ସେହିଁ ପ୍ରେରଣା ଦିଅନ୍ତି । "ସର୍ବସ୍ୟଚାହଂ ହୃଦି ସନ୍ନିବିଷ୍ଟ ବା ଅହଂହି ସର୍ବଭୂତାନାଂ ହୃଦେଷ୍ୱ ର୍ଜୁନତିଷଠି" । ଡାକ୍ତର ଅଜା ଯେକି ଠାକୁର ରାମକୃଷ୍ଣ ପରମହଂସଙ୍କ ଆଶ୍ରିତ ଥିଲେ ସେ ଭଲ ଭାବେ ଉପଲବ୍ଧି କରିଥିଲେ ଯେ ମାନବ ସେବାହିଁ ମାଧବ ସେବା । ତାଙ୍କରି ଯୋଗୁଁ ଦରିଦ୍ର, ଦୁର୍ବଳ, ରୋଗୀ ପିଲାଟିଏ ଜୀବନ ପାଇଗଲା । ଡାକ୍ତର ଅଜା ଆସିବାବେଳକୁ ସେ କଡରାଲଗା ହୋଇଯାଇଥିଲା । ସେ ଯେ ପୁନର୍ଜୀବନ ପାଇବ ଓ ସଂସାର କରିବ ସେ ଆଶା ନ ଥିଲା । ତେଣୁ ଅରକ୍ଷ ରକ୍ଷକ ସେଇ ଦୁର୍ବଳର ବଳ ସେଇ ଓ ସେହିଁ ସମସ୍ତଙ୍କର ଏକ ମାତ୍ର ଶେଷାଶ୍ରୟ । ୮୦ ବର୍ଷର ବୁଢା ବାଡି ଧରି ବାଟରେ ପାଞ୍ଚଥର ବସି ବସି କଷ୍ଟରେ ପାଞ୍ଚ ମାଇଲି ଚାଲି ଆସି ଯେଉଁ ଆଦର୍ଶ ଦେଖାଇଲେ ଏବର ସମାଜ ଓ ଯୁବପୀଢି ବିଶେଷକରି ସେବା କ୍ଷେତ୍ରରେ ଥିବା ଡାକ୍ତରମାନେ ସେଥିରୁ କିଛି ଶିକ୍ଷା କରିବା ଦରକାର । ଈଶ୍ୱର ସମସ୍ତଙ୍କୁ ଆଶୀର୍ବାଦ କରନ୍ତୁ - ଭଲ ବାଟ ଦେଖାନ୍ତୁ ।

## ୧୭. ବିପଦେ ନ ଦିଅନ୍ତି ଦେଖା

ବାପାଥିଲାବେଳେ ପିଣ୍ଡାରେ ବସାଇ କେତୋଟି ପିଲାଙ୍କୁ ଓଳିଏ ପାଠ ପଢାଉଥିଲେ ଓ ଦିନର ଅନ୍ୟ ସମୟ ବାଇଧର ମିଶ୍ରଙ୍କ ଦୋକାନରେ କାମ କରୁଥିଲେ । ପରେ ସେ ନିଜେ ସେଇଠି ଗୋଟେ ଛୋଟ ଦୋକାନ ମଧ୍ୟ କଲେ । ତେଜରାତି ଦୋକାନ । ଗାଁ ଗହଳରେ ସେ ବେଳରେ ଅଭାବ ତ ଲାଗି ରହିଥିଲା । ତେଣୁ ଅଧିକାଂଶ ଲୋକ କାଳିବାକି ଖାଇ ଚଳୁଥିଲେ । ପୁଣି ବହୁତ ମଗାଯଚାରେ ପଇସା ଆଦାୟକରି ବାପା ପୁଣି ଜିନିଷ କିଣି ବହୁ କଷ୍ଟରେ ଦୋକାନଟି ଚଳାଉଥିଲେ ।

ହେଲେ ତାଙ୍କର ଗୋଟେ ଭଲ ଅଭ୍ୟାସ ଥିଲା । ସେ ଯାହାକୁ ଯାହା ବାକି କାଳି ଦେଉଥିଲେ ସବୁ ଲେଖି ରଖୁଥିଲେ । ସେହିପରି ଯେ ଯାହା ଆଦାୟ ଦେଲା ତାକୁ ମଧ୍ୟ ଠିକ୍ ଭାବେ ଲେଖି ରଖୁଥିଲେ । ସେଥିପାଇଁ ନିୟମିତ ଖାତା କରି ହିସାବ ରଖୁଥିଲେ । ଟିକେ ଛାଟେଣି ଓ କରଣି ପରି ଅକ୍ଷର ହେଲେ ମଧ୍ୟ ବାଇଗଣ ମଞ୍ଜିପରି ପରିଷ୍କାର ଗୋଟି ଗୋଟି ଲେଖା । ସେ କାଳରେ ପାହୁଲା, ଅଧଲା, ପଇସା, ଅଣି, ଦୋଣି, ଚାରେଣି ଓ ଅଧୁଲିର ହିସାବ ପର-କଲମରେ ଓ ଦୁଆତ କାଳିରେ ସେ ଠିକ୍ ଠିକ୍ ଲେଖି ରଖୁଥିଲେ ସେ କାଳର ଲେଖା ଢାଞ୍ଚାରେ । ଦିନେ ବି କେହି ହିସାବକୁ ଅମାନ୍ୟ କରିବା ବା ବୁଡେଇ ଦେବାର ଆଶଙ୍କା ନ ଥିଲା । ତେଣୁ ତାଙ୍କ ଲେଖାହିଁ ବେଦ । କେତେ ବର୍ଷ ଧରି ଏପରି ଚାଲିଥିଲା ।

ବାପା'ତ ହଠାତ୍ ମରିଗଲେ । ଦୋକାନ ବନ୍ଦ ହୋଇଗଲା । ହେଲେ ସେ ଖାତାକୁ ଆଣି ସାଇତି ରଖିଥିଲୁ । ଆଶାଥିଲା ନିଶ୍ଚୟ ସେଥିରୁ ବାକି ଆଦାୟ ହେବ; ଆଉ ଆମେ ସେଥିରେ କିଛିଦିନ ଚଳିଯିବୁ । ଆମର ସେ ଆଶା ଆଶାରେ ହିଁ ରହିଗଲା ।

ଗାଁ ଗହଳିରେ ଅନ୍ଧାର ରାତିରେ ପଇସାକର କିରାସିନି କାଳି ନ ଦେଲେ ଘର ଅନ୍ଧାରରେ ରହିବ ଓ ଅନ୍ଧାରରେ ଅଣ୍ଡାଳି ଖାଇବାକୁ ଓ ଶୋଇବାକୁ ପଡିବ । ଲୁଣଟିକେ ନଥିଲେ ଅଲଣା ଖାଇବାକୁ ହେବ । ଏଭଳି ଦୁର୍ଦ୍ଦିନରେ ବାପା ବାକି ଦେଇ ଯାହାଙ୍କର ଗୁଜୁରାଣ ମେଣ୍ଟାଇ ଥିଲେ ଆମ ଦୁଃଖ ବେଳେ ସେ ଆଡ ଆଖିରେ ମଧ୍ୟ ଆମ ମୁହଁକୁ ଚାହିଁଲେନି । ବିଶ୍ୱାସ କରନ୍ତୁ ବା ନ କରନ୍ତୁ ସେ ବେଳରେ ଶତାଧିକ ଟଙ୍କାର ବାକି ଖାତାଟିର ଶହେରୁ ଅଧିକ ଗରାଖଙ୍କ ମଧ୍ୟରୁ କେହି ଜଣେ ହେଲେ ଅଧଲାଏ କି ପାହୁଲାଏ ମଧ୍ୟ ଦେଲେନି ବା ଦବାକୁ ଦୟା ମଧ୍ୟ ପ୍ରଦର୍ଶନ କରି ପଦେ କଥା ମଧ୍ୟ କହିଲେନି ।

"ସମ୍ପଦକାଳେ ସର୍ବେସଖା-ବିପଦେ ନ ଦିଅନ୍ତି ଦେଖା" କଥାଟି ଏଠି ଶହେକୁ ଶହେ ନମ୍ବର ପାଇ ତାର ସତ୍ୟତା ପ୍ରକାଶ କରେ । ଏବେ ମଧ୍ୟ ସେ ଖାତାଟିକୁ ଆମର ସ୍ମୃତି ପାଇଁ ରଖାଯାଇଛି । ଯାହାଙ୍କୁ ଅସୁବିଧାବେଳେ କାଳି ବାକିଦେଇ ସାହାଯ୍ୟ କରାଯାଇଥିଲା

ସେମାନେ ଆମର ବିପଦବେଳେ, ଅସୁବିଧାବେଳେ ଆଡ ଆଖିରେ ଅନେଇଲେନି । ସେତେବେଳେ ସୁନା ଭରି ଅଶୀଗୁ ଶହେ ଟଙ୍କା ଥିଲା । ଏବେ ବାରହଜାର ଟଙ୍କା । ସେହି ହିସାବରେ କେତେଟଙ୍କା ହେବ ହିସାବ କରନ୍ତୁ । ଏହି ନିର୍ଲଜ ଲୋକମାନେ ସିନା ବାକି ସୁଝିଲେନି ହେଲେ ଆମର ଏହିପରି କିଏ ସବୁ ପୂର୍ବ ଜନ୍ମର ଧାରୁଆ ଥିଲେ ବୋଧେ । ଠାକୁରେ ତାଙ୍କୁ ବିଭିନ୍ନ ରୂପରେ ଆମଧାର ସୁଝିବାର ସୁଯୋଗ ଦେବାକୁ ପଠାଇଦେଲେ । ସେହି ଦେବ ପ୍ରେରିତଙ୍କ ଶତଶତ ସହାନୁଭୂତି ଓ ସାହାଯ୍ୟ ହିଁ ଆମକୁ ବଞ୍ଚାଇ ରଖିଥିଲା । ତେଣୁ ଯାହାକୁ ରଖନ୍ତି ଅନନ୍ତ କି କରିପାରେ ବଳବନ୍ତ !

## ୧୮. ମହନ୍ତ ହବା ନୋହିଲା

ବଡପୁଅ ବାପାଙ୍କର । ସେ'ତ ଏକା ବ୍ରତ ହୋଇଥାନ୍ତି । କ୍ରିୟା ଧରିଥାନ୍ତି । ଶ୍ରାଦ୍ଧ, ପିଣ୍ଡ ପାଣି ଦେବାକୁ ସେ କାରେଣି । ସାନପୁଅ ମା'ର । କୋଡପୋଛା । କୋଉ କାମ କରିବାକୁ ଅକ୍ଷମ ଥାଏ । ଝିଅପିଲା ଦିଟାଙ୍କୁ କିଏ ପଚାରେ । ଖାଲି ପୋଷା ହେବେ ଆଉ ଶେଷକୁ ପରଘରକୁ ଯିବେ ଖର୍ଚ୍ଚାନ୍ତ କରି । ତେଣୁ ବଳକା ରହିଗଲା ମଝିଆଁ ପୁଅ । ସେ ମଝି ନଈରେ । କାହାରି ନୁହେଁ । ତେଣୁ ସମସ୍ତଙ୍କ ଆଖି ତା'ରି ଉପରେ । ଅଜୀଗର୍ତ୍ତ ଋଷିଙ୍କର ମଝିଆଁ ପୁଅ ଶୂନସେପ ଏହି ନ୍ୟାୟରେ ଯଜ୍ଞପଶୁ ପାଇଁ ବିକ୍ରୀ ହୋଇଯାଇଥିଲେ । ଏହି ନ୍ୟାୟରେ ପ୍ରଥମେ ଗୋଟେ ଦୁଇଟି ପ୍ରସ୍ତାବ ଆସିଲା ପୁଅ କରିଦେବାକୁ । ବୋଉ କହିଲା ମୋ ଶାଶୁ କହିଛନ୍ତି ପୁଅଗୋଟେ ଲକ୍ଷେ ଟଙ୍କା । ତେଣୁ ମୁଁ କାହିଁକି ପୁଅ କରିଦେବି । ତାଙ୍କ କପାଳରେ ଯାହାଥିବ ।

ତାପରେ ପ୍ରସ୍ତାବ ଆସିଲା ମହନ୍ତ ହେବାକୁ ଘରୋଇ ମଠରେ । ସେଠି ମହନ୍ତ ବିଭାସାହା ହୁଅନ୍ତି । ବାବାଜୀ ହେବାର ନାହିଁ । ବହୁତ ସମ୍ପତ୍ତି ଅଛି । ସବୁର ମାଲିକ ହବ । ଏବେକାର ମହନ୍ତର ସ୍ତ୍ରୀ ନାହିଁକି ପିଲାନାହିଁ । ସେ ବ୍ରତ କରିବ, ରନ୍ଧାବଢା, ପୂଜା ମନ୍ତ୍ର ଶିଖାଇବ, ମଣିଷ କରିବ । ଶେଷରେ ଗାଦିରେ ମହନ୍ତ ହେବ । "ଯେତେ କହିଲେ ଭାଗବତ–...", ବୋଉ ଆମର ମୁହଁ ମୋଡି ଦେଲା । ସେ ପ୍ରସ୍ତାବଟି କାଟ ଖାଇଲା । ବାସ୍ତବରେ ସେ ସମୟର ଦୁଃଖ ଦେଖି ବହୁତ ଲୋକ ବହୁତ ପ୍ରସ୍ତାବ ଦେଉଥିଲେ । ଦୁଃଖର ଅନ୍ତ ନାହିଁ । ମୁହଁରେ କହିହବନି କି କାଗଜ କଲମରେ ଲେଖି ହବନି । ଦିନ ଦିନକର ଘଟଣା ମନେ ପଡିଲେ ଦେହ ଶୀତେଇ ଉଠେ । ବର୍ଷାଦିନ । ଚାଳରୁ ପାଣି ଗଳୁଛି । କାନ୍ଥରୁ ମାଟି ଖସି ପଡୁଛି । ଘରେ ଭାତ ନାହିଁ । ଚାଉଳ ଉଧାର ଆଣିଲେ ଜାଳ ଟିକେ ଶୁଖିଲା ନାହିଁ ତାକୁ ରାନ୍ଧିବାକୁ । ଦେହରେ ଲୁଗା ଅଧାଭିଜା । କଂସାଏ ଖାଲି ଚୋରାଣିରୁ ଉପରୁ ଉପରୁ ବୋଉ ପାଣିଟିକେ ପିଇଦେଇ ଟିକେ ମଣ୍ଡିଟିକେ ପିଲାଙ୍କୁ ପିଆଇ ବଞ୍ଚାଇ ରଖେ । ଏମିତି କେତେ ଦିନ କେତେ ରାତି ଯାଇଛି । ତା'ର କିଏ ହିସାବ ରଖିଛି !

ଏ ଦୁର୍ଦ୍ଦଶା ଦେଖି କେହିଜଣେ କହିଲେ ଏ ପିଲାକୁ ଅନାଥାଶ୍ରମକୁ ପଠାଇଦିଅ । ସେଠିକାଳେ ରହିବା, ଖାଇବା, ପିନ୍ଧିବା ଓ ପାଠ ପଢିବାର ସୁବିଧା ଅଛି । ଏକଥା ଶୁଣି ବୋଉ ଆଉ ସମ୍ଭାଳି ପାରିଲାନି । ତା'ର ଛାତି କୋରି ହୋଇଗଲା । ସେ କହିଲା ମୋ ଛୁଆକୁ କ'ଣ କିଏ ପୋଷୁଛି ନା ପାଳୁଛି ? ତାଙ୍କ ପାଇଁ ଏତେ ଲୋକଙ୍କର କାହିଁକି ମୁଣ୍ଡ ବିନ୍ଧୁଛି ? ବାସ୍ତବରେ ଆମର ଦୁଇଟି ଭାଇଆଳିଆ ପରିବାର ନିମ୍ନ ମଧ୍ୟବିତ୍ତ ଥିଲେ ମଧ୍ୟ ଦିନେ ଗଣ୍ଡେ ଖାଇବାକୁ ତାକି ନାହାଁନ୍ତି କି ପଇସାଟିଏ କି ମାଣେ କି ସେରେ ଚାଉଳ ବି ଧାର ଦେଇନାହାଁନ୍ତି । କଥାରେ ଅଛି ପରା; ଯମକୁ ସାତ ପୁଅ ଦବ - ଭାଗାରୀକୁ ଗୋଟିଏ ଦବନି । ଏ କଥାଟି ଏଇଠି ଅକ୍ଷରେ ଅକ୍ଷରେ ସ'ତ ପ୍ରମାଣିତ ।

ପଞ୍ଚୁପାଣ୍ଡବଙ୍କ ସହ କୁନ୍ତୀଙ୍କୁ ରଖିଛନ୍ତି ଚକ୍ର ଉହାଡ କରି ସେହି ଦରିଦ୍ରର ସଖା ଦୁଃଖୀର ବାନ୍ଧବ କୃଷ୍ଣ । ହେଲେ ଯାହାକୁ ରଖନ୍ତି ଅନନ୍ତ କି କରିପାରେ ବଳବନ୍ତ । ସେଇ ଅନାଥର ନାଥ, ଦୁଃଖୀର ବାନ୍ଧବ ଦିନ ରାତି ସବୁବେଳେ ଆଖିଖୋଲି ଆମକୁ ଚାହିଁ ଜଗି ରହିଥିଲେ ।

## ୧୯. ବ୍ରାହ୍ମଣ ମୁଖେ ମୋ ଆହାର

ଅନ୍ତବାବୁ ହେଉଛନ୍ତି ରାମ ବ୍ରହ୍ମାଙ୍କ ୨ୟ ପୁତ୍ର । ଜମିଦାର ବଂଶର । ନିଃସନ୍ତାନ । ସେଥିପାଇଁ ଗୋରଡା ବଂଶରୁ ପୁଅଟିଏ କରିଆଣିଥାନ୍ତି । ଖୁବ୍ ଡେଙ୍ଗାଲୋକ । ଦେହଯାକ ବାଳ । ବଡ ପାଟିଆ । ତାଙ୍କର ଜମିଦାରୀ ଓ ଦେଢି କରଜ ସିରସ୍ତା ଖୁବ୍ ଛୋଟ । ଗୁମାସ୍ତା ନ ରଖି ସେ ନିଜେ ଲେଖାପଢା କରନ୍ତି । ହାତଚାଷ ଥିଲେ ମଧ୍ୟ ସ୍ଥାୟୀ ଚାକର ବାକର ନଥିଲେ । କୋଠିଆ ରଖି ଓ ଦିନି ମୂଲିଆ ଲଗାଇ ଚାଷ ଉଠାଇ ନିଅନ୍ତି । ଛୋଟ ବଡ ହୋଇ ଅଢେଇ ଖଣ୍ଡ ଚାଳଘର । ସବୁବେଳେ ଲିପା ପୋଛା, ଧୁଆ ପହଁରା ହୋଇ ସଫା । ଠାକୁର ଘରର ଦାୟିତ୍ୱ ମଧ୍ୟ ତାଙ୍କର ନିଜର । ପୁଅ ଅବଶ୍ୟ ଅକାଳେ ସକାଳେ ସେ କାମରେ ସାହାଯ୍ୟ କରେ କିନ୍ତୁ ରଙ୍ଗ ବୋଉଙ୍କ ମନକୁ ପାଏନି ।

ରଙ୍ଗବୋଉ ଧୁଆ, ଲିପା, ପୋଛା ସାଙ୍ଗକୁ ରୋଷେଇ କରନ୍ତି । ଅନ୍ତବାବୁ ଦରକାର ବେଳେ ସାହାଯ୍ୟ କରନ୍ତି । ରୋଷେଇ ଶେଷରେ ଦିଅଁଙ୍କୁ ଭୋଗ ଲାଗିବା ପରେ ଖିଆପିଆ ହେଲା ବେଳକୁ ଦିନ ବାରଟା କି ଗୋଟାଏ । ସେତେ ବେଳକୁ ଦୁଇଜଣ ଯାକ ନୟାନ୍ତ ଓ ଭୋକିଲା ହୋଇଯାଇଥାନ୍ତି । ତେଣୁ କଥା କଥାକେ କଳି ଲାଗିଯାଏ । ହାତ ଧୋଇ ଧୋଇ ହାତରେ ଧଳା ପାଣିକନ୍ଦା ସବୁଦିନେ ଲାଗି ରହିଥାଏ ରଙ୍ଗ ବୋଉ ସାନ୍ତାଣୀଙ୍କର ।

ହେଲେ ଅନ୍ତବାବୁଙ୍କର ଗୋଟିଏ ବ୍ରତ । ରଙ୍ଗ ବୋଉ ମଧ୍ୟ ସେଥିରେ ସହମତ । ଖାଇବା ଆଗରୁ ଦାଣ୍ଡ ଓ ବାଡି କାବାଟ ବନ୍ଦ ହେବ । କାଳେ କିଏ ଶୁଦ୍ରଲୋକ ଆସିଯିବ ବା ଡାକଦେବ । ତାଙ୍କର ଇଚ୍ଛା ଜଣେ ବ୍ରାହ୍ମଣକୁ ଖୁଆଇବେ । ସେ ଯେଉଁଠି ଖାଇବେ ତାଙ୍କ ଡାହାଣକୁ ପିଢା,

ପାଣି, ଲୁଣ, ଘିଅ ଥୁଆହେବ । ସେ ନିଜେ ଯାହା ଖାଇବେ ତାହାହିଁ ବାଢିଦେବେ ଓ ନିଜପାଇଁ ନେବେ । ଦିନେବି ପଖାଳ ଗଣ୍ଡେ ଯାଚି ନାହାନ୍ତି । ଖୁବ୍ କମ୍‌ରେ ଗରମ ଭାତ, ଡାଲି, ତରକାରୀ ଓ ଘିଅ ଖାଇବାକୁ ମିଳେ । ନିଜ ହାତରେ ଘିଅ ଢାଳି ଦେଲେ ଯାଇଁ ନିଜେ ଚଳୁ ଉଠାଇବେ । ଏଭଳି ଆତିଥ୍ୟ ପାଇଁ ପ୍ରସ୍ତାବ ଆସିବା କ୍ଷଣି ତାହା ଆମ ପକ୍ଷରେ ଖୁବ୍ ଆଗ୍ରହରେ ଗୃହୀତ ହୋଇଗଲା ଓ ଦିନାକେତେ ଚାଲିଲା । ମାତ୍ର ତାଙ୍କର ଯେଉଁ ମଧ୍ୟାହ୍ନ ଧୂପ ୧ ୨ଟା କି ଗୋଟାଏ ରେ ଉଠେ ତାହା ଠିକ୍ ସ୍କୁଲ ପଢା ସମୟ । ସ୍କୁଲ ଓ ପଢାଛାଡି କେମିତି ଖାଇବାକୁ ଆସିହେବ । ଯା ହେଉ ବହୁ ଅସୁବିଧା ମଧ୍ୟରେ କେତେ ଦିନ ଚାଲିଲା । ଯେତେଦିନ ଚାଲିଲା ଖୁବ୍ ଶ୍ରଦ୍ଧା ଓ ସମ୍ମାନର ସହ । ବ୍ରତ ନ ହୋଇଥିଲେ ମଧ, ବ୍ରାହ୍ମଣ ହୋଇ ନଥିଲେ ମଧ ସମାନ ସମ୍ମାନ ଓ ବ୍ୟବହାର ମିଳୁଥିଲା । ବୋଧହୁଏ ଦୟାମୟଙ୍କ ହୃଦୟ ଆସନ ଆମ ଦୁଃଖ ଦେଖି ଟଳିଗଲା । ସେ ଏ ବ୍ୟବସ୍ଥାଟି ଖଣ୍ଡିଦେଲେ ବିନା ଯାଚଜ୍ଞାରେ । ସବୁ ତାଙ୍କରି କରୁଣା ଓ ଅରକ୍ଷିତଙ୍କୁ ଦଇବ ସାହା ।

## ୨୦. ଗୁଡିଆ ଝିଅ

ବୁହାଳ ମାମୁଘର ଖୁବ୍ ବଡଲୋକ ଥିଲେ । ତାଙ୍କର କାଳେ ଆଗ କାଳରେ କଂସା କବାଟ ଥିଲା । ଅଜାଙ୍କ ଅମଳକୁ ଏତେ ସବୁ ନଥିଲା । କିନ୍ତୁ ବିରାଟ ଆଠ ବଖରା ଉଚ୍ଚା ବଡ ଘରର ବିରାଟ ଖଞ୍ଜା । ପଥର କୂଅ । ଠାକୁର ବାଡି । ସେ ମଠରେ ଜଗନ୍ନାଥଙ୍କର ସେବା । ଅଜା କାଳେ ଅମିନ ଥିଲେ । ଗାଁ ବ୍ୟତୀତ ସୁଦୂର ରେମୁଣାରେ ଜମି ଜମା କମାଇଥିଲେ । ଏବେବି ସେଠି କିଛି ସନ୍ତକ ରହିଛି ।

ହେଲେ ଅଜାଙ୍କର ଚାରି ଝିଅ । ପୁଅ ନଥିଲେ । ତେଣୁ ସେ ତାଙ୍କର ଭାଇଙ୍କର ପୁଅ ଦୁଇ ଜଣଙ୍କୁ ପୁଅପରି ପାଳି ମଣିଷ କରି ତାଙ୍କୁ ହିଁ ସବୁ ଦେଇଯାଇଥିଲେ । ଆମେ ଅଜାଙ୍କୁ ଦେଖିନୁ । ବୁଅ ଆଙ୍ଗୁଠିଆ ଆଈ ହାତରେ ଖାଲି କିଛି ଅଳଙ୍କାର ଓ ଅଳ୍ପ ଟଙ୍କା ଥିଲା । ବୁଢୀ ଦିନକୁ ସେ ବି ମାମୁଁ ଦୁଇଜଣଙ୍କ ହାତ ଟେକାକୁ ଚାହିଁ ରହିଥିଲେ । ସେହି ମାନେ ହିଁ ଶୁଦ୍ଧ ହେଲେ । ଦେବତା ସାହୀରୁ ଅଜା ଆମର ଉଠିଆସି ସେହି ପାଖ ମୌଜାର ସୁନାଇଲୋ ଗୁଡିଆ ସାହୀ ପାଖରେ ବଡ ଯାଗାବାଡି ନେଇ ଘର କରିଥିଲେ । ତେଣୁ ତାଙ୍କ ଝିଅମାନେ ବିଶେଷ କରି ମୋ ବୋଉ ବହୁତ ଗୁଡିଆ କାମ ଜାଣିଥିଲା । ସେ'ତ ଯେମିତି ମୁଢି ଫୁଟାଇବ ଗୁଡିଆଘର ଝିଅ ବି ଜାଣିବନି । ତେଣୁ ଯେଉଁମାନେ ଜାଣିଥିଲେ ସେମାନେ ତାକୁ ଗୁଡିଆ ଘର ଝିଅ ବୋଲି ଶ୍ରଦ୍ଧାରେ ବା କାମ ଆଦାୟ କରିବାକୁ ଗେହ୍ଲେଇ ହୋଇ ଡାକନ୍ତି । ବୋଉର ବରାଦ ମୁତାବକ ସେମାନେ ଚାଉଳ ପ୍ରସ୍ତୁତ କରି ଆଣି ନିଜେ ଚୁଲି ଜାଳନ୍ତି ଓ ବୋଉ ମୁଢି ଭାଜି ଦିଏ । ସେ ମୁଢିରୁ କିଛି କିଛି ଭାଗ ଆମ ପିଲାଙ୍କୁ ମଧ ମିଳେ । ସେହିପରି ଆମ ଢିଙ୍କିରେ

ସାଇର ଜଣେ ଅଧେ ଧାନ କୁଟାଇ ନିଅନ୍ତି । ବୋଉ'ତ ବାତ ଜରିଆ । ସେ ବସି ଶୁଖାଇ ଦିଏ, ପାଛୁଡି ଦିଏ ଆଉ କିଛି ଚାଉଳ ସେପାଇଁ ମିଳିଥାଏ । ଗାଈକୁ ପାଣି ତୋରାଣି ଦେଇ ପୋଷିବାଟା ବୋଉର ପୁରା ଦାୟିତ୍ୱ । ଆମେ ଅତି ପିଲା, ଗାଈ ମାରିବ ବୋଲି ତା ପାଖକୁ ଆମକୁ ଛାଡେନି । ନଡିଆ ଛଡେଇବା କାମ ସେ ମଧ ଜାଣେ ଓ କରେ । ଏହିପରି ଯେତେ ଫନ୍ଦି ଫିକର, କାମଦାମ ଓ ଚେଷ୍ଟାକଲେ ମଧ ଛଅ ପ୍ରାଣୀଙ୍କର କ'ଣ ପୁରାପେଟ ଦାନା ମିଳିବ । ତେବେ କୌଣସି ମତେ ଗୁଜୁରାଣ ମେଣ୍ଟିଯାଏ । ଯା ଦେବୀ ସର୍ବ ଭୂତେଷୁ ମାତୃ ରୂପେଣ ସଂସ୍ଥିତା । ମାତୃ ରୂପରେ ସେ କେବଳ ପାଞ୍ଚଟି ସନ୍ତାନକୁ ପୋଷଣ କରିବାକୁ ବୋଧେ ଜନ୍ମ ନେଇଥିଲା । ସୁଖ ବୋଲି କ'ଣ ସେ ଦିନେ ଜାଣିନି । ଗୁଡିଆ ଘର ଝିଅଟି ପାଚଲା ପିଜୁଳି, ମୁଗ ସିଝା, ଖୁଦ ଚାଉଳ ଭଜା ଭିଜାଇ ଖାଇ ତାର ଏକାଦଶୀ ବ୍ରତ ନିଷ୍ଠାର ସହ ପାଳନ କରେ । କେଉଁଦିନ ଖାଲି ତୁଳସୀ ପତ୍ରଟିଏ ଓ ପାଣିପିଇ କାମ ଚଳାଇନିଏ । ଏଠାରେ ଠାକୁର ମାତୃରୂପରେ ଅବତାର ନେଇ ପାଞ୍ଚଟି ନିଃସ୍ୱ ସନ୍ତାନର ଜନ୍ମ ଓ ପାଳନ କରିଥିଲେ । ଜମିବାଡି, କୋଠା, ଟଙ୍କା, ସୁନାର ଲୋଡା ନଥିଲା । ଥିଲା କଷ୍ଟ ଓ ନିଷ୍ଠା ।

## ୨୧. ବଉଳ

ବାର ଅବାରକୁ, ଅବେଳା ବେଳାକୁ ଅଣ୍ଟ ନ ଅଣ୍ଟକୁ ବଉଳ । ପାଗ ଖରାପ ଅଛି । ଲଗାଣ ବର୍ଷା ଚାଲିଛି । ନଡିଆନେଇ ବିକିବା ଅସମ୍ଭବ । ଏତେବେଳକୁ ବଉଳ ଭରସା । ଅନ୍ୟ ଦିନେ କିଏ କେଉଁଠି ଧାର ଉଧାର କାଳି ବାକି ଚଳାଇ ଦେବ ସିନା; ଗୁରୁବାରେ ତ କେହି ଘରୁ ଅଧଲାକି ପଇସାଟିଏ ବାହାର କରିବେନି କି ମୁଠାଏ ଚାଉଳ ମଧ ମନା । ସେହି ପରି ପୂର୍ଣ୍ଣମୀ, ସଂକ୍ରାନ୍ତି, ଓଷା ବାରରେ କିଏ ଦବ ଧାର ଉଧାର ବା ବାକିକାଳି । ସେତେବେଳକୁ ବଉଳ ଲୋଡା । ଏସବୁ ବାର ଅବାର ଓ ବେଳା ଅବେଳାରେ ସିନା ଧାର ଉଧାର କି କାଳିବାକି ସିନା ମନା, ପେଟର ଦାଉ, ପାଖରେ ଓଷା ବାରର ଆବଶ୍ୟକତା କ'ଣ ଏସବୁ ପାଇଁ ଖାତିର କରନ୍ତି । ତାଙ୍କର କଟାଳ ବେଳାକୁ ତାଙ୍କର ଦାବୀ ପୂରଣ ଅବଶ୍ୟ କରିବାକୁ ହେବ । ଆଜି ପଣ୍ଡୁ ଓଷା । ବର୍ଷକରେ ଥରେ । ସେ କ'ଣ ଆଉ କାଲିକୁ ଅପେକ୍ଷା କରିବ ? ବାର ଅବାର ବାରି କ'ଣ ଭୋକଶୋଷ ହେବ ? ଏସବୁ ଦିନ ବାରରେ ବା ବେଳକୁ ସିନା ମଣିଷଙ୍କର ବାରଣ; ହେଲେ ଦୀନବନ୍ଧୁ କରୁଣା ସାଗର ସେଥିପାଇଁ ମଧ ପଡି ଖଞ୍ଜିଥିଲେ । ଚକ୍ରୀ ସେ । ପଡିଦାତା ସେ । ତାଙ୍କର କରୁଣା କେଉଁପରି କେଉଁବାଟେ କେତେବେଳେ କେମିତି ମିଳିବ ତାହା କିଏ କହିପାରିବ ! ପୁଣି ଦିନି ଅଭାବିଙ୍କର ଅଭାବ ତାଙ୍କ ଛଡା ଆଉ କିଏ ପୂରଣ କରିବ । ଥରେ ଅଧେ ଦେଲାପରେ ଆର ଥରକୁ ନାକ ଟେକା । ଅଙ୍ଗେ ନ ନିଭେଇଲେ ଏ କଥାର ମର୍ମ ବୁଝିବା କଷ୍ଟ ।

ଗୋପାଳ ଦାଶ ଓ ଯୋଗୀ ଦାଶ ଦୁଇଭାଇ । ଦୁଇଜଣ ଯାକ ନିଃସନ୍ତାନ । ହିସାବରେ ସେ ଦୁହେଁ ଆମର କକେଇ ଓ ତାଙ୍କ ସ୍ତ୍ରୀ ଆମର ଖୁଡ଼ୀ । ଗୋପାଳ ଦାଶ ଶିକ୍ଷକ । ସେ ଯାହା ଆଣନ୍ତି ସାନ ଭାଇକୁ ବଢ଼ାଇ ଦିଅନ୍ତି । ଘରେ କିଛି କାମ କରନ୍ତିନି । ଦୁଇଗୋଡ ପୁରୁଣା ମୋଟା ଗୋଦରା । ଏଠି ସେଠି ବସି ବୁଲି ତାସ୍ ଖେଳି ସମୟ କାଟନ୍ତି । ତାଙ୍କ ସ୍ତ୍ରୀ ମଧ୍ୟ କେବଳ ପିଲାଙ୍କ ଛଟା କରିବା ଛଡ଼ା ଅନ୍ୟ ସମୟ ତାସ ଖେଳ ଇତ୍ୟାଦିରେ କାଟନ୍ତି । ଯୋଗୀଆକେଇ ଭୋର ୪ଟାରୁ କଦଳୀ ବଗିଚା କାମ କରି, ୭ଟା ବେଳକୁ ଗାଈଗୋରୁ କାମ ସାରି ୮ଟା ବେଳକୁ ବିଲକୁ ଯାଇ ଗୋଧୋଇ ଖାଉ ଖାଉ ୩ଟା କି ୪ଟା । ତା ସାଙ୍ଗକୁ ଅବ୍ରାହ୍ମଣ ଘରେ ପୁରୋହିତି ଓ ରାତିରେ ପାଲା ମେଳା ଇତ୍ୟାଦି ଇତ୍ୟାଦି । ଭଲ ଦି ପଇସା କଦଳୀ ବିକାରୁ ମିଳେ । ସେସବୁ ଯାଏ ସାନଖୁଡ଼ୀଙ୍କ ହାତକୁ । ବହୁ ଦିଅଁ ଦେବତାଙ୍କୁ ପୂଜାକରି ଅନ୍ଧ ବାବାଙ୍କ କୃପାରୁ ପରିଣତ ବୟସରେ ଶେଷରେ ସେ ସାନଖୁଡ଼ୀ ଙ୍କର ୪ପୁଅ ଦୁଇଝିଅ । ତେଣୁ ସେ ପିଲାମାନଙ୍କ ଦୁଃଖ ଦେଖି ପାରନ୍ତିନି ।

ସେହି ସାନଖୁଡ଼ି ହେଉଛନ୍ତି ବୋଉର ବଉଳ । ଦୁଇଜଣଙ୍କର ପାଣି ଗଳେନି । ପରସ୍ପରକୁ ଖୁବ୍ ଭଲ ପାଆନ୍ତି । ଯୋଗୀଆକେଇ ଯୋଗୀକୁ ମୁଠାଏ ଚାଉଳ ଦେବାକୁ ଭଲପାଆନ୍ତିନି । ମାତ୍ର ଖୁଡ଼ୀ ଠିକ୍ ଓଲଟା । ପିଲାଙ୍କ ଭଲ ପାଇଁ ଲୁଚେଇ ଛପେଇ ସେ ଭିକ ଦବାଠାରୁ, ଧାର, ଉଧାର ମଧ୍ୟ ଚଳାନ୍ତି । ତାଙ୍କ ପାଖରେ ଦିନବାର, ପର୍ବ ପର୍ବାଣୀ, ଦିନରାତି କିଛି ବାରଣ ନାହିଁ । ବିଶେଷ କରି ଆମର ଦୁଃଖ ଶୁଣିଲେ ସେ ତରଳି ପଡ଼ନ୍ତି । ବଉଳର ଅଭାବ ଅସୁବିଧା ସେ ଦେଖିପାରନ୍ତିନି । ଏପରିକି ଗୁରୁବାର ପଡ଼ିଥିଲେ ମଧ୍ୟ ଦରକାର ହେଲେ ଲୁଗାକାନି ତଳେ ଚାଉଳ ଲୁଚାଇ ଆଣି ଦେଇଯାନ୍ତି । ସେ ବୋଧେ ପୋଷଣାହାରୀ ମା ଥିଲେ । ଈଶ୍ୱର ତାଙ୍କୁ ଆମର ପୋଷଣ ପାଇଁ ପଠାଇ ଥିଲେ ।

ହେଲେ ମଧ୍ୟ ସେ ଯେତେବେଳେ ଯାହା ପଇସା, ଚାଉଳ, ପରିବା, ଜିନିଷ ଦିଅନ୍ତି ସେ ସବୁର ମୂଲ୍ୟ ଲେଖିଥାନ୍ତି । କେବେ ମଧ୍ୟ ଜିଦ୍ କରି ମାଗନ୍ତିନି । କହନ୍ତି ମୋ ପିଲାତ ସାନସାନ । ସେମାନେ ପାଠ ପଢ଼ିଲା ବେଳକୁ 'ତୁମେ ଏସବୁ ଧାର ସୁଝିବ ଓ ତାଙ୍କ କଥା ବୁଝିବ । ସତକୁ ସତ ତାଙ୍କ ପିଲା ପଢ଼ିଲା ବେଳକୁ ଆମେ ସେ ସବୁ ଧାର ଉଧାର କଡ଼ା ବରକଡ଼ା କରି ସୁଝିଥିଲୁ । ଈଶ୍ୱରଙ୍କ ଇଚ୍ଛା ବିଚିତ୍ର । ସେ ବହୁତ କୃତକୃତ୍ୟ । ଈଶ୍ୱରଙ୍କ କୃପାରୁ ତାଙ୍କର ସବୁ ପିଲାଏ ପ୍ରାୟ ସୁପ୍ରତିଷ୍ଠିତ ଏବଂ ଅନ୍ତତଃ ସୁଖ ଜୀବନରେ ଉତ୍ତର ବୟସ ବିତାଇବାରେ ଠାକୁରଙ୍କ କୃପାଲାଭ କରିପାରିଥିଲେ । ଉଧାରକୁ ଅନ୍ଧାର-ଈଶ୍ୱରଙ୍କ ହାତରେ ନିକିତି ଅଛିପରା । ଆଗରୁ ବୋଉ ଚାଲିଯାଇଥିଲା । ଖୁଡ଼ୀବି ଗଲେଣି । ସେ ଆମ ଦୁଃଖର ଅନ୍ତ ଓ ତାଙ୍କ ସୁଖର ଚରମସୀମା ଦେଇ ବହୁତ ସୁଖୀ ହୋଇ ଅଯାଚିତ ଆଶିର୍ବାଦ ଦେଇଯାଇଛନ୍ତି ।

କାଶୀଧାମକୁ ଗଲେ କେହି ଅଭୁକ୍ତ ଫେରନ୍ତିନି । ମା ଅନ୍ନପୂର୍ଣ୍ଣା ସମସ୍ତଙ୍କପାଇଁ ଭୂରି ଭୋଜନର ବ୍ୟବସ୍ଥା କରିଦେଇଅଛନ୍ତି । ମୁଁ ଓ ମୋ ସ୍ତ୍ରୀ ତୀର୍ଥଯାତ୍ରା ବେଳେ ଏକଥା ଅଙ୍ଗେ ନିଭାଇଛୁ । ହେଲେ ତାର ବହୁ ବର୍ଷ ଆଗରୁ ଅନ୍ନପୂର୍ଣ୍ଣା ଖୁଡୀରୂପରେ ଆସି ଆମର ଦାରିଦ୍ର୍ୟ ଦୁଃଖ ହରଣ କରିଥିଲେ । "ନିତ୍ୟାନନ୍ଦ କରି ବରାଭୟକରି ସୌନ୍ଦର୍ଯ୍ୟରତ୍ନାକରି - ଭୀକ୍ଷାଂ ଦେହି କୃପାବଲମ୍ବନ କରି ମାତା ଅନ୍ନପୂର୍ଣ୍ଣେଶ୍ୱରୀ" ସେ ଥିଲେ ଆମ ପାଇଁ ସାକ୍ଷାତ୍ ଅନ୍ନପୂର୍ଣ୍ଣା ।

## ୨୨. ପାଗଳୀ ଝିଅ

ବୁଲାକକେଇଙ୍କ ଡ଼ାକନାମ ଗାଲୁ ପଣ୍ଡିତେ । ଭଲ ନାମ ପଣ୍ଡିତ ନାରାୟଣ ମିଶ୍ର ନ୍ୟାୟାଚାର୍ଯ୍ୟ । ସେ ସ୍ୱର୍ଣ୍ଣପଦକ ପାଇ ନ୍ୟାୟାଚାର୍ଯ୍ୟ ପାଶ୍ କରିଥିଲେ ମଧ ଚାକିରି ପଛରେ ନଧାଇଁ ବ୍ୟବସାୟରେ ସ୍ୱାଧୀନ ଭାବେ ଚଳୁଥିଲେ । ତାଙ୍କ ବଡ଼ପୁଅ ମୋ ବଡ଼ଭାଇଙ୍କର ଏବଂ ସାନପୁଅ ମୋର ବାଲ୍ୟବନ୍ଧୁ । ମୁଁ ତାଙ୍କୁ କକେଇବୋଲି ଓ ସେହି ହିସାବରେ ତାଙ୍କ ସ୍ତ୍ରୀକୁ ଖୁଡ଼ି ଡ଼ାକୁଥିଲି । କେଜାଣି କାହିଁକି ସେ ଖୁଡ଼ି ପାଗଳୀ ହୋଇଗଲେ । ବେଶୀ ପାଗଳ ଅବସ୍ଥାରେ ସେ ଦିନଦିନଧରି ନଖାଇ ଯିଦ୍‌କରି ବସିରହନ୍ତି । ସେହି ସମୟରେ ଯେ ଯେତେ ବୁଝାଇଲେ ବୁଝନ୍ତି ନାହିଁ । କିନ୍ତୁ ମୁଁ ବୁଝାଇଦେଲେ ସୁନାପିଲାପରି ଗଣ୍ଡାଏ ଖାଇ ନିଅନ୍ତି । ସେହି ଅବସ୍ଥାରେ କ'ଣ ହେଲା କେଜାଣି ସେ ମତେ ବାପା ବୋଲି ଓ ମୁଁ ତାଙ୍କୁ ଝିଅବୋଲି ଡ଼ାକିବାକୁ ଆରମ୍ଭ କଲୁ ଯେ ୧୯୯୫ରେ ସେ ମରିବା ପର୍ଯ୍ୟନ୍ତ ଏ ଡ଼ାକଛାଡ଼ିଲାନି । ସେହି ହିସାବରେ ସେହିଦିନଠାରୁ ବୁଲା କକେଇ ମୋତେ ବାଭେ ବୋଲି ଓ ତାଙ୍କ ପିଲାମାନେ ମୋତେ ଅଜାବୋଲି ଡ଼ାକନ୍ତି । ଏଇ ପାଗଳୀ ଝିଅଟି ପଣ୍ଡିତଙ୍କ ସ୍ତ୍ରୀ ନୁହେଁ ନିଜେ ମଧ ଜ୍ଞାନର ପାଗଳୀଭଳି ମୋତେ ବୋଧ ହୁଏ । ବହୁ ଦିନପରେ ବହୁ ଚେଷ୍ଟାପରେ ସେ ଭଲହୋଇଗଲେ । ମାତ୍ର ତାଙ୍କ ବାପା ଡ଼ାକ କି ମୋର ଝିଅଡ଼ାକ ଛାଡ଼ିଲାନି ।

ବହୁତଦିନ ତାଙ୍କରି ଦାଣପିଣ୍ଡାରେ ପାଠପଢ଼ାପରେ ନାଳରେ ଗାଧୁଆହୁଏ ଏବଂ ତାଙ୍କରି ଘରେ ତାଙ୍କପୁଅ ସାଙ୍ଗରେ ପଖାଳଖିଆ ପରେ ସ୍କୁଲ ଯିବାହୁଏ । ସେ ତାଙ୍କର ଦେହର ଅବସ୍ଥା ଯୋଗୁଁ ଭଜାଭଜି ବା ଅନ୍ୟକିଛି ଘରକାମ ପାଇଁ ବୋଉ ଉପରେ କିଛିକିଛି ନିର୍ଭର କରନ୍ତି । ତାଙ୍କର ପିଲାମାନେ ମଧ ଆମ ଘରକୁ ତାଙ୍କର ଘରବୋଲି ଆଦରି ନେଇଥାନ୍ତି । ତାଙ୍କଝିଅ ଆଶା ତ ଆମ ସାଙ୍ଗରେ ବସି ପଖାଳ କଂସାରେ ହାତପୁରାଇ ଆମଘରେ ନିଜର ଭଉଣୀଭଳି ଭାତଖାଇ ବାକୁ ଖୁବ୍ ଭଲପାଏ । ସ୍ନେହରେ ଜୁଡୁବୁଡୁ । ଏଣେପୁଣି ପିଲାଲୋକ, ସେ କ'ଣ ଆମର ଅଭାବ କଥା ବୁଝେ । ଏବେ ସେ ଆଉ ନାହିଁ । ସେ ମା ଝିଅଙ୍କ ଅବର୍ତ୍ତମାନରେ ମୁଁ ନିଃସଙ୍ଗତା ଅନୁଭବ କରେ ।

ସେଇ ପାଗଳୀ ଝିଅର ପ୍ରରୋଚନାରେ କି ତାଙ୍କ ନିଜଇଚ୍ଛାରେ କିଏଜାଣେ ନବମ ଶ୍ରେଣୀରେ ପଢ଼ିବାଯାଏ ବୁଲାକକେଇ ପ୍ରାୟ ପ୍ରତିମାସରେ ଗୋଟିଏ କରି ଟଙ୍କା ପଢ଼ାପାଇଁ ଖର୍ଚ୍ଚ ଦେଉଥିଲେ । ତା ବାଦ୍ ବନ୍ଧୁ ଅସମୟରେ ସେ ଠିଆହୋଇ ଆମପାଇଁ କେତେପଦ ନ୍ୟାୟ କଥା କହି ନିଜେ ଗାଳି ଶୁଣିଛନ୍ତି । ତାଙ୍କ ବଡ଼ ପୁଅ କେଶବର ପରାମର୍ଶରେ ଭାଇନା ଶୀକ୍ଷତାଲିମ୍ ପାଇଥିଲେ । ସାନପୁଅ ଶରତ ବା ଶଉରୀ ମାଧ୍ୟମରେ ମୁଁ ସାଲେପୁରରେ ତତ୍କାଳୀନ ପ୍ରଧାନଶିକ୍ଷକଙ୍କୁ କହି ସେଠାରେ ୧୦ମ ଓ ଏକାଦଶ ଶ୍ରେଣୀରେ ପଢ଼ିବାର ସୁଯୋଗ ପାଇଥିଲି । ସେ ଶିକ୍ଷା ସମାପ୍ତିପରେ ଓକିଲାତି କରି ନାମ କମାଇଲେ । ସେ ଉଭୟେ ମଧ ଏବେ ଦେହାତୀତ ।

ମୋ ଝିଅର ସ୍ନେହ ପାଖରେ ମୁଁ ବାସ୍ତବରେ ଋଣୀ । ମୁଁ ପାଠପଢ଼ି ଚାକିରୀକରି ବଡ଼ହେବାପରେ ମଧ ମୋଝିଅ ମୋତେ ତା କୋଡ଼କୁ ଯାକିନେଇ ମୁଣ୍ଡ ଆଉଁସି କେତେଥର ସ୍ନେହ ଓ ଆଶ୍ୱାସନା ଦେଇଛି । ହାତଧରି ଭିଡ଼ିନେଇ ମନଭରି ଖୁଆଇଛି । ତା'ର ମନ କଥା ମତେ କହିଛି, କାନ୍ଦିଛି ଓ ସାନ୍ତ୍ୱନା ପାଇଛି । ମୁଁ ମଧ ମୋ ମନକଥା ତାକୁ ଖୋଲି କହିଛି ଓ ଅମାପ ସ୍ନେହ ପାଇଛି ।

ଭଗବାନ କନ୍ୟା କୁମାରୀ ରୂପରେ ତାକୁ ପଠାଇ ଆମ ଦୁଃଖ ପ୍ରଶମନ କରିଛନ୍ତି ବୋଲି ମତେ ଲାଗେ । ସେ ମଧ ମୋତେ ପାଇ ତାଙ୍କର ପିତୃହୀନତା ଭୁଲିଯାଇଥିଲେ ତାଙ୍କର ପାଗଳ ଅବସ୍ଥାରେ । ତାଙ୍କର ମୋର ବୟସର ପାର୍ଥକ୍ୟ ପ୍ରାୟ ୨୫ବର୍ଷ । ଏ କ'ଣ ଭଗବାନଙ୍କ କୃପା ନୁହେଁ ।

## ୨୩. ବଡ଼ମାଷ୍ଟ୍ରେ

ଦୈବର ସଂଯୋଗ । ବୁଲା କକେଇଙ୍କ ସାନପୁଅକୁ ଜୟୀମାଷ୍ଟେ (ବଡ଼ ମାଷ୍ଟେ) ତାଙ୍କ ପିଣ୍ଡାରେ ବସି ସକାଳବେଳା ପଢ଼ାନ୍ତି । ମୁଁ ତ ଆଗରୁ ସେଠି ତା' ସହିତ ପଢୁଥିଲି । ସେ ବଡ଼ ମାଷ୍ଟଙ୍କ ପାଖରେ ପଢ଼ିବାକୁ ମୁଁ ମଧ ସିଲଟଖଡ଼ି ଧରି ତାଙ୍କପାଖରେ ବସିଲି । ସେ ତେଣୁ ତା ସାଙ୍ଗରେ ମତେମଧ ଦିନା କେତେ ପଢ଼ାଇଲେ । ବୋଉ ଏ କଥା ଶୁଣି କହିଲା କି ଭାଗ୍ୟ ! ବଡ଼ ମାଷ୍ଟଙ୍କ ବେତ ତୋ ପିଠିରେ ଲାଗିଲା ! ନିଶ୍ଚେ ତୋର ଭାଗ୍ୟ ଭଲ । ସେତିକି ନୁହେଁ ସେହି ଦିନୁ ମୁଁ ତାଙ୍କପାଖରେ ପଢ଼ିବାକୁ ଗଲାବେଳେ ବୋଉ ଦୁଇଖଣ୍ଡ ପାନ ଭାଙ୍ଗି ଦିଏ । ମୁଁ ଯାଇ ତାଙ୍କହାତକୁ ପାନ ଦୁଇଖଣ୍ଡ ଗୁରୁ ଦକ୍ଷୀଣା ଭାବେ ବଢ଼ାଇଦେଇ ମୁଣ୍ଡମାରି ନମସ୍କାର କରିବା ପରେ ଚକାପକାଇ ପାଠପଢ଼େ ।

ଏ ବଡ଼ମାଷ୍ଟେଙ୍କ କଥା ନ କହିଲେ ବୋଧେ ଏ ଲେଖାଟି ଅସମ୍ପୂର୍ଣ୍ଣ ରହିଯିବ । ବୁଲା କକେଇଙ୍କ ସାନଭାଇ ନନ୍ଦକେଇ ଡ଼. ବ୍ରହ୍ମାନନ୍ଦ ମିଶ୍ର ଯଥାର୍ଥରେ କହିଛନ୍ତି ଯେ ଇଂଲଣ୍ଡରେ ମଧ ପଢ଼ିଲାବେଳେ (ପି.ଏଚ.ଡ଼ି କରିବା) ଜୟୀଭାଇନାଙ୍କ ଗଣିତ ବିଶେଷକରି କଡ଼ା, ଗଣ୍ଡା,

ବୋଡ଼ି ପାଠ ସବୁ ଜଟିଳ ପ୍ରଶ୍ନର ସହଜ ସରଳ ଓ ଆଶୁ ସମାଧାନର ବାଟ ଦେଖାଇ ୧ମ ଶ୍ରେଣୀରେ ପ୍ରଥମ ହେବାର ସୁଯୋଗ ଦେଇଥିଲା ଏବଂ ପଦାର୍ଥ ବିଜ୍ଞାନର ରେଭେନ୍‌ସା କଲେଜର ଅଧ୍ୟାପକ ଭାବେ ତାଙ୍କରି ପାଠହିଁ ଆଶୁ ସମାଧାନରେ ସାହାଯ୍ୟ କରୁଛି । ୧୯୩୪-୩୫ର କଥା । ବାପା କହୁଥିଲେ ସେତେବେଳେ ଗାଁର ମାଇନରସ୍କୁଲ ତିଆରି ହେଉଥାଏ । ପାଞ୍ଚଖଣ୍ଡ ଗାଁର ଲୋକ ସମସ୍ତେ ସାହାଯ୍ୟ କରୁଥାନ୍ତି । ଆମଘରର ସାହାଯ୍ୟ ବୋଧେ କମ୍ ହୋଇଯାଇଥାଏ । ସକାଳେ ସକାଳେ ଜୟୀମାଷ୍ଟେ ଆସି ହାଜର । ପିଣ୍ଡାରେ ବସିପଡ଼ିଲେ । ପାନଖଣ୍ଡେ ମାଗି ଖାଇଲେ । କହିଲେ ଆଜି ତୁମଘରେ ଖାଇବି । ତୁମେ କାହିଁକି ସ୍କୁଲ ଆଡ଼େ ଯାଉନ କି ଏ କାମ ମଧ୍ୟ କରୁନ । ବାପା ଭୁଲ ମାଗିଲେ ଓ ସେହି ଦିନଟି ସ୍କୁଲରେ ଯାଇ ଶ୍ରମଦାନ କରିଥିଲେ । ଏଇଭଳି ଭାବରେ ଗାଁର ପ୍ରାଥମିକ ଓ ମଧ୍ୟଇଂରାଜୀ ବିଦ୍ୟାଳୟ ଗଢ଼ିଥିଲେ । ଯଦିଓ ଜମିଦାରଙ୍କର ଆର୍ଥିକ ସହାୟତାଥିଲା; ତାଙ୍କର ଅବଦାନ ଅବିସ୍ମରଣୀୟ ।

ସେ ତିନିପୁରୁଷର ମାଷ୍ଟ୍ରେ । ଜେଜେଙ୍କୁ କିଛି ସମୟ, ବାପାଙ୍କୁ ପୁରା ସମୟ ଓ ଆମକୁ କିଛି ସମୟ ସେ ପାଠପଢ଼ାଇ ମଣିଷ କରିଛନ୍ତି । ସେ ପାଖଆଖର ବହୁଗାଁରେ ବଡ଼ମାଷ୍ଟ୍ରେ ବୋଲି ପରିଚିତ । ତାଙ୍କୁ କେହି ନାଁ ଧରି ଡ଼ାକନ୍ତିନି । ସେହିଁ ତାଙ୍କର ସମ୍ମାନ । ଆଜିବି ତାଙ୍କ ନାଁ ପଡ଼ିଲେ ଲୋକେ ମୁଣ୍ଡନଇଁ ପ୍ରଣାମ ଜଣାନ୍ତି ।

ସେ ସିନା ନିଜ ହାତରେ ହଜାର ହଜାର ମଣିଷ ଗଢ଼ିଛନ୍ତି । ତାଙ୍କ ପିଲାଏ କେହି ସେପରି ଯୋଗ୍ୟ ହେଲେନି । ଭଗବାନଙ୍କର ଏକି ବିଚାର ? ପାନ ଦୁଇ ଖଣ୍ଡ ଗୁରୁ ଦକ୍ଷିଣା ନେଇ ପ୍ରାଥମିକ ଶିକ୍ଷା ଦେବାକୁ ଭଗବାନ ସନ୍ଦିପନୀ ରୂପରେ ମୋ ପାଇଁ ତାଙ୍କୁ ବଞ୍ଚାଇ ରଖିଥିଲେ ମୋତେ ତାଙ୍କ ଆଶୀର୍ବାଦରେ ପୁଷ୍ଟ କରିବାକୁ, ମଣିଷ କରିବାକୁ । ସ୍ରଷ୍ଟାଙ୍କର ଏ ଦାନକୁ ମଣିଷ ବୁଝିବା କଷ୍ଟକର । ସେତେବେଳର ଏହି ଘଟଣା ଓ ବର୍ତ୍ତମାନର ଟିଉସନ ବା କୋଚିଂରେ ଉଠୁଥିବା ହଜାର ହଜାର ଟଙ୍କା କଥା ବିଚାର କଲେ ଶିକ୍ଷକ କିପରି ଶିକ୍ଷାକୁ ବ୍ୟବସାୟ କରିଦେଇଛନ୍ତି ତାହା ବୁଝାପଡ଼େ । ହେଲେ ସମ୍ମାନକୁ ହରାଇ ବସିଛନ୍ତି; ଏକଥା ଆଖିକୁ ଜଳଜଳ ଦେଖାଯାଏ ।

## ୨୪. ଗୋପାଳ ପଇଡା

ସ୍ୱୟଂ ଭଗବାନ ନିଜେ ଗୋପାଳ ରୂପରେ ଭାରବୋହି ଆସି ଅଭୁଂକ୍ତ ଭକ୍ତଙ୍କର ଭଣ୍ଡାର ଭରିଦେବା ଓ ଜୟଦେବଙ୍କ ଗୀତଗୋବିନ୍ଦର ପାଦପୂରଣ କରିବା ସମସ୍ତେ ଜାଣନ୍ତି । ଠିକ୍ ସେହିପରି କେହି ଜଣେ ଗୋପାଳ ବାବୁ ଅଯାଚିତ ଭାବେ ବରଂ ମନାକରିବା ସତ୍ତ୍ୱେ ମୋର ଯଜ୍ଞ ଉପବିତର ବ୍ୟବସ୍ଥା କରିଦେଇ ଯାଇଥିଲେ । ଏହା ଅନୁଭବୀ ବ୍ୟତୀତ ଅନ୍ୟକେହି ବିଶ୍ୱାସ କରିପାରିବେନି । ବରଂ କେତେକ ବନ୍ଧୁ ଏକଥା ଶୁଣି ଏହା ମନଗଢ଼ା ବୋଲି କହିଥାନ୍ତି ।

ବୁଲା କକେଇଙ୍କ ସାନପୁଅ ସଉରୀ ଓ ମୁଁ ବାଲ୍ୟ ବନ୍ଧୁ । ଆମେ ଦୁହେଁ ଏକାଠି ପାଠପଢୁ, ଏକାଠି ଗାଧୋଉ ଓ ଏକାଠି ସ୍କୁଲକୁ ଯାଉ । ଦିନକର କଥା; ଦୁଇବନ୍ଧୁ ତାଙ୍କ ଘର ଠାରୁ ତେଲ ଲଗାଇ ଦୌଡ଼ି ଦୌଡ଼ିଯାଇ କେନ୍ଦ୍ରାପଡ଼ା କେନାଲକୁ ଡେଇଁ ପଡ଼ି ଗାଧୋଇ ଘରକୁ ଫେରିବା ବେଳେ ଗୋପାଳ ବାବୁ ବୁଲାକକେଇଙ୍କ ପିଣ୍ଡାରେ ବସି ତାଙ୍କ ସହ କଥା ହେଉଥିଲେ । ମୋର ବାଲ୍ୟ ବନ୍ଧୁ ପେଣ୍ଟ୍ ପିନ୍ଧିବାର ଓ ପଇତା ପକାଇ ଥିବାର ଦେଖି ମୁଁ କାହିଁକି ପଇତା ପକାଇନି ଓ ଲଙ୍ଗଳାହୋଇ ଗାଧୋଇ ଫେରୁଛି ବୋଲି ପ୍ରଶ୍ନ କଲାରୁ କକେଇ କହିଲେ ସେ ଗରିବ ଏବଂ ଏବର୍ଷ ଟା ବାପା ମରିଯାଇଛନ୍ତି । ତେଣୁ ସେ ବ୍ରତ ହୋଇ ନଥିବାରୁ ପଇତା ପକାଇନି । ଏତିକିରେ ଗୋପାଳ ବାବୁ କହିଲେ; ମୁଁ ତାକୁ ପଇତା ଦେଇଦେବି ।

ବୁଲା କକେଇ ବୋଉକୁ ଏବଂ ମୋର ଖୁଡ଼ୁତା ସନା କକେଇଙ୍କୁ ଡ଼ାକାଇ ଏ ପ୍ରସ୍ତାବ ଦେବାରେ ବୋଉ ମନାକଲା । କହିଲା ମୁଁ ତ ପୁଅକରି ଦେବାକୁ କେତେ ଲୋକଙ୍କୁ ମନାକରି ଦେଇଛି । ସେ ଆମ ଗୋତ୍ରରେ ବ୍ରତହେବ । ତା ବାପର ବର୍ଷିକିଆ ଗଲେ ଆମେ ସେକାମ କରିବୁ । ଏଥିରେ ଦବି ନଯାଇ ଗୋପଳବାବୁ କହିଲେ ମୁଁ କିଛି କରିବିନି; ପଇତା ପାଇଁ ୧୦୧ ଟଙ୍କା ଦେଇଯାଉଛି । ତୁମେ ତୁମ ଘରେ ତୁମ ଗୋତ୍ରରେ ତାର ବାପାଙ୍କ ବର୍ଷିକିଆ ପରେ ସୁବିଧା ତିଥିବାର ଦେଖି ବ୍ରତ କରାଇ ପଇତା ଦେବ । ମୋର ଆଉ କିଛି କହିବାର ନାହିଁ । ତୁମର କୌଣସି ସର୍ତ୍ତ ଏହାଦ୍ୱାରା ଖିଲାପ ହେବନି । ସନା କକେଇ ଭାରି ବୁଧିଆ । ସେ ଏଥିରେ ହଁ କରିଲେ ଓ ଗୋପାଳବାବୁ ବୁଲା କକେଇଙ୍କ ଜିମା ୧୦୧ଟଙ୍କା ରଖିଦେଇ ଚାଲିଗଲେ । ସେତିକି ନୁହେଁ ସେ ସେହି ଦିନ ଗାଁ ସ୍କୁଲକୁ ଯାଇ ଛଅମାସର ସ୍କୁଲ ଦରମା ଓ ଛାତ୍ରାବାସ ଖର୍ଚ୍ଚ ମଧ୍ୟ ଆମ ଅଜ୍ଞାତରେ ସ୍କୁଲରେ ଦାଖଲକରି ଚାଲିଯାଇଥିଲେ ; ଯାହା ଫଳରେ ବ୍ରତଘର ପରେ ଛଅମାସ ମୁଁ ଯାଇ ସ୍କୁଲ ହଷ୍ଟେଲରେ ରହି ପାଠପଢ଼ିଲି ।

ତା'ପରେ ଆଉ ଗୋପାଳବାବୁଙ୍କୁ ମଁ ଦେଖିନି । ସେ କାଳେ ସେବେକାର ଜଣେ ବେଲର ଥିଲେ । ବିଦେଶକୁ ଝୋଟ ରପ୍ତାନି କରିବାକୁ ଲାଇସେନ୍ସ୍ ତାଙ୍କର ଥିଲା । ସେ ଓଡ଼ିଶାରୁ ଝୋଟ କିଣି ବିଦେଶକୁ ସିଧା ପଠାଇ ଅଧିକ ଲାଭ ଆଶାରେ ଓଡ଼ିଶା ଆସି କେନ୍ଦୁପାଟଣାରେ ଝୋଟ ଗୋଦାମ ଖୋଲି ଝୋଟ ଖରିଦ୍ କରୁଥିଲେ । ହେଲେ ସେ ବ୍ୟବସାୟ ଅଳ୍ପଦିନ ମଧ୍ୟରେ କେଜାଣି କାହିଁକି ବନ୍ଦ କରି ଚାଲିଗଲେ । ଆମ ଗାଁର ବଂଶୀ ବାରିକ ଯେ କି କଲିକତାରେ ଝୋଟ କାମ କରୁଥିଲେ ସେ କହିଲେଯେ ସେ ଗୋପାଳ ବାବୁଙ୍କୁ କାଳେ ସେଠାରେ ଦେଖିଥିଲେ । ମୁଁ କିନ୍ତୁ ଆଉ ତାଙ୍କ ପତ୍ତା ପାଇନି । ବଡ଼ ହୋଇ କଲିକତା ଯାଇ ମଧ୍ୟ ସେଠି କିଛି ପଚରା ପଚରି କରିଥିଲି । ହେଲେ ଖୋଜି ପାଇଲି ନି । ଠିକ୍ ଏହିପରି ଗୀତ

ଗୋବିନ୍ଦର ପାଦପୂରଣ କରିଥିବା ଗୋପାଳ ଓ ଅଭୁକ୍ତ ଭକ୍ତର ଭଣ୍ଡାର ଭରି ଦେଇ ଯାଇଥିବା ଭାରୁଆ ଗୋପାଳଙ୍କୁ ସେମାନେ ମଧ୍ୟ ଦେଖି ପାରି ନଥିଲେ । ସେଥିପାଇଁ ମୁଁ କହେ ସେ ସେହି ଗୋପାଳ ନୁହନ୍ତି ତ ଆଉ କିଏ ? ତୁମକୁ କୋଟି ଜୁହାର । "ନନ୍ଦାଦି ଗୋକୁଳ ତ୍ରାତା ଦାତା ଦାରିଦ୍ର୍ୟ ଭଞ୍ଜନ ।"

## ୨୫. ମାଡ଼ଖାଇଲେ ସତ କହନ୍ତି ?

"ମାଡ଼ ଖାଇଲେ ସତ କହନ୍ତି".ଇଏ ହେଲା ଆମ ମାଇନର ସ୍କୁଲର ତତ୍‌କାଳୀନ ହେଡ୍ ପଣ୍ଡିତ ପ୍ରାଣଧନ ଷଡ଼ଙ୍ଗୀଙ୍କ ଆବିଷ୍କୃତ ତଥ୍ୟ । ମୁଁ ଯେ ଗୋପାଳବାବୁଙ୍କ ବ୍ୟବସ୍ଥା ବଳରେ ଛଅମାସ ଛାତ୍ରାବାସରେ ରହିଲି ସେତେବେଳେ ଏହି ତଥ୍ୟର ପରୀକ୍ଷାଗାର ବନିଗଲି ।

ପଣ୍ଡିତେ ଭାରୀ ରାଗୀ । ପ୍ରଧାନ ଶିକ୍ଷକ ଦୁର୍ଗାଚରଣ ମହାନ୍ତିଙ୍କର ସେ ଡ଼ାହାଣ ହାତ । ତାଙ୍କ ମଞ୍ଜୁରୀ ଆଶାରେ ତାଙ୍କ ପାଇଁ ଅଧିକାଂଶ କାମ ପଣ୍ଡିତେ କରିଦିଅନ୍ତି । ସାଧାରଣ ଭାବେ ପାଠ ନ ଆସିଲେ ସେ କରବିର ଡ଼ାଳଧରି ଖୁବ୍ ପିଟନ୍ତି । ତାଙ୍କଡ଼ରରେ ପିଲାମାନେ ତାଙ୍କ ପଢ଼ା ଘୋଷିଘାଷି ଠିକ୍‌କରି ଯାଇ ଥାନ୍ତି । ସେ ଛାତ୍ରାବାସରେ ରହନ୍ତି ଓ ପରିଚାଳନା ମଧ୍ୟ କରନ୍ତି । ନଈ ସେପାରି ବନ୍ଧକାଟିଆରେ ତାଙ୍କ ଘର । ସେ ପ୍ରତି ଶନିବାର ଯାଇ ସୋମବାର ଆସନ୍ତି । ଯେଉଁଦିନ ଆସନ୍ତି ସେ ଦିନ ସକାଳୁ ଦାଢ଼ୀ ଖିଅର ହୋଇ ଆସନ୍ତି ଏବଂ ପିଲାମାନଙ୍କର ଆବିଷ୍କୃତ ତଥ୍ୟ ହେଲା ଯେ ସେ ଦିନ ସେ ବେଶୀ ରାଗନ୍ତି ଓ ବେଶୀ ବାଡ଼ାନ୍ତି ।

ଏମିତି ଦିନକର କଥା - ସେ ଦିନ ସୋମବାର ହୋଇଥାଏ । ମୋତେ ହଠାତ୍ ସ୍କୁଲ କାର୍ଯ୍ୟାଳୟକୁ ଭୋଳି ବାରିକ ପିଅନ ଆସି ଡ଼ାକିଲା । ମୁଁ ଖୁସିରେ ଗଲି । ଗଲାବେଳକୁ ପ୍ରଧାନ ଶିକ୍ଷକ ଓ ହେଡ଼୍ ପଣ୍ଡିତ ମହାଶୟ ବସିଥିଲେ । ହେଡ୍ ପଣ୍ଡିତ ପଚାରିଲେ କାଲିକିଏ ସ୍କୁଲ ଗଛରୁ ନଡ଼ିଆ ତୋଳି ଖାଇଛି ? ମୁଁ ଏ ସବୁ କିଛି ଦେଖି ନଥିଲି କି ଜାଣି ନଥିଲି । ସେଇଆ କହିଲି। ତୁ'ତ ଛାତ୍ରାବସରେ ଥିଲୁ । ନିଶ୍ଚେ ଜାଣିଛୁ । ମୁଁ ମନାକରିବାରୁ ସେ ହଠାତ୍ ଉଠିଆସି ଗୋଟେ କରବିର ଡ଼ାଳରେ ଦୁଇ ଚାରି ପାହାର ପିଟି ଦେଇଗଲେ ଓ ପଚାରିଲେ କହ କିଏ ନଡ଼ିଆ ଖାଇଛି । ମୁଁ ଜୀବନ ବିକଳରେ ଗୋଟେ ବଡ଼ ଢ଼େଙ୍ଗାପିଲାର ନାମ କହିଦେବାରୁ ଖୁସି ହୋଇ କହିଲେ "ମାଡ଼ ଖାଇଲେ ସତ କହନ୍ତି " । ପ୍ରଧାନ ଶିକ୍ଷକ ସବୁଠାରୁ ଖୁସି ହୋଇ ଖୁବ୍ ହସିଲେ । ଯାହା ହେଉ ମୁଁ ଛାଡ଼ ପାଇଗଲି । ଏ ସମ୍ବନ୍ଧେ ଆଉ ଗୋଟିଏ କଥା ପରେ କହିବା ।

ମୁଁ ପିଠିବୁଲାଇ ଫେରିଲାବେଳେ ପ୍ରଧାନ ଶିକ୍ଷକ ବଡ଼ ଦୁଃଖ ପୂର୍ଣ୍ଣ ଦୃଷ୍ଟିରେ ମୋ ଆଡ଼େ ଚାହିଁ ଥିବାର ମୁଁ ଲକ୍ଷ କରିଛି । ପିଠିରେ ନୋଳା ଫାଟିପଡୁଥିଲା । ମୁଁ ମଧ୍ୟ କାନ୍ଦି କାନ୍ଦି ଆସୁଥିଲି । ଗୋପାଳବାବୁ କେତେମାସ ପାଇଁ ଛାତ୍ରାବାସ ଖର୍ଚ୍ଚ ଦେଇଥିଲେ ମତେ ଜଣା ନଥିଲା । ମୁଁ ମଧ୍ୟ କେତେମାସ ରହିଲି ତା'ର ହିସାବ ରଖିନି । ହେଲେ ସେ ମାଡ଼ ପରେ ଛାତ୍ରାବାସ ଛାଡ଼ି ଚାଲି ଆସିଲି ଘରକୁ । ସେତେବେଳେ ଛାତ୍ରାବାସରେ କେବଳ ବଡ଼ଲୋକଙ୍କର ଓ ଦୁଷ୍ଟ ଶ୍ରେଣୀର ପିଲାମାନେ ଶାସନ ହେବାକୁ ତଥା ସୁଖରେ ରହି ପଢ଼ିବାକୁ ବ୍ୟବସ୍ଥା ଥିଲା । ମତେ ସେ ସୁହାଇଲା ନାହିଁ କିମ୍ବା ବେଙ୍ଗ ପେଟରେ ଘିଅ ହଜମ ହେଲାନି ବୋଲିବାକୁ ହେବ ।

ଭଗବାନ ଯାହାପାଇଁ ଦୁନିଆର ସବୁ ଦୁଃଖ ଖଞ୍ଜି ରଖିଛନ୍ତି ସେ ଛାତ୍ରାବାସରେ ବଡ଼ଲୋକ ପିଲାଙ୍କ ସହିତ ରହି ଦୁଇଓଳି ଦଇମୁଠା ଖାଇ ରହି ପଢ଼ିବାର ସୁଯୋଗ କିପରି ପାଇବ ? ଯେତେ ନଈ ବଢ଼ିଲେ ମଧ୍ୟ କୁକୁର କ'ଣ ଢକଢ଼କ କରି ପାଣି ପିଇ ପାରିବ ? ସେ ସେହି ଜିଭ ବଢ଼ାଇ ପାଣି ଚାଟିକରି ପିଇବ। ଭଗବାନ ଦାରିଦ୍ର୍ୟର ବନ୍ଧନ ମଧ୍ୟରେ ସାଧନାର ଜୀବନ ବ୍ୟବସ୍ଥାକରି ତଥାକଥିତ ସୁଖରୁ ସିନା ବଞ୍ଚିତ କଲେ ସାରା ଜୀବନ ପାଇଁ ଏକ ଅମୃତପାନର ବ୍ୟବସ୍ଥା କରାଇଦେଲେ । ସେ ଇଚ୍ଛାମୟ । ତାଙ୍କର ଇଚ୍ଛା ତାଙ୍କୁ ହିଁ ଜଣା ।

## ୨୬. ଭାଗବତାମୃତ

ବିମଳୀ ନାନୀର ଘର ଗାଁ ମଝିରେ ରାମେଶ୍ୱରଙ୍କ ମନ୍ଦୀର ଓ ସ୍କୁଲ ପାଖରେ । ସେ ଦୁଇଯାଆ ବାଳୁତ ବିଧବା ଓ ନିଃସନ୍ତାନ ଥିଲେ । ତା ସାଙ୍ଗରେ ଥିଲା ଉଚ୍ଛଟ ଦାରିଦ୍ର୍ୟ । ତେଣୁ ତାଙ୍କୁ କେହି ପୁଅକରିବାକୁ ମଧ୍ୟ ପିଲାଟିଏ ଦେଇ ନଥିଲେ । ଥରେ ଜଣେ ଲୋକର ସ୍ତ୍ରୀ ସନ୍ତାନ ଜନ୍ମ କରି ଇହଧାମ ତ୍ୟାଗ କଲାପରେ ଏମାନେ କାନିପାତି ସେ ପିଲାଟିକୁ ପାଳିବା ପାଇଁ ମାଗି ଆଣି ଥିବାରୁ ତାଙ୍କ ପାଳିତ ପୁଅର ନାମ ମାଗୁଣିଆ । ମାଗୁଣି ମାଇନର ପଢ଼ି କମ୍ପାଉଣ୍ଡର ହେଲା । ଚାକିରୀ କଲା । ଚାକିରୀ ଛାଡ଼ି କଟକରେ ଔଷଧ ବ୍ୟବସାୟ କରି ନିଜେ ଚିକିତ୍ସକ ସାଜିଲା । ସେତେବେଳେ ରାଜ ପରିବାର ମାନଙ୍କୁ ଗୃହ ଚିକିତ୍ସକ ଭାବେ ଯାଇ ଗୁପ୍ତ ଚିକିତ୍ସା (ଗର୍ଭପାତ ଇତ୍ୟାଦି) କରି ଓ ଡାକ୍ତରଖାନାର ତଥା କଥିତ କଳକା ଔଷଧ ବିକ୍ରୟ କରି ଖୁବ୍ କମ୍ ଦିନରେ ବଡ଼ଲୋକ ହେଲା । ବାହାହେଲା । କଟକରେ, ୨/୩ ଟି କୋଠାକଲା । ବଡ଼ ଯା ମରିଗଲାପରେ ବିମଳୀ ନାନୀର ଏକମାତ୍ର ସାହାହେଲା ବଡ଼ ଲୋକପୁଅ ମାଗୁଣି । ବିମଳୀନାନୀ ମୂର୍ଖ । ହେଲେ ସେ ଏସବୁ ଜାଣିପାରେ । ପୁଅକୁ ବାଧାଦିଏ । ପୁଅ କିନ୍ତୁ ମାନେନା । ବରଂତାର ବୁଦ୍ଧିବଳରେ ମା'କୁ ବୁଝାଇ ସୁଝାଇ ପଠାଇଦିଏ ।

ତା ପାଇଁ ଧର୍ମ ସାଧନାର ବ୍ୟବସ୍ଥା କରି ତାକୁ ସନ୍ତୁଷ୍ଟ କରିଦିଏ । କେବେ ତୀର୍ଥକୁ ପଠାଇ ଦିଏ ତ କେବେ ହରିହାଟ ବା ଅଷ୍ଟପ୍ରହରୀର ବ୍ୟବସ୍ଥା କରି ଦିଏ । ଗାଁରେ ଘର ଜମି, ଠାକୁର ପୂଜା, ଭାଗବତ ପାଠର ବ୍ୟବସ୍ଥା କରେଇଦିଏ । ଧର୍ମ ପରାୟଣ, ଅଧାବୟସର, ବିଧବା ବିମ୍ବଳିନାନୀ ଏସବୁ ସତ୍ତ୍ୱେ ସବୁକଥାର ମଞ୍ଜିଟିକୁ ଠିକ୍ ଠିକ୍ ବୁଝିଥିଲେ ମଧ ଏବଂ ଯତ୍ରତତ୍ର କହି ଦେଉଥିଲେ ମ୍ଧ କିଂକର୍ତ୍ତବ୍ୟ ବିମୁଢ଼ ହୋଇ ଠାକୁର ସେବା ଓ ଭାଗବତ ଶୁଣିବାରେ ମନୋନିବେଶ କରିଥାଏ । ଶେଷରେ ତାରି କଥା ସତ ହେଲା । ସେ ଦେଖନ୍ତାରେ ହିଁ ମାଗୁଣି ହତ୍ୟାର ଶିକାର ହେଲା । "ଅଧର୍ମ ବିତ୍ତ ବଢ଼େ ବହୁତ – ଗଲାବେଳେଯାଏ ମୂଳ ସହିତ ।" ହେଲେ ଗରିବଙ୍କୁ ଗରିବ ଚିହ୍ନେ । "ଗଢ଼ିଦେଇଛିରେ ବିଧାତା ବିନ୍ଧାଣି ପୁଅ । ସଜ ପଖାଳକୁ ବାଇଗଣ ପୋଡ଼ା ଟବେଟ ଭାତକୁ ଘିଅ" ଖଞ୍ଜିଲା ପରି ତା ସାଥିକୁ ଖଞ୍ଜି ଦେଇ ଠାକୁରେ ମଜା ଦେଖୁଥିଲେ । ସେ ଦିନେ ମୋତେ ଡ଼ାକି ଫୁସୁଲାଇ କହିଲା ତୁ'ତ ମାଇନର ପଢ଼ିଲୁଣି, ବ୍ରତ ହେଲୁଣି, ଆଉ ଘରେ ଠାକୁର ପୂଜା କରୁଛୁ । ଆମଘରେ ଛୁତିକିଆ ମୂର୍ତ୍ତିକିଆରେ ଠାକୁର ବସାଇଲେ ଓ ସନ୍ଧ୍ୟାରେ ଅଧାଏ ଭଗବତ ପଢ଼ିଲେ ହବନି । ବ୍ରାହ୍ମଣ ପୁଅ; ଏ ତ କୂଳର କାମ । ଏଥିରେ ଲାଜ କଣ ? ପଢ଼ାରେ ତ ବାଧା ପଡ଼ିବନି । ବରଂ ମୁଁ ବର୍ଷଶେଷରେ ଜାମା ପେଣ୍ଟ କରିଦେବି ପିନ୍ଧିବୁ । ପଇସା ଦେବି ସ୍କୁଲ ଦରମା ଦେବୁ । ମୋତେ ଦଇବ ବାଟ କଢ଼େଇଲା ପରି ମୁଁ ସେଥିରେ ରାଜି ହୋଇଗଲି । ସେହି ଦିନଠୁଁ ଆଜିଯାଏ ପ୍ରତ୍ୟହ ଅଧାଏ ଭାଗବତ ନପଢ଼ିଲେ ମତେ ଆଦୌ ଭଲ ଲାଗୁନି । ବାସ୍ତବରେ ଯେ ଏହି ଆନନ୍ଦାମୃତ ପାନ କରିଛି ସେ କେବେ ଭୁଲି ପାରିବନି । ତାଙ୍କ ଦେଖାଦେଖି ଇନ୍ଦ ବୋଉମା ମଧ ଭାଗବତ ପଢ଼ିବାକୁ ବରାଦ କଲେ । ସନ୍ଧ୍ୟାରେ ଘଣ୍ଟାଏ ମଧରେ ଦୁଇଘର ଭଗବତ ପଢ଼େ । ରାତି ଅନ୍ଧାରରେ ଫେରିବା ବେଳେ ବଡପାଟିରେ ଭାଗବତର ଗୋଟେ ପଦ ଆବୃତି କରିକରି ଆସେ । ଦିନରେ ଦୁଇତିନିଘର ଠାକୁର ମଧ ବସାଏ । ବେଶ୍ ପଇସା ମିଳେ । ସ୍କୁଲ ଦରମା ତ ଉଠିଯାଏ । ତା ବାଦ୍ ହାଟଖର୍ଚ୍ଚ ମଧ ଚଳିଥାଏ । ଏହି ଠାକୁର ବସା ଉପର ଶ୍ରେଣୀକୁ ଯିବାରେ ବନ୍ଦ ହୋଇଗଲା ପରଘରେ ସିନା, ଏବେଯାଏ ନିଜେ ଦୈନିକ ସ୍ନାନପରେ ଠାକୁର ପୂଜା, ଗୀତାପାଠ ଓ ଜପଧାନ ଜୀବନ ସମ୍ବଳ ହୋଇ ରହିଛି । ସେହି ପରି ରହିଛି ଦୈନିକ ସନ୍ଧ୍ୟାର ଭାଗବତ ପାଠ ମଧ । ବୋଉ ଏହି ଭାଗବତକୁ ଶୁଣିବାରେ ବେଶ୍ ଅଭ୍ୟସ୍ତ ହୋଇ ଘରେ ଭାଗବତ ଗାଦି ବସାଇ ଥିଲେ । ଏହାହିଁ ଏକାଧାରରେ ମୋ ଜୀବନର ଧର୍ମ, ଅର୍ଥ, କାମ ଓ ମୋକ୍ଷର କାରଣ ହୋଇଛି; ସେହି ବିମ୍ବଳୀ ନାନୀର ପ୍ରରୋଚନାରୁ ।

ଠାକୁରେ ବିମ୍ବଳି ନାନୀ ରୂପରେ ନିଜେ ଗୁରୁ ହୋଇ ଆସି ସତ୍‌ପଥର ଯାତ୍ରୀ କରିଦେଇ ତାଙ୍କ ପାଖରେ ଚୀର ଋଣୀ କରିଦେଇଛନ୍ତି । ବାସ୍ତବରେ ଏ ଜୀବନ ତାଙ୍କରି । ଉତ୍ତର ଜୀବନରେ ସେହିଠାକୁରେ "ଭାଗବତ ଟୁଙ୍ଗୀ" ଅଭିଯାନରେ ଆଜୀବନ ସଭ୍ୟ କରାଇଛନ୍ତି । ଏପରିକି ସୁଦୂର ଷଢେଇକଳା ଓ ଖରସୂଆଁରେ ମୋ ସହଯୋଗରେ ଦୁଇଟି ଭାଗବତ ପାଠ ଟୁଙ୍ଗୀ ବସାଯାଇଛି ।

## ୨୭. ଚିତ୍ତୋଉ ପିଠା

ଜେଜେ ଯେତେଦିନ ବଞ୍ଚିଥିବାର ମୁଁ ଦେଖିଛି ସେ ପ୍ରତ୍ୟେହ ସକାଳୁ କୋଶେବାଟ ଚାଲିଯାଇ ସେଇଆଡ଼େ ଦାନ୍ତଘଷା, ଝାଡ଼ାଯିବା, ଗାଧୁଆ କାମ ସାରି ଫୁଲ ତୁଳସୀ ଧରି ଫେରନ୍ତି । ତା ପରେ ଆରମ୍ଭ ହୁଏ ଠାକୁର ବସା, ଫୁଲ ଚନ୍ଦନଦେବା, ଜପ ଧ୍ୟାନ ଓ ପୂଜା ପାଠ । ଏ କାର୍ଯ୍ୟ ଚାଲେ ଦିନ ଦଶ କି ଏଗାରଟା ଯାଏ । ସେଠୁ ଉଠି ଚଉରା ପାଖରେ ପାଣି ଓ ଭୋଗଲଗାଇ ସେଠୁ ହାଲଧରି ଚାଲନ୍ତି ଗ୍ରାମର ମହାଦେବ ରାମେଶ୍ୱରଙ୍କ ପାଖକୁ । ସେଠାରେ ପାଣିଦେଇ ରାମେଶ୍ୱରୀ ଠାକୁରାଣୀ ଓ ବୃନ୍ଦାବନ ଚନ୍ଦ୍ରଙ୍କୁ ଦର୍ଶନକରି ଫେରନ୍ତି ବାରଟା ସରିକି । ତାଙ୍କ ଦୈନିକ ଆହାର ହେଲା ଛୋଟ ବେଲାଟିରେ ବେଲାଏ ପଖାଳ ଓ କିଛି ଶାଗ । ଦ୍ୱିପ୍ରହରରେ ଆଖି ବୁଜି ଘଡ଼ିଏ ବିଶ୍ରାମ ପରେ ପୋଥିଗୁଣା ଆରମ୍ଭ ହୁଏ । ସନ୍ଧ୍ୟାରେ ନିଆଁ ଉମେଇ ପାଖରେ ବସି ଚାଲେ ଜପ ଓ ଭଜନ । ସେଇଠି ନାତୀ ନାତୁଣୀଙ୍କୁ ଦିଆଯାଏ ଶ୍ଳୋକ ଶିକ୍ଷା ଓ ଗପ କୁହା ।

ତାଙ୍କର କାଳେ ୧ ୧ ପୁଅ ଓ ଗୋଟିଏ ଝିଅ । ସବୁ ପୁଅ ଯାଇ ରହିଥିଲେ ଆମ ବାପା; ବଡ଼ପୁଅ 'ଅନାମ' ସେ ଚୀର ରୁଗ୍ଣେ ଧଇଁଆ ଶ୍ୱାସ ରୋଗୀ । ହେଲେ ବାପାଙ୍କ ପରି ସେ ମଧ ସକାଳ ପୂଜା, ଗୀତା ପାଠ ଇତ୍ୟାଦିରେ ଧୂରନ୍ଧର ଓ ଅଭ୍ୟସ୍ତ ଥିଲେ । ମଝିଆଁ ପୁଅ ଅଗଣି ପିଲାଦିନୁ ଗୃହତ୍ୟାଗୀ ହୋଇ ସନ୍ୟାସୀ ହୋଇ ଯାଇ ଥିଲେଯେ ଫେରିଲେ ୫୦ ବର୍ଷରେ । ଦୂରଗାଁରେ ମଠକରି ରହିଲେ । ସେ ବାହାରେ ରହିବା ସମୟରୁ ଅଧିକାଂଶ ସମୟରେ ନଦିୟା ନବଦ୍ୱୀପ ଓ ବୃନ୍ଦାବନରେ କଟାଇ ଚୈତନ୍ୟ ଭାଗବତ ଓ କୃଷ୍ଣ ଲୀଳାରେ ସଂପୂର୍ଣ୍ଣ ବିଭୋର ହୋଇଥିଲେ । ସାନପୁଅ କଣ୍ଟୁରୀ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଗୃହତ୍ୟାଗୀ ହୋଇଥିଲେ ଓ ଏକମାତ୍ର ଝିଅ ବାଳୁତ ବିଧବା ହୋଇ ବହୁଦିନ ଆମ ଘରେ କଟାଇବା ପରେ ଟା ଶାଶୁଘରେ ଏକାକି ରହୁଥିଲା କିଛି ଜମିର ଜୀବନ ସତ୍ୱ ପାଇ ।

ଏହି ଅବସ୍ଥା ଦେଖି ସନ୍ୟାସୀ ହୋଇଥିବା ମଝିଆଁ ପୁଅ ମଝିରେ ମଝିରେ ବୁଢ଼ା ବାପମାଙ୍କୁ ଦେଖିବାକୁ ଆସନ୍ତି । ସେ ମଧ ତାଙ୍କୁ ପରିଣତ ବୟସରେ ୮ ମାସକାଳ ବୁଲାଇ ଚାରିଧାମ ସହ ଭାରତର ବହୁତୀର୍ଥ ଦର୍ଶନ କରାଇ ଥିଲେ । ବେଶୀଦିନ ତୀର୍ଥବାସୀ ହେବାରେ ଓ କିଛି ଖବର ନମିଳିବାରେ ସମସ୍ତେ ସନ୍ଦେହୀ ହୋଇ ଉଠିଥିଲେ । ମାତ୍ର ତୀର୍ଥରୁ ଫେରିବା ପରେ ଆମଘରେ ମାସେ ଦୁଇମାସ ବେଶ୍ ଭିଡ଼ ଜମିଥିଲା । ବହୁତ ଗାଁରୁ ବହୁତଲୋକ କୀର୍ତ୍ତନ ଧରି, ସପରିବାର ବା ଏକୁଟିଆ ଆସି ତୀର୍ଥକାରୀ ହୋଇ ଆସିଥିବା ବୁଢ଼ାବୁଢ଼ୀଙ୍କ ପାଦଧୂଳି ନେଉଥିଲେ । ସେ ଏତେ ତୀର୍ଥ କରି ମଧ୍ୟ ନିଜର ପିତୃପିତାଙ୍କୁ ମଲାଯାଏ ପିଣ୍ଡଦାନକରି ଧନ୍ୟ କରୁଥିଲେ ନିଜକୁ । ହେଲେ ଶେଷଯାଏ ସେ ତାଙ୍କର ଦୈନନ୍ଦୀନ ନିତ୍ୟକର୍ମ ଛାଡ଼ି ନଥିଲେ ।

ବାବାଜୀ କେଜେଇ ଯେତେଥର ଆସନ୍ତି ଆମ ଖଳାବାଡ଼ିରେ ଥିବା ଗୁହାଳ ପାଖ ବଖରାରେ ରହନ୍ତି । ମା'ଘର ଲିପିଦିଏ । ସେଠି ଅଲଗା ଖଟ ଇତ୍ୟାଦି ଥାଏ । ଖଞ୍ଜା ଭିତରକୁ ନ ଆସି ସେଇଠି ରହନ୍ତି । ପ୍ରତି ଦିନରାତିରେ ମା ତାଙ୍କ ପାଇଁ ଚିତ୍ତୋଉ ପିଠା କରି ଦୁଧରେ ଭିଜାଇ ତାଙ୍କୁ ଖାଇବାକୁ ଦିଏ । ଖୁବ୍ ବେଶୀରେ ଦୁଇ ତିନିଦିନ ରହି ସେ ଚାଲି ଯାଆନ୍ତି ଏବଂ ଚାରି ଛମାସରେ ପୁଣି ଆସନ୍ତି । ଆସିଲାବେଳେ ସାଙ୍ଗରେ ପରମ ଭକ୍ତି ଶାସ୍ତ୍ର ଚୈତନ୍ୟ ଭାଗବତ ଆଣିଥାନ୍ତି । ସନ୍ଧ୍ୟାରେ ସେ ପଢ଼ନ୍ତି । ପଢ଼ିଲାବେଳେ ଖନିଖନି ବଙ୍ଗଳା ଭାଷାରେ ଖୁବ୍ ଭାବପ୍ରବଣ ହୋଇ କାନ୍ଦିକାନ୍ଦି ପଢ଼ନ୍ତି । ବୁଢ଼ାବୁଢ଼ୀ ମଧ ତାଙ୍କୁ ଶୁଣିଶୁଣି ଭାବବିହ୍ୱଳ ହୋଇଯାନ୍ତି । ଏ ବୃତ୍ତାନ୍ତ ଏବେ ମଧ ମୋ ଆଖିରେ ଖେଳି ଯାଉଛି । ହେଲେ ସେତେବେଳେ ଆମେ ଯାଙ୍କୁ ଚିତ୍ତୋଉ ପିଠାର ଆକର୍ଷଣ ବୋଲି କହୁଥିଲୁ । ସେ କିନ୍ତୁ ଥିଲେ ବାସ୍ତବ କୃଷ୍ଣ ଭକ୍ତ । କୃଷ୍ଣଲୀଳା କରିବା ବେଳେ ସେ ସଂପୂର୍ଣ୍ଣ ଭାବେ ଆତ୍ମବିସ୍ମୃତ ହୋଇଯାନ୍ତି । ନାମାଚାର୍ଯ୍ୟ ବାୟାବାବା ଏ ଲୀଳାଦେଖି ତାଙ୍କୁ ଯଶୋଦା ଭଳି କୋଳରେ ବସାଇ ରସଗୋଲା ଖୁଆଇ ଦିଅନ୍ତି । ଶେଷବେଳକୁ ସେଇ ବାୟାବାବା ତାଙ୍କ ସେବା ପାଇଁ ସାଧୁ ମାନଙ୍କର ପାଳିକରି ଖାଇବା ପିଇବା ଓ ଚିକିତ୍ସା ବ୍ୟବସ୍ଥା କରେଇ ଥିଲେ । ମହାପ୍ରୟାଣ ପରେ ମଧ ତାଙ୍କର ସ୍ମୃତି ମନ୍ଦିର ପ୍ରତିଷ୍ଠା ସହ ସଙ୍କୀର୍ତ୍ତନ ସହ ଭୋଜୀଭାତ ମହୋତ୍ସବର ବ୍ୟବସ୍ଥା କରିଥିଲେ ।

ସେ ବଞ୍ଚିଥିବା ଯାଏ ପ୍ରତିବର୍ଷ ଅଷ୍ଟପ୍ରହରୀ କରନ୍ତି । ମୁଁ ଚାକିରୀ କଲାପରେ ତାଙ୍କ ନିର୍ଦ୍ଦେଶରେ ଦୁଇତିନିଥର ଯାଇ ଦେଖିଛି । ଦିନେ କୌତୁହଳରେ କହିଲି- ଏତେ କାମ କରୁଛ ଅଥଚ ଆମ ଦାରିଦ୍ର୍ୟ ସମୟରେ ଦିନେତ ଠିଆହେଲନି । ସେ ହଠାତ୍ ରାଗିଯାଇ କହିଲେ ଆରେ ମୂର୍ଖ ନାମର ମାହାତ୍ମ୍ୟ ତୁ କ'ଣ ଜାଣିବୁ । ବିଗତ ୭ପୁରୁଷ ଓ ଆସନ୍ତା ୭ ପୁରୁଷ କେବଳ ଏହି ନାମ ଯୋଗୁଁ ଉଦ୍ଧାର ପାଇବେ । ତୁ ଯେ ବଡ଼ ହୋଇଛୁ କେବଳ ଏହିନାମ ଯୋଗୁଁ ।

ଯେଉଁ ବଂଶରେ ଏତେ ଭକ୍ତି ଏତେ ନିଷ୍ଠା ଓ ଏତେ ଈଶ୍ୱର ବିଶ୍ୱାସ ସେ ବଂଶକୁ ଭଗବାନ ଚକ୍ର ଉହାଡ଼ରେ ରଖିବେ ନି ତ ଆଉ କାହାକୁ ରଖିବେ ?

## ୨୮. ବଂଶାବଳୀ

ଏହି ବଂଶର ଏକ ବଂଶାବଳୀ ଯଦି ଏଠାରେ ଦିଆ ନ ଯାଏ ତେବେ ତାହା ନିଶ୍ଚିତ ଭାବରେ ବିସ୍ମୃତ ହୋଇଯିବ । ଜଣେ ଖୁବ୍ ଭଦ୍ର, ଶାନ୍ତ ଆଇ.ଇ.ଏସ୍ ଅଫିସର ଗୋଟିଏ ପୂଜାମଣ୍ଡପରେ ତାଙ୍କ ଗୋତ୍ର ଓ ଜେଜେବାପା ଓ ଜେଜିମାଙ୍କ ନାମ ମଧ୍ୟ କହି ପାରିନଥିବାର ମୁଁ ଦେଖିଛି । ମୋ ପିଲାଏ ମଧ୍ୟ ଏହି ଅବସ୍ଥାକୁ ଆସିଯିବା ବିଚିତ୍ର ନୁହେଁ । ତେଣୁ ଏଠାରେ ଅନ୍ତତଃ କେତେ ପୁରୁଷର ବଂଶାବଳୀ ଲିପିବଦ୍ଧ କରିବା ଏକାନ୍ତ ଆବଶ୍ୟକମନେ କରେ ।

ଆମ ଶିକ୍ଷା କହୁଛି "ଯାହା ନଦେଖିବ ଦୁଇ ନୟନେ- ପରତେ ନଯିବ ଗୁରୁ ବଚନେ ।" ଏହି ନ୍ୟାୟରେ ଯେଉଁ ବ୍ୟକ୍ତି ତା'ର ଜେଜେ ବାପାଙ୍କ ନାମ ନଜାଣେ ବା ତାଙ୍କୁ ନଦେଖିଛି ତା'ର ଜେଜେବାପା କ'ଣ ନଥିଲେ ? ଏ ବଂଶାବଳୀ ଏହି ସନ୍ଦେହରୁ ମୁକ୍ତ ହେବା ପାଇଁ ଅନ୍ତତଃ ଗୋଟିଏ ଲିଖିତ ଦସ୍ତାବିଜ ଭାବେ ଥାଉ । ଅବଶ୍ୟ କିଏ ପଢ଼ିବେ କି ନାହିଁ ଓ ପଢ଼ି ଲାଭବାନ ହେବେକି ନହେବେ ମୁଁ ଜାଣେନା । କିନ୍ତୁ ଏହା ନିଶ୍ଚିତ ଭାବେ ଅନେକଙ୍କୁ ତାଙ୍କ ପୂର୍ବଜମାନଙ୍କୁ ଜାଣିବାର ଆଗ୍ରହ ଓ ପ୍ରେରଣା ଦେବ କୃତଜ୍ଞତାର ଆକର୍ଷଣରେ ।

ମରହଟ୍ଟା ଅମଳର କଥା । ଅସୁରେଶ୍ୱର ପ୍ରଗଣାରେ ଆମ ବଂଶ ମହା ନଦୀର ପୃତ ଶାଖାନଦୀ ଚିତ୍ରୋତ୍ପଳାର କନ୍ୟା ଲୁଣା ନଈ କୂଳରେ ବାଲିଆପଦାରେ ଆସି ରହିଲା । ଆଗେ ଆମ ଗାଁକୁ ମିଶ୍ର ବଂଶ ଆସିଥିବାର କେତେକ ଦାବୀ କରୁଥିଲେ ମଧ୍ୟ ଠିକ୍ ସେହି ସମୟରେ ଦ୍ୱିବେଦୀ ବଂଶ ମଧ୍ୟ ଆସିଥିଲେ । ମୂଳ ବାସସ୍ଥଳୀ ଉତ୍ତର ପ୍ରଦେଶ ବା ଆର୍ଯ୍ୟାବର୍ତ୍ତ । ଦଶାଶ୍ୱମେଧ ଯଜ୍ଞ ପାଇଁ ସାମବେଦୀ ବ୍ରାହ୍ମଣ ହିସାବରେ ଆସି ପୁରୀ ଦାମୋଦରପୁର ଶାସନରେ ଥିବା ଏହି ବଂଶ ପରେ ପଟିଆ ଅଞ୍ଚଳରେ ଓ ସେଠାରୁ ଆମ ଗାଁ ବାଲିଆ ପଦାକୁ ଆସିଥିଲେ । ସେତେବେଳେ ଗାଁଟା ସାରା ବୁଦୁ ବୁଦିକିଆ ଗଛର ବଣରେ ଭରାଥିଲା । ତେଣୁ ଏବେକାର ମୋ ସଙ୍ଗାତ ବଇନ ବା ରାଜକିଶୋର ମିଶ୍ରଙ୍କ ବାପା ଅପର୍ତ୍ତୀ ମିଶ୍ରଙ୍କ ଢିଅଠାରୁ ରଥ ବଂଶର ଢିଅ ମଧ୍ୟରେ ପ୍ରାୟ ପାଞ୍ଚ ଏକର ଜମିରେ ଦ୍ୱିବେଦୀ ବଂଶ ପ୍ରତିଷ୍ଠିତ ହୋଇଥିଲା। ପରେ ଭାଇ ଭାଗ ଓ ବିକ୍ରିବଟା ହୋଇ ୧୦ଟି ଭାଗ ହୋଇଛି ।

## ୨୯. ଆଶ୍ରିତ ବତ୍ସଳ ଚିହ୍ନାଦେଲେ

ଆମେ ଠାକୁରଙ୍କୁ କୃପାକଳ୍ପତରୁ କହୁ । କୃପାକଳ୍ପତରୁର ମାନେ ହେଲା ସେ କଳ୍ପବୃକ୍ଷ ସଦୃଶ ଏବଂ ତାଙ୍କୁ ଯାହା ମାଗିଲେ ସେ ଦିଅନ୍ତି । କିନ୍ତୁ ଏହାକହି ଆମେ ତାଙ୍କୁ ସାନକରି ଦେଉଛୁ । ଆମେ ଯାହା ଚିନ୍ତା କରି ନପାରିବା ଠାକୁର ତା' ମଧ ଦିଅନ୍ତି । ମଣିଷ ନିଜବୁଦ୍ଧି ଓ କଳ୍ପନା ବଳରେ ଲୋଭମୋହରେ ପଡ଼ି କି ତୁଚ୍ଛ ଭୀକ୍ଷା କରିବ ତାଙ୍କ ପରିରାଜ ରାଜେଶ୍ୱରଙ୍କ ପାଖରେ । ସେ ଯେବେ ଦେବେ ମାଗିବା ଠାରୁ ବହୁଗୁଣରେ ବହୁତ କିଛି ଦେଇ ପାରିବେ ଓ ଦିଅନ୍ତି ମଧ ।

ବ୍ରତହେବାପରେ ଛୁଟିକିଆ ମୁଭିକିଆ ଦିନମାନଙ୍କରେ ଯେଉଁ ଦୁଇତିନିଘର ଠାକୁର ପୂଜା କରୁଥିଲି ସେ ଭିତରେ ମୋ ଝିଅଘର ଥିଲା ଅନ୍ୟତମ । ତାଙ୍କ ଠାକୁର ଖଟୁଲୀରେ ଅନ୍ୟବ୍ରାହ୍ମଣ ଘରପରି ଶାଳଗ୍ରାମ ତ' ଥିଲେ; ତାଙ୍କ ସହ ଥିଲା ଜଣେ ଅର୍ଦ୍ଧ ଲଙ୍ଗୁଳୀ ବାବାଙ୍କ ଫଟୋ । ପଚାରି ବୁଝିଥିଲି ଯେ, ସେ ହେଉଛନ୍ତି ଠାକୁର ରାମକୃଷ୍ଣ ପରମହଂସ । ଡ଼ାକ୍ତର ବ୍ରଜନାଥ ମିଶ୍ର ବୁଲା କକେଇଙ୍କ କକେଇ ମା ଲକ୍ଷ୍ମୀ ଠାକୁରାଣୀଙ୍କ ଠାରୁ (ଠାକୁରଙ୍କ ଝିଆରୀ)

# ପୁରୁଷାନୁକ୍ରମିକ ବଂଶାବଳୀ

**ସାମବେଦ, ବତ୍ସସ ଗୋତ୍ର, କାଣ୍ୱଶାଖା, ଦାମୋଦରପୁର ଶାସନ**

**୧ମ ପୁରୁଷ ଚକ୍ରଧର ଦ୍ୱିବେଦୀ, ଓ ସାମନ୍ତାଣୀ ଦେବୀ**

**୨ୟ ପୁରୁଷ- ଗଙ୍ଗାଧର ଦ୍ୱିବେଦୀ ଓ ଫୁଲ ଦେବୀ**

**୩ୟ ପୁରୁଷ- ବିନାୟକ ଦ୍ୱିବେଦୀ ଓ ଦେବକୀ ଦେବୀ**

**୪ର୍ଥ ପୁରୁଷ**

- କୃପାସିନ୍ଧୁ ଦ୍ୱିବେଦୀ
  - ସନାତନ ଦ୍ୱିବେଦୀ
    - ଭଦ୍ରମଣି ଦ୍ୱିବେଦୀ
      - ରାମ, ଗୋବିନ୍ଦ ଗୋଲକ, କୁନା ଇତ୍ୟାଦି
- ଦୀନବନ୍ଧୁ ଦ୍ୱିବେଦୀ ଓ ତାରାଦେବୀ
  - ୫ମ ପୁରୁଷ
    - ଅଭିରାମ ଦ୍ୱିବେଦୀ ଓ ସୁଭଦ୍ରାଦେବୀ
      - ୬ଷ୍ଠ ପୁରୁଷ
        - ୬ଷ୍ଠ ପୁରୁଷ ଭଗବାନ ଦ୍ୱିବେଦୀ ଓ ସରୋଜିନୀ ଦ୍ୱିବେଦୀ
          - ୭ମ ପୁରୁଷ
            - ପୁଅ ରାମେଶ୍ୱରୀ ପ୍ରସାଦ ଝିଅ କଳ୍ପନା, ଜ୍ୱାଇଁ ରଘୁନାଥ
            - କାମାକ୍ଷ ପ୍ରସାଦ
        - ୬ଷ୍ଠ ପୁରୁଷ ପର୍ଶୁରାମ ଦ୍ୱିବେଦୀ ଓ ଅନ୍ନପୂର୍ଣ୍ଣା ଦ୍ୱିବେଦୀ
          - ୭ମ ଓ ୮ ପୁରୁଷ
            - ଝିଅ- ସଂଘମିତ୍ରା, ଜ୍ୱାଇଁ- ନାରାୟଣ ପଣ୍ଡା, ନାତୁଣୀ- ନିବେଦିତା, ନାତି- ନଚିକେତା
            - ପୁଅ- ଦୁର୍ଗାପ୍ରସାଦ, ବୋହୂ- ମମତା, ନାତି- ଜଗନ୍ନାଥ ଓ ରୂପ ଅନୁପ
            - ପୁ- ଲକ୍ଷ୍ମୀପତି ପ୍ରସାଦ, ବୋହୂ- ଅସୀମା, ନାତି- ଅଭିଷେକ ଓ ଅଭିଲାଷ
            - ପୁଅ- ବିରଜା ପ୍ରସାଦ, ବୋହୂ- ଅଞ୍ଜନା, ନାତୀ- ଶ୍ରୀକାନ୍ତ, ନାତୀ- ସଂକଳ୍ପ
            - ଝିଅ- ସତ୍ୟମିତ୍ରା, ଜ୍ୱାଇଁ- ହରେକୃଷ୍ଣ ଦାଶ, ନାତୁଣୀ- ମଧୁସ୍ମିତା, ନାତି- ସତ୍ୟକୃଷ୍ଣ
        - ୬ଷ୍ଠ ପୁରୁଷ ପ୍ରେମଲତା (ଝିଅ) ୟଦୁନାଥ ମହାପାତ୍ର (ଜ୍ୱାଇଁ)
          - ବିଭୂତି, ତୁଷାର, ମିଣ୍ଟୁ, ମନ୍ଟୁ, ସଞ୍ଜୁ, ରଞ୍ଜୁ ଓ ଟିକିଲି ଆଦି ୭ଜଣ
        - ବଳରାମ ଦ୍ୱିବେଦୀ ଓ ସାବିତ୍ରୀ ଦ୍ୱିବେଦୀ
          - ପୁଅ ଶକ୍ତି ପ୍ରସାଦ ଝିଅ- ବିଶ୍ୱମିତ୍ରା ଓ ପୁଷ୍ପମିତ୍ରା
          - ଲକ୍ଷ୍ମୀ ପ୍ରସାଦ
        - କୁସୁମଲତା (ସାନଝିଅ) ଦାମୋଦର ତ୍ରିପାଠୀ (ଜ୍ୱାଇଁ)
          - ପିତାମ୍ବର, (ଚଗଲା) ପାଗଲା, ହାଉଁ (କବିତା), କୁନୁ
    - ଅଗଣି ଦ୍ୱିବେଦୀ ସନ୍ୟାସୀ ନାମ ଅଚ୍ୟୁତାନନ୍ଦ ଦାସ ନିଃସନ୍ତାନ
    - କସ୍ତୁରୀ ଦ୍ୱିବେଦୀ ସ୍ୱାଧୀନତା ସଂଗ୍ରାମୀ ନିଃସନ୍ତାନ
- କାହ୍ନୁ ଦ୍ୱିବେଦୀ
  - ଗଣେଶ୍ୱର ଦ୍ୱିବେଦୀ ନିଃସନ୍ତାନ
- କୃଷ୍ଣ ଦ୍ୱିବେଦୀ
  - ଭାସ୍କର ଦ୍ୱିବେଦୀ ନିଃସନ୍ତାନ

## ଅନ୍ୟ ଦୁଇ ବଂଶ ହେଲେ

ମଧୁ ଦ୍ୱିବେଦୀ

↓

- ଶଙ୍କର ଦ୍ୱିବେଦୀ → ମାଗୁଣି ଦ୍ୱିବେଦୀ → ଅଭିରାମ
  - ସୁରେନ୍ଦ୍ର ନାଥ
  - ଧ୍ରୁବାନନ୍ଦ, ଧୀରେନ୍ଦ୍ର ଓ ନୀରଞ୍ଜନ
- ଆର୍ତ୍ତତ୍ରାଣ (ନିଃସନ୍ତାନ)
- ଉଦୟନାଥ → ଦୁଃଖିଶ୍ୟାମ → ମଦନ
  - ଫକୀର
  - ଅଭୟ

ଏବେ ଏହି ପବିତ୍ର ଦ୍ୱିବେଦୀ ବଂଶର ଚାରୋଟି ଶାଖା ରହିଥିଲେ ମଧ ମାଗୁଣି ଦ୍ୱିବେଦୀ ଓ ଉଦୟନାଥ ଦ୍ୱିବେଦୀ ପୁଅ ହୋଇ ଆସିଥିବାରୁ କୃପାସିନ୍ଧୁ ଓ ଦୀନବନ୍ଧୁଙ୍କର ଦୁଇଟି ମାତ୍ର ମୂଳବଂଶ ରହିଅଛି ।



କୁଳବୃଦ୍ଧ ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ ଓ ଅରୁଣାଚଳର ରାଜ୍ୟପାଳ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ସହ ଲେଖକ, ତାଙ୍କର ତିନିପୁଅ ଓ ଦୁଇଝିଅ, କୋଳରେ ନାତୀ ନାତୁଣୀ

ଶ୍ରୀରାମକୃଷ୍ଣଙ୍କ ଦୀକ୍ଷା ନେଇଥିଲେ ଓ ଠାକୁରଙ୍କୁ ଉପାସନା କରୁଥିଲେ । ସେଇଠି ସେହିଠାକୁର ଖଟୁଲୀରେ ଆଶ୍ରିତବତ୍ସଳ ଶ୍ରୀରାମକୃଷ୍ଣ ମୋତେ ଛାଏଁଛାଏଁ ଚିହ୍ନା ଦେଲେ ।

ତା'ପରେ ହାଇସ୍କୁଲରେ ସାହିତ୍ୟ ବହିରେ ସ୍ୱାମୀ ବିବେକାନନ୍ଦଙ୍କ ସମ୍ବନ୍ଧରେ ପଢ଼ିଲି । ତାକୁ ଲେଖିଥିଲେ ଆମ ଗାଁର ଅଗଣି ଦାଶ । ସେ ସେତେବେଳେ (ଭିକ୍ଟୋରିଆ) ଭକ୍ତ ମଧୁ ବିଦ୍ୟାପୀଠର ଶିକ୍ଷକ ଥିଲେ । ବେଶଟି ଠିକ୍ ରବୀନ୍ଦ୍ରନାଥ ଠାକୁରଙ୍କ ପରି । ସେ ମଧ ଲକ୍ଷ୍ମୀ ଠାକୁରାଣୀଙ୍କ ଠାରୁ ଦୀକ୍ଷୀତ ଥିଲେ । ସେ ପଞ୍ଚାମୃତ ନାମକ ସାହିତ୍ୟ ପତ୍ରିକାର ସଂପାଦକ ଥିଲେ । ଏ ଜାତି ଜଣ ତାଙ୍କ ପିଲାଏ ବି ତାଙ୍କୁ ଚିହ୍ନିପାରିଲେନି ।

ଯୋଗଚ ବାଟ କଢ଼ାଏ । ମାଟ୍ରିକ୍ ପାସ୍ ପରେ କଟକରେ ପ୍ରଥମେ ଯାଇ ରହିଲି ମାମୁଁ ପଣ୍ଡିତ ଆକୁଳ ମିଶ୍ରଙ୍କ ଘରେ । ସେ ମଧ ମା' ଶାରଦାମଣୀଙ୍କର ଶିଷ୍ୟ ଥିଲେ ଓ ଠାକୁରଙ୍କର ପରମ ଭକ୍ତ ଥିଲେ । "ସ୍ଥାପକାୟ ଚ ଧର୍ମସ୍ୟ ସର୍ବଧର୍ମ ସ୍ୱରୂପିଣେ ଅବତାର ବରିଷ୍ଠାୟ ରାମକୃଷ୍ଣାୟ ତେ ନମଃ । ଓଁ ହ୍ରୀଂ ଋତଂ ତ୍ୱମ ଚଲୋ ......... ଇତ୍ୟାଦି" ଭୋର ସକାଳୁ ଆମେସବୁ ଶୋଇଥିବା ବେଳେ ସେ ଉଠି ଠାକୁରଙ୍କ ଏହି ସ୍ତୋତ୍ର ପଢ଼ିପଢ଼ି ଦୁଆରେ ବୁଲିଲାବେଳେ ବ୍ରାହ୍ମ ମୁହୂର୍ତ୍ତର ବେଦଧ୍ୱନୀ ଭଳି ନିନାଦିତ ହୁଏ । ବହୁତ ଥର ସେ ମଧ ଠାକୁରଙ୍କ ପ୍ରସଙ୍ଗରେ କହନ୍ତି । ତାଙ୍କର ବନ୍ଧୁ ଅକ୍ଷୟ ଚକ୍ରବର୍ତ୍ତୀ ମଧ ବହୁ ସମୟରେ ତାଙ୍କଘରେ ରହି ବହିଲେଖନ୍ତି ଓ ଠାକୁରଙ୍କ କଥା କହନ୍ତି । ତାଙ୍କ ଘରେ ଠାକୁରଙ୍କ ସମ୍ବନ୍ଧେ କେତେ ଖଣ୍ଡ ଛୋଟ ଲେଖା ମଧ ପଢ଼ିବାର ସୁଯୋଗ ମିଳିଥିଲା । ବେଲୁଡ଼ରୁ ପେଂରି ରେଳଷ୍ଟେସନରେ ଅପେକ୍ଷାରତ ଅଶ୍ରୁମୁଖର ଯୁବକ ଆକୁଳ ମିଶ୍ରଙ୍କୁ ଦେଖି ମା' ଠାକୁରାଣୀ ନିଜ ପଣତ କାନି ତଳେ ମନ୍ତ୍ର ଦୀକ୍ଷା ଦେଇଥିଲେ । ଏକଥାଟି କହିଲା ବେଳେ ମାମୁ ଭାବବିହ୍ୱଳ ହୋଇ କାନ୍ଦି ପକାନ୍ତି । ଆଉ କହି ପାରନ୍ତିନି । ଧନ୍ୟ ସେ ଭକ୍ତି ।

ଆଖିକୁ ଦେଖାଯାଉନଥିଲେ ମଧ ଖରାଦିନେ ଝଡ଼ିପଡ଼ିଥିବା ତୁଳସୀ ମଞ୍ଜି ବର୍ଷାଦିନେ ଗଛହୁଏ । ସେଇ ଯେ ମଞ୍ଜିବୁଣା ହୋଇଥିଲା ତାହା ହୃଦୟ ଭୂମିରେ ପଡ଼ିରହିଥିଲା । ୧୯୭୩ ମସିହାରେ ସେ ଟିକିଏ ଭୃଣ ହେଲା । ସ୍ୱାମୀ ସ୍ତ୍ରୀ ଦୁହେଁ ବସ୍‌ଧରି ଠାକୁରମୁଣ୍ଡାରୁ କରଞ୍ଜିଆ ଦେଇ ବେଲୁଡ଼କୁ ଗଲୁ । ଆଗରୁ ଦୀକ୍ଷାପାଇଁ ଲେଖିଥିଲି । ପଢ଼ିଥିଲି ଠାକୁରେ ପାଗଳ ହୋଇ କୋଠାଉପରେ ଚଢ଼ି ଭକ୍ତମାନେ ଆସିବାକୁ ଡ଼ାକୁଥିଲେ । ହେଲେ ଏବକାର ତାଙ୍କ ବଡ଼ପଣ୍ଡାମାନେ ବେଲୁଡ଼ର ବଡ଼ଲୁହା ଦରଜାକିଳି ଭକ୍ତମାନଙ୍କୁ ଦୂରଦୂର କରୁଥିଲେ । କାହାଠାରୁ ଆଶ୍ୱାସନା ଟିକେ ନପାଇ ସେ ସଂସ୍ଥାପ୍ରତି ବିମୁଖ ହୋଇ ହତାଶରେ ଫେରିଲୁ । ହେଲେ ସେ' ତ ଦୁଃଖୀର ବାନ୍ଧବ, ଅନାଥର ନାଥ, ଆଉ ଭକ୍ତିରେ ବନ୍ଧା । ତେଣୁ ଆଉ ଚେଷ୍ଟା କରିବାକୁ ହେଲାନି । ସେମିତି ବିତସ୍ପୃହ ଅବସ୍ଥାରେ ଥିବାବେଳେ ୧୯୭୭ରେ ତାର

ବାର୍ତ୍ତାଟିଏ ମିଳିଲା ଭୁବନେଶ୍ୱରରେ ସ୍ୱାମୀ ବୀରେଶ୍ୱରା ନନ୍ଦ (ପ୍ରଭୁ ମହାରାଜ) ବେଲୁଡ ମଠ ଅଧ୍ୟକ୍ଷ ଦୀକ୍ଷା ଦେବେ । ସେ ଆସି ଦୀକ୍ଷା ଦେଲେ । ଆନନ୍ଦରେ ଅଧୀର ହୋଇ ଧାଇଁ ଆସିଲି ବହୁଦୂର ମାଲକାନଗିରିରୁ । ସ୍ୱାମୀ ସ୍ତ୍ରୀ ସାଙ୍ଗହୋଇ ଦୀକ୍ଷା ନେଲୁ । ପିଲାଦିନେ ଯେଉଁ ଲଙ୍ଗଳା ଠାକୁରଙ୍କୁ ବୁଲା କକେଇଙ୍କ ଠାକୁର ଖଟୁଲୀରେ ଦେଖିଥିଲି ତାଙ୍କୁ ହୃଦୟ ସିଂହାସନରେ ବସାଇ ଜୀବନକୁ ଧନ୍ୟ ମନେ କରୁଅଛି । ଶେଷ ନିଃଶ୍ୱାସ ଯାଏ ଏହି ସ୍ମରଣ ଟିକକ ରହିବାର ଦାୟିତ୍ୱ ତାଙ୍କୁହିଁ ଦେଇଛି । ଭୁବନେଶ୍ୱରରେ ରାମକୃଷ୍ଣ ମିଶନ୍‌ରେ ତାଙ୍କର ସବୁ ପ୍ରକାର ଚିଠି ପତ୍ର ଲେଖାର ଦାୟିତ୍ୱ ନେଇଥିଲି । ମୋତେ ବହୁଦିନପରେ ତାଙ୍କ ପରିଚାଳନା କମିଟିର ସଭ୍ୟ କରିନେଇଥିଲେ । କେତୋଟି ମିଟିଂରେ ଯୋଗ ଦେଇଥିଲି । ସ୍ୱତନ୍ତ୍ର ମନ୍ଦିର ନକରି ପୂର୍ବରୁ ଥିବା ମଠଉପରେ ମନ୍ଦୀର ସ୍ଥାପନା ନିଷ୍ପତ୍ତିରେ ମୁଁ ରାଜିହୋଇନପାରି ଆଉ ମିଟିଂକୁ ନଯାଇ ରହିଗଲି । ହେଲେ ସେ ଲଙ୍ଗଳା ଠାକୁରଙ୍କୁ ଛାଡ଼ିନି । ଛାଡ଼ିବିନି ବୋଲି ଦୃଢ଼ ବିଶ୍ୱାସ ।

## ୩୦. ଗୀତାମୃତ

ଯେମିତି ଠାକୁର ରାମକୃଷ୍ଣଙ୍କୁ ବୁଲା କକେଇଙ୍କ ଠାକୁର ଖଟୁଲୀରେ ଚିହ୍ନିଲି ସେମିତି ଗୀତା ପରିଚୟ କଥା ବଡ଼ ବିଚିତ୍ର । ଜେଜେଙ୍କ ପରି ବାପାମଧ ଦୈନିକ ସ୍ନାନପରେ ଠାକୁର ପୂଜା କରୁଥିଲେ । ପୂଜା ପରେ ଟିକିଏ ଗୀତା ପଢ଼ନ୍ତି । ବହିଟି ସେହି ଠାକୁର ଖଟୁଲୀରେ ଚନ୍ଦନ ଦିଆଯାଇ ରଖାଯାଇ ଥାଏ । ମୁଁ ବ୍ରତ ହେବାପରେ ମୋ ଉପରେ ଆମଘରର ଠାକୁରବସା ଦାୟିତ୍ୱ ପଡ଼ିଲା । ଭାଇନା ଅସୁରେଶ୍ୱରରେ ପଢ଼ିବାକୁ ଚାଲିଯାଇଥିଲେ । ମୁଁ ଠାକୁର ବସାଇବା ବେଳେ ସବୁଠାକୁରଙ୍କୁ ଚନ୍ଦନ ଦେବାବେଳେ ସେ ଗୀତା ବହିର ବହଳେ ଚନ୍ଦନ ଲାଗିଥିବାର ଦେଖି ସେଠିମଧ ଚନ୍ଦନ ଦେଉଥିଲି । ବହୁଦିନ ପରେ ଦିନେ ତାକୁ ଖୋଲି ଦେଖିଲି "ଶ୍ରୀମଦ୍ ଭଗବତା ଗୀତା" ଲେଖା ଅଛି । ମୁଁ ତ ଓଡ଼ିଆ ଭାଗବତ ପଢୁଥିଲି; ଭାବିଲି ଏ ବୋଧେ ସଂସ୍କୃତ ଭାଗବତ, ପୁଣି ଗୀତା କ'ଣ ଏପରି ସନ୍ଦେହରେ ପଢ଼ି ତାକୁ ତା'ର ଉପକ୍ରମଣୀକା ଠାରୁ ବହୁ କଷ୍ଟରେ ପଢ଼ିଲି । ଦିନକୁ ଗୋଟିଏ ଶ୍ଳୋକ ପଢେ । କିଛି ବୁଝେନା । ଉଚ୍ଚାରଣରେ ମଧ ପୂରା ଭୁଲ୍ । ଏହିପରି କେତେ ଦିନ ଯିବାପରେ ଅଷ୍ଟମ ଶ୍ରେଣୀରେ ସଂସ୍କୃତ ପଢ଼ା ଆରମ୍ଭ ହେଲା । ଆମର ପୁଣ୍ୟଶ୍ଳୋକ ପଣ୍ଡିତ କୃଷ୍ଣଚନ୍ଦ୍ର ଷଡ଼ଙ୍ଗୀଙ୍କ ସଂସ୍କୃତ ପଢ଼ାର ରିତି ଖୁବ୍ ଭଲ ଲାଗିଲା । ମୋର ମଧ ଏଇ ପୂର୍ବ ଗୀତାଭ୍ୟାସ ଯୋଗୁଁ ସଂସ୍କୃତ ଭଲହେଲା କି ସଂସ୍କୃତ ବୁଝିବାରୁ ଗୀତା ଭଲ ଲାଗିଲା ତା ସେହି ସ୍ୱୟଂ ଗୀତା ପ୍ରବଚକଙ୍କୁ ଜଣା ।

ପରେ ଉଦ୍ଭାବନ କଲିଯେ ବାଇଧର ମିଶ୍ରଙ୍କ ପୁତୁରା ଉଦୟନାଥ ମିଶ୍ର ଯେକି ହିସାବରେ ମାମୁଁ ହେବେ ସେ ପଣ୍ଡିତ ଆକୁଳ ମିଶ୍ରଙ୍କ କଟକ ଟ୍ରେଡିଂ କମ୍ପାନୀବହି ଦୋକାନରୁ

ସେ ଗୀତା ଖଣ୍ଡକ ଆଣି ବାପାଙ୍କୁ ଦେଇଥିଲେ । ବାପା ତାକୁ ପଢୁଥିଲେ । ମୁଁ ସେଇ ଦିନୁ ତାଙ୍କ ଅଗୋଚରେ ପଢ଼ିଲି । ଅନେକ କାହିଁକି ପ୍ରାୟ ସମୁଦାୟ ଗୀତା ମୁଖସ୍ଥ ହୋଇଗଲା । ଭାଇନା ଯେତେବେଳେ ଚଉଦ୍ୱାରରେ ବିଜୁପଟ୍ଟନାୟକଙ୍କ କଳିଙ୍ଗ ଟିଉବ୍‌ରେ କାମ କଲେ ସେଠି ହୋଟେଲରେ ଖାନ୍ତି । ତାଙ୍କର ଏତାଦୃଶ ବ୍ୟବହାର ମୋତେ ଭଲ ଲାଗେନା । ତେଣୁ ସେଗୀତାର ମଲାଟ ଉପରେ ଥିବା ଖାଲି ପୃଷ୍ଠାରେ କେତୋଟି ଉପଦେଶ ଲେଖି ତାଙ୍କୁ ତାହା ଦେଲି । ସେ ତାକୁ ପଢ଼ିଲେ କି ନାହିଁ ଜାଣେନା । ପୁଣି ଦେଖିଲି ଗୀତାଟି ଆମ ଠାକୁର ଖଟୁଲୀକୁ କେତେଦିନପରେ ଫେରି ଆସିଛି । ସେହିଦିନୁ ଜାଣିଲି ବାପା ବୋଧେ ଉତ୍ତରାଧିକାର ସୂତ୍ରେ ନଲେଖି ନକହି ତାକୁ ମୋପାଇଁ ରଖିଯାଇଛନ୍ତି । ସେହିଦିନଠାରୁ ସେ ମୋର ଜୀବନର ଚୀର ସାଥି ହୋଇ ରହିଛି । ଗୀତାର ମୂଳସଂସ୍କୃତ ଶ୍ଳୋକର ସଂସ୍କୃତ ଅନ୍ୱୟ ସହ ଓଡ଼ିଆ ଅର୍ଥ ଆଚାର୍ଯ୍ୟ ହରିହର ଦାସ ଲେଖିଛନ୍ତି । ବହୁତ ଗୀତା ଦେଖିଛି ଓ ପଢ଼ିଛି ଶୁଣିଛି । ସରଳରେ, ସଠିକ୍‌ରେ, ସଂକ୍ଷିପ୍ତରେ ଆଉ ସେଭଳି ଗୀତା ଏଯାଏ ପାଇନି । ଆଉ ମଧ୍ୟ ଦରକାର ନାହିଁ । ଯେ ଅଛି ସେ ଥାଉ । ଶେଷଜୀବନଯାଏ ସେହି ପିତୃଦତ୍ତ ଗୀତାମୃତ ମୋ ଉପରେ ବର୍ଷୁଥାଉ । ଆହାର ଛାଡ଼ିଯାଉ ଗୀତା ଶେଷ ନିଃଶ୍ୱାସ ଯାଏ ମୋତେ ନଛାଡୁ ।

## ୩୧. ଗଣେଶ ଜର ଓ ମାତୃ ଶକ୍ତିର ପ୍ରଲେପ

ଆମଗାଁରେ ବହୁତ ଲୋକଙ୍କଘରେ ପିତଳ ପ୍ରତିମା ଥିବାରୁ ଦୁର୍ଗାପୂଜାକୁ ମାଟିରେ ଦୁର୍ଗା ତିଆରି କରି ପୂଜା କରାଯିବା କଥାଟା ନଥିଲା । କେବଳ ଗଣେଶ ପୂଜା ମାଟିରେ ମୂର୍ତ୍ତୀ ଗଢ଼ି କରାଯାଏ । ଭୋଳିମାଷ୍ଟ୍ରେ (ବଡ଼ ମାଷ୍ଟ୍ରଙ୍କର ପୁଅ) ସେତେବେଳେ ନିୟମିତ ଗଣେଶ ପୂଜା କରାଉଥିଲେ । ଆଉ କେମିତି କିଏ ମଧ୍ୟ ପୂଜା କରନ୍ତି । ତା ବାଦ୍ ସ୍କୁଲରେ ପୂଜାହୁଏ । ନାଥ ମାଷ୍ଟ୍ରେ ନିଜେ ଗୀତଲେଖି ଦିଅନ୍ତି । ସ୍ୱରଧରି ବୋଲିବାକୁ ଶିଖାଇ ଦିଅନ୍ତି । ନିଜେ ବୋଲନ୍ତି ଓ ମୃଦଙ୍ଗଧରି ବଜାନ୍ତି ମଧ୍ୟ । ତେଣୁ ଗଣେଶ ପୂଜା ପ୍ରାଥମିକ ବିଦ୍ୟାଳୟ ସ୍ତରରେ ଖୁବ୍ ଜାକଜମକରେ ହୁଏ । ହେଲେ ମୂର୍ତ୍ତୀଟି ଖୁବ୍ ସାନ ।

"ଭାଦ୍ର ଶୁକ୍ଳ ଚତୁର୍ଥୀ ଆସ ହୋଇ ସାଥୀ ପୂଜିବାହେ ଗଜାନନ ।"

ଏବେ ବି ଏ ପ୍ରଥମ ପଦଟି ମନରେ ଝଙ୍କୃତ ହୋଇ ଉଠେ ସେ ମଧୁର ସ୍ୱରରେ । ଏକଥା ଦେଖି କିମ୍ବା ଭୋଳି ମାଷ୍ଟ୍ରଙ୍କ ଗଣେଶ ପୂଜା ଦେଖି ନିଜେ ମୂର୍ତ୍ତୀଗଢ଼ି ପୂଜାକରିବାର ପ୍ରେରଣା ମନରେ ଜାତ ହେଲା । ନିଜେ ହାତରେ ଗଣେଶ ମୂର୍ତ୍ତୀ ଗଢ଼ି, ରଙ୍ଗଦେଇ ବ୍ରତଦିନ ଠିକ୍ ଯେତେବେଳେ ପୂଜା ଆରମ୍ଭହୁଏ ମନରେ ଖୁବ୍ ଭକ୍ତି ଭାବନା ଜାତ ହୁଏ । ଏହି ପୂଜା ମଧ୍ୟ ନିଜେକରେ । ସଜାସଜି ନିଜେକରେ । ଠିକ୍ ପୂଜା ସମୟକୁ ପ୍ରାୟ ପ୍ରତିବର୍ଷ ଆରମ୍ଭ ହୋଇଯାଏ କମ୍ପସହ ଜର । ସେ ଜର ମଧ୍ୟ ଦିନକରେ ଛାଡ଼େନି । କେଉଁ କେଉଁ ବର୍ଷ

ନିମୁନିଆ ବା ମ୍ୟାଲେରିଆ ହୋଇ ସାତ ଦିନଯାଏ ଜରହୁଏ । ଏଇଟା ପ୍ରତିବର୍ଷର ଗୋଟେ ପରମ୍ପରାରେ ପରିଣତ ହୋଇ ଯାଇଥିବାରୁ ତାକୁ ଗଣେଶ ଜର ବୋଲି ବୋଉ କହୁଥିଲା । ଏହି ଜରର ତାପ ସହିନପାରି ଚାରି ପାଞ୍ଚ ବର୍ଷପରେ ଏ ଗଣେଶ ତିଆରିକରି ପୂଜା କରିବା ବନ୍ଦ କରିଦେବାରେ ସେ ଜର ମଧ ବନ୍ଦ ହୋଇଗଲା । ଗଣେଶ ଗଢ଼ି ପୂଜା କରିବା ସହ ସେ ଜରର ସମ୍ବନ୍ଧ ବିଷୟ ଆଲୋଚନା ଏବେ ମଧ ଖୁବ୍ ଆଶ୍ଚର୍ଯ୍ୟ ଲାଗେ । ଅବଶ୍ୟ ତା ପରେ ଏବେଯାଏ ପ୍ରତିବର୍ଷ ଗଣେଶ ଓ ସରସ୍ୱତୀ ପୂଜା ଫଟୋରଖି କରାଯାଉଛି । ହେଲେ ଠିକ୍ ପୂଜାବେଳକୁ ଜର ଆସିବା ଆଉ ନାହିଁ । କିନ୍ତୁ ପିଲାଦିନେ ଠିକ୍ ସେହି ଋତୁରେ ବାରମ୍ବାର ମ୍ୟାଲେରିଆ, ନିମୁନିଆ ବା ଟାଇଫଏଡ୍ ହେଉଥିଲା । ସେ ସବୁ ଏବେ ମଧ ସ୍ମୃତିରେ ଅଛି । ବାରମ୍ବାର ବେମାର ହେତୁ ସ୍ୱାସ୍ଥ୍ୟ ମଧ ସେବେଠାରୁ ଭାଙ୍ଗି ପଡ଼ିଛି ।

ଶେଷ ଥରକର କଥା । ସେତେବେଳକୁ ମୁଁ ପ୍ରେସରେ ଚାକିରୀ କରୁଥାଏ । କଟକର ଦରଗାପଡ଼ାର ଗୋଟେ ମେସ୍‌ରେ ରହୁଥାଏ । ଗୋଟିଏ ଗଉଡୁଣୀ ବୁଢ଼ୀ ହେଉଛି ଆମର ରୋଷେଇ ବାଲା କ'ଣ ମା' ବାପ କହିଲେ ଚଳେ । ବୁଢ଼ୀଟିଗେଡ଼ୀ, କାଳୀ, ପକ୍ୱକେଶୀ ଓ ଦୁଇଟିଯାକ ଗୋଡ଼ ଗୋଦରା । ତାକୁ ଚାହିଁ ହେବନି । ହେଲେ ତା ହାତରନ୍ଧା ଖୁବ୍ ସୁଆଦ । ସେହିଁ ଦୋକାନ ବଜାର କରେ, ଘର ସଫାକରେ ଓ ବାସନ ମାଜେ । ସେ ମଧ ନିଜେ କଟାବଟା ପାଣିବୁହା ଓ ରୋଷେଇ କରି ଖାଇବାକୁ ବାଢ଼ି ଦିଏ ।

ସବୁଠାରୁ ମଜାର କଥା ସେ ନିଜେ ଗାଧାଏ ନି କି ଖାଏନି । ସେ କେବେ ବି ଭାତ କି ରୁଟି ଖାଏନି । ସେ ପ୍ରତିଦିନ ଚା ସହିତ କେବଳ ଗୁଲୁଗୁଲା ଖାଏ । ଅଫିମ ଟିକେ ମଧ ଖାଏ । ତେଣୁ ଗୋଦର ଥିଲେ ମଧ ତାକୁ ଜରହୁଏ ନି । ତାର ବେମାର ଫେମାର କିଛି ହୁଏନି । ସେହି ମେସ୍‌ରେ ଥିବାବେଳେ ମୋତେ ଟାଇଫଏଡ଼ ହେଲା । ଏଲୋପାଥିରେ ଏତେବେଳକୁ ଟାଇଫଏଡ଼ ଔଷଧ ବଜାରକୁ ଆସିଲାଣି । ମାତ୍ର ମୋତେ ଠାକୁରଙ୍କ ଆଦେଶ ହେଲା ହୋମିଓ ଚିକିତ୍ସା କରିବାକୁ । ଦରଗାପଡ଼ାର ଡାକ୍ତର ନଟବର ମହାନ୍ତି ହେଲେ ମୋର ଚିକିତ୍ସକ । ମୁଁ ତ ବାରମ୍ବାର ରୋଗ ଭୋଗୀ ସେଥିରେ ଅନୁଭବୀ ହୋଇ ଯାଇଥିଲି । ତେଣୁ ଘରକୁ ଖବର ନଦେଇ ବା ନଯାଇ ସେଇ ମେସରେ ସାଗୁ ପାଣି ଖାଇ ଶୋଇ ରହେ ଓ ହୋମିଓପାଥି ଔଷଧ ଖାଏ । ବେଶୀଦିନ ଘରକୁ ନଯିବାରୁ ୧୮ ଦିନ ପରେ ବୋଉ କେଉଁଠୁ ଖବର ପାଇ ଆସି ପହଞ୍ଚିଲା । ମେସ୍‌ର ହାଲଚାଲ କଚା ପାଇଖାନା ଓ ଆମ ବୁଢ଼ୀର କାରବାର ଦେଖି ସେ ନା ଖାଇଲା, ନା ହଗି ମୁତି ଗଲା ନା ଶୋଇଲା । ସେବା କଲା ମାତୃଶକ୍ତିର ପ୍ରଲେପ ଦେଇ ଆଉ ସେ ସେଇଠି ମୋ ମୁଣ୍ଡ ପାଖରେ ୩ଦିନ ୩ରାତି ବସିଗଲା । ଜର ୨୧ ଦିନପରେ କମିବାରୁ

ମୋତେ ଲଞ୍ଚରେ ପକାଇ ଗାଁକୁ ନେଇ ସାଙ୍ଗରେ ଆସିଲା । ମୁଁ ପୂରାଭଲ ହୋଇ ମାସେପରେ ପୁଣି କଟକ ଗଲି । ଯାହାହେଉ ସେଇଥର ଟାଇଫଏଡ଼ ରୋଗର ଜତ ହୋମିଓପ୍ୟାଥି ଔଷଧରେ ମରିଗଲା ।

ରାଧାରମଣ ପ୍ରେସରେ କାମକଲାବେଳେ ସେଇଠି ଗୋଟେ ବଡ଼ ହଲରେ ଉପର ମହଲାରେ କିଛିଦିନ ଥିଲି । ଭାଗିରଥୀ ମିଶ୍ର ବୋଲି ଜଣେ ବନ୍ଧୁ ସେଠି ରହୁଥିଲେ । ସେତିକିବେଳେ ଥରେ ଜରହେଲାଯେ ଗୋଡ଼ହାତ ଖାଲି ବିନ୍ଧିଲା । ସେ ଭାଗିରଥୀବାବୁ ମା ବାପ ଭଳି ଏତେ ଘଷାମୋଡ଼ା କଲେ ଯେ ସେ ସବୁ ବିନ୍ଧାଛିଟିକା ଓ ଜରମଧ କମିଗଲା ।

ପୁଣିଥରେ କୁଜଙ୍ଗରେ ଏକାଟିଆ ଥିବାବେଳେ ସେମିତି ଜରହେଲା । ସେତେବେଳେ ପାଖରେ କେହିନଥିଲେ । ଠାକୁରେ ଏରସମାର ଜଣେ ସରପଞ୍ଚ ବନ୍ଧୁଙ୍କୁ ପଠାଇ ଦେଲେ । ତାଙ୍କର ମୋ ଠାରେ କିଛିକାମ ନଥିଲା । ଖାଲି ମୁଁ କୁଜଙ୍ଗରେ ରହୁଛି । ତାଙ୍କର ପୁରୁଣା ପରିଚିତ । ତେଣୁ ଦେଖିବାକୁ ଖୋଜି ଖୋଜି ଆସି ପହଞ୍ଚିଲା ବେଳକୁ ମୁଁ ଜରରେ ବାଡ଼େଇପିଟି ହେଉଛି । ସେ ତାଙ୍କର ପଦ ପଦବୀ, ମାନ ସମ୍ମାନ ସବୁ ଭୁଲି ଯାଇ ମୋତେ ଖୁବ୍ ଘଷାମୋଡ଼ା କରି ଔଷଧ ଦେଇ ଓ ଖାଇବାକୁ ଆଣିଦେଇ ଭଲକଲେ । ସେ ଥିଲେ ଜଣେ କମ୍ୟୁନିଷ୍ଟ । ବଡ଼ ଲୋକଘରର ପିଲା । ତାଙ୍କର କୋଠାଘର ଓ ବହୁତ ଜମିଥିଲା । ଦାଦି, ବାପା ଓ ଭାଇମାନେ ଚାଷକରି ଚଳନ୍ତି ଓ ସଞ୍ଚୟ କରନ୍ତି । ଏବାବୁ ମାସେ ପନ୍ଦର ଦିନେ ଘରକୁ ଯାଇ ଖାଇପିଇ କିଛି ପଇସା ଓ ଲୁଗାପଟା ଧରିଆସି ବୁଲୁଥାନ୍ତି । ପୁଣିଥରେ ଘରକୁ ଗଲାବେଳକୁ ଥାଏ ପିନ୍ଧିବା ଲୁଗାଖଣ୍ଡ ଓ ପକେଟ ପୁରା ଖାଲି । ଏବେଯାଏ ସେ ବାବୁ ଶ୍ରୀ ରାଜକିଶୋର ରାଉତ ମୋର ସ୍ମୃତିରେ ଅଛନ୍ତି ଓ କେତେବେଳେ କେମିତି ଦେଖା ହେଲେ ପ୍ରେମରେ କୋଳାକୋଳି ହେଉ ।

ଇଶ୍ୱର ମୋପରି ଚିର ରୋଗୀ ପାଇଁ ସେ ଗଉଡୁଣୀ ବୁଢ଼ୀଠାରୁ ଆରମ୍ଭକରି ଭାଗିରଥି ବାବୁ ଓ ରାଜୁବାବୁଙ୍କୁ ଖଞ୍ଜିଥିଲେ; ସେବକ ରୂପରେ, ତାଙ୍କର କରୁଣାରୁ ସିନା । ସେ କରୁଣା କଥା ଚିନ୍ତା କଲେ ଆଖି ପାଏନି । ଆମେ କେହି ତାଙ୍କୁ ଦେଖିନେ । କିନ୍ତୁ ଅନେକେ ତାଙ୍କର କରୁଣାର ସ୍ପର୍ଶ ଅବଶ୍ୟ ପାଇଥିବେ । ଅନୁଭବୀ ଏକଥା ଜାଣି ପାରେ ।

## ୩୨. ପୁଣି କାଳିଆ ଲେଉଟିଲା ଓ ସ୍ୱାଧୀନତା ପର୍ବ

ହେଡ଼ ପଣ୍ଡିତ ପ୍ରାଣଧନ ଷଡ଼ଙ୍ଗୀଙ୍କ ପ୍ରାଣାନ୍ତକ ପାହାରରେ ମିଛରେ କହିଦେଲି ଗୋଟେ ବଡ଼ପିଲାର ନାମ ଯେକି ନଡ଼ିଆ ଚୋରୀ କରିଥିଲା କି ନା ମୁଁ ସତରେ ଜାଣିନଥିଲି । ପଣ୍ଡିତେ ସେ ପିଲାକୁ ଧରିବାକୁ ଗଲାପରେ ପ୍ରଧାନ ଶିକ୍ଷକ ଦୁର୍ଗାମହାନ୍ତି ଦୁଃଖରେ ପଚାରିଲେ ତୁମେତ ଜାଣିଥିଲ ଭଲରେ ନକହିଲ କାହିଁକି ? ଆଉ ଏତେ ମାଡ଼ ତୁଚ୍ଛାରେ କାହିଁକି ଖାଇଲ ? ମୁଁ

କାନ୍ଦି କାନ୍ଦି କହିଲି ମୁଁ ମାଡ଼ ଭୟରେ ମିଛ କହି ଦେଇଛି । ପ୍ରକୃତରେ କିଏ ନଡ଼ିଆ ଚୋରି କରିଛି ମୁଁ ଜାଣେନା । ଏତେକ କହିବାପରେ ସେ ହସି ହସି ମୋତେ ସେଠାରୁ ଶୀଘ୍ର ବିଦାୟ କରିଦେଲେ ।

ସେ ଯେ ବିଦାୟ କରିଦେଲେ ତାହା ବର୍ଷକପାଇଁ ମୋର ବିଦାୟ ହେଲା । ମୁଁ ଆଉ ସେଠି ନପଢ଼ି ଯାଇ କେନ୍ଦୁପାଟଣାର ଘେଓ୍ୱାର ଚନ୍ଦ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ପଢ଼ିଲି । ଶ୍ରେଣୀରେ ଭଲ ପଢୁଥିବାରୁ ସବୁ ଶିକ୍ଷକ ଭଲ ପାଇଲେ । ପିଉସୀ ନାନୀ ଘରେ ରହି ସେ ବର୍ଷଟି ଶେଷକରି ପୁଣି ଆସିଲି ଗାଁ ମାଇନର ସ୍କୁଲକୁ । ନାମ ଲେଖାଇବାକୁ ଦରକାର ୩ୟ ପାଶ୍ ପ୍ରମାଣପତ୍ର । ସେ ଗୋଟିକ ଘର ଚାଳରେ ଗୋଟେ ଚକିଲଗା ତାରରେ ଟାଙ୍ଗି ଦେଇଥିଲି ସୁରକ୍ଷା ପାଇଁ । ଜେଜେ ସେଠି ରଖୁଥିଲେ ଖଜଣା ପାଉତି । ସେସବୁ ସାଙ୍ଗରେ ସେ ପ୍ରମାଣପତ୍ର ଧୋଇଯାଇଥିଲା । ତାକୁ ଆଣି ଦେଖାଇବାରେ ଆମ ଗାଁ ପ୍ରାଥମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଭୋଳିମାଷ୍ଟ୍ରେ ବହୁତ ବିରକ୍ତ ହେଲେ । ଚାରିପାଞ୍ଚଦିନଧରି ଆଇନର ତର୍ଜମା ଚାଲିଲା । ଶେଷରେ ନାଥମାଷ୍ଟ୍ରଙ୍କ ପରାମର୍ଶରେ ଖଣ୍ଡେ ଦୋହରା (ଡ୍ୟୁପ୍ଲିକେଟ୍) ପ୍ରମାଣପତ୍ର ମିଳିଲା ମାଗଣାରେ ।

ସେତକ ମିଳିବା ସହିତ ବହୁତ ବହୁତ ଉପଦେଶ । "ସ୍କୁଲ ଛାଡ଼ିଯିବାପରେ ପୁରୁଣା ଶିକ୍ଷକଙ୍କୁ ଯେଉଁଠି ଦେଖିବ ଭକ୍ତିକରିବ । ସମ୍ମାନ ଦେବ । ମୁଣ୍ଡ ଲଗାଇ ନମସ୍କାର କରିବ । ଗାଁ ଜମିଦାରଙ୍କୁ ମାନିବ । ତାଙ୍କୁ ବେଖାତିରି କରିବନି । ସେ ସ୍କୁଲ ଗଢ଼ିଛନ୍ତି । ଗାଁ ଠାକୁରଙ୍କୁ ମାନିବ । ସେ ହେଉଛନ୍ତି ଗାଁର ଇଷ୍ଟ ଦେବା ଦେବୀ । ତାଙ୍କୁ ଗାଁ ଜମିଦାର ରାମ ବ୍ରହ୍ମା ବସାଇଥିବାରୁ ତାଙ୍କ ନାଁ ରାମେଶ୍ୱର ଓ ରାମେଶ୍ୱରୀ । ସେମାନେ ନଈକୂଳରେ ବରଗଛମୂଳେ ଥିଲେ । କେନ୍ଦ୍ରାପଡ଼ା କେନାଲ ଖୋଳା ହେବାବେଳେ ଏପାଖକୁ ଆସି କାଠଶେଣୀ, କାଠଗୁଅ, କାଠବତା, ଚୁନଇଟାର କାନ୍ଥ ଓ ପକା ମେଜିଆଘରେ ସେବେଠାରୁ ରହିଛନ୍ତି ।

ଗାଁର ଦକ୍ଷିଣରେ ମହାନଦୀର ଉପଶାଖା ଲୁଣା ନଦୀର ସମାନ୍ତରାଳ ହୋଇ ବହିଯାଉଛି କେନ୍ଦ୍ରାପଡ଼ା କେନାଲ । ଉତ୍ତରରେ ପ୍ରଶସ୍ତ ଶସ୍ୟକେଦାର । ଗାଁର ପଶ୍ଚିମରେ କ୍ଷୁଦ୍ରଧାର ମାଳିକାର ପଦ୍ମାବତୀ କୂଳରେ ଗାଁ ମାଇନର ସ୍କୁଲ ଓ ପୂର୍ବରେ ଦଅ ନମ୍ବର ଶାଖା କେନାଲ । ସବୁଦିନେ, ସବୁବେଳେ ଯେତେବଡ଼ ଲୋକ ହେଲେବି ଗାଁର ଇତିହାସ ଓ ଗାଁର ଭୂଗୋଳ ତୁମ ଆଖି ଆଗରେ ଥିବା ଦରକାର । ଶିକ୍ଷକ ଓ ପିତା ମାତାଙ୍କ ପ୍ରତି ତଥା ଗ୍ରାମଦେବତୀଙ୍କ ପ୍ରତି ଭକ୍ତି ଥିବା ଦରକାର ।"

ଏମିତି ଶହ ଶହ ଉପଦେଶ ସହ ମୂଳପ୍ରମାଣପତ୍ରକୁ ନଷ୍ଟକରିଥିବା ଯୋଗୁଁ କିଛି କିଛି କଟୂକ୍ତି କଷାୟ ଗାଳିର ତିନିଚାରିଦିନ ପରେ ମିଳିଗଲା ଦୋହରା ପ୍ରମାଣପତ୍ର; ଯାହାବଳରେ ପୁଣି ଗାଁ ମାଇନର ସ୍କୁଲରେ ନାମ ଲେଖାଇ ପାଠପଢ଼ା ଆରମ୍ଭ ହୋଇଗଲା ମାଇନର ପାଶ୍

ପର୍ଯ୍ୟନ୍ତ ୧୯୫୦ରେ । ସେତେବେଳେ ମାଇନର ଶେଷ ପରୀକ୍ଷା ଦେବାକୁ ଆମେ ସବୁ ଅସୁରେଶ୍ୱର ସ୍କୁଲକୁ ଯାଇ ସେଠି ରହି ପରୀକ୍ଷା ଦେଇଥିଲୁ । ଖରାଦିନେ ନାଳଶୁଖିଲା । ଆସିବାବେଳେ ନାଳ ମଝିରେ ଦୌଡ଼ି ଦୌଡ଼ି ଖୁସିରେ ଘରକୁ ଫେରୁଥିଲୁ ।

ସେ ସବୁ ବେଶ୍ ମଧୁର ସ୍ମୃତି ଜଡ଼ିତ ଓ ସ୍ମରଣୀୟ । ମାଇନର ସ୍କୁଲର ହେଡ଼ମାଷ୍ଟ୍ରେ ସ୍କୁଲ ପାଖରେ ଥିବା ଜମିଗୁଡ଼ିକୁ ଛୋଟଛୋଟ କିଆରିରେ ବିଭକ୍ତ କରି ପିଲାମାନଙ୍କୁ ଦଳଦଳକରି ବାଣ୍ଟି ଦେଇଥିଲେ । ପିଲାଙ୍କ ମଧ୍ୟରେ ଉତ୍ସାହ ବୃଦ୍ଧି ଓ ନିଜଭିତରେ ପ୍ରତିଯୋଗିତା କରି ଫସଲ କରିବାକୁ । ଚୈତନ୍ୟ ଭାଇନା ଓ ମୁଁ ପ୍ରଥମ ହୋଇଥିଲୁ । ଚୈତନ୍ୟ ପରବର୍ତ୍ତୀ ଜୀବନରେ ଗ୍ରାମପଞ୍ଚାୟତ ସମ୍ପାଦକ ଓ ମୁଁ ପଞ୍ଚାୟତ ଅଡ଼ିଟି ଇନିସ୍‌ପେକ୍ଟର ଥିବାବେଳେ ପଞ୍ଚାୟତ ପତ୍ରିକାରେ ଗୋଟିଏ ନିବନ୍ଧ ଲେଖିଥିଲି । ସେତେବେଳେ ତାହା ଖୁବ୍ ଆଦୃତ ଓ ଆଲୋଚିତ ହୋଇଥିଲା । ପାଠପଢ଼ା ଶେଷ ପରେ ଚାକିରୀ ଜୀବନରେ ତାହାବୋଧେ ପତ୍ରିକାରେ ଛପା ହୋଇଥିବା ମୋର ପ୍ରଥମ ଲେଖା ।

ସେହିଠାରେ ପଢ଼ିବାବେଳେ ଦିନେ ଶନିବାର ସକାଳବେଳା ଆମେ ଡ୍ରିଲ କରୁଥାଉଁ । ସେତେବେଳେ ବହୁତ ଲୋକ ସାଇକେଲରେ କଟକ ଯାଆସ କରି ଚାକିରୀ କରୁଥିଲେ । ଜଣେ କେହି କେନାଲ ଆରପଟୁ ଡ଼ାକିକହିଲା କାଲି ଶୁକ୍ରବାର ସନ୍ଧ୍ୟା ୧୯୪୮ ଜାନୁୟାରୀ ୩୦ ତାରିଖ ରେ) ମହାତ୍ମା ଗାନ୍ଧୀଙ୍କୁ ଗୁଳିକରି ମାରି ଦିଆଯାଇଛି । ସ୍କୁଲ ବନ୍ଦହୋଇ ଛୁଟି ହୋଇଗଲା । ଗାଁ ଗାଁର ଘରେଘରେ କାନ୍ଦକଟା ଆରମ୍ଭ ହୋଇଗଲା । ଗାନ୍ଧିଜୀ ଥିଲେ ପ୍ରକୃତରେ ଜାତିର ଜନକ । ଆଉ କୌଣସି ଜାତୀୟ ନେତାଙ୍କ ମୃତ୍ୟୁ ଲୋକମାନଙ୍କୁ ଏତେ ବିହ୍ୱଳିତ କରି ନଥିଲା ।

ଠିକ୍ ସେହିପରି ପ୍ରଥମ ସ୍ୱାଧୀନୀତା ଦିବସ ୧୯୪୭ ଅଗଷ୍ଟ ପନ୍ଦର ଦିନ ଅସୁରେସ୍ୱରରୁ ସ୍କୁଲ ପିଲାଏ ଶୋଭା ଯାତ୍ରାକରି ଆସିଥିଲେ ଆମଗାଁ ଯାଏ ଓ ଆମେ ସବୁ ତାଙ୍କ ସହ ମିଶି ଖୁବ୍ ଜୟଧ୍ୱନୀ ଦେଇଥିଲୁ । ପରାଧୀନ ଭାରତରେ ଆମର ଜନ୍ମ । ତେଣୁ ସ୍ୱାଧୀନତାର ସ୍ୱାଦ ଆମପାଇଁ ଖୁବ୍ ମଜାଦାର ଥିଲା । ଏବେତ ଏଇଟା ସ୍କୁଲ ମାଷ୍ଟଙ୍କ ଛୁଟି ଓ ପିଲାଙ୍କ ଖେଳଦନି ହୋଇଛି । ସରକାରୀ ଭାବେ ପତାକା ଉତ୍ତୋଳନ ହେଉଛି । ଏଥିସହ ଆଉ କାହାର କିଛି ସଂପର୍କ ନାହିଁ । ମାତ୍ର ସେତେବେଳେ ସ୍ୱାଧୀନତା ଦିବସ ସାର୍ବଜନିନ ଥିଲା । ସମାଜର ସବୁଶ୍ରେଣୀର ଲୋକେ ମତୁଆଲ ହୋଇ ଯାଇଥିଲେ; ସ୍ୱାଧୀନତାର ଖବର ପାଇ ।

# ୩୩. ରାଧିଖୁଡୀର ଅଦଉତି

ଆମ ଜେଜେ ଚାରି ଭାଇ; କୃପାସିନ୍ଧୁ, ଦୀନବନ୍ଧୁ, କାହ୍ନୁ ଓ କୁସୁନ । ତାଙ୍କର ବାପା ବିନାୟକ ଦ୍ୱିବେଦୀ ଚାରିପୁଅ ପାଇ ଖୁବ୍ ଖୁସିରେ ଥିଲେ । ସେତେବେଳେ କିଛି ଜମିବାଡ଼ିଥିଲା । ଚାଷବାସ ଚାଲିଥିଲା । ଖଟିବାକୁ ଚାରିପୁଅଥିଲେ । ସେତେବେଳେ ଖର୍ଚ୍ଚର ଏତେ ବାଟ ମଧ୍ୟ ଫିଟିନଥିଲା । ଗାଁର ଶାନ୍ତ ଓ ସରଳ ଜୀବନପାଇଁ ଟଙ୍କାର ଏତେଟା ଆବଶ୍ୟକତା ନଥିଲା । ଅଭାବ ବୋଲି କିଛି ଜଣା ପଡୁନଥିଲା । ଯେ ଖଟିଲା ସେ ଖାଇଲା । ପେଟକୁ ଦାନା ଓ ଗାଣ୍ଡିକୁ କନା ପାଇଁ ଏତେ ଅଭାବ ନଥିଲା । ବିଭା ସା ପରେ ବିନାୟକଙ୍କ ଅନ୍ତେ ଚାରିଭାଇ ଭିନେ ହେଲେ । ଓଉ ପଡ଼ିଆ ଡ଼ିଅରେ ଆମ ଜେଜେ ଦୀନବନ୍ଧୁ ଓ ସାନ ଭାଇ କୁସୁନ ରହିଲେ । ପୁରୁଣା ଡ଼ିଅରେ ରହିଲେ କୃପାସିନ୍ଧୁ ଓ କାହ୍ନୁ । ଆମେ ଦେଖିଲାବେଳକୁ କେବଳ ଦୀନବନ୍ଧୁ ବଞ୍ଚିଥିଲେ ଆଉ ତିନିଭାଇ ସଂସାର ଲୀଳା ସାଙ୍ଗ କରିଥିଲେ ।

ଆମର ୧୪ ଗୁଣ୍ଠ ଡ଼ିଅରେ ଗୋଟେ ଖୁବ୍ ବଡ଼ଖଞ୍ଜା ଘରଥିଲା । ତଳେ ୪ ବଖରା ଓ ଉପରେ ଚାରିବଖରା ଉଚ୍ଚା, ଲମ୍ବା, ଓସାରିଆ ଖଞ୍ଜାଘର । କୁସୁନଙ୍କ ଅଂଶରେ କେବଳ ଥିଲେ ତାଙ୍କର ଏକମାତ୍ର ବିଧବା ବୋହୂ ରାଧିଖୁଡ଼ୀ । ସେ ଯଧା ତା ସାଙ୍ଗରେ ଗପସପ ହେବାଟାକୁ ଜେଜେ ପସନ୍ଦ ନକରି ମଝିରେ ପାଚେରୀ ପକାଇ ଦେଇଥିଲେ । ତାର ଅଧେ ଆମର ଅଧେ; ହେଲେ କଳିକଜିଆ ନଥିଲା । ଅଧାକାନ୍ଥିବାଟେ ପିଠାପଣା, ଡିଅଣ ଶାଗ ଦିଆନିଆ, କଥାବାର୍ତ୍ତା ସବୁ ଚାଲିଥିଲା । ଖୁଡୀର ଗୋଟେ କାଳେ ଅପିବୋଲି ଝିଅଥିଲା । ସେ କେତେଆଗରୁ ମରିଯାଇଥିଲା । କିନ୍ତୁ ଖୁଡୀର ତା ସାଙ୍ଗରେ ନାଁଟି ଯୋଡ଼ି ହୋଇ ଯାଇ ଖୁଡ଼ୀକୁ ଅପିବୋଉ ବୋଲି ଲୋକେ ଡ଼ାକନ୍ତି । ସେ ସ୍ନେହରେ କେତେଥର ପୁଅବୋଲି ମୋତେ କୋଳେଇଛି । କିନ୍ତୁ ବିଧବା ହୃଦୟକୁ ଜୟକରିବାକୁ ପଡ଼ିଶାର ରାମାବୋଉଖୁଡ଼ୀ ସର୍ବଦା ଚେଷ୍ଟିତ ଥିଲେ । ତାଙ୍କର ସ୍ୱାମୀ ଜୟକୃଷ୍ଣ ଦାଶ ବାବୁଘରେ ଗୁମାସ୍ତା ଥିଲେ । ପୁଅଟି ମିଲିଟାରୀ ଚାକିରୀ କରିମଧ ବାହାରେ ଥିଲେ । ପାଖରେ ଥିଲା କେବଳ ଶେଷ ଝିଅ । ତେଣୁ ତାଙ୍କର ପଇସା ସାଙ୍ଗକୁ ଅପିବୋଉ ଖୁଡ଼ୀର କକେଇ ପୁଅଭାଇ ଗୋପୀ ଦାଶଙ୍କ ସହ ବସାଉଠା ଥିଲା । ବିପରିତ ପକ୍ଷେ ଆମେ ହୋଇଯାଇଥାଉ ଦରିଦ୍ର, ଅସହାୟ, ପିତୃହୀନ ଓ ସମସ୍ତଙ୍କର ବୋଝ ପରି; ଆମ ଜେଜେ ଓ ବାପାଙ୍କ କାଳ ପରେ ।

ତେଣୁ ରାମାବୋଉ ଖୁଡ଼ୀ ତାର ସୁବିଧାର ଓ ଆମ ଅସୁବିଧାର ସୁଯୋଗ ନେଇ ବିଧବା ରାଧିଖୁଡ଼ୀକୁ ହାତକରି ସେ ତାର ଘର ଓ ବାଡ଼ିକୁ ଏବଂ ଗୋପୀଦାଶ ତା'ର ଜମିକୁ ତା'ଠାରୁ ବିକ୍ରୀକବଲା ବଳରେ ଗୁପ୍ତରେ ହସ୍ତାନ୍ତର କରିନେଇଥିଲେ । କବଲାରେ ତୀର୍ଥଯାତ୍ରା

ପାଇଁ ଜମିବିକ୍ରୀ ବିଷୟ ଉଲ୍ଲେଖଥିବାର ମୁଁ ବହୁବର୍ଷପରେ ଜାଣିବାକୁ ପାଇଲି । ତୀର୍ଥତ ଦୂରର କଥା । ହେଲେ ସେ ଖୁଡ଼ି ଗାଁମାଟି ସଂପୂର୍ଣ୍ଣ ଦେଖିନଥିବେ । ମୁଁ ଜଜ୍‌କୋର୍ଟରେ ଚାକିରୀ କରୁଥାଏ । ଓକିଲ ପରାମର୍ଶ କରି ବଂଶାବଳୀ ନେଇଦେଲି । ଓକିଲ କହିଲେ ଟଙ୍କା ଖର୍ଚ୍ଚ ହେବ ସିନା, ତୁମେ ସମ୍ପତ୍ତି ଫେରି ପାଇବ । କେଶ ପାଇଁ ସବୁ ପ୍ରସ୍ତୁତ ହୋଇଗଲା । ହେଲେ ଠାକୁରେ ଦିନେ ରାତିରେ ଦେଖାଦେଇ କହିଲେ; "ହଇରେ ତୁ ମକଦ୍ଦମା କରି କାହିଁକି ପଇସା ସାରିବୁ । ନେଲେ ନେଉ । ଛାଡ଼ିଦେ ତାକୁ । ଦେଖିନୁ କଟକ ସହରରେ ଗୁଣ୍ଡେ ଗୁଣ୍ଡେ ଗଡ଼ିଆକିଣି, ମହାନଦୀର ବାଲିଆଣି ପୋତି, ତିନିତାଲା କୋଠାକରୁଛନ୍ତି । ତୁମର'ତ ସାତଗୁଣ୍ଠ ଘରବାଡ଼ି ଅଛି । ତୁ ସେଥିରେ ଘର ନକରି ମକଦ୍ଦମାରେ କାହିଁକି ପଇସା ସାରିବୁ ? ତୁମ ପିଲାଙ୍କ ମୁହଁରେ ଧୂଳିଦେଇ ସେ ଚଞ୍ଚକତାକରି ନିଃସନ୍ତାନ ସମ୍ପତ୍ତି ନେଇଛି । ସେ ବା ତା'ର ଭାବୀବଂଶଧର ତାକୁ ଭୋଗକରି ପାରିବେନି" ।

ଇଏତ ବହୁତ ପଛର କଥା । ଜମିହସ୍ତାନ୍ତର ଖବର ଧୂଆଁତଳେ ନିଆଁପରି ଘରିଆଡ଼େ ଶୁଣାଗଲା । ବୋଉ ବହୁତ କାନ୍ଦିଲା ।ଆମେ ଗାଁର ଏମୁଣ୍ଡରୁ ସେ ମୁଣ୍ଡ ଓ କେନ୍ଦୁପାଟଣାର ବ୍ରଜ ଡାକ୍ତର ଓ ଆମ ମାମୁଁଙ୍କୁ ଯାଇ କହିଲୁ । ସବୁ ନିଷ୍ଫଳ ହେଲା । ସମସ୍ତେ କହିଲେ ସେ ରାମାବୋଉ କଳିବୁଢ଼ୀ । ଖୁବ୍ ଗାଳିଫଜିତ କରିବ । ତାକୁ କିଏ କହିବ ? ଗାଁ ଜମିଦାରିଆଣୀ ମୂର୍ଖଥିଲା । ସେ କହିଲା ପୋଡ଼ା ମୁହାଁ ମୋରି ଗୁମାସ୍ତାରହି ମୋରି ପଇସା ନେଇ ସମ୍ପତ୍ତି କରିଛି । ମୁଁ ସେଇଟାକୁ କିଛି କହିବିନି । ବିଶିଷ୍ଟ ଭଦ୍ରଲୋକ ବାସୁଦେବ ବ୍ରହ୍ମା ଓ ଅଗଣୀ ଦାଶ ମଧ ଗାଳି ଡ଼ରରେ ଚୁପ ରହିଲେ । ମାମୁଁ ଆସି ରାମାବୋଉକୁ କିଛି ନିଷ୍ଫଳ ଅନୁରୋଧ କଲେ । ସେହିପରି ନିଷ୍ଫଳ ଅନୁରୋଧ କରି ବ୍ରଜ ଡ଼ାକ୍ତର ଫେରିଗଲେ ।

ଶେଷକୁ ବୋଉ କହିଲା ଯେ ଆମ ଅଂଶକୁ ଲଗାଇ ଘରବାଡ଼ି ୫ହାତ ଦିଅ । ତେବେ ଆମଘର ଅନ୍ତତଃ ଭାଙ୍ଗିବନି । ଆମପୁରୋହିତ ପାଣୁ ମିଶ୍ର ଯେ କି ଗୋପୀ ଦାଶଙ୍କର ସଖାଥିଲେ ସେ ଗୋଟେ ଚକ୍ରାନ୍ତ ଆରମ୍ଭ କରିଦେଲେ । ଗୋପୀ ଦାଶ ଓ ପାଣୁ ମିଶ୍ର ଦୁହେଁ ଚିନ୍ତା ମା ଚନ୍ତିଆଣି ଘରେ ବସି ଫୁସ୍‌ଫୁସ୍ ହୁଅନ୍ତି । ବୋଉକୁ କହିଲେ ପାଞ୍ଚ ହଜାର ଟଙ୍କା ପଡ଼ିବ । ତୁ କେଉଁଠୁ ଆଣିଦେବୁ ?-ବୋଉ କହିଲା ହଁ ଦେବି । ଆମର ଦୂର ଗାଁ ରିଷୋ ମୌଜାରେ ୧୧ ଗୁଣ୍ଠ ଧାନ ଜମି ଅଛି । ତାକୁ ବିକ୍ରିକରି ଦେବି । ଏମିତି କଥାବାର୍ତ୍ତାରେ ୧୫ଦିନ ଚାଲିଗଲା । ସେତେବେଳକୁ ସେ ତାଙ୍କ ଦେଖିଲା କାମ କରିସାରିଥିଲେ । ଖାଲି ମନବୁଝାଇବାକୁ ଓ ସମୟ ଗଡାଇବାକୁ ଏମିତି ସମୟ ନେଇଥିଲେ । ଶେଷରେ ଆମେ ହତାଶ ହେଲୁ । ସପରିବାର ସମସ୍ତେ କାନ୍ଦିକାନ୍ଦି ରହିଲୁ । ଆଖିରୁ ଛାଏଁଛାଏଁ ଲୁହସବୁ ଶୁଖିଗଲା । ବୋଉ କେବଳ କହୁଥାଏ; ଯେ ମୋ ପିଲାଙ୍କୁ ହତାଶ କରିଦେଇ ଯେଉଁ ସମ୍ପତ୍ତି ଠକି ନେଲେ ସେ ତାକୁ ଭୋଗକରି ନ ପାରୁ । ହତାଶରେ ମରୁ ।

# ୩୪. ସତ ଫଳିଲା

ଏସବୁ ଚାଲିଥିବାବେଳେ କାଳେ କେତେବେଳେ ପୁଣି ରାଧିଖୁଡ଼ୀ ମନବଦଳେଇବ ସେଥିପାଇଁ ତାକୁକାଳେ ପେଚାମାଉଁସ ଖୁଆଇ ଦିଆଗଲା ଓ ସେ ଚାରିମାସ ମଧ୍ୟରେ ଜଳୋଦରୀ ରୋଗରେ ମରିଗଲା । ଏବେତାକୁ କିଏ ସୁଧି ହେବ ? ଶବ ପଡ଼ିଥାଏ। କିଏ କେମିତି ଦେଖେଇ ଶୁଣେଇ କହିଲେ ଯେ ଗୁଣ୍ଡେ ଧାନଜମି କରିଦେବା ଏଇ ପିଲାଏ କିଏ ମୁଖାଗ୍ନି ଦେଇ ଦିଅନ୍ତୁ । ଏ ସବୁ ଶୁଣି ବୋଉ ଭୀଷ୍ମ ମୂର୍ତ୍ତି ଧରି ଉଠିଲା । ହେଲେ ଆମର ଅନ୍ୟ ଭାଇଆଙ୍କ ସାହାଯ୍ୟରେ ରାଧିଖୁଡ଼ୀର କକେଇ ପୁଅ ଭାଇ ଗୋପୀ ଦାଶ ଯେକି ଧାନଜମିଯାକ ନେଇଥିଲେ ସେହିଁ ମୁଖାଗ୍ନୀ ଦେଇ ଦଶଦିନ ଦଗ୍ଧହାଣ୍ଡି ବାଡ଼େଇ ଦେଇ ତାର ନାମକୁମାତ୍ର ସୁଧି ହୋଇପଡ଼ିଲା ।

ଆମ ସମାଜର ଚେଦୋନିନ୍ତନ ବନ୍ଧୁ ବାଳୁତ- ବିଧବାଙ୍କୁ ଶ୍ୱଶୁର ଘର ସଂମ୍ପତ୍ତିର ଅଧିକାର ମିଳୁନଥିଲା । କାରଣ; ତାଙ୍କୁ ହାତ କରି ସେ ସମ୍ପତ୍ତି ହାତେଇ ନେଇ ଅନ୍ୟମାନଙ୍କୁ ହନ୍ତସନ୍ତ କରିବା ସହ ନୀରିହ ବିଧବାଙ୍କୁ ମୃତ୍ୟୁ ମୁଖକୁ ଠେଲିଦେବା ବା ଚିର ଦାସୀ କରିଦେବା ସାମାଜିକ ଚଳଣିରେ ପରିଣତ ହୋଇଥିଲା । ସ୍ୱାଧୀନୋତ୍ତର ଭାରତରେ ନାରୀଶିକ୍ଷା ଓ ବିଧବା ବିବାହ ଏହି ଉତ୍କଟ ନାରୀ ନିର୍ଯ୍ୟାତନା ସମସ୍ୟାର ସୁଦୂର ପ୍ରସାରୀ ସମାଧାନ ଆଣିପାରିଛି ।

ବୋଉ କଥା ସତହେଲା । ଦେବାଲୋକ ପଚିଷଢ଼ି ପାଣିଟିକେ ନପାଇ ମଲା । ନେବା ଲୋକର ଦଶା ମଧ୍ୟ ତାଦୃଶ । ବେଦବାକ୍ୟ ଟଳେନା, ସତୀବାକ୍ୟ ଟଳେନା, ଆଉଟଳେନା ଦୁଃଖୀଲୁହର ବାକ୍ୟ । ଗୋପୀଦାଶ କ୍ୟାନ୍‌ସରରେ ମଲା ଓ ତାର ପିଲାମାନେ ପୁତ୍ରସନ୍ତାନରୁ ବଞ୍ଚିତ ହୋଇ ଚକିରିକରି ବାହାରେ ରୁହନ୍ତି । ଆଉ ଘରେ ପଡ଼ିଲା ତାଲା । ସମ୍ପତ୍ତି ଭୋଗକଲେ ଅନ୍ୟମାନେ । ପିଲାଏ ସେ ଜମି ମଧ୍ୟ ଦେଖିବାର ସୁଯୋଗ ପାଇଲେନି । ହେଲେ ତାଙ୍କରି ସ୍ତ୍ରୀ (ମାଇଁ) ସବୁବେଳେ କହୁଥିଲେ ଯେ ପିଲାଙ୍କ ମୁହଁରୁ ଛଡ଼ାଇ ଆଣିଥିବା ଜମି ଆମକୁ କାହାକୁ ଭୋଗ ହେବନି । ସେ ନାଚର, ତାଙ୍କ କଥା କିଏ ଶୁଣେ, ମାଇପି ଲୋକ । ହେଲେ ସେ ଆମପାଇଁ ଦୁଃଖ କରନ୍ତି । ବଡ ପୁଅ ରାମ ଇଞ୍ଜିନିୟର ତା ସ୍ତ୍ରୀ (ପ୍ରେମ ବିବାହିତ) ମୋ ପାଗଳି ଝିଅର ଝିଅ ଆଶା ଶଶୁର ଗୋପୀ ଦାଶଙ୍କର ବହୁତ ସେବା କରିଥିଲା । ତା'ରି ସେବା ଗୋପୀ ଦାଶଙ୍କର ଶେଷ ଭରସା ଯାହାକୁ ସେ ବୋହୁ କରିବାକୁ ନାରାଜ ଥିଲେ । ଉଭୟେ ରାମ ଓ ଆଶା ମୋର ଖୁବ ପ୍ରିୟ । ଆଶା ଠାକୁର ରାମକୃଷ୍ଣଙ୍କର ଆଶ୍ରିତା ଥିଲା ଓ ମୁ ତାର ଗୁରୁ ଭାଇ । ସେ ସଂସାରରୁ ଚାଲି ଗଲାଣି ।

ରାମାବୋଉର ଦଶା ତା'ଠାରୁ ବଳି । ତା'ର ସ୍ୱାମୀ ଜୟୀ ଦାଶ ବହୁମୂତ୍ର ଓ ଯକ୍ଷ୍ମାରେ ପଡି ବର୍ଷ ବର୍ଷ ଘୋଷାରି ହୋଇ ମରିଗଲା ଓ ସେ ବିଧବା ହେଲା । ପୁଅ ମିଲିଟାରୀ ଚାକିରୀଛାଡ଼ି ଚଉଦ୍ୱାର ବିଜୁବାବୁଙ୍କ କଳିଙ୍ଗ ଟିଉବ୍‌ରେ ଚାକିରୀ କରୁଥିବା ଅବସ୍ଥାରେ ପେଟ ଅପରେସନ ଚାରି ପାଞ୍ଚଥର ହୋଇମଧ ସେ ଘା ଶୁଖିଲାନି । ମୁଣିବାନ୍ଧି ବୁଲିବୁଲି ମଲା । ତାର ମଧ ଏକମାତ୍ର ପୁଅ ଯାଇ କାନାଡ଼ାରେ ରହିଲା ଓ ଝିଅମାନେ ବିଭାହେବା ପରେ ବିଧବା ବୋହୂ ସେ ଡିଅକୁ ଜଗି ପଡ଼ିଛି । ରାମାବୋଉର ମୃତ୍ୟୁ ଅତି କରୁଣ । ସେ ବର୍ଷବର୍ଷ ଧରି ଶଯ୍ୟାଶାୟୀ ହୋଇ ଗୁହମୁତ ବୋଳିହୋଇ କୁହାଟି କୁହାଟି ବହୁକଷ୍ଟରେ ମଲା । ଆଗରୁ ତ ବୋହୂସହ ପଡୁ ନଥିଲା । ତେଣୁ ବୋହୂ ଯାହା ସେବା କରିଥିବ ଗୋସେଇଁଙ୍କୁ ଜଣା । ଅନ୍ୟକୁ ଏତେକଷ୍ଟ ଦେଇ କିଏ କେମିତି ସୁଖୀ ହୋଇ ପାରିବ ? ଆମେ ସମସ୍ତେ ଜନ୍ମ ହୋଇଛେ ଓ କିଛି ନା କିଛି ରୋଗ ଭୋଗି ମରିବା ନିଶ୍ଚିତ । ହେଲେ ଗରିବ ଓ ନିରୀହକୁ କଷ୍ଟ ଦେଇ ଯେଉଁ ମାନସିକ ଗ୍ଲାନି ଏମାନେ ଅର୍ଜନ କରିଥିଲେ ତାର ଫଳ ଭୋଗ ହେଲା ତାଙ୍କୁ । ଏଥିରୁ ସମସ୍ତେ ଶିକ୍ଷା ଲାଭ କରିବା ଦରକାର ।

ପ୍ରକୃତରେ ସେ ଅଭିଶପ୍ତ ନିଃସନ୍ତାନ ସମ୍ପତ୍ତିକୁ ନିରୀହ ପିତୃହୀନ ଶିଶୁମାନଙ୍କ ମୁହଁରୁ ଛଡ଼ାଇ ନେଇ କେହି ଭୋଗ କରିପାରିଲେନି । ମାଲିମକଦମା ପଛରେ ନମାତି ଆମ ଅଂଶ ସାତଗୁଣ୍ଠ ପୈତୃକ ଡ଼ିଅରେ ବେଶ ଘରଦ୍ୱାର କରି ଆମେ ସୁଖରେ ରହିଲୁଁ ।

ରାମକୃଷ୍ଣ ପରମ ହଂସଙ୍କ ଭାଷାରେ ଭଗବାନ ଏ ଲୋକଙ୍କ ଦୟନୀୟତା ଦେଖି ଦୁଇଥର ହସନ୍ତି । ମୁମୂର୍ଷୁ ରୋଗୀର ମାକୁ ଆଶ୍ୱାସନା ଦେଇ ଯେତେବେଳେ ଡ଼ାକ୍ତର କହେ ଭୟକରନା ମୁଁ ଔଷଧ ଦେଇଛି । ସେ ଶୀଘ୍ର ଭଲ ହୋଇଯିବ । ପୁଣିଥରେ ଯେତେବେଳେ ଦୁଇଭାଇ ଦଉଡ଼ି ପକାଇ ଜମିବାଣ୍ଟୁଥିବା ବେଳେ ରାଗିଯାଇ କହନ୍ତି ଏ ପାଖ ମୋର ଆଉ ସେ ପାଖ ତୋର । ସେତେବେଳେ ଠାକୁରେ ହସନ୍ତି । ମାୟାଗ୍ରସ୍ତ ମଣିଷ ଠାକୁରଙ୍କ ହସକୁ ବୁଝେନା । ଛୁରୀଭୁଷି ମଣିଷ ମାରି, ବିଷଦେଇ ସମ୍ପତ୍ତି କମାଏ । ହେଲେ ଭୋଗ କରିପାରେନା । ଯାହାକୁ ରଖନ୍ତି ଅନନ୍ତ କି କରିପାରେ ବଳବନ୍ତ । ହରିଯାହାକୁ ରଖିବେ ତାକୁ କିଏ ମାରିବ ?

## ୩୫. ନ୍ୟାୟ କଥା କହିବାକୁ ନ୍ୟାୟାଚାର୍ଯ୍ୟ ଜଣେ ମାତ୍ର

ଭଗବାନ୍ ଯାହାକୁ ଦୁଃଖ ଦିଅନ୍ତି ତାକୁ ତା'ଉପରେ ତା'ଉପରେ ଦୁଃଖର ବୋଝ ଲଦିଦିଅନ୍ତି । ସେ ଭାବନ୍ତି ଭକ୍ତକୁ ନିଠାଇ ନିଠାଇ ଘଷିଘଷି ପରୀକ୍ଷା କରିବେ । କିନ୍ତୁ ଭକ୍ତ ଭଗବାନଙ୍କଠାରୁ ବଳି ଚାଲାକ । ସେ ସବୁଦୁଃଖ ସହି ସହି ଭଗବାନଙ୍କୁ ଧରିଥାଏ ଟାଣ କରି । ଶେଷକୁ ସେହି ଭଗବାନହିଁ ସବୁ ଦୁଃଖକୁ ମୁଣ୍ଡେଇ ଭକ୍ତକୁ ରକ୍ଷା କରନ୍ତି । "ଯୋଗ କ୍ଷେମବହାମ୍ୟହଂ"। ପାଣ୍ଡବ ମାନଙ୍କର ଦୁଃଖର ଶେଷନାହିଁ । କିଏ ସେ ଦୁଃଖ ଦେଇଥିଲା ?

ଆଉ ସେ ଦୁଃଖକୁ ନିଜମୁଣ୍ଡକୁ ନେଇ ତାଙ୍କ ପାଇଁ ଦୌତ୍ୟପଣ କରି କିଏ ଅପମାନ ଭୋଗିଥିଲା ? "ଭୃତ୍ୟ ପଠାଇଲେ ହସ୍ତୀନା ଦୂତ ପଣରେ ଯାଅ" । ଆମେତ ପିତୃହୀନ ନିଃସହାୟ ହୋଇଥିଲୁ । ଦାରିଦ୍ର୍ୟର ଶେଷ ସୀମାରେ ପହଞ୍ଚିଥିଲୁ । ଖାଇବା ପିନ୍ଧିବାର ମଧ ବ୍ୟବସ୍ଥା ନଥିଲା । ଶେଷକୁ ରାଧିଖୁଡ଼ୀର ଦାଉସାଧିବା ଦ୍ୱାରା ସମ୍ପତ୍ତି ମଧ ହରେଇଲୁ । ଶେଷକୁ ଥିଲା ଆମଭାଗ ଚାରିବଖରା ଘର । ଛଳଘର । ପୁରଣା । ଯାହାକୁ ଛାଇଁବାକୁ ମଧ ଆମପକ୍ଷେ ବହୁ କଷ୍ଟ । ଆମବାଡ଼ିରୁ ଅମଳ ବର୍ଷକର ଗୁଆ ବିକି ସେ ଘରକୁ କେଉଁଥର ଗୁଣ୍ଡାମରା ହୁଏତ କେଉଁବର୍ଷ ନୂଆପୁରୁଣା ଛଣ ମିଶାଇ ପତଳୋ ଛାଣି ହୁଏ । ବର୍ଷାଦିନେ ବହୁ ସ୍ଥାନରୁ ପାଣିଗଳେ । ଏମିତି ପାଣିଗଳି ଗୁହାଳଘର ଖଣ୍ଡିକର କାନ୍ଥ ଭାଙ୍ଗିଯାଇଥିଲା ।

ରହିବାଘର ଆମ ଭାଗ ଚରିବଖରାକୁ ରାଧିଖୁଡ଼ୀର ଚରିବଖରା । ଟା ଭାଗ ସେ ଜଇ ଦାଶ ଘରକୁ ଦେଇ ଯାଇଥିଲା । ସେ ଆମ ଉପରେ ଦାଉ ସାଧିବାକୁ ସେ ଘରକୁ ଭଙ୍ଗିଦେଲା ଓ ମଝି ଶେଣିକୁ ମଧ ହାଣି ଅଧେନେଲା ।

ଦିନକର ଘଟଣା । ସେ ପୁରୁଣା ଚଳ ଶେଣୀକୁ ଗାଁର ଶନେଇ ମିଶ୍ରଙ୍କୁ ବିକିଥିଲେ । ସେ ଉପରେ ଚଢ଼ି ତାକୁ ହାଣିବା ବେଳେ ଆମଘର ଦୁଲୁକୁ ଥାଏ । ଆମେ ଆପତ୍ତି କରିବାରେ ଓ ପାଟିତୁଣ୍ଡ କରିବାରେ ସେ ବିରକ୍ତ ହୋଇ ପଳାଇଲେ । ସେ ଶେଣୀ ଖଣ୍ଡକ ସେମିତି ଓହଳି ରହି ପଡ଼ିଗଲା । ତାଙ୍କଘରକୁ ଭାଙ୍ଗି ଦେଇ କାନ୍ଥର ମାଟିସବୁ ଚାରିକଡ଼ରେ ଉଚ୍ଚାକରି ଜମାଇ ଦେଇଥାନ୍ତି । ବର୍ଷାଦିନ ଆସିଲା । ବର୍ଷାପାଣି ସେ ପାଖ ଦୁଆରେ ଗଡ଼ିଆପରି ଭର୍ତ୍ତି ହୋଇଯିବା ଯୋଗୁଁ ପାଣି ଲାଗି ପାଚିରିକାନ୍ଥ ଓ ଘରକାନ୍ଥ ଦଲାଏ ଦଲାଏ ପଡ଼ିବାକୁ ଲାଗିଲା । ଆମେ କହିବା ସତ୍ତ୍ୱେ ରାମାବୋଉ ପାଣି କାଟିଲାନି । ମୁଁ ଗାଁର ଏମୁଣ୍ଡ ସେମୁଣ୍ଡ ସମସ୍ତଙ୍କ ଘରକୁ ଯାଇ ଦୁଃଖ ଜଣାଇଲି । କେହି ଆସିଲେନି । କହିଲେ ରାମାବୋଉ ଗାଳିମନ୍ଦ କରିବ । ମୁଁ ରାଗରେ ଓ ଦୁଃଖରେ ନାଳବନ୍ଧରେ ଧାଇଁଥାଏ । ଦେଖାହେଲା ବୁଲା କକେଇଙ୍କ (ପଣ୍ଡିତ ନାରାୟଣ ମିଶ୍ର) ସାଙ୍ଗରେ। ସେ ଡ଼ାକି ପଚାରିଲେ ବାଭେ କ'ଣ ହେଇଚିକି ? ଏମିତି କାହିଁକି ଧାଇଁଚ ? ମୁଁ ତାଙ୍କୁ ସବୁ କଥା କହିବାରୁ କହିଲେ କ'ଣ ହେଲା ଘରଭାଙ୍ଗିଯିବ । ତୁମେ ରହିବ କେଉଁଠି ? କେହି ଆସିଲେନି ? ଜଣେ ଗାଳି ଦେବବୋଲି ଟାକୁ ଡ଼ରିକେହି ନ୍ୟାୟକଥା ମଧ କହିବେନି ? ଏକି କଥା ।

ସେ ଓ ମୁଁ ଚାଲିଲୁ । ଘରପାଖକୁ ଯାଇ ଅବସ୍ଥା ଦେଖିସେ ହତାଶ ହୋଇଗଲେ । ବଡ଼ପାଟିରେ ଡ଼ାକି କହିଲେ ରାମବୋଉ । ତୁମେ ଘରଡ଼ିହ ନେଲ । ଘର ଭାଙ୍ଗି ମାଟି ବନ୍ଧାଇ

ପାଣି ଜମାରଖି ତାଙ୍କଘର ଭାଙ୍ଗୁଛ କାହିଁକି ? ଏଇଟା ବଡ଼ ଅନ୍ୟାୟ । ଏତକ ଶୁଣି ରାମାବୋଉ ଚମ୍ପାନାଗ ପରି ଖଣ୍ଡିଆ ପହଁରାଟାଏ ଧରି ଦୌଡ଼ିଆସି ଗାଳିଗୁଲଜ ଆରମ୍ଭ କରିଦେଲା । ଏଥିରେ ଡ଼ରି ନଯାଇ ସେ ବାରମ୍ବାର କହିଲେ ଏହା ଅତ୍ୟନ୍ତ ଅନ୍ୟାୟ । ଏସବୁ କଥା ଚାଲିଥିଲାବେଳେ ମୁଁ ଦୌଡ଼ିଯାଇ ଘରୁ କୋଡ଼ିଟିଏ ଆଣି ପିଲାହାତରେ ଯେମିତି ସମ୍ଭବ ସଗୁ ନାଳଟିଏ କାଟି ଦେବାରୁ ପାଣି ଗଡ଼ିଗଲା ଓ ପାଣି ଗଡ଼ି ନାଳଟି ଗଭୀର ହୋଇଗଲା । ଠାକୁରଙ୍କ ଦୟାରୁ ସେବର୍ଷ ଆମଘର ଅଧାଭଙ୍ଗା ହୋଇ ରହିଗଲା । ସେ କାଳରେ ମଧ ଅନ୍ୟାୟକୁ ଅନ୍ୟାୟ ବୋଲି କହିବାକୁ ମଧ ଲୋକଙ୍କର କେତେ ଅଭାବ ଥିଲା ତାହା ଲକ୍ଷ କରିବାର କଥା । ଯୁଗେ ଯୁଗେ ତେଲିଆ ମୁଣ୍ଡରେ ତେଲ । ଗରିବ କଥା କିଏ ଶୁଣିବ ? ଗରିବ ମାଇପ ବ'ଂର ସବୁରି ଶାଳୀ । ଆଉ ଯିଏ ଅନ୍ୟାୟ କରେ ତାର ଗାଳିକୁ ସମସ୍ତଙ୍କର ଡ଼ର; ନା ତାକୁ ଭିତିରି ସମର୍ଥନ ?

## ୩୬. ବୋଝ ଉପରେ ନଳିତା ବିଡ଼ା-ବାସହରା

ଦିନେ ଆମେ ପିଲାଏ ସ୍କୁଲକୁ ଯାଇଥାଉ । ବର୍ଷାଦିନ । ଚାରିଟା ବେଳକୁ ଘରକୁ ଆସି ଦେଖିଲୁ ଆମର ଘରନାହିଁ । ଜେଜେ ଜେଜେଇ ଓ ବାପାଙ୍କୁ ହରାଇଥିଲୁ । ଧନ ହରାଇଥିଲୁ । ଘରଟିଏ ଥିଲା, ସେ ମଧ ଗଲା । କ'ଣ ହେଲା ବୁଝୁବୁଝୁ ବିଗତ ବର୍ଷ ପରି ଏବର୍ଷ ମଧ ସେପାଖ ଦୁଆରେ ରାମାବୋଉ ପାଣିବାନ୍ଧିରଖିବା ଫଳରେ ଅଧାକାନ୍ଥ ଓ ମଝିକାନ୍ଥ ଭଙ୍ଗିଯିବାପରେ ଘରଟି ମଧ ପୁରାପୁରି ଭାଙ୍ଗିତଳେ ପଡ଼ିଗଲା ।

ଏ ଦଶା ଦେଖି ବୋଉ କାନ୍ଦୁଥାଏ । ଏତେବେଳକୁ ବେଳପ୍ରାୟ ଗୋଟାଏ ହେବ । କାମ ଉଠାଣି ମୂଲିଆ ସବୁ କାମରୁ ଫେରି ଗାଧୋଇ ଯାଉଥାନ୍ତି । ଆମଘର ପଛ ରସାଭାଇ ଘର । ରସା ତନ୍ତୀ ଭାରି ପରିଶ୍ରମୀ । ଭୋର ସକାଳୁ ନିଜବାଡ଼ି ଓ ଗାଈ କାମ କରେ । ଦିନରେ ମୂଲଲାଗେ । ରାତିରେ ଲୁଗାବୁଣେ । ସେ କାମରୁ ଫେରି ଗାଧୋଇ ଯାଉଥିଲା । ବୋଉର କାନ୍ଦ ଓ ଘରର ଦଶା ଦେଖି ସେ ମୁଣ୍ଡରେ ହାତଦେଇ ବସିଗଲା । କହିଲା ପିଲାଏ ରହିବେ କେଉଁଠି ?

ଏତିକି କହି ସେ ଧାଇଁଲା ତା ଘରକୁ । ଶୀଘ୍ର ଗଣ୍ଡେ ଖାଇଦେଇ ତା ସାଙ୍ଗ ମୂଲିଆଙ୍କୁ ଧରି ସେ ଭଙ୍ଗାଘରୁ ଲମ୍ବା ଗୁଅ ସବୁ ବାହାର କରି ସେମିତି ଛଦାଥାଇ ତାକୁ ତଳୁ କାଟି ଛୋଟ କରିଦେଇ ଆମ ବାଡ଼ିପଟେ ଗୋଟେ ନାଲିଆଘର ଲମ୍ବା କରି ଠିଆରି କରିଦେଲେ । ଆମେ ସ୍କୁଲରୁ ଫେରିଲାବେଳକୁ ସେଥିରୁ ବଖରାଏ ଅନ୍ଦାଜରେ ଛାଉଣିକରି ଦେଇଥିଲେ ।

ଭଙ୍ଗାବାଉଁଶ ଓ ବତା ପୋତି କାନ୍ଥ ମଧ କରିଦେଇଥିଲେ । ତଳଟା କାଦୁଅଥିଲା । ସେଥିପାଇଁ ଘରେଥିବା ତକ୍ତପୋଷ ଖଟକୁ ସବୁ ଲଗାଇ ପକାଇ ଦେଲା । ତା ଉପରେ ବସା,

ଉଠା, ଶୁଆ, ଖିଆପିଆ ସହ ପାଠପଢ଼ା କାମ ଚାଲେ । ଏମିତି ଭାବରେ ଦୀର୍ଘ ବାର ବର୍ଷ ବିତିଗଲା ସେହି ଝାଟିମାଟି କାନ୍ଥଦିଆ ନାଚାଳିଆ ଘରେ । ରସାଭାଇ ମଲାଣି । ତାଭଳି କର୍ମୀଟିଏ ମିଳିବା କଷ୍ଟସାଧ । ଭୀମ ମଧ୍ୟରେ ଭଗବାନ ନୃସିଂହାବତାର ହୋଇ କିଚକ ଓ ଜରାସନ୍ଧ ବଧ କରିବା ଭଳି ସେ ଦିନ ରସାଭାଇ ଭିତରେ ବିଶ୍ୱକର୍ମା ସ୍ୱୟଂ ଅବତୀର୍ଣ୍ଣ ହୋଇ ଓଳିକ ମଧ୍ୟରେ ଘର ତିଆରି କରେଇ ଦେଇଥିଲେ । ଗାମାବୋଉ ସିନା ବାଦକରି ଘର ଭାଙ୍ଗିଦେଲା; ଠାକୁରେ ନିଜେ ପାଞ୍ଚଟି ଶିଶୁ ଓ ବିଧବା ମା ପାଇଁ ବାସର ବ୍ୟବସ୍ଥା କରିଦେଲେ ରସାଭାଇ ଜରିଆରେ ।

ମଣିଷ ନିଜର ଜମିବାଡ଼ି , ଟଙ୍କାସୁନା, ଘରଦ୍ୱାର, ବନ୍ଧୁ ଓ ଧନସମ୍ପତ୍ତି ଇତ୍ୟାଦିକୁ ନେଇ ଗର୍ବକରେ । ଗର୍ବ ନକଲେ ମଧ୍ୟ ସେମାନଙ୍କ ଉପରେ ନିର୍ଭର କରି ଚଳିଥାଏ । ଭଗବାନ ଗୋଟି ଗୋଟିକରି ଆମଠାରୁ ଏ ସବୁକୁ ଛଡ଼ାଇ ନେଇ ସାରିଥିଲେ । ବୃଦ୍ଧୀ ଆଈ ଥିଲା । ସ୍ୱାମୀ ତା'ର ଥିଲେ ସେତେବେଳର ବଡ଼ଲୋକ । ବନ୍ଦୋବସ୍ତରେ କାମ କରି ଖୁବ୍ କମେଇ ଥିଲେ । ଠାକୁର ବାଡ଼ିଥିଲା, ରଥ ହୁଏ । ରେମୁଣାରେ ଜମିବାଡ଼ି ଥିଲା । ହେଲେ ତାଙ୍କର ପୁତ୍ର ସନ୍ତାନ ନଥିଲେ । ବୋଉର ଚାରି ଭଉଣୀ ମଧ୍ୟରୁ ତାକୁ ଛାଡି ଗୋଟିଏ ଭଉଣୀ ମାତ୍ର ଥିଲେ । ତାର ଆର୍ଥିକ ଅବସ୍ଥା ମଧ୍ୟ ଭଲ ନଥିଲା । ହେଲେ ସେ ଥିଲେ ଖୁବ୍ ସ୍ନେହୀ ଓ ସୁମାର୍ଜିତା । ଆଈ ଆମର ଦୁଃଖ ଦେଖି କେତେବେଳେ କେମିତି ଟା'ବଳକୁ ଚାହିଁ ସାହାଯ୍ୟକରେ । ଶେଷକୁ ତାର ବହୁତ ରୂପା ଅଳଙ୍କାର ମଧ୍ୟ ଆଣି ବୋଉକୁ ଦେଇଥିଲା । ସେଥିରୁ କିଛି ଭାଇନାଙ୍କ ପାଠ ପଢ଼ାରେ ଯିବା ପରେ ଆଉ ଯାହାଥିଲା ସେସବୁ ତାଙ୍କରି ଜିମାରେ ଏବେବି ଥିବ ଆମର ସନ୍ତକ ହୋଇ ଓ ସେ କାଳରେ ବ୍ୟବହୃତ ଅଳଙ୍କାରର ନମୁନା ହୋଇ, ସେଗୁଡିକ ହେଲା; ତାଡ, ବଟଫଳ, ମଲ, ପାଇଝରୀ, ଝୁଣ୍ଟିଆ ଇତ୍ୟାଦି ।

ଆଈ ହାତ ତିଆରି ଆମ୍ବ ଆଚାର କାସେନ୍ଦି ଓ ଗୁଡ଼ିଆ ସାଇର ତାଙ୍କ ପଡ଼ିଶା ଘରୁ କିଣା ପିଆରା ଖୁବ୍ ସୁଆଦ । କିଛି ନ ହେଲେ ଆଈର ସ୍ନେହ ଆମପାଇଁ ସମ୍ବଳ ଥିଲା । ଠାକୁରେ ତାକୁ ମଧ୍ୟ ଏଇ ଦୁଃଖବେଳେ ନେଇଗଲେ । ସେ ଆମକୁ ପ୍ରାୟ ଶେଷରେ ବାସହୀନ ଦେଖି ଆଖି ବୁଜିଥିଲା । ମାମୁଁ ଘରକୁ ଯା ଆସ ପ୍ରାୟ ସରିଗଲା । ଆମର ହୋଇ ଆଉ କେହି ନଥିଲେ । ଥିଲେ କେବଳ ଦୁଃଖୀର ବାନ୍ଧବ ଭଗବାନ, "ନିରାଶ୍ରୟ ମାଂ ଜଗଦୀଶ ରକ୍ଷ" ଭଳି ଏକାକି ତାଙ୍କୁ ହିଁ ଭରସା କରି ଦୁଃଖର ପାରାବାରରେ ଦୁଃଖୀର ଡ଼ଙ୍ଗାଟି ଚଳିଲା । ଠାକୁରେ ଯେଉଁ ଡ଼ଙ୍ଗାର କର୍ଣ୍ଣଧାର ସେ ଡ଼ଙ୍ଗା କ'ଣ ବୁଡ଼େ ? ହଁ ନ ଥିଲା କାହିଁକି ଜେଜେ ତୀର୍ଥରୁ ଆଣିଥିବା ଶାଳଗ୍ରାମ, ବାବାଜୀ କଲେଇ ଆଣି ଦେଇଥିବା ପିତଳ ଗୌରାଙ୍ଗ ମୂର୍ତ୍ତୀ ଆମର ଓ ରାଧିଖୁଡ଼ୀର ଗୁରୁବାର ପୂଜା ମାଣ ଇତ୍ୟାଦି । ଦୈନିକ ଓଡ଼ିଆ ଘରେ ସେବା

ପୂଜାର ବୋଝ ଆମର ଥିଲା ସମ୍ବଳ । ଏ ସବୁ ଆମ ପାଇଁ ବୋଝ ନ ଥିଲା । "ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋମେ ଭକ୍ତ୍ୟା ପ୍ରଯ ଛତି" ନ୍ୟାୟରେ ଆମେ ଆମର ଘୋର ଅଭାବ ମଧ୍ୟରେ ଯଥାସାଧ୍ୟ ନୀତିକାନ୍ତି ବଜାୟ ରଖିଥିଲୁ ସେହି ଦୟାମୟଙ୍କ ଅଶେଷ ଦୟାରୁ ଓ କରୁଣାରୁ । ଆମକୁ ମାଧ୍ୟମ କରି ସେ ତାଙ୍କ ନିଜର ପୂଜା କରାଉଥିଲେ ।

## ୩୭. ସ୍ୱାଧୀନ ବିଦ୍ୟାଳୟରେ

୧୯୪୭ରେ ଭାରତସ୍ୱାଧୀନ ହେବାପରେ ଆମଗାଁରେ କାହିଁକି ସାରାଦେଶରେ ଶିକ୍ଷାପ୍ରସାର ପାଇଁ ଆଗ୍ରହ ବଢ଼ି ଯାଇଥିଲା । ସେହି କେତେ ବର୍ଷ ଭିତରେ ଆମଗାଁ ସହିତ ପାଖଆଖରେ ପ୍ରାୟ ପାଞ୍ଚ ଛଅଟି ହାଇସ୍କୁଲ ଗଢ଼ିଉଠିଥିଲା ସ୍ଥାନୀୟ ଲୋକଙ୍କର ଦାନ, ଚେଷ୍ଟା ଓ ପ୍ରଭାବରେ । ସ୍ୱାଧୀନତା ସଂଗ୍ରାମ ଓ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଶିକ୍ଷାପ୍ରସାରରେ ଅଭିଜ୍ଞ ସଚ୍ଚିଦାନନ୍ଦ ମିଶ୍ର ଆମଗାଁରେ ହାଇସ୍କୁଲଟିଏ ଆରମ୍ଭ କଲେ । ୧୯୪୯ରେ ପ୍ରଥମ ଛେକରେ ଘରେ ବସିଥିବା ଓ ମାଟ୍ରିକ ଅଧାବାଟରୁ ପାଠଛାଡ଼ି ବସିଥିବା ବୟସ୍କ ପିଲାମାନଙ୍କୁ ନିଆଗଲା । ୧୯୫୦ରେ ମାଇନର ପାଶ୍‌କଲାପରେ ମୁଁ ମୋର ଅଳ୍ପ କେତେକ ସାଥୀଙ୍କ ସହ ସେହିଠାରେ ସେ ଘରୋଇ ହାଇସ୍କୁଲରେ ନାମ ଲେଖାଇଲୁ । ସ୍କୁଲ ମଞ୍ଜୁର ପାଇ ନଥାଏ । ଘର ନ ଥାଏ । ଯଥେଷ୍ଟ ଶିକ୍ଷକ ନ ଥାନ୍ତି ଇତ୍ୟାଦି ଇତ୍ୟାଦି । ନାଁ ତାର ସ୍ୱାଧୀନ ବିଦ୍ୟାଳୟ ଲୋକ ମୁଖରେ ।

ମୋର'ତ ଘୋର ଅଭାବ । ଦୂରକୁ ଯାଇ ପୁରୁଣା ବା ଭଲ ସ୍କୁଲରେ ପାଠ ପଢ଼ିବା ଅସମ୍ଭବ । ମାସରେ ଦରମା ଦେଢ଼ ଟଙ୍କା ମଧ ଦେବା ମୁସ୍କିଲ୍ । ତେଣୁ ବାଧ ହୋଇ ସେଇଠି ପଢ଼ିଲି ।

ଦିନର ଅଧିକାଂଶ ସମୟରେ ମାଟିବୁହା, ଇଟାବୁହା, ବାଉଁଶ ଓ ଛଣ ମଗା ଇତ୍ୟାଦି କାମରେ କଟେ । ଅବଶ୍ୟ ଯେତୋଟି କ୍ଲାସ ହୁଏ ତାହା ଖୁବ୍ ସାର୍ଥକ । କାରଣ କମପିଲା ଓ ଯେଉଁ କେତେଜଣ ଶିକ୍ଷକଥିଲେ ସେ ଖୁବ୍ ନିଷ୍ଠାବାନ ଓ ଆଦର୍ଶ ।

ସେହି ସ୍କୁଲରେ ରାଜୁବାବୁ (ରାଜକିଶୋର ନାୟକ)ପ୍ରଥମେ ଆମକୁ ଆଧୁନିକ ଶୈଳୀର ସାହିତ୍ୟ ସମ୍ବନ୍ଧେ ଧାରଣା ଦେଲେ ଓ ତାହାର ଛାଇ ଏପର୍ଯ୍ୟନ୍ତ ଆମଉପରେ ବିଦ୍ୟମାନ । ସେ ଲେଖିଥିବା କଂସର ଚିତାଉ ଉପରେ ସନ୍ଦର୍ଭ ଓ ସଚୀରାଉତରାୟଙ୍କ ଲେଖାର ତର୍ଜମା ଏବେ ମଧ ଆମକୁ ପ୍ରଭାବିତ କରେ । ତାଙ୍କ ଠାରୁ ଶିବାନନ୍ଦଙ୍କର ପରିଚୟ ପାଇଲୁ । ତାଙ୍କ ଲେଖା ପଢ଼ିଲୁ । ତାଙ୍କର ପ୍ରାକୃତିକ ଚିକିତ୍ସା ସମ୍ବନ୍ଧେ ଜାଣିଲୁ । ସେହିପରି କେତେକ ଆଦର୍ଶବାଦ ସମ୍ବନ୍ଧେ ଆଦ୍ୟଧାରଣା ସୃଷ୍ଟି ହେଲା । ସେ ଥିଲେ ଜଣେ ଆଦର୍ଶ

ମଣିଷ । ଥାନ କନାର ଖଦଡ ଧୋତି ଚଦର ତାଙ୍କର ପରିଧାନ । ପାଦରେ ଚପଲ ମଧ୍ୟ ଲଗାନ୍ତିନି । ଗାଁ ଗହଳରୁ ଗରିବ ରୋଗୀଙ୍କୁ ଆଣି କଟକ ବଡ ଡାକ୍ତରଖାନାରେ ଚିକିତ୍ସା କରାଇବା ତାଙ୍କର ଗୋଟେ ଆଦର୍ଶ ସେବା ଥିଲା । ପରବର୍ତ୍ତୀ କାଳରେ ସେ ପାଟକୁରା ପଞ୍ଚାୟତ ସମିତିର ଅଧକ୍ଷ ଓ ବିଧାୟକ ମଧ ହୋଇଥିଲେ । ଓଡିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡର ଦୁଇଥର ଅଧକ୍ଷ ହେବା ସହ ପୂର୍ବାଞ୍ଚଳ ରାଜ୍ୟ ସମୂହର ଅଧକ୍ଷ ମଧ ହୋଇଥିଲେ ।

ରଥୀନ୍ଦ୍ର ପରିଡାବାବୁଙ୍କ ବିଜ୍ଞାନ ପଢ଼ାର ଢ଼ଙ୍ଗ ସ୍ୱତନ୍ତ୍ର । ବିଜ୍ଞାନାଗାର ନଥାଇ ସେ ପିଲା ବୁଝିଲାଭଳି ବିଜ୍ଞାନ ପଢ଼ାଉଥିଲେ । ତାଙ୍କର ଈଶ୍ୱର ନିଷ୍ଠା ଓ ଶରୀର ଶ୍ରମପ୍ରତି ଆଗ୍ରହ ସମସ୍ତଙ୍କର ଶିକ୍ଷଣୀୟ । ସେ ଅଳ୍ପଦିନେ ଦେହତ୍ୟାଗ କଲେ । ତାଙ୍କ ପାଇଁ ଏକ ନ୍ୟାସୀଗଢ଼ି ପାଣ୍ଠି ଗଠନ କରିବାର ପ୍ରୟାସ ଏବେ ମଧ ଜୀବିତ । ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀମଣ୍ଡଳ ପ୍ରବର୍ତ୍ତିତ ଉତ୍କଳମଣି ଶିକ୍ଷା ପ୍ରସାର ପାଣ୍ଠିରେ ଏଥିପାଇଁ ଚୁଅ ହଜାର ଟଙ୍କା ଜମା ରହିଅଛି ।

ଚନ୍ଦ୍ର ମଣି ନାୟକବାବୁ ଥିଲେ ପ୍ରଧାନ ଶିକ୍ଷକ । ସେ ପଢ଼ାନ୍ତି ଇଂରାଜୀ । ତାଙ୍କର ଇଂରାଜୀ ଜ୍ଞାନ ବହୁତ । ହେଲେ ତାକୁ ଗ୍ରହଣ କରିବାକୁ ଆମର ଶକ୍ତି ନଥିଲା । ବେଙ୍ଗ ପେଟରେ ଘିଅ ପରି । ତାଙ୍କର ଶୃଙ୍ଖଳା, ସ୍ୱଚ୍ଛତା ଓ ଶିଷ୍ଟତା ଏବେ ମଧ ଶିକ୍ଷଣୀୟ । ପରବର୍ତ୍ତୀ କାଳରେ ସେ ଓଡ଼ିଶା ପ୍ରଶାସନିକ ସେବାରେ ଯୋଗଦେଇ ଅବସର ନେବାପରେ ପରଲୋକଗତ । ଦୁଇ ତିନି ବର୍ଷ ଆମେ ଏକାଠି କାମ ମଧ କରିଛୁ । ସଂସ୍କୃତ ପଣ୍ଡିତ କୃଷ୍ଣଚନ୍ଦ୍ର ଷଡଙ୍ଗୀଙ୍କ ସିଂହ ଗର୍ଜନ ସହ ବାରମ୍ବାର ଅଭ୍ୟାସ ଓ ଶେଷରେ କଠୋର ଦଣ୍ଡର ଭୟ ପଥରକୁ ମଧ ତରଳାଇ ସଂସ୍କୃତ ଛାଞ୍ଚରେ ପକାଇଦେବ । ସେ ମଧ ଗଲେଣି । ପିତୃପକ୍ଷରେ ତର୍ପଣ ବେଳେ ତାଙ୍କ କଥା ମନେ ପଡ଼ିଲେ ପାତ୍ରିଏ ପାଣି ଦିଏ ତାଙ୍କ ପାଇଁ । ଯେ ଋରିଜଣ ସେ ନୂଆ ଗଢ଼ିଉଠୁଥିବା ହାଇସ୍କୁଲର ଋରିଟି ଖୁମ୍ବଥିଲା ବେଳେ ସଚୀବାବୁ ଥିଲେ ସମସ୍ତଙ୍କୁ ସଂଯୋଗ କରୁଥିବା "ଶେଣୀ" । ସେ ଥିଲେ ସବୁଥିରେ ପାରଙ୍ଗମ । ଓଡ଼ିଆ,ଇଂରାଜୀ, ସଂସ୍କୃତ, ବିଜ୍ଞାନ, ଗଣିତ, ଇତିହାସ ଓ ଭୁଗୋଳ ସବୁ ତାଙ୍କ ମୁହଁରେ । ସେ ଥରେ ଶ୍ରେଣୀକୁ ଆସିବାମାନେ ସବୁ ବିଷୟ କିଛି କିଛି ପଢ଼ାନ୍ତି ଓ କେତେକ'ଣ ଅଗ୍ରଗତି ହୋଇଛି ପରଖି ନିଅନ୍ତି । ହେଲେ ସଂଗଠନର ପୁରା ଦାୟିତ୍ୱ ତାଙ୍କ ଉପରେ ଥିବାରୁ ସେ ପାଠ ପଢ଼ାଇବାକୁ କମ୍ ସମୟ ପାନ୍ତି । ତେଣୁ ଯେତିକି ସମୟ ପଢ଼ାନ୍ତି ତାରି ଭିତରେ ସବୁଟକ ଅଭ୍ୟାସ କରାଇବାର ଶତତ ଚେଷ୍ଟା କରନ୍ତି । ପରବର୍ତ୍ତୀ ଅବସ୍ଥାରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବଂଶୀଧର ମିଶ୍ର ୨ ୨ ବର୍ଷକାଳ ଇଂଲଣ୍ଡରେ ଆତ୍ମଗୋପନ କରି ଭାରତୀୟ ନାଭି ଶ୍ରମିକ ସଂଘ ସଂପାଦକ ରହି ସେଠୁ ଫେରି

ଆମ ବିଦ୍ୟାଳୟରେ ଇଂରାଜୀ ଓ ଗଣିତ ପଢାଇଲେ । ଆଶ୍ଚର୍ଯ୍ୟର ବିଷୟ ଏତେବର୍ଷପରେ ମଧ୍ୟ ବେଦ, ବେଦାନ୍ତ, ଗୀତା ସହ ଗଣିତ, ଇତିହାସ, ଭୂଗୋଳ ସବୁତାଙ୍କର ସ୍ମୃତିପଟରେ ଜାଗ୍ରତ ଥିଲା । ସେ ଆମକୁ ଚେସ୍ ଖେଳ ଶିଖାଇଥିଲେ ଓ ବହୁତ ଆଧୁନିକ ଶଣୁଣା ଶିଖାଇ ଥିଲେ । ଦୁଇଟି ଯୁଗ ଇଂଲଣ୍ଡରେ ରହିବା ପରେ ନିଜର ଜନ୍ମ ମାଟିକୁ ଆସି ଗାଉଁଲି ଲୋକପରି ଆଣ୍ଠୁଲୁଗ ଧୋତି ପିନ୍ଧି, ଝୁଲାମୁଣି ପକାଇ, ଠେଙ୍ଗାଧରି ଚାଲି ଚାଲି ସ୍କୁଲକୁ ଯାଇ ଗାଁ ପିଲାଙ୍କୁ ପାଠପଢାଇବାର ଆଦର୍ଶ ଗ୍ରହଣ କରି ତାଙ୍କୁ ମିଳୁଥିବା ବଡ ବଡ ପଦବୀକୁ ପ୍ରତ୍ୟାଖ୍ୟାନ କରିଥିଲେ ।

ସଚ୍ଚିବାବୁଙ୍କର ଉଦ୍ଦେଶ୍ୟଥିଲା ସ୍କୁଲକୁ ଗୋପବନ୍ଧୁଙ୍କ ଆଦର୍ଶରେ ଗଢ଼ିବା । ସରକାରୀ ମଞ୍ଜୁରୀ ଓ ସାହାଯ୍ୟର ଅପେକ୍ଷା ନିରଖିବା । ମୂଳ ହେଲା ଆଦାର୍ଶ ନାଗରୀକ ଗଠନ । ଅବଶ୍ୟ ତାଙ୍କର ସମସ୍ତ ଶ୍ରମ ଓ ଇଚ୍ଛାଶକ୍ତିକୁ ପଣ୍ଡକରି ଶେଷରେ ସେ ସ୍କୁଲ ହେଲା ହଜାର ହଜାର ସ୍କୁଲ ପରି ଆଉ ଗୋଟିଏ ।

ହେଲେ ଆମେ ଯେତେଜଣ ସେହି ଆଦର୍ଶ ପଞ୍ଚସଖାଙ୍କ ସଂପର୍କରେ ଆସିଥିଲୁ ଆମେ ଆମ ଜୀବନକୁ ଧନ୍ୟ କରିପାରିଛୁ । ମୋର ନିୟମିତ ସ୍କୁଲ ପଢ଼ା ସିନା ଏଇଠି ଶେଷ ହେଲା; କିନ୍ତୁ ଗୋଟିଏ ଦୃଢ଼ ଇଚ୍ଛାଶକ୍ତିର ବିକାଶ ଏଇଠି ସୃଷ୍ଟି ହେଲା; ଯାହା ଫଳରେ କଲେଜ ନମାଡ଼ି ମଧ ସର୍ବୋଚ୍ଚ ଶିକ୍ଷାର ଡ଼ିଗ୍ରୀ ପାଇ ପାରିଲି । ଠାକୁରଙ୍କର ଏହାହିଁ ଶ୍ରେଷ୍ଠ ଆଶିର୍ବାଦ ଓ ଅବଦାନ । ଏହି ଆଶିର୍ବାଦ ବିନା ଯେତେ ଉଚ୍ଚ ଡ଼ିଗ୍ରୀ ପାଇଲେ ମଧ ଆଦର୍ଶ ଜୀବନ ଗଠନ ସମ୍ଭବ ନୁହେଁ । ସେଥିପାଇଁ ତାଙ୍କରି ପାଦପଦ୍ମରେ ଚୀର ଋଣୀ । ମୋ ପରି ଶୁଖିଲା ପତ୍ରକୁ ସେ ଉଡ଼ାଇ ନେଇ ଥିଲେ ସେହି ଆଦର୍ଶ ପଥରେ ତାଙ୍କରି ଇଚ୍ଛା ଓ ଉଚ୍ଚତର ଶକ୍ତିରେ ।

## ୩୮. ଆତ୍ମବିଶ୍ୱାସ

ଠାକୁର ବଳରାମ ହେଉଛନ୍ତି ଶ୍ରମଶକ୍ତିର ପ୍ରତୀକ । ତାଙ୍କ ହାତର ଆୟୁଧ ହଳମୂଷଳ ହେଉଛି ଶ୍ରମ ଶକ୍ତିର ପରିଚୟ । ଯେ କାଗଜ ଚଷ କରୁଛି ସେ ହେଉଛି ବାବୁ । ଯେ ତାଙ୍କୁ ଖାଦ୍ୟ ଯୋଗାଉଛି ସେ ହେଉଛି କୃଷକ ବା ମୂଲିଆ । ଏହିଠାରେ ବିଚାର କରିବାର କଥା ଯେ ଉଭୟେ ଶ୍ରମିକ । ଉଭୟେ ଦେଉଥିବା ଶ୍ରମର ଉଚ୍ଚ ମୂଲ୍ୟବୋଧ ରହିବା ଦରକାର । ଜଣେ ସାନ ଆଉଜଣେ ବଡ଼ ନୁହେଁ । ବିଦେଶରେ ବିଶେଷକରି ପାଶ୍ଚାତ୍ୟରେ ଏପରି ନାହିଁ । ଆମଦେଶରେ କାଳକ୍ରମେ ଏ କ୍ଷେତ୍ରରେ ଉଚ୍ଚନୀଚ ଭାବ ପ୍ରବେଶ କରିଯାଇଛି । ଈଶ୍ୱର ମନଭିତରୁ ଏହି ଉଚ୍ଚନୀଚ ଭାବ ଛଡ଼ାଇବାପାଇଁ ବାଟଟିଏ ଫିଟାଇ ଦେଲେ । ସ୍କୁଲରେ ଆମେ

ପଢୁଥିବା ପିଲାଏ ଦରମା ଦେବୁ କି ନାହିଁ ଓ କେତେ ଦେବୁ ତାହା ଆମଉପରେ ଛାଡ଼ି ଦିଆଗଲା । ଆମେତ ନିଜେ ଇଟା, ମାଟି, ଛଣ, ବାଉଁଶ ବୋହି ସ୍କୁଲ ଗଢ଼ୁଥିଲୁ; ତେଣୁ ଆମକୁ ଆମର ଗୁରୁଦକ୍ଷିଣା ସ୍ଥିର କରିବାର ଦାୟିତ୍ୱ ଦିଆଗଲା । ଆମେ ସ୍ଥିର କଲୁ ଆଦର୍ଶ ଓ ନୀତି ଦୃଷ୍ଟିରୁ ଆମେ ମାସିକ ପୁରା ଦରମା ଦେଢ଼ ଟଙ୍କା କରି ଦେବୁ । ଏଥିରେ ଥିଲା ନଥିଲାର ବିଚାର ରହିବନି । ନୀତିଗତ ନିଷ୍ପତ୍ତି ନେବା ଖୁବ୍ ସହଜ କଥା । ତାକୁ କାର୍ଯ୍ୟକାରୀ କରିବା ସମସ୍ତଙ୍କ ପକ୍ଷେ ସହଜ ନୁହେଁ । ବିଶେଷକରି ନଥିଲାବାଲା ସେକାଳରେ ମାସକୁ ଦେଢ଼ଟଙ୍କା ଯୋଗାଡ଼ କରିବା ଏକ କଷ୍ଟସାଧ କାର୍ଯ୍ୟଥିଲା ।

ମାସକର ପଇସା ବାକୀ ରହିଗଲା । ମନବ୍ୟସ୍ତ ଥାଏ । କିପରି ଦିଆଯିବ । ସେଦିନ ଛୁଟିଦିନ ଥାଏ । ଦେଖନ୍ତୁ ଠାକୁରଙ୍କର ପରୀକ୍ଷା । ନନ୍ଦଘର ଦ୍ରମନାନୀ ଛୁାର୍ଏଁ ଛାଏଁ ଡ଼ାକି କହିଲା ଆଜି ଲୋକ ମିଳୁ ନାହାନ୍ତି । ତୋର ଛୁଟି ଅଛି । ପାଟରେ ପାଣି ହୋଇଗଲେ ବଛାବଛି ହେଇ ପାରିବନି । ଚୁ ଚାଲୁନୁ କାମ କରିବୁ । ମୁଁ ଖୁସିରେ ରାଜି ହୋଇ ଚାଲିଗଲି ସିନା ମୋତେ କିଏ ଧାନ କିଏ ବାଲୁଙ୍ଗା ଜଣା ନଥିଲା । ସାଙ୍ଗ ମୂଲିଆ ମାନଙ୍କଠାରୁ ପଚାରିବୁଝି ତାଙ୍କୁ ଦେଖାଇ କାମ ଆରମ୍ଭ କଲି । କାଦୁଅରେ ପାଣିରେ ଆଣ୍ଠେଇ ଅଣ୍ଟା ଓ ବେକ ବଙ୍କାକରି ଆଠଘଣ୍ଟା ବିଲବାଛିବାର କଷ୍ଟ ଅଙ୍ଗେ ନ ନିଭେଇଲେ ବର୍ଣ୍ଣନାରୁ ଜାଣି ହେବନି । ସଂଧ୍ୟାକୁ ବାରଣା ମିଳିଗଲା । ମାନଗଲା ହେଲେ ପେଟ ପୁରିଲାନି । ଆଉ ବିଲବାଛିବାକୁ ଯିବାକୁ ପରଦିନ ଛୁଟି ନଥିଲା । ପରିବର୍ତ୍ତୀ ଛୁଟି ଦିନକୁ ବଛାବଛି ଶେଷ ହୋଇ ଯାଇ ଥିଲା । ହେଲେ ସେ ଦିନର ଅଭିଜ୍ଞତା ଠାକୁରଙ୍କର ମୋ ପ୍ରତି ଏକ ପଟାନ୍ତର ହୀନ ଦାନ ବୋଲି ମୁଁ ଏବେ ମଧ ସେ ଶ୍ରମ ଦିବସଟିକୁ ସମ୍ମାନ ଦିଏ । ଠାକୁରଙ୍କର ପରୀକ୍ଷାରେ ସେହି ପରବର୍ତ୍ତୀ ରବିବାର କିଶୋର ମିଶ୍ରଙ୍କର କୋଠା କାମ ହେଉଥାଏ । ସେଠି କୂଅରୁ ପାଣି ଯୋଗାଇ ଦେବା କାମ ଦିନଟିଏ କରି ସଂଧ୍ୟାରେ ବାରଣା ପଇସା ପାଇଲିସିନା ହାତରେ ସବୁ ଫୋଟକା ଉଠି ନାଲିପଡ଼ି ଯାଇଥିଲା ।

ଯାହା ହେଉ ମାସକର ସ୍କୁଲ ଦରମା ଦେଢ଼ଟଙ୍କା ଯୋଗାଡ଼ ହୋଇଯାଇ ଥିବାରୁ ମନରେ ଯେଉଁ ଖୁସି ତାହା କହିଲେ ନ ସରେ; ଏତିକି ବେଳେ ବାପାଙ୍କ କଥା ମନେପଡ଼ିଲା :- "ମୂଲ ଲାଗିବ କି ଭୀକ ମାଗିବ ସିନା ଚୋରୀ କରିବନି" ।

ଏହି ଦୁଇ ଦିନ କାମ କରିବା ପରେ ଶ୍ରମ ଏକ ନୀଚବୃତ୍ତି ନୁହେଁ ବୋଲି ଦୃଢ଼ ଧାରଣା ସୃଷ୍ଟି ହେଲା । ବରଂ ତାହା ମନୁଷ୍ୟକୁ ଆର୍ଥିକ ଓ ମାନସିକ ତୃପ୍ତିଦିଏ । ଏ ସମ୍ବନ୍ଧରେ ଅନ୍ତତଃ ତିନିଚାରିଜଣ ମହାପୁରୁଷଙ୍କ ଜୀବନୀ ପଢ଼ି ସେଥିରୁ ଏହି ସିଦ୍ଧାନ୍ତ ଉପରେ ଅଧିକ ନିଷ୍ଠା ଅର୍ଜନ କରିବାର ସୁଯୋଗ ମଧ ମିଳିଲା । ଶ୍ରମ ଏକ ସମ୍ମାନଜନକ ଜୀବନ ଧାରଣର ଉପାୟ । ବିଦ୍ୟାଦାନ, ବିଚାରଦାନ ଓ ପରାମର୍ଶ ଦାନପରି ଶ୍ରମଦାନ ଏକ ସମ୍ମାନଜନକ ଦାନ ଯାହାର ପ୍ରତିବଦଳରେ ମିଳୁଥିବା ମୂଲ୍ୟ ବା ମୂଲ କାହାର ହାତ ଟେକା ଦାନ ନୁହେଁ ବା ସେ କାର୍ଯ୍ୟ ଏକ ନୀଚପନ୍ଥା ନୁହେଁ ।

ଠାକୁରଙ୍କର ଆଶୀର୍ବାଦରୁ ଯେଉଁ ଅଭିଜ୍ଞତା ଓ ଶିକ୍ଷା ମିଳିଲା ତାହା ଏପର୍ଯ୍ୟନ୍ତ ମୋର ଆତ୍ମବିଶ୍ୱାସକୁ ଜାଗ୍ରତ କରି ରଖିଛି । ହାତ ଗୋଡ଼ ଚାଲୁଥିଲେ ଅଭାବ ଅସୁବିଧା ରହିବନି । ଆଜିକାଲିର ବେକାର ପିଲାମାନେ ଏହି ଆଦର୍ଶକୁ ଆଦରି ନେଲେ ସମାଜରୁ ହିଂସା, ଈର୍ଷା, ଦ୍ୱେଷ, ଚୋରି ଇତ୍ୟାଦି କମି ଯାଆନ୍ତା; ଏଥିରେ ସନ୍ଦେହ ନାହିଁ । ହେଲେ ଏଥି ପାଇଁ ଆଦର୍ଶ ଦେଖାଇବାକୁ ଲୋକ କାହାନ୍ତି ? ଦିନକୁ ଦିନ ବରଂ ଶରୀର ଶ୍ରମ ପ୍ରତି ବିତୃଷ୍ଣା ବଢୁଛି । ଈଶ୍ୱର ସମସ୍ତଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ । ଶରୀର ଶ୍ରମ ପ୍ରତି ଶ୍ରଦ୍ଧା ଓ ସମ୍ମାନ ବଢୁ ।

## ୩୯. ଦୀନ ଲାଇବ୍ରେରୀ

ଅଭାବ ବୁଦ୍ଧି ଦେଖାଏ ଓ ଆବିଷ୍କାର ପାଇଁ ବାଟ କଢ଼ାଏ । ହାଇସ୍କୁଲରେ ପଢ଼ିଲାବେଳକୁ କିଛି ବହି ନଥିଲା । ସାଙ୍ଗ ପିଲାଙ୍କ ବହି ସବୁବେଳେ ପଢ଼ିବାକୁ ମିଳେନି । ସେଥିପାଇଁ ଜଣକୁ ସାଙ୍ଗକରି ଦୁଇବର୍ଷ ଚଳାଇଦେଲି । ତାପରେ ସେ ପାଠଛାଡ଼ି ଦେବାରୁ ହତାଶ ହୋଇଗଲି । ଲେଖିବାକୁ ଖାତା ନଥାଏ । ଭାଇନାଙ୍କ ପୁରୁଣା ବ୍ୟବହୃତ ଖାତାରୁ ଲେଖାଯାଇଥିବା ଅଂଶତକ ଛୁରୀରେ କାଟିବାହାର କରିନେଇ ବାକିତକରେ ଲେଖା କାମ ଚଳେ । ତାଙ୍କ ପୁରୁଣା ଭଙ୍ଗା ମୁଣ୍ଡା ପେନସିଲକୁ କାଟି ଲେଖନୀ ଭାବେ ବ୍ୟବହାର କରେ । ତାଙ୍କ ତ୍ୟକ୍ତ ବହିରୁ ବାଛିବାଛି ସଂସ୍କୃତ ବ୍ୟାକରଣ ଖଣ୍ଡିଏ ମିଳିଥିଲା । ଓଡ଼ିଆ ବହିଖଣ୍ଡେ ମଧ୍ୟ ଚିରା ଅବସ୍ଥାରେ ମିଳିଥିଲା । ଏତିକ ହେଲା ବିଦ୍ୟା ଲାଭର ସାଧନ ସାମଗ୍ରୀ ।

ପାଠକ'ଣ ବହି ଖାତା ବା କଲମରେ ହୁଏ ? ପାଠହୁଏ ମନରେ । ଯେଉଁ ଠାକୁରେ ପ୍ରେରଣା ଦେଇ ସ୍କୁଲକୁ ପଠାଇଥିଲେ ସେହିଁ ଯେଉଁ ମନ ଦେଇଥିଲେ ସେଥିଲା ଖୁବ୍ ରସାଣିତ ଚୁମ୍ବକ ପରି । ହେଲେ ଲୁହା କାହିଁ ଯେ ସେ ଆହରଣ କରିବ । ହାତଗଣତି ଶିକ୍ଷକମାନେ'ତ ସବୁବେଳେ ସଂଗଠନ କାମରେ ବ୍ୟସ୍ତ ।

ନିଜେ ପାଠପଢ଼ିବାକୁ ବହିର ଅଭାବ ଅନୁଭବ କରିବାରୁ ଠାକୁରଙ୍କର ପ୍ରେରଣା ପ୍ରାପ୍ତ ହେଲା । ସେତିକି ବେଳକୁ ଆଉ ଗୋଟିଏ ଘଟଣା ଘଟିଥାଏ । ହରିମାଷ୍ଟ୍ରଙ୍କର "ଭୁଜ" ବୋଲି ଭାଇଟିଏ ମରିଯାଇଥାଏ । ସେ ତାରି ନାମରେ ଲାଇବ୍ରେରୀ ଟିଏ ଗଢ଼ିଥିଲେ । କେତେଦିନ ଚାଲିଲାପରେ ସେ ଭାଙ୍ଗିଗଲା । ସେଥିରୁ ମଧ୍ୟ କିଛି ଜ୍ଞାନ, ଅଭିଜ୍ଞତା ଓ ପ୍ରେରଣା ମିଳିଲା ।

ତାହାକୁ ପାଥେୟ କରି ଆରମ୍ଭ ହେଲା ଦୀନ ଲାଇବ୍ରେରୀ; ଗରିବଙ୍କ ପାଇଁ । ଗରିବ ପିଲାଙ୍କପାଇଁ ଜେଜେ ବାପା ଦୀନବନ୍ଧୁଙ୍କ ନାମରେ ଏହାର ପ୍ରାରମ୍ଭ । ଏଥିରେ ସଂଗୃହିତ ହୋଇ ରହିଲା ଶତାଧିକ ପୁରୁଣା ପଢ଼ା ବହି ଯାହାକି ଗରିବ ପିଲାଙ୍କ ପାଠପଢ଼ାରେ ଲାଗି ପାରିବ । ଏହା ବ୍ୟତୀତ ଅନ୍ୟ ବହୁପ୍ରକାର ବହି ମଧ୍ୟ ଥିଲା ।

ନିଜଘରେ ନିଜେ ଦିନାକେତେ ଚଳାଇଲା ପରେ ଏହାକୁ ସାର୍ବଜନିନ କରିବା ଉଦ୍ଦେଶ୍ୟରେ ପାଲିଆନାନୀର ଖାଲିଘରକୁ ଅଣାଗଲା । ଉଦ୍ଦେଶ୍ୟ ସେଠି ସଂଧ୍ୟାରେ କିଏ କେମିତି ଆସି କରି ବହି ପଢି ପାରିବେ । ସଂଧ୍ୟାରେ ଭାଗବତ ପାଠରେ ବ୍ୟସ୍ତ ଥିବାରୁ ନରି ରଥଙ୍କୁ ସଂପାଦନା ଦାୟିତ୍ୱ ଦେଇ ଦିଆଗଲା ସିନା ପ୍ରାୟ ଅଢ଼େଇ ବର୍ଷ ମଧ୍ୟରେ ତା'ର କାରବାର ପ୍ରାୟ ବନ୍ଦ ହୋଇଗଲା । ହେଲେ ସେହି ସମୟ ମଧ୍ୟରେ ଶତାଧିକ ଗରିବ ପିଲା ଓ ବହୁସଂଖ୍ୟକ ପାଠକ ଉପକୃତ ହୋଇଥିଲେ । ତତ୍କାଳୀନ ସ୍କୁଲ ପରିଦର୍ଶକ ଭଗବାନବାବୁଙ୍କ ପ୍ରରୋଚନାରେ କିଛି ସରକାରୀ ଅନୁଦାନ ମିଳିଥିଲା ଓ ସେଥିରେ ଦୈନିକ 'ସମାଜ' ମଗାଯାଉଥିଲା । ପାଠକ ମାନଙ୍କ ପାଇଁ ଏହା ଏକ ଆଗ୍ରହର ଉତ୍ସଥିଲା । କେତୋଟି ଟ୍ୟକ୍ କାଠ ଢ଼ାବଲକୁ ଯୋଡ଼ି ତିଆରି କରାଯାଇଥିବା ଥାକରେ ବହିସବୁ ରହୁଥିଲା । ବହୁତ ପୁରୁଣା ପତ୍ରିକା ଯଥା ମୁକୁର, ବିଜୁଳି, ଇନ୍ଦ୍ରଧନୁ, ପଞ୍ଚାମୃତ ଇତ୍ୟାଦି ସଂଗୃହିତ ହୋଇଥିଲା ମଧ୍ୟ । ଏସବୁ ଏବେ ବିରଳ ।

ଠାକୁରେ ଯେ ଅଭାବ ଦେଇଥିଲେ ଏବଂ ଅଭାବ ଯୋଗୁଁ ଯେ ଶ୍ରେଣୀରେ ପଢ଼ା ବହିଖଣ୍ଡେ ମିଳୁନଥିଲା ସେହି ଅଭିଜ୍ଞତାହିଁ ଏ ଲାଇବ୍ରେରୀର ସୃଷ୍ଟି କରିଥିଲା । ଭଗବାନଙ୍କର ଏ ପ୍ରେରଣା ଯେପରି ଆଦର୍ଶ ସେହିପରି ସହାୟକ ମଧ୍ୟ । ଏବେ ମଧ୍ୟ ଦୀନ ଲାଇବ୍ରେରୀର କେତେଖଣ୍ଡ ବହି ସେ ଭଙ୍ଗା ଢ଼ାବଲରେ ଆମ ସଂଘାରେ ପଡ଼ିଥିବ କି କୁଆଡ଼େ ଗଲାଣି କେଜାଣି !

ସାଲେପୁର ହାଇସ୍କୁଲରେ ପଢ଼ିଲାବେଳେ ଶେଷ ବର୍ଷଟି ହଷ୍ଟେଲରେ ଥିଲି । ଛୁଟିଦିନରେ ପାଖଆଖ ଗାଁର କେଉଁଠି କିଛି ସାଂସ୍କୃତିକ ଅନୁଷାନ ହେଲେ ପୀତାମ୍ବର ସ୍ୱାଇଁ ମୁଁ ଓ ଆଉ କେତେଜଣ ସେଠାକୁ ଯାଉ । ଆଲୋଚନା ଶୁଣୁ । ସେତିକି ବେଳେ ମନରେ ଥିବା ମଞ୍ଜି ଉଙ୍କିମାରେ । ନିଜ ଭିତରେ କଥା ହେଉଯେ ଗାଁ ଗାଁରେ ପୁସ୍ତକାଗାର ଓ ପାଠାଗାର ହୋଇଗଲେ ପୁରୁଣା ଭାଗବତ ଟୁଙ୍ଗୀର୍ ପୁନରୁଦ୍ଧାର ସହ ଗାଁ ଯୁବକ ମାନଙ୍କ ମଧ୍ୟରେ ପଢିବାର ସ୍ପୃହା ଓ ସାଂସ୍କୃତିକ ଜାଗରଣ ଆସନ୍ତା ।

ପରବର୍ତ୍ତୀ ଜୀବନରେ ଆମଗାଁ ଉଚ୍ଚପ୍ରାଥମିକ ବିଦ୍ୟାଳୟରେ ପଣ୍ଡିତ ଆକୁଳ ମିଶ୍ରଙ୍କ ନାମରେ ଗୋଟେ ପୁସ୍ତକାଗାର ପାଇଁ ବହୁ ପ୍ରକାଶକଙ୍କଠାରୁ ବହି ଏବଂ ଇଂଜିନିୟର ଦିବାକର ମିଶ୍ରଙ୍କଠାରୁ ମାଗିଯାଚି ଲୁହା ଆଲମାରି, କେଶବ ମିଶ୍ରଙ୍କ ଠାରୁ ଗୋଟେ ଖବର କାଗଜର ବନ୍ଦୋବସ୍ତ କରେଇଥିଲି ଓ ତାକୁ ମନ୍ତ୍ରୀ ଶରତ କୁମାର କର ଓ ମନ୍ତ୍ରୀ ଶ୍ରୀ କାଳନ୍ଦୀ ବେହେରା ଓ ଅରୁଣାଚଳର ରାଜ୍ୟପାଳ ୰ ସୁରେନ୍ଦ୍ର ନାଥ ଦ୍ୱିବେଦୀ ବିଦ୍ୟାଳୟର ଶତୋତ୍ତର ଉତ୍ସବରେ ଉଦ୍‌ଘାଟନ କରିଥିଲେ । ସେହିପରି ବିମାନଘାଟୀ ଅଞ୍ଚଳରେ ଥିବା ଉପ୍ରାବିଦ୍ୟାଳୟ ଓ ହାଇସ୍କୁଲ

ପାଇଁ ଡ଼. ପ୍ରସନ୍ନ ମିଶ୍ରଙ୍କ ଠାରୁ ଏବଂ ଡ଼. ନରେନ୍ଦ୍ର ସାହୁଙ୍କଠାରୁ ଦୁଇଟି ଲୁହା ଆଲମିରା, ବନ୍ଧୁ ବ୍ୟକ୍ତି ଓ ପ୍ରକାଶକଙ୍କଠାରୁ ବହି ସଂଗ୍ରହ କରି ୨ଟି ପୁସ୍ତକାଗାର ସ୍ଥାପନ କରେଇଥିଲି । ଏହା ବ୍ୟତୀତ ଚକ୍ରଧରପୁର, ଖଡ୍ଗେଇକଲା,ଖରସୁଆଁ, ଗୋଲମୋରୀ ଇତ୍ୟାଦି ସ୍ଥାନରେ ଓଡ଼ିଆ ଭାଷାର ପ୍ରଚାର ପ୍ରସାର ପାଇଁ ସହସ୍ରାଧିକ ବହି ବିଭିନ୍ନ, ଲେଖକ, କବି, ପ୍ରକାଶକ ଓ ବ୍ୟକ୍ତିଙ୍କ ଠାରୁ ସଂଗ୍ରହ କରି ପ୍ରାୟ ସବୁଥର ଗସ୍ତବେଳେ ନେଇ ପୁସ୍ତକାଗାର ପାଇଁ ଦେଇଥିଲି । ସମାଜ, ସମ୍ବାଦ, ସମୟ, ପ୍ରଜାତନ୍ତ୍ର ଓ ଧରିତ୍ରୀ ସାହାଣମେଲା, ଦୈନିକ ଓ ମାସିକ ଖବର କାଗଜ, ମାଗାଜିନ୍ ଖଣ୍ଡେ ଖଣ୍ଡେ ଏସବୁ ସ୍ଥାନକୁ ପଠାଇବାକୁ କେତେଥର ଅନୁରୋଧ କରି ଆଂଶିକ ସଫଳ ମଧ ହୋଇଛି । ପୁସ୍ତକାଗାର ଓ ପାଠାଗାର ପାଇଁ ବହୁ ଅନୁଷ୍ଠାନକୁ ମୋ ଲିଖିତ ବହିମଧ ମାଗଣାରେ ଦେଇଛି । ଏ କଥାଟି ଘୋର ଅଭାବ ବେଳେ ଯେଉଁଠାକୁରେ ଏଠୁସେଠୁ ବହିଖାତା ଯୋଗାଇ ଦେଇ ପାଠପଢ଼ିବାର ସୁଯୋଗ ଦେଇଥିଲେ ତାଙ୍କରି ପ୍ରେରଣାରେ ହେଉଛି ବୋଧେ । ମନେଥିବ ଥରେ ଶ୍ରୀକୃଷ୍ଣଙ୍କ ଆଙ୍ଗୁଠି କଟିଗଲା । ଅଷ୍ଟ ପାଟରାଣୀ ବିସ୍ମିତ ଭାବେ ଚାହିଁ ବ୍ୟସ୍ତ ଥିବାବେଳେ ଦ୍ରୌପଦୀ ନିଜ ଲୁଗା କାନିରୁ ଖଣ୍ଡେ ଚିରି ପଟି ବାନ୍ଧି ଦେଇଥିଲେ । ଭଗବାନ ଶ୍ରୀକୃଷ୍ଣ କୁରୁସଭା ତଳେ ଦ୍ରୌପଦୀଙ୍କର ବସ୍ତ୍ରହରଣ ବେଳେ ନିଜେ ବସ୍ତ୍ର ଅବତାର ହୋଇ କୋଟିଏ ବସ୍ତ୍ର ଦେଇ ତାର ଲଜ୍ଜା ନିବାରଣ କରିଥିଲେ । ଧନ୍ୟସେ ଈଶ୍ୱରଙ୍କ କରୁଣା । ତାଙ୍କ ପାଖରେ ସମସ୍ତେ ଋଣୀ । ସେ କାହାରି ପାଖରେ ଋଣୀ ରହନ୍ତିନି । ତାଙ୍କର କରୁଣାର ବାରିଧାରାକୁ ଅନୁଭବ କରିବାରେ ଅପୂର୍ବ ଆନନ୍ଦ ନିହିତ ।

## ୪୦. ମେହେନ୍ତର ଅବତାର

ନଦୀକୂଳ ସଭ୍ୟତା ମାନ୍ୟତାରେ ମହାନଦୀର ଉପଶାଖା ଲୁଣାନଦୀ କୂଳରେ ଆମ ଗାଁଟି ଗଢ଼ିଉଠିଥିଲା । ଗାଁର ଦକ୍ଷିଣରେ ଲୁଣାନଦୀ ଓ ଉତ୍ତରରେ ସୁବିସ୍ତୃତ ଶସ୍ୟକେଦାର । ନଈ କୂଳର ପଡ଼ିଆଜମି ଗୋଚରଣ ସହ ନଈକୂଳିଆ ଫସଲ ଉତ୍ପାଦନ, ମଶାଣିକାମ, ଖେଳପଡ଼ିଆ ଓ ଝାଡ଼ା ଝପଟ ଯିବାପାଇଁ ପର୍ଯ୍ୟାପ୍ତ ଥିଲା । ୧୮୬୬ ମସିହାରେ ଓଡ଼ିଶାରେ ନଅଙ୍କ ଦୁର୍ଭିକ୍ଷ ପଡିବାପରେ କେନ୍ଦ୍ରାପଡ଼ା କେନାଲ ଖୋଳାହେଲା; ନଦୀର ଉତ୍ତର ପଟେ ଓ ଗାଁର ଦକ୍ଷିଣ ପଟେ । ତେଣୁ ଗାଁ ଓ ନଦୀମଧରେ ଥିବା ସମସ୍ତ ପତିତ ଜମି କେନାଲରେ ଚାଲିଗଲା ଓ ବାକୀତକ ନାଳ ଓ ନଈର ମଧ୍ୟ ଭାଗରେ ରହିଗଲା । ଫଳରେ ଗୋଚରଣ, ଖେଳପଡ଼ିଆ, ନଈ କୂଳିଆ ଚାଷ ଓ ଝାଡ଼ା ଫେରିବାକୁ ପଡ଼ିଆ ଖଣ୍ଡେ ମଧ ରହିଲାନି । ଯାହାକିଛି ରହିଲା ନାଳ ଓ ନଈ ମଧରେ; ଏପରିକି ଗାଁର ଶ୍ମଶାନ ସେଠାରେ ରିହିଗଲା । କେନ୍ଦ୍ରାପଡ଼ା କେନାଲ ହେବାପରେ ଦେଢ଼ଶହ ବର୍ଷମଧରେ ଆମେ ଧୋଇ ବା ମରୁଡ଼ି କ'ଣ ଜାଣିନୁ । ହେଲେ ଏହା ଫଳରେ କେନ୍ଦ୍ରାପଡ଼ା କେନାଲ ବନ୍ଧ ଗ୍ରାମ ରାସ୍ତାଭାବେ ବ୍ୟବହୃତ ହେବାସହ ସେହି ବନ୍ଧରେ ଗୁଣ୍ଡାଶୁଖା, ଗାଈବନ୍ଧା, ଧାନଶୁଖାଠାରୁ ଝାଡ଼ା ଫେରିବାକୁ ଲୋକେ

ବାଧ ହେଲେ । ଏହା ଦ୍ୱାରା ଗାଁ ପରିମଳ ପ୍ରଦୂଷିତ ହୋଇଗଲା ସବୁଦିନପାଇଁ । ବନ୍ଧ କଡ଼ରୁ ଆସି ଆସ୍ତେ ଆସ୍ତେ ପିଲାଏ ବନ୍ଧ ଉପରେ ମଳତ୍ୟାଗ କଲେ । ଅନ୍ୟଗାଁର ଲୋକେ ଏ ବାଟ ଦେଇ ଗଲାବେଳେ ଗାଁର ପରିମଳ ବିଷୟରେ ମନ୍ତବ୍ୟ ଦେବା ଏକ ଦୈନନ୍ଦିନ ଘଟଣା ହୋଇଗଲା । ଶେଷକୁ ଏ କଥାଟା ଏତେ ଦେହସୁହା ହୋଇଗଲା ଯେ ଏଥିପାଇଁ କାହାରି ମୁଣ୍ଡ ବିନ୍ଧିଲାନି ।

ସଚ୍ଚିବାବୁଙ୍କ ପ୍ରେରଣାରେ ଆମେ ଗାଁ ପିଲାଏ କେତେଜଣ ମିଶି ଗୋଟିଏ କିଶୋର ସଂଘ ଗଢ଼ିଲୁ । ମୁଁ ତାର ସଂପାଦକ ଥିଲି । ତା'ରି ଜରିଆରେ ଗ୍ରାମ ସଫେଇ ହାତକୁ ନିଆଗଲା । ଏ ପର୍ଯ୍ୟାୟରେ ଅନ୍ୟାନ୍ୟ ସଫେଇ ସାଙ୍ଗକୁ ନାଳବନ୍ଧକୂଳରେ ଖନ୍ଦାପାଇଖାନା ଖୋଳାଗଲା ଓ ସବୁଲୋକ ତାକୁ ବ୍ୟବହାର କରିବାକୁ ପ୍ରବର୍ତ୍ତାଗଲା । ଯେଉଁଠି କେହି ବାହାରେ ଝାଡ଼ାବସିଥିବେ ତାକୁ କୋଦାଳରେ ନେଇ ସେହିଖନ୍ଦା-ପାଇଖାନାରେ ପକାଇ ମାଟି ଢାଙ୍କି ଦିଆଯାଉଥିଲା । କିଶୋର ସଂଘର ସମସ୍ତେ ଏ ନିଷ୍ପତ୍ତି ନେଇଥିଲେ ମଧ ଆମେ ଅଳ୍ପ କେତେଜଣ ଘୃଣାଭାବ ଛାଡ଼ି ପ୍ରତି ସପ୍ତାହରେ ଛୁଟିଦିନ ଏକାମ ନିୟମିତ କରିବା ଫଳରେ ନାଳବନ୍ଧ ପ୍ରାୟ ବର୍ଷେ ଦୁଇବର୍ଷ ସଫା ରହିଥିଲା ।

ସଚ୍ଚିବାବୁ ସେବାଗ୍ରାମ ଓ ଓ୍ୱାର୍ଦ୍ଧାତାଲିମ୍ ପାଇଥିଲେ । ମହାତ୍ମାଗାନ୍ଧୀଙ୍କ ପ୍ରବର୍ତ୍ତିତ ଏହି ଖନ୍ଦା ପାଇଖାନା ପାଇଁ ସେହି ତାଲିମ୍ ଓ ପ୍ରେରଣା ଯୋଗାଇଥିଲେ । ଆମଗାଁପାଇଁ କିଛି ପ୍ରତ୍ୟକ୍ଷ ସେବାକାର୍ଯ୍ୟ କରି ଆମେ ନିଜକୁ ଗୌରବାନ୍ୱିତ ମନେ କରୁଥିଲୁ । ଆମମାନଙ୍କରେ ଘୃଣାଭାବ ନଥିଲା କିମ୍ବା କାହାପ୍ରତି ବିଦ୍ୱେଷ ମଧ ନଥିଲା । ଜୀବନର ପ୍ରାକ୍ କାଳରେ ଭଗବାନଙ୍କର ଏ ଯେଉଁ କର୍ମପ୍ରେରଣା ମିଳିଥିଲା ତାହା ଭବିଷ୍ୟତ ଜୀବନରେ ସେବା ମନୋବୃତ୍ତି ଉଦ୍ରେକ କରିଥିଲା ଓ ବିଶେଷଭାବେ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟରେ ବହୁବର୍ଷଧରି ବିଡ଼ିଓ କାମ କଲାବେଳେ କେତେକ ମୌଳିକ ଗ୍ରାମ ଉନ୍ନୟନ ସେବାପ୍ରତି ଆକୃଷ୍ଟ କରିଥିଲା ।

ପରିଣତ ବୟସରେ ସରକାରୀ ସାହାଯ୍ୟରେ ସୁଲଭ ସଂସ୍ଥାର ସହଯୋଗୀତାରେ ଘରେ ଘରେ ପାଇଖାନା ନିର୍ମାଣ ପାଇଁ ଫର୍ମ ଇତ୍ୟାଦି ନେଇ କମିଟି ଗଢ଼ି ଗାଁରେ ଦେଇଥିଲି । ତା'ର ବହୁଦିନ ଆଗରୁ ସୁରିଆ ଭାଇନା ମଧ କିଛି ଚେଷ୍ଟା କରିଥିଲେ । ମାତ୍ର ସେ ସବୁ ଚେଷ୍ଟା ବ୍ୟର୍ଥ ହେଲା । ପୁଣି ଥରେ ଏବେ (୨୦୦୨ରେ) ତିନ ବର୍ଷ ତଳେ ମୋବାଲ୍ୟ ବନ୍ଧୁ ଦୁନାର ପୁଅ ଗିନିକୁ ଲଗାଇ ଗୋଟେ ଦରଖାସ୍ତରେ ଦସ୍ତଖତ ସଂଗ୍ରହକରାଇ ସୁଲଭ ଶୌଚାଳୟ ଅଧ୍ୟକ୍ଷଙ୍କ ସୁପାରିଶ ଓ ମନ୍ତ୍ରୀ କାଳନ୍ଦୀ ବେହେରାଙ୍କ ସୁପାରୀଶ ସହ ଗ୍ରାମ୍ୟଉନ୍ନୟନ ବିଭାଗକୁ ନିଜେ ନେଇ ଦେଇ ଥିଲି । ହେଲେ ଏବେ କେତେଲୋକ ଛାଏଁ ଛାଏଁ ପାଇଖାନା କଲେଣି ରିହାତି ଦରରେ ପାଇଖାନା ଓ ନନ୍ଦ ପାଇ । ହେଲେ କ'ଣ ହେବ ? "ଘୁସୁରୀ ପ୍ରକୃତି ପଙ୍କରେ

ଲୁଟେ ଓ ମଣିଷ ପ୍ରକୃତି ମଲେ ତୁଟେ" । ଏତେ ଶିକ୍ଷାଦୀକ୍ଷା ଏତେ ପ୍ରଚେଷ୍ଟା ଓ ଅନୁଦାନ, ପ୍ରଚାର ଏବଂ ସେବା ସତ୍ୱେ ଏବେ ମଧ୍ୟ ଗାଁର ସେହି ଲଜ୍ଜାକର ସ୍ଥିତିରେ କିଛିବି ପରିବର୍ତ୍ତନ ହୋଇନି । ବରଂ ଆଗରୁ ବନ୍ଧର ପାଣିଥିବା ପାଖରେ ଝାଡ଼ା ଯିବା ବନ୍ଦ ଥିଲା । ଏବେ ତା ବି ଛାଡ଼ ଯାଉନି । ଯେଉଁ ଲୋକେ ଏପରି ପାଣିକୁ ଦୂଷିତ କରୁଛନ୍ତି ସେଇ ମାନେ ସେଥିରେ ସୌଚ ଓ ସ୍ନାନ ମାର୍ଜନ କରୁଛନ୍ତି । ଈଶ୍ୱର ଏମାନଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ ।

ଏ ବିଷୟ ଅବତାରଣା କଲାବେଳେ ପିଲାଦିନର ଗୋଟିଏ କୌତୂହଳ ବଷୟ ପ୍ରତି ଦୃଷ୍ଟିଯାଏ । କେନାଲ ବନ୍ଧ ସଫା ରଖିବାକୁ ଖନ୍ଦା ପାଇଖାନା, ନିୟମିତ ସଫେଇ ଇତ୍ୟାଦି ଲୋକେ ନମାନିବାରୁ ଗୋଟିଏ କଇଁଥ ଗଛମୂଳେ  ଗୋଟିଏ ତିନିକୋଣିଆ ପଥରଥୋଇ ସେଥିରେ ସିନ୍ଦୁରମାରି କୁନ୍ଦେଇଶୁଣୀ ନାମ ଦେଇ ରଖାଗଲା । ଫଳରେ ସେହି ନିର୍ଦ୍ଦିଷ୍ଟ ଅଞ୍ଚଳରେ ଝାଡ଼ାଯିବାବନ୍ଦ ହୋଇଗଲା । ପରବର୍ତ୍ତୀ କାଳରେ ସେ ଠାକୁରାଣୀ ଠାକୁର ଘରକୁ ଚାଲିଗଲେ ଓ ସେ ଯାଗା ପୁଣି କଦର୍ଯ୍ୟ ହୋଗଗଲା । ଏ ସମ୍ବନ୍ଧରେ ଏକ କବିତା "ବଡ ମୋର ଗାଁଟି"ରେ ସନ୍ନିବେଶିତ । ତା' ମଧ୍ୟ ଦୁଇଟି କବି ସମ୍ମିଳନୀରେ ପଠିତ ଓ ପ୍ରସଂଶିତ ।

ଏବେ ପରିଣତ ବୟସରେ ମନେହୁଏ ଏସବୁ ମଣିଷର ଚେଷ୍ଟା କି ବୁଦ୍ଧି ନୁହେଁ । ଯେ ମଣିଷକୁ ଗଢ଼ିଛନ୍ତି ସେହିଁ ଏହିପରି ବନ୍ଧୁ ଗଠନମୂଳକ ପ୍ରେରଣା ଦିଅନ୍ତି । ତେଣୁ ଏ ପ୍ରଚେଷ୍ଟାର ସଫଳତା ବା ଅସଫଳତା ତାଙ୍କରି ପାଦରେ ସମର୍ପଣ କରି ଆମଗାଁ ପରି ଅନ୍ୟ ବନ୍ଧୁ ଗାଁର ଏପରି ଦୟନୀୟ ଅବସ୍ଥା ହୃଦୟଙ୍ଗମ କରି ପ୍ରତିକାର ପାଇଁ ନୂତନ ପ୍ରେରଣା ଏକବିଂଶ ଶତାବ୍ଦୀରେ ଲୋକଙ୍କୁ ମିଳୁ । ଏତିକି ପ୍ରାର୍ଥନାରେ ଏ ଅଧ୍ୟାୟ ଶେଷ ହେବା ପୂର୍ବରୁ ଜଣେ ସନ୍ୟାସୀ (ସ୍ୱାମୀ ବୈରାଗ୍ୟାନନ୍ଦ) ଜଣେ ଗୃହୀଙ୍କ ପାଇଖାନା ବ୍ୟବହାର କରିବା ବେଳେ ଦୂଷିତ ଅବସ୍ଥାଦେଖି ନିଜ କୌପୀନକନାରେ ଘଷି ସଫାକରି ଦେବାର ଦେଖି ଗୃହୀ ଲଜ୍ଜିତ ହେବା ସହ ପରବର୍ତ୍ତୀ ସମୟପାଇଁ ସାବଧନା ହୋଇଥିଲେ । ମହାତ୍ମା ଗାନ୍ଧୀ'ତ ଥକିଗଲେ । ସ୍ୱାମୀଜୀଙ୍କ ଆଦର୍ଶ ଆମକୁ ହେଲେ ପଥ ଦେଖାଉ ।

## ୪୧. ପଲ୍ଲୀମଙ୍ଗଳ ମହିଳା ସମିତି ଓ ସାଧୁସଙ୍ଗ

ସ୍ୱାଧୀନତା ସଂଗ୍ରାମୀ ବଂଶୀବାବୁଙ୍କ ଝିଅ ବଲ୍ଲୀନାନୀଙ୍କ (କୃଷ୍ଣବଲ୍ଲଭୀ ରଥ) ଉଦ୍ୟମ ଓ ସଚ୍ଚୀବାବୁଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ପେନି ନାନୀଙ୍କ (ଜାହ୍ନବୀ ମିଶ୍ର) ଆର୍ଥିକ ସହାୟତାରେ ଆଉକେତେ ଝିଅ ମିଶି ଗାଁରେ ପଲ୍ଲୀମଙ୍ଗଳ ମହିଳା ସମିତି ଟିଏ ଗଢ଼ିଲେ । ପେନିନାନୀଙ୍କ ନଡ଼ିଆ ବାଗରେ ଗୋଟେ ଲମ୍ବା ଚାଳଘରେ ବର୍ଷେକାମ କରିବା ପରେ ସେଠାରେ ଗୋଟିଏ ଉତ୍ସବର ଆୟୋଜନ ହୋଇଥିଲା । ଦେଶର ସ୍ୱାଧୀନତା ସଂଗ୍ରାମରେ

ଅମାଗାଁର ଭାଗ ଖୁବ୍ ବଡ଼ । ଡ଼. ବ୍ରଜନାଥ ମିଶ୍ର ବୋଧେ ଆମଗାଁକୁ କଂଗ୍ରେସ ଓ ସ୍ୱାଧୀନତାର ପ୍ରଥମ ବାର୍ତ୍ତା ଆଣିଥିଲେ । ତାପରେ ୧୯୩୫ର ମହାତ୍ମାଗାନ୍ଧୀଙ୍କ ହରିଜନ ପଦଯାତ୍ରା ଆହୁରି ଅନେକଙ୍କୁ ସେଥିପ୍ରତି ଆକୃଷ୍ଟ କଲା । ଫଳରେ ବଂଶୀଧର ମିଶ୍ର, ସୁରେନ୍ଦ୍ରନାଥ ଦ୍ୱିବେଦୀ, କସ୍ତୁରୀ ଚରଣ ଦ୍ୱିବେଦୀ, ଜୟୀ ମହାପାତ୍ର, ସଚ୍ଚିଦା ନନ୍ଦ ମିଶ୍ର, କିଶୋର ମିଶ୍ର ଇତ୍ୟାଦି ଅନେକ ଯୁବକ ପାଠପଢ଼ା ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଝାସଦେଲେ । ମାତ୍ର ସେମାନଙ୍କ ମଧ୍ୟରେ ସଚ୍ଚିବାବୁ । (ସଚ୍ଚିଦାନନ୍ଦ ମିଶ୍ର) ଥିଲେ ସଂଗଠକ କର୍ମୀ ଓ ସଚ୍ଚା ଗାନ୍ଧୀବାଦୀ । ତାଙ୍କରି ପ୍ରେରଣାରେ ପଲ୍ଲୀ ମଙ୍ଗଳ ସମିତିର ବାର୍ଷିକ ମେଳାକୁ ନିମନ୍ତ୍ରିତ ହୋଇଥିଲେ ସ୍ୱାଧୀନତାର ରଥୀ, ସଚ୍ଚୋଟ ଗାନ୍ଧୀବାଦୀ, ରଚନାତ୍ମକ କର୍ମୀଗଣ; ଯଥା:- ଚୌଧୁରୀ ଗୋପବନ୍ଧୁ, ଆଚାର୍ଯ୍ୟ ହରିହର, ପୂଜ୍ୟା ରମାଦେବୀ, ଶରତ୍ ମହାରଣା ଓ ତାଙ୍କ ସ୍ତ୍ରୀ ଚୁନି ଅପା (ଆନ୍ନପୂର୍ଣ୍ଣା ମହାରଣା) ଇତ୍ୟାଦି ।

ଆମେ ସବୁ କିଶୋର ସଂଘର ସଭ୍ୟମାନେ ଥାଉ ସ୍ୱେଚ୍ଛାସେବକ । ମେଳା ଆଗରୁ ଗ୍ରାମ ସଫେଇ, ଖାଦା ପାଇଖାନା ଖୋଳା ଓ ମେଳା ସମୟରେ ଅତିଥି ସେବା ଥିଲା ଆମର କାମ । ସେତେବେଳେ ରିକ୍ସା ବା ଅଟୋ ଇତ୍ୟାଦି କିଛି ନଥିଲା ଗାଁରେ । ଅତିଥିମାନେ ଆସିବେ ବୋଲି ଆମେ ଯାଇଁ ନିଶ୍ଚିନ୍ତ କୋଇଲି ବସ୍ ଷ୍ଟାଣ୍ଡରେ ଜଗିଥାଉ । ତାଙ୍କ ଜିନିଷପତ୍ର ବୋହିନେବୁ ଓ ରାସ୍ତା ଦେଖାଇ ଦେବୁ । ବସ୍ ଆସିଲା । ଅତିଥି ମାନେ ଗାଉଁଲି ମଲିମୁଣ୍ଡିଆଙ୍କ ପରି ନିଜ ନିଜ ଗଣ୍ଠିଲି ଧରି ଓଲ୍ହାଇଲେ। ଆମେ ତାଙ୍କୁ ଚିହ୍ନିବା କଷ୍ଟ । ଚିହ୍ନିବାପରେ ଗଣ୍ଠିଲି ମାଗିବାରୁ ସେ କହିଲେ ଆମେ ଆମ ଗଣ୍ଠିଲି ନେଇଯିବୁ । ତୁମେ ଖାଲିବାଟ ଦେଖାଇଚାଲ । ସେମାନେ ଆସି ପହଞ୍ଚିଲେ । ସଭା ହେଲା । ନାରୀ ଜାଗରଣ ଗ୍ରାମ ସଂଗଠନ ଓ ଗ୍ରାମ ସଫେଇ ସମ୍ବନ୍ଧରେ ବହୁତ ଉପାଦେୟକଥା କହିଲେ । କିଛି କାମକରି ଦେଖେଇ ଦେଲେ ମଧ୍ୟ ।

ସଚ୍ଚିବାବୁଙ୍କ ମାଧ୍ୟମରେ ଠାକୁରେ ଏଯେଉଁ ଅପୂର୍ବ ସୁଯୋଗ ଆମକୁ ଦେଲେ ତାହାର ପ୍ରଭାବ ଏବେ ଯାଏ ମୋ ଉପରେ ରହିଛି । ଚାକିରୀ କାଳରେ ମୋ ଛୋଟ ବେଡ଼ିଂ, ଫାଇଲ ଓ ବ୍ୟାଗ୍ ମୁଁହି ବୋହୁଥିଲି । ଏବେ ମଧ୍ୟ ସେହି ଚେଷ୍ଟା ରହିଛି । ଯେଉଁଠି ରହିଲେବି ପରିବେଶକୁ ସଫାକରିବା ଏବେ ମଧ୍ୟ ଆନନ୍ଦ ଦିଏ । ପାଇଖାନା ସଫା ଚକଚକ୍ କରି ରଖିବା କାମଟି ଆମ ପରିବାରରେ ମୋର ଦାୟିତ୍ୱ ।

ନିରହଂକାରଭାବେ କିପରି ସେବାକାର୍ଯ୍ୟ କରି ନିଜର ଓ ନିଜର ଗାଁର ପରିବେଶ ସଫା ସୁତୁରା ରଖାଯାଇ ପାରିବ ଠାକୁରେ ଏହି ସୁଯୋଗରେ ସେ ଶିକ୍ଷା ଦେଲେ । ଆଚାର୍ଯ୍ୟ ମହାଶୟଙ୍କ ପାଦ ସ୍ପର୍ଶ କରିବାର, ତାଙ୍କଠାରୁ ମୁଣ୍ଡଆଉଁସାସହ ଆଶିର୍ବାଦ ପାଇବାର ସୁଯୋଗ,

ଗୋପବାବୁଙ୍କୁ ବାଲଟିଏ ପାଚଲା ବିଲାତି ବାଇଗଣ କାଟି ଖାଇବାକୁ ଦେବାର, ମା ରମାଦେବୀଙ୍କ ସାନ୍ନିଧ ପାଇବା ଏବଂ ଶରତ ବାବୁ ଏବଂ ଅନ୍ନପୂର୍ଣ୍ଣା ଦେବୀଙ୍କ ସରଳ ଜୀବନର ପ୍ରଭାବ ଏ ଜୀବନରେ ବହୁ ପ୍ରେରଣାର ଉତ୍ସ ହୋଇ ଏବେବି ଚିର ଜୀବିତ ହୋଇ ରହିଛି । ଏହି ଅଯାଚିତ ଦାନପାଇଁ ଭଗବାନଙ୍କ ପାଖରେ ଋଣୀ । ସେହି ଘଟଣା ପରେ ପରେ ବିନୋବାଜୀ ଆସୁରେଶ୍ୱର ଆସିଥିଲେ । ତାଙ୍କୁ ମଧ୍ୟ ଦର୍ଶନ କରିବାର, ଶୁଣିବାର ଓ ତାଙ୍କ ଦ୍ୱାରା ଓଡିଆରେ ସ୍ୱାକ୍ଷରିତ ଗୀତା ପ୍ରବଚନ ଖଣ୍ଡେ କିଣିବାର ସୁଯୋଗ ମିଳିଥିଲା । ଏବେତ ଆଦର୍ଶ ବ୍ୟକ୍ତିତ୍ୱ ନଥିବାରୁ ପିଲାଏ ବିପଥ ଗାମୀ ହେଉଛନ୍ତି; ଏ ସୁବର୍ଣ୍ଣ ସୁଯୋଗ କେଉଁଠୁ ପାଇବେ ?

## ୪୨. ନୈଶ ବିଦ୍ୟାଳୟ

ଦିନେ ବ୍ରଜ ଡ଼ାକ୍ତର କେନ୍ଦୁପାଟଣାରୁ ଗାଁକୁ ଆସିଥିଲେ । ସେତ ପ୍ରାୟ ଚାଲିଚାଲି ଆସନ୍ତି ଓ ଯାନ୍ତି । ଯୋଗକୁ ସେତେବେଳେ ସେ ଆୟୁର୍ବେଦ ବିଭାଗର ଅଳ୍ପଦିନପାଇଁ ଅଧକ୍ଷଥିଲେ ଓ ଗାଡ଼ିରେ ଆସିଥିଲେ । ବାଟରେ ଜଣ୍ଟୀ ସାମଲ ବାବୁଘର ହଳ ଫିଟାଇ ଫେରୁଥିଲେ ପାଞ୍ଚଣ ହାତରେ । ହଠାତ୍ ପାଞ୍ଚଣ ଦେଖାଇ ବାଟ ରୋକି ଦେଇ କହିଲେ ହଇହେ ଡ଼ାକ୍ତର, ତୁମେ ପରା କହିଥିଲ ଦେଶ ସ୍ୱାଧନୀ ହେଲେ ରାମରାଜ୍ୟ ହେବ । ଆମ ଦୁଃଖ ଯିବ । କାହିଁ ଆମେତ ଯୋଉ କୋଠିଆକୁ ସେଇ କୋଠିଆ, ଯୋଉ ମୂଲିଆକୁ ସେଇ ମୂଲିଆ ହୋଇ ରହିଲୁ । ହେଲେ ତୁମେ ଚାଲୁଥିଲ । ଏଣିକି ଗାଡ଼ିଚଢ଼ିବାର ଆମେ ଦେଖିଲୁ ।

ସ୍ୱାଧୀନତାର ଫଳ ଚାଖିବା ସମ୍ବନ୍ଧେ ମନ୍ତବ୍ୟ ଶୁଣି ମନରେ ବିଷାଦର ଛାୟା ଖେଳିଗଲା । ପଲ୍ଲୀ ମଙ୍ଗଳ ସମିତି ଦିନା କେତେ ଉତ୍ସାହ ଉଦୀପନା ମଧ୍ୟରେ ଚାଲିଲାପରେ ଶିଥିଳ ହୋଇ ଯାଇଥିଲା । ହେଲେ ନଡ଼ିଆ ବାଗରେ ସେ ଘରଟିଥାଏ । ଆମ ଗାଁର ପାଣ ପିଲା ଓ ଯୁବକଙ୍କୁ ନେଇ ଆରମ୍ଭ କରିଦେଲି ନୈଶ ବିଦ୍ୟାଳୟଟିଏ । ସେମାନେ ଲଣ୍ଠନ, ଖଡ଼ି ଓ ସିଲଟ ନେଇ ଆସନ୍ତି । ପ୍ରଥମେ ମୁଁ ଓ ବାବଜୀ ରଥ ମିଶି ପଢ଼ାଇଲୁ । ତା ପରେ ମୁଁ ଏକା ପଢ଼ାଇଲି । ପ୍ରାୟ ଦୁଇବର୍ଷ ଏ ଅନୁଷ୍ଠାନଟି ଚାଲିଲା; 'ଏକଲା ଚଲୋ' ଡ଼ାକରାର ପ୍ରେରଣାରେ । ପିଲାଲୋକ; ମାଷ୍ଟର ହୋଇ ପଢ଼ାଇବାକୁ ମଜା ଲାଗୁଥାଏ । ମଝିରେ ମଝିରେ ମାଷ୍ଟ୍ରିଆପଣରେ ପାହାରେ ଅଧେ ପିଟି ଦେବାରେ ଆଉରି ମଜା ଲାଗୁଥାଏ । ହଉ ପଛକେ ସାତ ଆଠଜଣ ପାଣ ପିଲା ଅକ୍ଷର ଶିଖି ବହିପଢ଼ା ଶିଖିଗଲେ । ପଣିକିଆ ମଧ୍ୟ କିଛି ଜାଣିଗଲେ । ପିଲାଙ୍କ ମଧ୍ୟରୁ ନୀର ମାଟ୍ରିକ ପଢ଼ି ଡ଼ାକ ଘରେ ଚାକିରୀ ପାଇଲା । ତା ଭାଇ ବୀର ଯୁବକ ଅବସ୍ଥାରେ ପଢ଼ି ଅକ୍ଷର ଶିଖି ଜନସ୍ୱାସ୍ଥ୍ୟ ବିଭାଗରେ ଖଣ୍ଡେ ତଳିଆ ଚାକିରୀ ପାଇଲା । ନାରଣ, ବାବାଜୀ ଇତ୍ୟାଦି ସେଇ ଅଧାରେ ରହିଗଲେ । ସେମାନେ ପ୍ରାୟ ମୂଲ ପାଟି ଲାଗିଚାଲିଲେ । ହେଲେ ଲେଖି ପଢ଼ି ଜାଣି ଥିବାରୁ ସେମାନେ ବେଶ ଖୁସିରେ ଅଛନ୍ତି ।

ଏଇଯେ ନୈଶ ବିଦ୍ୟାଳୟ ପରିଚାଳନା କରାଗଲା ତାର ଖ୍ୟାତିରେ ଅନ୍ୟ କେତେ ଭଦ୍ରଲୋକ; ଅବଶ୍ୟ ବ୍ରାହ୍ମଣ ଜାତିର; ତାଙ୍କ ପିଲାଙ୍କୁ ଟିଉସନ କରିବାକୁ ଡ଼ାକିଲେ । ଠାକୁରେ ବିନା ପଇସାରେ କରାଯାଇଥିବା ସାମାନ୍ୟ ଶ୍ରମର ପାରିଶ୍ରମିକ ସେବାଟେ ଦେଇଦେଲେ । କଥାରେ ଅଛି ବଣିକର ବୋଇତ ବାଣିଜ ବୁଡ଼ିଯାଏ । ମହାଜନର ମହାଜନି ଧାନ ଟଙ୍କା ବୁଡ଼ିଯାଏ । ହେଲେ ମୂଲିଆର ମୂଲ ବୁଡ଼େନି । ଠାକୁରେ ପରମ ଦୟାମୟ । ନୈଶ ବିଦ୍ୟାଳୟର ସଫଳତାରୁ ଟିଉସନ୍ କାମ ମିଳିଲାରୁ ସ୍କୁଲ ଦରମା ଓ ଖାତା ପତ୍ର ଖର୍ଚ୍ଚ ବେଶ ଉଠିଗଲା । ସବୁଠାରୁ ବଡ଼ ଲାଭହେଲା ଏବେମଧ ସେହି ନୈଶ୍ୟ ବିଦ୍ୟାଳୟର ଛାତ୍ର ଦେଖାହେଲେ କୃତଜ୍ଞତାରେ ମୁଣ୍ଡନଇଁ ନମସ୍କାର କରନ୍ତି ଏବଂ ସେତେବେଳେ ପେଟ ପୁରିଯାଏ । ସେଇ'ତ ଲକ୍ଷେଟଙ୍କା ।

ନିଜ ଦାନାରୁ କାଟି ଗୋଟିଏ ଭୋକିଲା ଲୋକକୁ ଦାନା ଦେଇଥିବା ଗୋଟିଏ ଲୋକର ଅଇଁଠା ପିଣ୍ଡାରେ ଗଡ଼ିଯାଇ ନେଉଳଟିଏ ସୁନା ଦେହ ପାଇଥିଲା । ସେହିପରି ନିଜେ ବହି ଅଭାବରୁ ପାଠପଢ଼ି ପାରୁନଥିବା ଅବସରରେ ଦରିଦ୍ର ହରିଜନ ପାଣ ପିଲାଙ୍କୁ ପଢ଼ାଇ ପାରିଥିବାରୁ ବୋଧେ ଠାକୁରେ ମୋର ପାଠପଢ଼ାର ବ୍ୟବସ୍ଥା କରିଦେଲେ । ଏସବୁ ତାଙ୍କରି ଅଦୃଶ୍ୟହାତର କରାମତି ନୁହେଁ ତ ଆଉ କ'ଣ । ସବୁକଥା ଦେଖିହୁଏନି । ବୁଝିବାକୁ ହୁଏ କରୁଣା ସାଗରଙ୍କ ଅପାର କରୁଣାରୁ । ଏକଥା ସମସ୍ତଙ୍କ କ୍ଷେତ୍ରରେ ସବୁବେଳେ ଘଟୁଥିଲେ ବି ଅନେକ ତାକୁ ସହଜରେ ଉପଲବ୍ଧି କରିପାରନ୍ତିନି; ତାଙ୍କରି ଦୟା ନହେଲେ ।

## ୪୩. ଭଗବତ୍ ଭୀକ୍ଷାଂ ଦେହି

ବାପା କହିଥିଲେ ଅଭାବ ହେଲେ ମୂଲ ଲାଗିବ କିମ୍ବା ଭୀକ ମାଗିବ । ଚୋରି କରିବନି । ସେହି ବେଦ ବାକ୍ୟଟି ଏବେମଧ ଭୁଲିନାହିଁ । ସମ୍ପୂର୍ଣ୍ଣ ସଂସାରଟି ଶୃଙ୍ଖଳା ବାଲିରେ ଡ଼ଙ୍ଗା ଚାଲିଲାପରି ଚାଲିଥାଏ । ବ୍ରତବେଦୀରେ ପୁରୋହିତ ବାପାଙ୍କର ବେଦ ବାକ୍ୟଟିର ପୁନରାଭ୍ୟାସ କରେଇଲେ । ମନରେ ଧାରଣା ଦୃଢ଼ୀଭୁତ ହେଲାଯେ ଭୀକ୍ଷା କରିବା ଚୋରୀପରି ଅସାମାଜିକ, ଅବୈଧ ବା ଅନୈତିକ ନୁହେଁ । ତେଣୁ ମନରେ ଗୋଟିଏ ଦମ୍ଭଥାଏ ଯେ ଅତିଅଭାବ ବା ଅସୁବିଧା ହେଲେ ଭୀକମାଗି ଜୀବନ ଧାରଣ କଲେ କୌଣସି ଦୋଷନାହିଁ । ତଥାପି ମନରେ ଗୋଟିଏ ଜିନିଷ ବସାବାନ୍ଧିଥାଏ ଯେ ଏହା ଏକ ଲଜ୍ଜାକର ଘଟଣା । କଥାରେ ଅଛି ବ୍ରାହ୍ମଣପୁଅ କାନ୍ଧରେ ପଇତା ଥିଲେ ତା ଅଣ୍ଟିରେ ଭୀକର ଅଭାବ ରହିବନି । ଏକଥା ସହିତ ସାଲିସ୍ କରିବାକୁ କୁଣ୍ଠା ନଥାଏ; ଥାଏ କେବଳ ଲଜ୍ଜାରେ ।

ଏଭଳି ପରିସ୍ଥିତି କେତେଥର ସୃଷ୍ଟି ହୋଇଛି । ମନକୁ ଦୃଢ଼କରି ଦ୍ୱାରରୁ ଏକାମ ଆରମ୍ଭ କରିବାକୁ ସ୍ଥିରକରି ଗାଁ ଶେଷରେ ପଣ୍ଡିତମାମୁଁ ଘରଯାଏ ଚାଲିଯାଏ । ଏମିତି ପାଞ୍ଚ ସାତଥର ଘଟିଥିବ । ପ୍ରତିଥର ସେଠାକୁହିଁ ଯାଏ । ମୁଁ ଗଲାକ୍ଷଣି (କୋଳନ୍ଦୀ ମିଶ୍ର) ମାମୁଁ

କହନ୍ତି କିପରି ଚଳୁଛ ? ଅସୁବିଧା ନାହିଁତ ? ଖାଇଛୁ କି ନାହିଁ ?ଏମିତି ନାନା ପ୍ରଶ୍ନପରେ ମାଇଁଙ୍କୁ ଡ଼ାକି ଖାଇବାକୁ ଦେବାକୁ କୁହନ୍ତି । ତାପରେ ମାଇଁ ମୋ ଗାମୁଛା କାନିରେ କାନିଏ ଚାଉଳ ବାନ୍ଧି ଦିଅନ୍ତି । ମୁଁ ଖୁସି ହୋଇ ଘରକୁ ନେଇ ଆସେ।

ତେଣୁ ମୋତେ ମୁହଁ ଖୋଲି ମାଗିବାକୁ ପଡେନି କି ଘରକୁ ଦିଘର ଯିବା ଦରକାର ହୁଏନି । ଭଗବାନ ଦ୍ରୌପଦୀର ଲଜ୍ଜା ନିବାରଣ କରିଥିଲେ । ସେ ଅନ୍ତର୍ଯ୍ୟାମୀ । ଅନ୍ତର ବେଦନା ତାଙ୍କୁ ଜଣା ।  ବାପାଙ୍କ ଉପଦେଶ ଓ ବ୍ରତବେଦୀର ଅଭ୍ୟାସ ସତ୍ତ୍ୱେ ଅନ୍ତରରେ ଯେଉଁ ଲଜ୍ଜାଥିଲା ତାକୁ ଅନ୍ତର୍ଯ୍ୟାମୀ ଠିକ୍ ଭାବେ ଜାଣି ସେ ତା'ର ବ୍ୟବସ୍ଥା କରିଦେଇଥିଲେ । ଏକଥାଟି ଅଙ୍ଗେ ନ ନିଭାଇଥଲେ ବା ଅନୁଭବ ନ କରିଲେ କେହି ସହଜରେ ବିଶ୍ୱାସ କରିପାରିବନି ବା ଗ୍ରହଣ କରିପାରିବନି । ଏଥିପାଇଁ ମୁଁ ଅବଶ୍ୟ ଗର୍ବ ଅନୁଭବ କରୁଥିଲି ।

ସେହିପରି ଦୁଇତିନିଥର ଗାଁର ବାବୁଘରକୁ ଯିବାକୁ ପଡ଼ିଛି ଖୁବ୍ ଅସୁବିଧା ବେଳେ । ପଣ୍ଡିତମାମୁଁ ଘରକୁ ନ ଯାଇ ତାଙ୍କ ଘରକୁ କାହିଁକି ଯାଇଥାଏ ମୁଁ ସେ କଥା ଏବେବି ଜାଣିପାରୁନି । "ତ୍ୱୟା ହୃଷିକେଶ ହୃଦିସ୍ଥିତେନ ଯଥା ନିଯୁକ୍ତୋସ୍ମି ତଥା କରୋମି" । ଏ କଥାଟି ଏଠାରେ ସଂପୂର୍ଣ୍ଣ ପ୍ରଯୁଜ୍ୟ । କାରଣ ମାମୁଁଘରେ ନିଜେ ପଚାରି ବୁଝି ଯାଚି ସାହାଯ୍ୟ କରୁଥିବା ବେଳେ  ବାବୁଘରେ ବହୁତ ପ୍ରଶ୍ନପରେ ମଧ ମନଖୋଲି ଅସୁବିଧାଟି କହିବାକୁ ହୁଏ । ଏଠାରେ ମଧ ଦେବାର ଆନ୍ତରିକତା ଆଦୌ ନଥିଲାପରି ମୋର ମନେହୁଏ । ମାମୁଁଘରୁ ମିଳୁଥିବା ଅଯାଚିତ ସାହାଯ୍ୟପାଇଁ ମୁଁ ଯେଉଁ ଗର୍ବଟିକକ ମନରେ କରୁଥିଲି ବୋଧହୁଏ ଗର୍ବଗଞ୍ଜନ ବାନା ବହିଥିବା ଭଗବାନ ମୋର ଗର୍ବ ଭାଙ୍ଗିବାକୁ  ଦୁଇ ତିନିଥର ମୋତେ ସେ ବାବୁ ଘରକୁ ନେଇ ଯାଇଥିଲେ । ତା ଫଳରେ ମୋ ମନର ଗର୍ବ ଭାଙ୍ଗିଯାଇଥିଲା ସିନା ମନର ଲଜ୍ଜା ସେହି ପରି ରହିଥିଲା ।

କାହିଁକି ଭଗବତ୍ ଭୀକ୍ଷାଂ ଦେହି ପରିସ୍ଥିତିକୁ ମଣିଷ ଆସେ ତାହା ଏବେକାର ଯୋଜନାକାରୀ ବୁଝିବା କଷ୍ଟ । ଇନ୍ଦିରା ଗାନ୍ଧୀ ଗରିବୀ ହଟାଓ ଯୋଜନା କରିଥିଲେ । ତାଙ୍କ ବାପାଙ୍କ ପୋଷାକ ଉଡ଼ାଜାହଜରେ ସଫା ହେବାକୁ ଇଟାଲୀ ଯାଉଥିଲା । ତେଣୁ ସେ ଅଭାବ ବା ଗରିବୀ କ'ଣ ଏକଥା କେମିତି ଜାଣିବେ ? ସେ ଅବଶ୍ୟ ନେହେରୁଙ୍କ ଦ୍ୱାରା ବହୁଲିଖିତ ପତ୍ରରେ ସେ ସମ୍ବନ୍ଧରେ ହୁଏତ କିଛି ପଢ଼ିଥିବେ ବା ତାଙ୍କର ଉପଦେଷ୍ଟା ମାନେ ତାଙ୍କୁ କିଛି ନୋଟ ଦେଇ ବୁଝାଇ ଥିବେ । ଏସବୁ ଜ୍ଞାନ ପୋଥିଗତ । ଏଥିରେ ବ୍ୟକ୍ତିଗତ ଅନୁଭୁତି ନାହିଁ । ତେଣୁ ସେ ଯୋଜନା କିପରି କାର୍ଯ୍ୟକାରୀ ହୋଇଛି ବା ହେଉଛି ତାହା ଜଳଜଳ କରି ସମସ୍ତଙ୍କୁ ଦେଖାଯାଉଛି; ଦେଶସାରା ଓ ବିଦେଶରେ ମଧ ଏବଂ ବର୍ଷବର୍ଷ ଧରି ।

ବିଦେଶରେ ବହୁଦେଶରେ ଭୀକ୍ଷା ବୃତ୍ତିକୁ ଆଇନରେ ନିଷିଦ୍ଧ କରାଯାଇଛି । ତାଙ୍କ ଦେଶରେ ଗରିବ ନାହାନ୍ତି କି ଗରିବୀ ନାହିଁ ସେ କଥା ମୁଁ ଜାଣେନା । ମୁଁ କେବେ ଦେଶଛାଡ଼ି କେଉଁ ବିଦେଶ ମାଟିକୁ ଯିବାର ସୁଯୋଗ ପାଇନି । ଆମଦେଶରେ ବୃତ୍ତିଗତ ଭାବେ ଭୀକ୍ଷା

କରିବା ଲୋକଙ୍କୁ ମୁଁ ମଧ୍ୟ ପସନ୍ଦ କରେନା । ମାତ୍ର ଅଭାବରେ ଚୋରୀ, ଡ଼କାୟତି, ଠକେଇ, ଟାଉଟୋରି ଇତ୍ୟାଦି କରି ବଞ୍ଚିବା ବା କୁଟୁମ୍ବ ପୋଷିବା ଅପେକ୍ଷା କାମ ପାଇଁ ବଳ, ସୁଯୋଗ ବା ସୁବିଧା ଥିଲେ ମୂଲଲାଗି ଚଳିବା ଏବଂ ସେ ସୁବିଧା ନ ମିଳିଲେ ଭୀକ୍ଷା କରି ଜୀବନ ବଞ୍ଚାଇବାରେ କୌଣସି ଦୋଷ ନାହିଁ । ବରଂ ତା ଦ୍ୱାରା ଚୋରୀ, ଡ଼କାୟତି, ଠକାମି ଟାଉଟୋରି ଇତ୍ୟାଦି ସମାଜରୁ ନିଶ୍ଚିତ ଭାବରେ କମିଯିବ; ଏଥିରେ ସନ୍ଦେହ ନାହିଁ । ଏକଥାଟି ମୁଁ ଦୃଢ଼ ସ୍ୱରରେ ଘୋଷଣା କରୁଛି । ଉପରେ ଯେଉଁ ଅଭାବ କଥା ବା ଗରିବୀ କଥା କୁହାଗଲା ତାହା ଏବେ ଆମ ସମାଜର ଶାସକ ରକ୍ଷକ ରାଜନୈତିକ ଲୋକ ବୁଝିବା ବଡ଼ କଷ୍ଟ । ଏପରିକି ଗରିବ ପରିବାରର  ଶିକ୍ଷିତ ପିଲାଏ ଯାକୁ ବୁଝି ପାରୁନାହାନ୍ତି । ତେଣୁ ବାପା ମାଙ୍କ ଉପରେ ଜୁଲମ କରନ୍ତି ନିଜର ଅନେକ ଆବଶ୍ୟକତା ମେଣ୍ଟାଇବାକୁ ।

ଚିନ୍ତାକରନ୍ତୁ; ଦିନ ଦିନକର କଥା । ଲଗାଣ ଝଡ଼ିବର୍ଷା ଚାଲିଛି । ଛାତରୁ ପାଣି ଗଳୁଛି । ଦିହ ଗୁଞ୍ଜିବାକୁ ଗାହାନାହିଁ । ଗାଧୁଆ ଲୁଗା ଦେହରେ ଶୁଖୁଛି ତା ସାଙ୍ଗକୁ ଜର ବାଧୁକି ଅଛି । ବିଲବାଡ଼ି କାମଦାମ ବନ୍ଦ ଅଛି । ଗାଁର ଗରିବ ଘରେ ଚାଉଳ ନାହିଁ । ଚାଉଳ କଥା କ'ଣ କହିବା; ଚାଉଳ ଥିଲେ ମଧ୍ୟ ତାକୁ ସିଝାଇବାକୁ ଶୁଖିଲା ଜାଳ ଖଣ୍ଡେ ନାହିଁ । ବାର ଅବାରରେ କେହି ଧାରଉଧାର କି କାଳିବାକି ମଧ୍ୟ ଦେବାକୁ ନାରାଜ । ଏହି ଅବସ୍ଥାରେ କେତେ ଓଳି ପେଟରେ ଓଦାକନାଦେଇ ବା ଶାଗମୁଗ ଖାଇ ଚଳିହେବ ? ଯେ ଯେଉଁ ଗରିବୀ ବା ଅଭାବ ଯାକୁ ଯଦି ଆମ ଯୋଜନାକାରୀ ବୁଝୁ ଥାନ୍ତେ ତେବେ କ'ଣ ସେ ପ୍ରତି ଯୋଜନାପାଇଁ ଅନୁଗୃହିତର ଅଂଶଧନ ବ୍ୟବସ୍ଥା କରିବା ଓ ବ୍ୟବସାୟୀ ବ୍ୟାଙ୍କ ସମବାୟବାଲା ସେଥିରେ ସେୟାର ଦାବି କରନ୍ତେ ? ତାଙ୍କର ଆବଶ୍ୟକତା ବୁଝି ସେ ଏପରି ବ୍ୟବସ୍ଥା କରନ୍ତି କାଗଜରେ ଅଙ୍କକଷି ।ଅନୁଗୃହିତ ଗରିବର ଅବସ୍ଥା ସେ କାହୁଁ ଜାଣିବେ ?

ମାର୍କସ୍ ଯେଉଁ ନଥିଲା ବାଲା ବା ଶ୍ରମିକ ଶକ୍ତିକୁ ଏକତ୍ର କରି ଥିଲାବାଲା ବା ପୁଞ୍ଜିପତି ମାନଙ୍କୁ ଧ୍ୱଂସକରିବାକୁ ନର୍ଦ୍ଦେଶ ଦେଇଥିଲେ ସେମାନେ ମଧ୍ୟ ଏ ପର୍ଯ୍ୟାୟର ଅଭାବୀ ବା ଗରିବ ନୁହଁନ୍ତି । ସେଠାରେ ମଧ୍ୟ ଯେଉଁ ବଳପ୍ରୟୋଗ କରାଯାଏ ତାହା ମହାତ୍ମା ଗାନ୍ଧୀଙ୍କର ପସନ୍ଦ ନଥିଲା । ଯେ ପନ୍ଥାକୁ ସେ ହିଂସାର ପନ୍ଥା କହୁଥିଲେ । ତାଙ୍କର ଭାଷାରେ ଓ ମତରେ ବଡ଼ଲୋକମାନେ ଯେଉଁ ଧନ ବା ସମ୍ବଳର ଅଧିକାରୀ ସେମାନେ ତା'ର ନ୍ୟାସୀବୋଲି ଭାବିଲେ ସମସ୍ୟାର ସମାଧାନ ହେବବୋଲି ସେ କହୁଥିଲେ । ଏକଥା ମଧ୍ୟ ଯେଉଁ ଗରିବଙ୍କ

ବିଷୟ ମୁଁ କହୁଛି ସେମାନେ ସେ ଶ୍ରେଣୀର ନୁହନ୍ତି । ସେ ମଧ୍ୟ ଏମାନଙ୍କୁ ଉଦ୍ଦେଶ୍ୟରେ ରଖି କହିନାହାନ୍ତି । ହେଲେ ତାଙ୍କ ଜୀବନରେ ବିଶେଷକରି ସାବରମତି ଆଶ୍ରମରେ ରହୁଥିବା ବେଳେ ଥରେ ଆଶ୍ରମ ପରିଚାଳନା ପାଇଁ ଖାଦ୍ୟାଭାବ ଅନୁଭବ କରିଥିଲେ । ଠାକୁରେ ତାଙ୍କର ଏ ସାମୟିକ ଅସୁବିଧା ଦୂରକରିଥିଲେ ଜଣେ ସେଠଙ୍କ ଜରୀୟାରେ । ଅଜ୍ଞାତରେ ସେ ଟଙ୍କା ଥଳି ବାନ୍ଧିଆଣି ପକାଇ ଦେଇ ଯାଇଥିଲେ ।

ଈଶ୍ୱର ସୃଷ୍ଟିକରିଥିବା ପ୍ରାଣୀଜଗତ୍ ଠାରୁ ଆରମ୍ଭ କରି ଉଦ୍ଭିଦ ଜଗତ୍ ପର୍ଯ୍ୟନ୍ତ ସମସ୍ତଙ୍କ ପାଇଁ ଖାଦ୍ୟର ବ୍ୟବସ୍ଥା ଆଗରୁ କରି ରଖିଥାନ୍ତି । ଆଭାବର କଷଟିରେ ସେ କେବଳ ପରୀକ୍ଷା କରନ୍ତି । ହାତଗୋଡ଼ ନଥିବା କୁଷ୍ଠରୋଗୀଟି କ'ଣ ସମ୍ପୂର୍ଣ୍ଣ ଉପବାସରେ ଅଛି ? ଶିଶୁ ଜନ୍ମ ନେବା ଆଗରୁ କ'ଣ ରୋଜଗାର କରିଖାଦ୍ୟ ରଖିଥାଏ । ମା'ର ବକ୍ଷରେ ତାପାଇଁ ଅମୃତ ସଞ୍ଚିତ ଅଛି । ଅଙ୍କୁରିତ ଉଦ୍ଭିଦ ପାଇଁ ବୀଜ ପତ୍ରରେ ଅଛି ଖାଦ୍ୟ । ସୁଦାମା ନ ମାଗି ମଧ୍ୟ ନିଜେ ଦ୍ୱାରିକାଧୀଶ ତାଙ୍କ ଅଜ୍ଞାତରେ ତାଙ୍କପାଇଁ କୋଟି ସମ୍ପତ୍ତି ଖଞ୍ଜି ଦେଇଥିଲେ । ବଡ଼ଲୋକ ବନ୍ଧୁ ଖାଟିବିରେ ବା ଭକ୍ତ ଭଗବାନଙ୍କୁ କଷ୍ଟ ନ ଦେବା ଆଳରେ ଅଥବା ସେ ଲଜ୍ଜାଯୋଗୁଁ ମାଗିପାରିନଥିଲେ । ହେଲେ ତାଙ୍କ ଭିତରେ ପାଇବାପରେ ଗର୍ବ ନଥିଲା । ମାଇଁ ଅଯାଚିତ ଭାବେ ଦେଉଥିବା ସାହାଯ୍ୟ ଯୋଗୁଁ ମୋତେ ମାଗିବାକୁ ପଡ଼ିଲାନି ବୋଲି ଗର୍ବ କରୁଥିଲି । ସେହି ଗର୍ବଗଞ୍ଜନ ଭଗବାନ ଅତି ଅସମୟରେ ଥରେ ଅଧେ ବାବୁଘରକୁ ପଠାଇ ସେ ଗର୍ବର ଶିଖାଟିକୁ ନିଭେଇ ଦେଇ କୃତାର୍ଥ କରି ଦେଇଥିଲେ ।

## ୪୪. ଜମିଦାରୀ ଓ ଘରଜୋଇଁଆଙ୍କ ଭାଉ

ଜେଜେ କହୁଥିଲେ ସେ ତାଙ୍କ ଭାଇଙ୍କ ଠାରୁ ଭିନେ ହେଲାବେଳେ ଓଉ ପଡ଼ିଆରେ ଘରତୋଳିବାର ବହୁବର୍ଷପରେ ପୁରୁଣାଘର ଛାଡି ସେଠାକୁ ଆସିଥିଲେ । ଏହି ସୁଯୋଗରେ ସେ ଖାଲିପଡ଼ିଥିବା ନୂଆଘରେ ବାବୁଘର ଧାନଖମାର ହୋଇଥିଲା । କେତେ ଧାନ ଥିଲା କେତେ ଗଲା ସେ ହିସାବ ତାଙ୍କୁ ବା ତାଙ୍କ ଗୁମାସ୍ତାଙ୍କୁ ଜଣା । କିଛିଧାନ ନଅଁଟ ପଡ଼ିବାର ହିସାବ ଦେଖାଇ ଜେଜେଙ୍କ ମୁଣ୍ଡରେ ଅଠାବୋଳି ଶେଷକୁ କିଛି ଜମି ବାବୁଘର ହାତେଇ ନେଇ ଯାଇଥିଲେ । ଏହିପରି ପର ଘର ବୁଡ଼ାଇବା ତାଙ୍କ କାମ । ଦୁଇଭାଇ କଳିଲାଗି ଯଦି ଜଣେ ବାବୁ ଘରକୁ ଫେରାଦ ଯାଏ ସେ ହୁଏ ତାଙ୍କର ଆଜୀବନ ବେଠିଆ ଚାକର । ତା'ଠାରୁ ଟିପନେଇ ଆର ଭାଇ ସାଙ୍ଗରେ ମାଲିମକଦମା କରି ଉଭୟଙ୍କ ସମ୍ପତ୍ତି କରାୟତ୍ତ କରି ତାଙ୍କୁ ସର୍ବସ୍ୱାନ୍ତ କରିଦିଆଯାଉଥିଲା ।

ଥରେ ଅଭାବ ଅସୁବିଧାରେ ଖାଲି କାଗଜରେ ଟିପ ଦେଇ ଯଦି ବାବୁଘରୁ କିଏ ଧାନକି ଟଙ୍କା ଦେଢ଼ି କରଜ ନିଏ ତେବେ ଯେତେ ଦେଲେ ମଧ୍ୟ ସେ କରଜ କେଉଁ ସୁଝେନି । ଶେଷରେ କରଜଦାରକୁ ସର୍ବସ୍ୱ ହରାଇବାକୁ ପଡ଼େ ।

ପରଘରର ଝିଅ ବୋହୂ ମଧ୍ୟ କାଳେ ବାଦ୍ ପଡୁ ନଥିଲେ । ତାଙ୍କ ଉପରେ ମଧ୍ୟ ତାଙ୍କର ନଜର ଥିଲା । କିଛି ନହେଲେ କିଛିଦିନ ଘରେ ଖଟେଇ ଛାଡୁଥିଲେ ।

ଗାଁର ଯେଉଁପିଲାଟି ଭଲ ପାଠପଢ଼ିବାର ଖବର ମିଳେ ତାକୁ ତାଙ୍କଘରେ ରୋଷେଇ କାମକି ଗୁମାସ୍ତା ବା ପିଆଦା କାମ ମିଳିଯାଏ ଏବଂ ପାଠ ପଢ଼ାରେ ଡ଼ୋରି ଲଗାଇ ଦିଆଯାଏ ।

କଚେରୀରେ ବାବୁ ବସିଥିଲେ, ତାଙ୍କ କଚେରୀ ଆଗରାସ୍ତାରେକେହି ଯୋତା ମାଡ଼ି ବା ଛତାଧରି ମଧ୍ୟ ଯିବାକୁ ସାହସ କରିନ୍ତିନି । ଥରେ ଜଣେ ସରକାରୀ ବାବୁ ଏପ୍ରଥା ନମାନି ମାଡ଼ର ଶିକାର ହୋଇଥିଲେ ।

ବିଶ୍ୱଯୁଦ୍ଧ ପରେ ଖାଦ୍ୟ ପଦାର୍ଥ ସହ ସବୁ ଜିନିଷର ମୂଲ୍ୟ ହୁ ହୁ ବଢି ଯାଇଥାଏ । ବର୍ଷକ ପୂର୍ବରୁ ଟଙ୍କାରେ ୧୦ଗୌଣୀ ଧାନ ମିଳୁଥିଲା ବେଳେ ଯୁଦ୍ଧପରେ ଟଙ୍କାକୁ ପାଞ୍ଚ ଗୌଣୀ ହୋଇଗଲା । ସେତିକିବେଳେ ଥରେ ଟଙ୍କାରେ ଧାନ କିଣି ମୁଣ୍ଡାଇ ନପାରି କୁନ୍ଥେଇ ହେବାବେଳେ ଜମିଦାରିଆଣୀ କହିଲେ "ଶାଗ ଖୁଣ୍ଟି ଖୁଣ୍ଟି ନଖ ନାହିଁ- ଘଇତା ଆଗରେ ସକେଇ କାନ୍ଦୁଛି କଳମ ଗାଡିଆ ଦେଖୁ ନାହିଁ । ଏ ବିଦ୍ରୂପକୁ ସହିବାର ଶକ୍ତି ସେହି ସର୍ବଶକ୍ତିମାନ ଦେଇଥିଲେ । ପାଞ୍ଚବର୍ଷ ଭିତରେ ନଡ଼ିଆ ଗଛ ଉଚ୍ଚର ଧାନକୋଠି ସବୁ ଖାଲି ହୋଇଗଲା, ତା ଭିତରେ ପାରା, ମୂଷା, ବିରାଡି ପଡିମରି ପଚି ଦୁର୍ଗନ୍ଧ ବାହାରିଲା ।

ଏହିପରି ଅନେକ ଅନେକ କଥା ଶୁଣାଯାଏ । ନିରୀହ ମଣିଷ ଏସବୁ ସହିଯାଏ ସିନା ଭାବଗ୍ରାହୀ କାହାରି ଅନ୍ୟାୟକୁ ସହନ୍ତିନି । ତେଣୁ ଜମିଦାରୀର ଅଭ୍ୟୁଦୟ ଘଟି ଧନସମ୍ପତ୍ତି ମାଡ଼ିବା ସହିତ ବଂଶଲତାଟି ଛିଡ଼ି ଛିଡ଼ି ଯାଇଥିଲା । ଦୁଇପୁରୁଷ ଧରି ପୁତ୍ର ସନ୍ତାନହୀନ ଜମିଦାର ପରିବାରଟି ଦ୍ୱିତୀୟ ପୁରୁଷରେ ଭଲ ପରିବାର ଦେଖୁ ଘରଜୋଇଁଆ କରି ଗୋଟିଏ କ୍ୱାଇଁ ଧରି ଆଣିଥିଲେ । ଖୁବ୍ ଜାକଜମକରେ ବିଭାଘର ହୋଇଥିଲା । ଆଜିଯାଏ ଲୋକେ ସେପରି ଆଡ଼ମ୍ବର ଦେଖିନାହାନ୍ତି ବୋଲି କହନ୍ତି । କିଛିଦିନ ଖୁସିରେ ଯିବାପରେ ଜମିଦାର ରୋଗଗ୍ରସ୍ତ ହୋଇ ବାଟକାଟିବାରେ ଜମିଦାରୀଆଣି ହେଲେ ମାଲିକ । ସେ ଥିଲେ ଗଜ ମୂର୍ଖ । ତେଣୁ ସେ ପରିଚାଳିତ ହେଲେ ଜଣେ ଅଦୃଶ୍ୟ ହାତ ଦ୍ୱାରା । ସେହିପରି ଝିଅ କ୍ୱାଇଁଙ୍କର ଅପଢ ହୋଇ ଯେ ଉଭୟେ ଦୁଇ ଅଦୃଶ୍ୟ ହାତକୁ ଆଶ୍ରୟକଲେ । ପରର ଝିଅବୋହୂକୁ ଯେ ଉହୁଁଥିଲେ ଧନ ଓ କ୍ଷମତା ବଳରେ; ତାଙ୍କର ଝିଅବୋହୂ ଅଦୃଶ୍ୟ ହାତକୁ ଖୋଜିଲୋଡ଼ି ଘରକୁ ଡ଼ାକି ଆଣିଲେ ଓ ତାଙ୍କରି ଇଙ୍ଗିତରେ ପରିଚାଳିତ ହେଲେ ।

ଜମିଦାରଙ୍କର ଧାପ ମାପିବାର ବାହାରେ ଥିଲା । ତାଙ୍କ ଛୋଟବଡ ଭାଇଆଳି ଜମିଦାର ମାନଙ୍କର ଦୌରାତ୍ମ୍ୟ ମଧ୍ୟ କମ୍ ନଥିଲା । ଜମିଦାରୀ ଉଚ୍ଛେଦ ପରେ ଧନ ସମ୍ପତ୍ତି ସହ ଧାପ ମଧ୍ୟ କମିଗଲା । ଶେଷରେ ଘର କ୍ୱାଇଁଙ୍କର କକାଶଶୁର ହେଲେ ଗାଁର ପୋଷ୍ଟମାଷ୍ଟ୍ର । କର୍ପୁର ଯାଇ କନା ପଡ଼ିଥିଲା ପରି ଧାପ ଯାଇଥିଲେ ମଧ୍ୟ ଫଁଟା ଆହୁରିଥିଲା । ଦିନେ ଗୋଟିଏ ପୋଷ୍ଟକାର୍ଡ଼ କିଣିବାକୁ ଯାଇ ଅଧଘଣ୍ଟା ଗୋଡ଼ଭାଙ୍ଗି ଠିଆହେବା ପରେ ବିରକ୍ତି ପ୍ରକାଶ

କରିବାରେ ଅସରପା ଉପରେ କାଣୀବିଲେଇର ରୋଷପରି ସେଠାରେ ଉପସ୍ଥିତ ଘରଜ୍ୱାଇଁଆ ଉହୁଁକି ଆସି ଠେଲି ଦେଇଥିଲେ ଏବଂ ଏ ପରସ୍ଥିତି ପାଇଁ କକାଶଶୁର ଓ ଘରଜ୍ୱାଇଁ ଦାୟୀଥିଲେ ମଧ୍ୟ ତାହା ସେ ବୁଝି ପାରୁ ନଥିଲେ । ଦୃଢ଼ ପ୍ରତିବାଦ ସ୍ୱରୂପ ତାଙ୍କଘରକୁ ଯାଇ ତାଙ୍କ ସ୍ୱୀକା କରାଯାରେ ତାଙ୍କୁ ବୁଝାଇବାକୁ ପଡ଼ିଥିଲା ନତମସ୍ତକ ହୋଇ । ସେତେବେଳକୁ ରାଗଟା ମୁଣ୍ଡରୁ ଖସି ଆସିଥିଲା । ଘର ଜ୍ୱାଇଁ ବୁଝିଗଲେ ଏହାର ପ୍ରତିବଦଳରେ ପରବର୍ତ୍ତୀ ଅବସ୍ଥାରେ ସେ ଦିନଠୁଁ ଘର ଜ୍ୱାଇଁଙ୍କ ଠାରୁ ମୋ ନାମ ପଛରେ ବାବୁ ଡ଼ାକରାଟି ସ୍ଥାୟୀଭାବେ ମିଳିଗଲା । ଜମିଦାରତ ନୁହଁନ୍ତି ତାଙ୍କ ଗୋଟାପଟା ଘରଜ୍ୱାଇଁ ଗାଦି ଚ୍ୟୁତି ସାରିଥିଲେ । ଖାଲି ନାଁ ଟି ଥିଲା ସିନା; ସାପର ବିଷ ତେଣୁ ନଥିଲା । ଠାକୁରେ ଯେ ପ୍ରତିବାଦର ସ୍ୱରଟି ଉଠାଇ ଅପମାନିତ କରାଇ ପୁଣି ମାନ ଫେରାଇ ଦେବା କେବଳ ତାଙ୍କରି ଇଛା ନୁହେଁତ ଆଉ କ'ଣ ! ଘରଜ୍ୱାଇଁ ଆଉ କେତେକଙ୍କର ଜ୍ୱାଇଁ ହୋଇଗଲେ ବଳପଶା ହୋଇ ଓ ଶେଷରେ ହିସାବର ଶାଳୀକୁ ଧରି ପାର । ଝିଅମଧ୍ୟ ଘରୁ ଗୋଡ଼କାଢ଼ି ବୁଲିଲେ ସାଇଁ ଲୋଡି ; ମା'ଙ୍କ ଅନୁକରଣରେ ଓ ସ୍ୱାମୀଙ୍କ ଆଦର୍ଶରେ । ଜମିଦାରୀ ଗଲା, ମକଦମି ଗଲା । ଟଙ୍କା ଧାନ ଦେଢ଼ି କରଜ ବୁଡ଼ିଲା । ୫୦ଟି ଜମିଦାରୀରେ ଥିବା କଚେରୀ ସଂଲଗ୍ନ ହାତଘର ମଧ୍ୟ ବନ୍ଦହେଲା । ସବୁ ଜମି ବିକ୍ରି ହୋଇଗଲା ଶାଗମାଛ ଦରରେ; କାରଣ କେଉଁ ମୌଜାରେ କେଉଁଠି କେତେ ଜମିଥିଲା ଯାଙ୍କୁ ଜଣା ନଥିଲା । ୩ ଫୁଟିଆ ଚୂନଇଟା ଗନ୍ଥା ମୋଟାକାନ୍ଥ ଗୋଟା ଗୋଟା ଶୁଖିଲା ଶାଳ ଗଛର କଡି ବରଗାରେ ଛାତ, ବାଲିଗରଡ଼ା ଚୂନ ଦିଆ ଚଟାଣର ବଡ ଘରେ ୨୦ଟି ବଡ଼ ବଡ଼ ଆଲମାରିରେ ଥିବା ଦେଢ଼ି, କରଜ, ବନ୍ଧକି ହାଣ୍ଡନୋଟ ଓ କାଗଜ ସହ ଜମିଦାରୀ, ଜମିଜମାର ପଟ୍ଟା, ପାଉତି, କବଲା, ନକ୍‌ସା ସବୁ ଏକାବେଳକେ କଳାଉଇ ଖାଇ ଶେଷ କରିଦେଇଥିଲେ । ଗଲାବେଳେ ଯାଏ ମୂଳ ସହିତ । ନିଜଭିତରେ କଳି କରି ଭୋଗଦଖଲ କରି ଯୁଗଯୁଗରୁ ଖାଉଥିବା ଜମିର ସତ୍ତ୍ୱକିଣିନେବାକୁ କେହିପକ୍ଷ ଆସିଲେ ତାଠୁଁ କାନମୋଡ଼ି ମୂଲ୍ୟ ଆଦାୟ ହେଉଥିଲେ ମଧ୍ୟ ମଧ୍ୟସ୍ଥିମାନେ ତାର ବାରଣା ମାରିନେଉଥିବା ବେଳେ ମାଲିକ ପାଏ ଚାରଣା । ଏମିତି ହଜାର ହଜାର ଏକର ଜମି ପରହସ୍ତ ହୋଇଗଲା । ଶେଷରେ ଘରଜ୍ୱାଇଁ ପାଣ ପଠାଣକୁ ହାତ କରିଥିବା ମିଛ ଖବର ଭୟରେ ମାଟିତଳେ ପୋତା ସୁନାର ହଣ୍ଡା ତଡ଼ାହୋଇ କଟକ ଓ ସେଠି କ୍ଷମତା ନଥିବାରୁ କଲିକତା ରିଜର୍ଭ ବ୍ୟାଙ୍କକୁ ଯାଇ ଶାସ୍ତ୍ରୀଜୀଙ୍କ ସୁନା ନିୟନ୍ତ୍ରଣ ଆଇନିରେ ବାଜ୍ୟାପ୍ତ ହୋଇଗଲା । ଶେଷରେ ଘରଜ୍ୱାଇଁ ରଫାନାମା ଲେଖି ଦେଇ କିଛି ହାତଗୁଞ୍ଜାଧରି ପଳାୟନ କଲେ । ଦୁଇଗୋଠଗାଈ, ଦାଣ୍ଡେ ବଳଦ ନଖାଇ ନପିଇ ଶୁଖିମଲେ । ସୁଖାନ୍ତେ ରୋଦନ୍ତି ଗାବଃ ଦୁଃଖାନ୍ତେ ପୁତ୍ର ପଣ୍ଡିତ । ହାତ ଚାଷଭାଙ୍ଗିଲା । ଯେଉଁ ବେଠିଆ ଚାକିରିଆ, କୋଠିଆ ହାତଟେକା ଅଧାପେଟ ଖାଇ ଦିନରାତି ଝାଳରେ ରକ୍ତ ନିଗାଡୁଥିଲେ ସେମାନେ ମଶାଡାଁଶଙ୍କ ପରି ପୁନର୍ଜନ୍ମ ପାଇ ସବୁଦିଗରୁ ଶୋଷଣ ଆରମ୍ଭ କରିଦେଲେ । ଏବେ ସଦରରେ ଥିବା ମୋଗଲୀୟ ଢାଞ୍ଚାରେ ପଠାଣ ଖଞ୍ଜା, ଠାକୁରଘର, ପାଚେରୀ, ଫଳବଗିଚା, ଫୁଲ ବଗିଚା, ପୋଖରୀ ପର୍ଯ୍ୟନ୍ତ ସରି ଗୋଟିଏ ମାତ୍ର ମୂଳ କୋଠା

ଭଙ୍ଗା ଦଦରା ହୋଇ ରହିଛି ଶେଷ ସଙ୍କେତ ଭାବେ । ଅକ୍ତବନ୍ଧୁତେ ଇଏ ପ୍ରାୟ ସବୁ ଜମିଦାର ଓ ଜମିଦାରୀର ଅବସ୍ଥା ହୋଇଥିବ । ତେବେ "ଅନ୍ୟାୟ ଧନ ବଢ଼େ ବହୁତ -ଗଲାବେଳେ ଯାଏ ମୂଳ ସହିତ" କଥାଟିର ସତ୍ୟତା ଏଠି ଅକ୍ଷରେ ଅକ୍ଷରେ ସତ ହୋଇଛି । ଏତେ ଦେଖି ମଧ ଲୋକେ ଅନ୍ୟାୟରେ ଧନ ଉପାର୍ଜନ ଓ ସଞ୍ଚୟରେ ବ୍ୟସ୍ତ । ଈଶ୍ୱର ଏତେ ବଡ଼ ନିଷ୍ଠୁର ସତ୍ୟର ସନ୍ଧାନ ଓ ଦୃଷ୍ଟାନ୍ତ ଦେଇଥିଲେବି ଲୋଭ ଓ ପାପର କାମଳ ଆଖିକୁ ଏ ସବୁ ଦିଶୁନି କି କିଛି ଶିକ୍ଷା ଲାଭ ହେଉନି । ଏହାହିଁ ଆଶ୍ଚର୍ଯ୍ୟ "କିମାଶ୍ଚର୍ଯ୍ୟ ମତଃ ପରଂ" ।

## ୪୫. ଥେଟର କଣ୍ଡୁ

ବହୁଦିନରୁ ଗାଁରେ ପ୍ରତିବର୍ଷ ଖରାଦିନେ ଗାଁ ପିଲାଏ ମିଶି ଥେଟର କରୁଥିଲେ । ପାଖ ଗାଁରୁ ଲୋକେ ଖଣ୍ଡସାହୀର ଥେଟର ଦେଖି ଖୁବ୍ ତାରିଫ୍ କରୁଥିଲେ । ଏହାରି ପ୍ରଭାବରେ ଗାଁରୁ ଦୁଇ ତିନି ଜଣ ପ୍ରଖ୍ୟାତ କଳାକାର ବାହାରିଥିଲେ ଓ ଖୁବ୍ ନାମ କରିଥିଲେ । ଯଥା ପ୍ରିୟନାଥ ମିଶ୍ର ଓ ଉମାନାଥ ମିଶ୍ର ଇତ୍ୟାଦି । ତେଣୁ ପ୍ରତି ବର୍ଷ ଥେଟର ପାଇଁ ଗାଁ ପିଲାଙ୍କର ଯେପରି ଉତ୍ସାହ ଥିଲା ଏଥିପାଇଁ ସାହାଯ୍ୟ କରିବାକୁ ଗାଁ ଲୋକେ ମଧ ଅକୁଣ୍ଠିତ ଥିଲେ । ମାତ୍ର କଣ ହେଲା କେଜାଣି ପିଲାଙ୍କ ମଧରେ କଳିକଜିଆ ଲାଗି ଦୁଇବର୍ଷ ଥେଟର ବନ୍ଦ ହୋଇଗଲା । ତୃତୀୟ ବର୍ଷ ମୋରି ଡାକରାରେ ଥେଟର ବିଷୟ ଆଲୋଚନା ହେଲା ରାମେଶ୍ୱର ମଣ୍ଡପରେ । ସେଠି ମଧ ସେହି କଳିର ସୂତ୍ରପାତ ହେଲା । ଥେଟର ହେବାର ଆଶା ମଉଳି ଗଲା । ଏହାଦେଖି ମନରେ ଖୁବ୍ ଆଲୋଡ଼ନ ଓ କ୍ଷୋଭ ଜାତ ହେଲା । କାନ୍ଦିକାନ୍ଦି ହାତଯୋଡ଼ି ସମସ୍ତଙ୍କୁ କହିଲି ଗାଁର ପରମ୍ପରାଟିକୁ ଭାଙ୍ଗି ଦିଅନି । ନୂଆଁ କିଛି ନକଲେ ନାହିଁ ପୁରୁଣା ପ୍ରଚେଷ୍ଟାଟିକୁ ବଞ୍ଚାଇରଖ । ଛୋଟପିଲାଟିର ଏହି ଆକୁଳ ନିବେଦନ ସମସ୍ତଙ୍କ ମନ ବଦଳାଇ ଦେଲା । ଜାକଜମକରେ ଥେଟର ହେଲା । ଆକୁଳତାର ଫଳ ସ୍ୱରୂପ ସେହି ମୃଗୟା ନାଟକରେ ଅଭିନୟ କରିବାକୁ ମିଳିଲା ପ୍ରଥମ କରି "ବିଦୂଷକ" ଭାବରେ । ଟଗଲା ଭାଇନା (୰ଶକ୍ତି ପ୍ରସାଦ ମିଶ୍ର ଆଇ.ଏ.ଏସ୍.) ହୋଇଥିଲେ ରାଜା-ଦଶରଥ । ତା' ପର ବର୍ଷ ଭାଇ ଭାଉଜ ନାଟକରେ ଭାଇଗ, ୩ୟ ବର୍ଷ ଚକ୍ରୀ ନାଟକରେ ଚକ୍ରୀ ହୋଇ ଖୁବ୍ ଉଚ୍ଚକୋଟୀର ନାଟକ ପ୍ରଦର୍ଶନ କରିଥିବାର ସ୍ମୃତି ଏବେବି ଜାଗ୍ରତ । ମୋସହ ଏଥିରେ ଭାଗନେଇ ଥିଲେ ଖୋକା, ଗଗନା, କୁନି ଓ ରବି ଇତ୍ୟାଦି ଗାଁର ବନ୍ଧୁ ପିଲାଏ । ସେତିକି ନୁହେଁ; ସେହଦିନୁଁ ଏବେଯାଏ ପ୍ରତିବର୍ଷ ଗାଁରେ ଥେଟର ହେଉଛି ।

ତା ପରେ ବଡ଼ ହେବା ସହିତ ଥେଟରର ଗୁରୁଦାୟିତ୍ୱ ଆସିଗଲା ମୁଣ୍ଡକୁ । ସେତିକି ନୁହେଁ ଶ୍ରେଷ୍ଠାଂଶରେ ଭାଇଗ ଓ ଚକ୍ରୀହୋଇ ଥେଟର କରିବାପରେ ସାଙ୍ଗ ପିଲାଙ୍କଠାରୁ ଆରମ୍ଭ କରି ଗାଁ ଲୋକଙ୍କର ଅକୁଣ୍ଠ ସହଯୋଗରେ ଦୁଇ ତିନି ବର୍ଷ ଚାଲିଲା ଥେଟରରେ ଅଂଶଗ୍ରହଣ ।

ଖରା ଦିନ ଛୁଟି ଏଥିରେ କଟେ । ଦିନରେ ଘନ୍ଦାମଗା ଓ ଲେଖା ମୁଖସ୍ଥ ସାଙ୍ଗକୁ ସଂଧ୍ୟାରେ ଚାଲେ ରହିରସାଲ ଅଭ୍ୟାସ। ଖୁବ୍ ଭଲ୍ ଥିଏଟର କରି ନାଁ ମଧ ମିଳିଲା ଏବଂ କଳାପ୍ରେମୀ ଗ୍ରାମବାସୀଙ୍କ ପାଖରେ ପରିଚୟ ମଧ୍ୟ ବଢ଼ିଲା । ପରିଣତ ବୟସରେ ଆଉ ନିଜେ ଅଭିନୟ ନକରି ଦୁଇତିନିଥର ନିର୍ଦ୍ଦେଶନା ଦେବାର ସୁଯୋଗ ମିଳିଥିଲା ।

ଶେଷକୁ ସେହି ଥିଏଟର କାଳ ହେଲା । ପାଲଲହଡ଼ାରେ ବିଡ଼ିଓ ଥାଏ । ଦୁର୍ଗାପୂଜା ବେଳକୁ ସେଠିକାର ସରକାରୀ କର୍ମଚାରୀ ଓ ଗାଁ ଲୋକ ମିଳି ଥିଏଟର କରନ୍ତି । ସେତେବେଳେ ତଥାକଥିତ ଲେଖକ ବଳରାମ ବାବୁ ଥିଲେ ଏସ୍ ଡ଼ି.ଓ । ସେ ଯେ ଜଣେ ବଡ ଲେଖକ, କଳାକାର ଓ ନିର୍ଦ୍ଦେଶକ ମୁଁ ଏକଥା ଆଗରୁ ଜାଣି ନଥିଲି । ପ୍ରଥମ ବୈଠକରେ ବହି ବଛାଗଲା "ଚକ୍ରୀ" ମୁଁ ସେଥିରେ ଅଭିଜ୍ଞଥିଲି । ତେଣୁ ସେହିଠାରେ ନିର୍ଦ୍ଦେଶନାର ଦାୟିତ୍ୱ ନେଇଥିଲି । ଏ କଥାଟା ବଳରାମ ବାବୁଙ୍କୁ ଖୁବ୍ ବାଧିଲା । କେହି ଯଦି ଏକଥାର ସଂଧାନ ଦେଇଥାନ୍ତେ ମୁଁ ଓହରି ଯାଇଥାନ୍ତି । ମାତ୍ର ଶେଷ ପର୍ଯ୍ୟନ୍ତ ଏ କଥା ଜାଣି ନପାରି ଖୁବ୍ ଆଗ୍ରହରେ ନର୍ଦ୍ଦେଶନା କାମ କରିଥିଲି । ଶେଷରେ ଥିଏଟର ହବାର ଦିନକ ଆଗରୁ ଏ ଖବରଟି ପାଇ ଏଥିରୁ ହଟିଯିବାକୁ ଚାହିଁବାରେ କେହି ରାଜି ହେଲେନି ।

ଡ୍ରାମାଟି ଖୁବ୍ ଭଲ ହୋଇ ଶତ ମୁଖରେ ପ୍ରସଂଶିତ ହେଲା । ଏଇ ହେଲା ପତନର କାରଣ। ବଳରାମବାବୁ ଆଉ କିଛି ବାଟ ନପାଇ ବର୍ଷ ଶେଷରେ ଗୁପ୍ତ ଚରିତ୍ର ପଞ୍ଜିକାରେ ଦୁଇଧାଡ଼ି ବଙ୍କେଇ ଲେଖିଦେଲେ । ଏ କଥା ଜାଣିବାକୁ ଦୁଇବର୍ଷ ଚାଲିଗଲା । ଜାଣିଲା ପରେ ଥିଏଟର କଣ୍ଟୁ ସଂପୂର୍ଣ୍ଣ ମରିଗଲା । ମରିଗଲା ଯେ ଏବେ ଯାଏଁ ଆଉ ଗଜା ମଧ ମାରୁନି । ଥେଟର କରିବାତ ଦୂରର କଥା ଦେଖିବାକୁ ମନମଧ କହେନା । ଅବଶ୍ୟ ବଳରାମ ବାବୁଙ୍କ ବଙ୍କାଲେଖା ମୋର ସିଧାସଳଖ କୈଫିୟତରେ ଏକା ଫୁତ୍କାରରେ ଧୋଇଗଲା ।

ଏଇଠି ମନେ ପଡେ ପିଲାଦିନର କଥା । ଗାଁ ପ୍ରାଥମିକ ବିଦ୍ୟାଳୟରେ ପଢ଼ିଲା ବେଳେ ବାର୍ଷିକ ଉତ୍ସବରେ (କ୍ୟାରିକେଚର) କୌତୁକିଆ ଅଭିନୟ ୨ ବର୍ଷ କରି "ହସନ୍ତିକା ବହି ଓ ପାଞ୍ଚ ଟଙ୍କା ପୁରସ୍କାର ପାଇଥିଲି । "ଚା'ଖିଆ" ଅଭିନୟରେ ପାଣିକୁ ଛାଣି ଚା'ଗୁଣ୍ଡ ଖାଇ ପେଟ କାମୁଡ଼ା ଓ ୨ୟ ଥର ଗୁଣ୍ଡକୁ ଫୋପାଡି ଗରମ ଗରମ ଚା ଖାଇ ପାଟି ପୋଡି ଯିବାର ଅଭିନୟ କାଳେ ଖୁବ୍ ଜୀବନ୍ତ ହୋଇଥିଲା ବୋଲି ଶିକ୍ଷକ ନାଥ ମାଷ୍ଟ୍ରେ କହୁଥିଲେ ।

ଠାକୁରେ ଗର୍ବ ଗଞ୍ଜନ ବାନାଧରିଛନ୍ତି । କାହାରିଗର୍ବ ସେ ସହନ୍ତିନି । ଅଭିନୟ କରିବାର ଓ ନିର୍ଦ୍ଦେଶନା ଦେବାର ଯେଉଁ ଗର୍ବ ଓ ଗୌରବ ମିଳିଥିଲା ତାହା ତାଙ୍କରି ନିର୍ଦ୍ଦେଶରେ ସ୍ୱତଃ ନିର୍ବାପିତ ହୋଇଗଲା । ଏହାଦ୍ୱାରା ନିଜ କର୍ତ୍ତବ୍ୟ ପ୍ରତି କର୍ମସ୍ପୃହା ଖୁବ୍ ବଢ଼ିଯାଇଥିଲା ।

# ୪୬. ନାମ ପ୍ରେମରେ ମତୁଆଲ

ଥେଟର ପରି ଗାଁରେ ପ୍ରତି ବର୍ଷ ଗୋଟିଏ ଛୋଟକାଟର ଅଷ୍ଟପ୍ରହରୀ ହୁଏ । ସାଇପିଲାଏ ନଡ଼ିଆ, ଚାଉଳ, ପଣସ କଠା, ମୁଗ ଡ଼ାଲି, ଚାଉଳ, ପରିବା ମାଗିଆଣି ନଡ଼ିଆ ବାହୁଙ୍ଗାର ଛାମୁଣ୍ଡିଆଟିଏ ବାନ୍ଧି ତା ତଳେ ତୁଳସୀ ଚଉରା ଓ ଠାକୁରଙ୍କ ଫଟୋ ଥୋଇ ନାମ ଧରିବାକୁ ଆରମ୍ଭ କରିଦେବା ପରେ ଛାଏଁ ଛାଏଁ ଅନ୍ୟମାନେ ଚନ୍ଦାଭେଦା ଧରିଆଣି ଦେଇଥାନ୍ତି । ଘଡ଼ିଏ ପହରେ ନାମ ମଧ ଧରନ୍ତି । ଦଳେ କି ଦୁଇଦଳ କୀର୍ତ୍ତନିଆ ଆସିଲେ କାମ ଚଳିଯାଏ । ପିଲାଏ ଖୁସିହୋଇ ନାମ ଧରି ନାଚନ୍ତି । ଦିନଟିଏ ରାତିଟିଏ କଟିଯାଏ ।

ଛୋଟ ପିଲା ଥିବାବେଳେ ଅଷ୍ଟପ୍ରହରୀ ହେଉଥିବା ଦେଖି ନାମ ଧରି ନାଚେଁ । ବଡ ପିଲା ହେବା ବେଳକୁ ଅଷ୍ଟପ୍ରହରୀର ସଂପୂର୍ଣ୍ଣ ପରିଚାଳନା ଦାୟିତ୍ୱ ଆସି ପଡ଼ିଲା । ନନ୍ଦଘର ଓଉପଡ଼ିଆ ବାଡ଼ି ଖାଲି ପଡିଥାଏ । କୋଡ଼ି କୋଦାଳ ଧରି ତାକୁ ଚାଷ୍ଟି ସଫା କରି ସେହି ଠାରେ ନାମ ହୁଏ । ଏଥିରେ ହାତରୁ କିଛି ଖର୍ଚ୍ଚ ନପଡ଼ିଲେ ମଧ ଓ ଅଭ୍ୟାସର ଆବଶ୍ୟକତା ନଥିଲେ ମଧ ଦାୟିତ୍ୱ ଥାଏ ।   ଦିନଯାକ ଓ ସଂଧ୍ୟାରେ କୀର୍ତ୍ତନଦଳ ଥିବାରୁ ବହୁତ ପିଲା ଓ ସାଇ ଲୋକ ତାଙ୍କ ସଙ୍ଗରେ ନାମ ଧରନ୍ତି । ରାତି ୧୦ଟାପରେ ସକାଳଯାଏ କେହି ନଥାନ୍ତି । ଏତେବେଳେ ଜଣେ ଦୁଇଜଣ ସାଙ୍ଗ ପିଲାଙ୍କୁ ଧରି ନାମ ରଖିବାକୁ ହୁଏ । ଏହି ସମୟଟି ବଡ଼ କଷ୍ଟକର ସମୟ । ଏଥିପାଇଁ ସଜାଗ ହେବାକୁ ପଡ଼େ । ନିୟମ ମୁତାବକ ୨୪ଘଣ୍ଟା ନପୁରଣୁ ନାମ ଛାଡ଼ିବାର ନୁହେଁ ।

ବର୍ଷକର କଥା । ରାତିରେ କେହି ନଥାନ୍ତି । ଏକା ଏକା ନାମଧରି ଚୋଟିପାଟି ପଡ଼ିଥିଲା । ଶୋଇଥିବା ଜଣେ ସାଙ୍ଗକୁ ଉଠାଇ ଦୁଇଜଣ ସକାଳଯାଏ ଚଳାଇନେଲୁ । ହେଲେ ବହୁତ କଷ୍ଟ ହେଲା । ମୋର ଗାନ୍ଧର୍ବ ଜ୍ଞାନଘର ବଡ଼ ଶୂନ । ସମ୍ପୂର୍ଣ୍ଣ ଜ୍ଞାନହୀନ । ସହଜେ ମୃଦଙ୍ଗ କି ଗିନି ଆଜି ଯାଏ ବଜାଇ ଆସେନା । ଏ ସବୁ ନହେଲେ ନାମରେ ଆଗ୍ରହ ଆସେନା । ଯାହାହେଉ ସେମିତି ଧଡ଼ଧଡ଼ କରି ମୃଦଙ୍ଗ ବଜେଇ ସକାଳ ଯାଏ ନାମ ରଖାଯାଇଥାଏ । ଭୋରରୁ ଉଠିଆସି ଅଲିଆ ବୋଉ ଖୁଡ଼ୀ ଆମ ଦୁଇଜଣଙ୍କ ହାତର ଦଶା ଦେଖି ଦୁଇଜଣଙ୍କୁ ଉତ୍ସାହିତ କଲା ଓ ଆଉ ଜଣେ ଦୁଇଜଣଙ୍କୁ ବହୁତ ହଲାଇ ହଲାଇ ଉଠାଇ ଦେଲା । ଏହାଛଡା ବାଲିଗୁଡା ଓ ମାଲକାନାଗିରିରେ ଅଷ୍ଟ ପ୍ରହର କାର୍ଯ୍ୟକ୍ରମରେ ସଂପୁର୍ଣ୍ଣ ସହଯୋଗ ଦେଇଥିବାର ମନେ ଅଛି ।

ଏହି ନାମର ପ୍ରଭାବ ଆଜିଯାଏ ରହିଛି । ଯେଉଁଠି ନାମ ହେଲେ ବି ଛାଏଁ ଛାଏଁ ଟାଣି ହୋଇଯାଏ । ଭୁବନେଶ୍ୱର ବାୟା ମଠ, ଦଳେଇ ଘର । ବାଲିଗୁଡ଼ାରେ ଓ ମାଲକାନାଗିରି

ଶିବାନନ୍ଦ ଆଶ୍ରମରେ ଘଡ଼ିଏ ପହରେ ନାମ ପାଖରେ ବସିବା ଓ ଠିଆ ହେବାଦ୍ୱାରା ବହୁତ ଶାନ୍ତିମିଳେ । ବାବାଜୀ କକେଇ ପ୍ରଶଂସା କରି କହିବାବେଳେ ଥରେ ଅଭିମାନରେ କହିଲି ଯେତେବେଳେ ପୋଷିବା ପାଳିବା କଥା ସେତେବେଳେ ବାବାଜୀ ହୋଇ ଘର ଛାଡ଼ିଲ । ଆଉ ଏବେ ପ୍ରଶଂସା କଲେ କ'ଣ ହେବ ? ଏତିକିରେ ସେ ରାଗିଯାଇ କହିଲେ ରେ ମୂର୍ଖ ! ତୁ କ'ଣ ନାମର ମହିମା ଜାଣିବୁ । ତୁ କ'ଣ ଭାବୁଛୁ ଛାଏଁ ଛାଏଁ ବଡ଼ ହୋଇଗଲୁ । ଘରେ ଗୃହୀ ହୋଇ ପଡ଼ି ରହିଥିଲେ କୋଟିଏ ପୁରୁଷରେ ଉଦ୍ଧାର ସମ୍ଭବ ନୁହେଁ । ସନ୍ୟାସୀ ହୋଇ ନାମ ନେବାରୁ ଆଗକୁ ଓ ପଛକୁ ସାତ ସାତ ପୁରଷ ଉଦ୍ଧାର ହୋଇଛନ୍ତି । କେବଳ ସେହି ନାମ ପ୍ରଭାବରେ ତୁମେ ସବୁ ମଣିଷ ହୋଇଛ । ମୁଁ ମୋର ଭୁଲ ବୁଝିଲି । ସେତିକି ନୁହେଁ ତାକୁ ସମ୍ପୂର୍ଣ୍ଣ ଗ୍ରହଣ କରି ଏବେ ଯାଏ ନାମବ୍ରହ୍ମରେ ବିଶ୍ୱାସ ଓ ଶ୍ରଦ୍ଧା ପୋଷଣ କରିଅଛି । ତାହା ଶେଷ ନିଶ୍ୱାସ ଯାଏ ଥାଉ; ଏତିକି ପ୍ରାର୍ଥନା ।

"ଓଁ ଇତି ଏକାକ୍ଷର ବ୍ରହ୍ମ ବ୍ୟାହରନ୍ ମାଂଅନୁ ସ୍ମରନ = ଯଃ ପ୍ରଯାତି ତ୍ୟଜନ୍ ଦେହଂ ସଃଯାତି ପରମାଂଗତିଂ" । "ଭଗବାନ ସର୍ବତ୍ର ବିରାଜିତ" ଏହି ଦୃଢ଼ ଜ୍ଞାନ ସହ ଉତ୍ତରାୟଣ, ଶୁକ୍ଳପକ୍ଷ ଦିବାସମୟରେ ଓଁ କାର ଉଚ୍ଚାରଣ କରି ଭଗବତ୍ ସ୍ମରଣ ସମୟରେ ପ୍ରାଣତ୍ୟାଗ କଲେ ଶେଷଗତି ଅର୍ଥାତ୍ ଭଗବତ୍ ପ୍ରାପ୍ତି ନିଶ୍ଚିତ । କଳିଯୁଗରେ ନାମହିଁ ମୁକ୍ତିର ଶାଶ୍ୱତ ସହଜ ପଥ; କାମନା ଥିଲେ ମଧ ଏଜ୍ଞାନ, ଏସ୍ମରଣ ଓ ଯେ ଅଭ୍ୟାସ ସେହି ଦୟାମୟ ନ ଚାହିଁଲେ କ'ଣ ମୃତ୍ୟୁ ସମୟରେ ସମ୍ଭବ ?

## ୪୭. ଜମିଦାରଙ୍କ ଯନ୍ତାରେ

ସ୍କୁଲରୁ ଖବର ରଖି ଯେ ଟିକେ, ମୁଣ୍ଡ ଟେକିଲା ବା ପାଠପଢ଼ିଲା ତାକୁ କିଛି ଧନ୍ଦାରେ ଜୁଟାଇଦେଇ ସେ କଢ଼ଟିକୁ ଠୁଙ୍କିଦେବା ଜମିଦାର ଘରର ଏକ ପୁରାତନ କୌଶଳ । ଶେଷକୁ ସେହି ଯନ୍ତାର ଶିକାର ହୋଇ ଜମିଦାର ଘରେ ପହଞ୍ଚି ତାଙ୍କ ନାତୀ ନାତୁଣୀଙ୍କୁ ସ୍କୁଲକୁ ନବା ଆଣିବା କାମଟି ପାଇ ମଧ ନିଜ ପଢ଼ା ଛାଡ଼ି ନଥାଏ । ତା ସହିତ ସକାଳୁ ଦିଅଁଙ୍କପାଇଁ ଫୁଲ ତୋଳା କାମଟି ସ୍ୱତଃ ଆଗ୍ରହର ସହ ବାଛି ନେଇ ଥାଏ । ବୋଝ ଉପରେ ନଳିତା ବିଡ଼ା ପରି ଯଦି ଚାକରମାନଙ୍କ ରୋଷେଇରେ ଲୋକ ନଥାଏ ତେବେ ସେ ଦାୟିତ୍ୱ ମଧ ମଝିରେ ମଝିରେ ପଡେ । ଅନ୍ୟସବୁ କାମ ଚଳେ । ଏ ରୋଷେଇକାମ ଆଦୌ ଚଳେନା । ବଡ଼ ହାଣ୍ଡିରେ ରୋଷେଇ । ତାକୁ ଉଠାଇବା ଶକ୍ତିର ବାହାରେ । ବଡ଼ ଦଣ୍ଡ ପଡ଼ିଯାଏ । ହେଲେ ସେହି ଚାକରମାନଙ୍କ ଭିତରୁ ଜଣେ ଦୁଇଜଣ ବତାଇ ଦିଅନ୍ତି ଓ ସାହାଯ୍ୟ କରନ୍ତି । ବର୍ଷ ଭିତରେ ଏମିତି ପ୍ରାୟ ପାଞ୍ଚସାତ ଥର ଦାୟିତ୍ୱ ପଡ଼ିଥିବ । ଠାକୁରଙ୍କୁ ଡାକେ କେମିତି ଗୋଡ଼ ହାତ

ନପୋଡୁ । ରୋଷେଇକୁ କିଏ ଖାଏ କି ନଖାଏ ବୁଝିବାକୁ ବେଳ ନଥାଏ; କାରଣ ତା'ପରେ ସ୍କୁଲକୁ ଚାଲିଯାଏ । ରୋଷେଇତ ଜଣା ନାହିଁ । ତେଣୁ କଞ୍ଚା, ପୋଡ଼ା ଦରସିଝା ଖାଇ ନିଶ୍ଚୟ ବହୁତ ଲୋକ ଗାଳି ଦେଉଥିବେ । ତେଣୁ ସେ କାମଟା କ୍ରମେ ବନ୍ଦ ହୋଇଗଲା; ସେହି ମାନଙ୍କ ନିଃଶ୍ୱାସରୁ; ହେଲେ ସ୍କୁଲଯିବା କାମଟା ଠିକ୍ ଠିକ୍ ଚାଲିଥାଏ । ଯାତରା ଦେଖାକୁ କଦଳୀ ବିକା କାମ ମନ୍ଦ ନୁହେଁ । ସ୍କୁଲ ଦରମା ଦେବଟଙ୍କାରୁ ଟଙ୍କାଟିଏ ମିଳିଥାଏ ସିରସ୍ତାରୁ ।

ଏହିପରି ଛ'ମାସ ଗତ ହେବାପରେ ପୁଅଝିଅ ଦୁଇଟି ବ୍ୟବହାର ଓ ପାଠପଢ଼ାରେ ବହୁତ ଆକୃଷ୍ଟ ହୋଇ ପଡ଼ିଲେ । ପିଲାମାନଙ୍କ ହୃଦୟ ନିର୍ମଳ, ସେଥିରେ ଥାଏ ଶାଶ୍ୱତ ସ୍ନେହ ଓ ପ୍ରେମ । ଆବିଳତାର ବା ନିଜପରର ଭାବ, ଗରିବ ବଡ଼ଲୋକଭାବ ନଥାଏ । କିନ୍ତୁ ତାଙ୍କ ପରିବାର ତାକୁ ଆଉ ସହି ପାରିଲେନି । ସେ ସଂପର୍କ ବଢ଼ିଥିଲେ ଆଉ ବୋଧେ ସେଠୁ ଖସି ଆସିବା ସମ୍ଭବ ହୋଇନଥାନ୍ତା । ସଂପର୍କଟା ଅତି ନୀବିଡ଼ ହୋଇ ଆସୁଥିବା ବେଳେ ଠାକୁରେ ଦୟାକଲେ "ମୁଁ ଯାକୁ ହୁଅଇ ସଦୟ । ଦୃଢେ କାଟଇ ମାୟାମୋହ" । ଦିନେ ଭୋରରୁ ଫୁଲ ତୋଳିବା ବେଳେ ଗୀତଗୋବିନ୍ଦ ବୋଲୁଥାଏ ଧୀରେ ଧୀରେ ତନ୍ମୟହୋଇ । ବୋଧେ ରାଧାମାଧବଙ୍କ ମନକୁ ସେ ଗୀତଟି ପାଇଗଲା । ସେ ମୁକ୍ତିର ବ୍ୟବସ୍ଥା କରିଦେଲେ । ମୁକ୍ତିର ଆଦେଶ ମିଳିଗଲା ।

ସେତେବେଳକୁ ନିଜର ପାଠପଢ଼ା ସଂପୂର୍ଣ୍ଣ ଅବହେଳିତ ହୋଇଯାଇଥାଏ । ମାତ୍ର ଜୀବନର ନିୟମିତତା ଯୋଗୁଁ ସ୍ୱାସ୍ଥ୍ୟରେ ଟିକିଏ ଉନ୍ନତି ଘଟିଥାଏ । ଆମ ସଂପର୍କରେ ଉନ୍ନତି ଦେଖି ଅସହିଷ୍ଣୁ ହୋଇ ଏହିଯେ ମୁକ୍ତି ମିଳିଲା ତାହହିଁ ଭବିଷ୍ୟତରେ ଉନ୍ନତି ପଥ ଉନ୍ମୁକ୍ତ କରିଦେଲା । ଠାକୁରଙ୍କ ପରମ କରୁଣାରୁ ସେତକ ନ ମିଳିଥିଲେ ଜୀବନଟି ସେହିଠାରେ ଆବଦ୍ଧ ହୋଇଯାଇଥାନ୍ତା; ନିଶ୍ଚିନ୍ତ ଭାବରେ, ଏଥିରେ ସନ୍ଦେହ ନାହିଁ । ସେହି ତ୍ରାଣକର୍ତ୍ତାହିଁ ଏହି ମୁକ୍ତିର ବ୍ୟବସ୍ଥା କରି ଶଙ୍ଖଚକ୍ରଉଦ୍ଧାର କରିଦେଲେ ।

## ୪୮. ଦିଅଁ ଦର୍ଶନ

ସେହି ବର୍ଷଟି ବିଶେଷ ସ୍ମରଣୀୟ ହେବାର କାରଣ ବନ୍ଧନରୁ ମୁକ୍ତି ମଳିବା ସହ ଦିଅଁ ଦର୍ଶନ ଓ ପ୍ରତ୍ୟକ୍ଷ ବର ଲାଭ ହୋଇଥିଲା । ଆଜିମଧ ସେ ଦୃଶ୍ୟ ଆଖିରେ ପ୍ରତିୟମାନ ହେଉଅଛି ଏବଂ ସ୍ମୃତିରେ ଜୀବନ୍ତ ହୋଇ ରହିଅଛି । ସେଥିପାଇଁ ସେହି ପରମେଶ୍ୱରଙ୍କ ପାଖରେ ଜୀବନ ସମର୍ପିତ ହେବା ସହ କୃତଜ୍ଞତାର ନିବୀଡପାଶରେ ଶକ୍ତଭାବେ ଆବଦ୍ଧ ହୋଇଯାଇଛି । କାର୍ତ୍ତୀକ ମାସରେ ସାତଦିନ ଜମିଦାର ଘର ଓସାରିଆ ଦାଣ୍ଡ ପିଣ୍ଡାରେ ଭାଗବତ ସପ୍ତା ବସେ । ସାତଦିନ ମଧରେ ବାରସ୍କନ୍ଧ ଭାଗବତ ପଢ଼ିଶେଷ କରାଯାଏ । ଶ୍ରୋତାବକ୍ତା ଅରୁଆ ଖାଇ ଶୁଦ୍ଧପୂତ ଭାବେ ଏକାର୍ଯ୍ୟ କରନ୍ତି । ଏତିକି ବେଳେ ରାଧା ଗୋବିନ୍ଦଙ୍କୁ ବିମାନରେ ବସାଇ

ମନ୍ଦୀରରୁ ଆଣି ସପ୍ତାସ୍ଥାନରେ ବିଜେ କରି ରଖାଯାଏ । ତାଙ୍କରି ଆଗରେ ଭାଗବତ ପଢ଼ାଯାଏ । ବାଞ୍ଛ ଷଡ଼ଙ୍ଗୀ ଟିଳମାମୁଙ୍କ ବାପା । ବୃନ୍ଦାବନ ଚନ୍ଦ୍ରଙ୍କର ସେବକ ଥିଲେ । ତାଙ୍କ ପରେ ତାଙ୍କ ବଡ଼ ପୁଅ ଟିଳମାମୁ ସେ କାମ କରନ୍ତି । ତାଙ୍କର ଠାକୁରଙ୍କ ପ୍ରତି ନିଷ୍ଠା ଖୁବ୍ । ପରେ ଶୁଣିଲି ଏହି ଆଳରେ ଠାକୁରଙ୍କ ଆସବାବପତ୍ର ଓ ଜମିଦାରଙ୍କ ଠାରୁ ଜମି ଓ ଧନ ଲୁଣ୍ଠନ ତାଙ୍କର ଉଦ୍ଦେଶ୍ୟ ଥିଲା ଓ ସେ ସେଥିରେ କୃତକାର୍ଯ୍ୟ ହୋଇ ଥିଲେ । ହେଲେ ତାଙ୍କର ଠାକୁରଙ୍କ ପ୍ରତି ନିଷ୍ଠା ଦେଖିଲେ ଏହା ସେତେବେଳେ ବିଶ୍ୱାସ ହେଉନଥିଲା । ଠାକୁରଙ୍କୁ ସୁନ୍ଦର ଭାବେ ସ୍ନାନ କରେଇ, ହଳଦିଆ ପାଟ ପିନ୍ଧାଇ, ଚୋପି ଚୋପି ଚନ୍ଦନ ଟିପା ସାଙ୍ଗକୁ କପାଳରେ ଠିଆଚିତା ଓ ତୁଳସୀ ଦଳ, ମଥାରେ ମୁକୁଟ ଓ ଶିଖୀଚୂଳ ସହ ଫୁଲ ହାରରେ ସଜାଇ ତାଙ୍କୁ ଜୀବନ୍ତ କରି ଦିଅନ୍ତି । ଯେଡ଼େ ଅଭକ୍ତ ହେଲେ ମଧ ଠାକୁରଙ୍କର ସେ ବେଶଟି ଦେଖିଲେ ମୋହିତ ହୋଇଯିବ ।

ଏହିପରି ସପ୍ତାହ ମଧ୍ୟରେ ଗୋଟିଏ ରାତିର କଥା । ସଂଧ୍ୟାପାଠ ସରିଲା । ଯେ ଯାହା ବାଟରେ ଗଲେ । ଠାକୁରେ ସେହି ବାରଣ୍ଡାରେ ଥାନ୍ତି । ପହଡ଼ ହୋଇ ନଥାଏ । ଅନ୍ଧାର ରାତି, ଠାକୁରଙ୍କ ଆଗରେ ଦୀପଟିଏ ଜଳୁଥାଏ । ବୋଧହୁଏ ଠାକୁରଙ୍କୁ ମୁଁ ଜଗିଥାଏ । ଏକୁଟିଆ ନିରୋଳାରେ ଠାକୁରଙ୍କର ମୋର ଯେତେବେଳେ ଦେଖା ହୋଇଗଲା ତାଙ୍କୁ ଆଉ ଛାଡେ କିଏ ? ଭଲଭାବରେ ଜାଣିଥିଲି ଓ ଶୁଣିଥିଲି ଯେ ସେହିଁ ସର୍ବସୁଖର ଖଣି । ଏକୁଟିଆ ଅନ୍ଧାର ରାତିରେ ସୁନାଖଣିଟିଏ ଦେଖିଲେ କିଏବା ମୁଠାଏ ନ ଉଠାଇବ ? ତାଙ୍କୁ ନିଠାଇ ଓ ନିରେଖି ବହୁସମୟ ଚାହିଁ ଦେଖିଲି ସେ ଜୀବନ୍ତ ହୋଇଯାଇଛନ୍ତି । ଏହାଦେଖି ଆଖିରୁ ଲୁହ ଆସିବା ସ୍ୱାଭାବିକ । ଏଥିରେ ବିଚଳିତ ହୋଇ ଠାକୁରେ କଳ୍ପତରୁ ହୋଇ ବର ଯାଚିବାରେ ମନେ ପଡ଼ିଲା ଏହି ଭକ୍ତିଯୋଗୁଁ ଯଦି ଦର୍ଶନ ଓ ବର ମିଳିଲା ଯେ ଭକ୍ତିଟି ଅଟଳ ରହୁ । ଅନ୍ନଚିନ୍ତା ସେତେବେଳେ ବଡ଼ ଚିନ୍ତା ଥିବାରୁ ବଗଡା ଭାତ ଓ ମୋଟାଲୁଗା ମଧ ମାଗି ମନସ୍ଥିର ହେଲାନି । ମନୁଷ୍ୟଗତ ନୀଚବୁଦ୍ଧି ଓ ପିଲାଳିଆ ଚଗଲାମନର ବଶବର୍ତ୍ତୀ ହୋଇ ଗୌରବର୍ଣ୍ଣର ନିଜମତାନୁଚାରିଣୀ ଭାର୍ଯ୍ୟାମଧ ମାଗିବସିଲି ।

ଶେଷ ବରଟି ମାଗିବା ବେଳେ ହଠାତ୍ ଚେତା ପଶିଲା କଳ୍ପତରୁଙ୍କୁ ପାଇ କଣ କଲି ? କ'ଣ ମାଗିଲି ! ଏତକ ଭାବୁ ଭାବୁ ଆଖି ପିଛୁଳା ପଡ଼ିଗଲା ଓ ଚାହିଁ ଦେଖିବାରେ ସେହି ସୁସଜିତ ପଥର ମୂର୍ତ୍ତୀ ଥିଲେ ସତ ସେ ଆଉ ଜୀବନ୍ତ ନଥିଲେ । ମନରେ କିଛି ଅବଶୋଷ ଆସିଲେ ମଧ ଦୃଢ଼ତା ଆସିଲା ଯେ ସେ'ତ ଏ ଜୀବନର, ଦେହର ଓ ମନର ଚାଳକ । ଯାହା ବାସ୍ତବସତ୍ୟ ମନର ଶୋଷ, ଦେହର ଅବାଶ୍ୟକତା ଓ ପ୍ରାଣର ତ୍ରାଣ କାରଣ ତାହାହିଁ ମାଗିଛି । ଏତକ ମିଳୁ । ପୁଣି ଦେଖାହେଲେ ଆଉ ଯାହା ମାଗିବି । ହେଲେ ଆଉତ ଦେଖା ହେଉନି, ମାଗିବି କ'ଣ ?

ବାସ୍ତବରେ ଭଗବାନଙ୍କୁ କଳ୍ପତରୁ କହି ଆମେ ସୀମିତ କରିଦେଉଛୁ । କଳ୍ପତରୁକୁ ଯାହା ମାଗିବ ସେ ଦେବେ । ହେଲେ ଭଗବାନଙ୍କୁ ଯାହା ନମାଗିଥିବ ସେ ତା ମଧ୍ୟ ଦିଅନ୍ତି । ତାଙ୍କର ଐଶ୍ୱର୍ଯ୍ୟ ଓ ମହିମାର ସୀମା ନାହିଁ । ବରଦାନରେ ସେ ନିପୁଣ ଓ ସହସ୍ରହସ୍ତ । ତାଙ୍କ ଦାନ କଳ୍ପତରୁର ଶହେଗୁଣ । ତେଣୁ ସେହି ଦୟା ସାଗର ଦୀନବନ୍ଧୁଙ୍କୁ କଳ୍ପତରୁ କହି ସୀମିତ କରିଦେବାଟା ନିଜ ମନର ନୀଚତା ଛଡ଼ା ଆଉ କ'ଣ ହୋଇପାରେ ?

## ୪୯. ଗଢ଼ିବା ଦେଉଳ ଭାଙ୍ଗିଲୁ

ପିଲାମାନେ ନଈକୂଳରେ ବସି ନଈ ବାଲିରେ କେତେଘର, ଦେଉଳ, ଗଛ ବୃକ୍ଷ ଗଢ଼ିଚାଲନ୍ତି । ପୁଣି ଘଡ଼ିକେ ସେ ସବୁ ଭାଙ୍ଗି ବାଲିକୁ ସମତଳ କରିଦିଅନ୍ତି । ପୁଣି ଗଢ଼ନ୍ତି । ପୁଣି ଭାଙ୍ଗନ୍ତି । ସେହିପରି ଆମେ ମାଟିଇଟା ବୋହି, ଛଣ, ବାଉଁଶ ମାଗି ନିଜହାତରେ ଗଢ଼ିଥିବା ଯେଉଁ ସ୍କୁଲରେ ପଢୁଥିଲୁ ତାକୁ ବି ସେମିତି ପିଲା ମନରେ ଭାଙ୍ଗିଦେଲୁ ।

ଦିନକର ଘଟଣା ସଚିବାବୁ ଆସି ଦୁଇଘଣ୍ଟା ପାଠ ପଢ଼ାଇଲେ । ଦଶମ ଶ୍ରେଣୀର ପ୍ରାରମ୍ଭ ସମୟ । ଇଂରାଜୀ, ସଂସ୍କୃତ, ବିଜ୍ଞାନ ଓ ଗଣିତରୁ ପ୍ରଶ୍ନଗୁଡ଼ିଏ ଡ଼ାକିଲେ । ବସିରହିଲେ । ଉତ୍ତର ଲେଖି ଦେବାକୁ କହିଲେ । ସେତେବେଳେ ସେ ଶ୍ରେଣୀରେ ବୋଧେ ଆମେ ୧୦ଜଣ ଥିଲୁ କି କ'ଣ । ସମସ୍ତେ ଦୁଇଘଣ୍ଟା ମଧ୍ୟରେ ଉତ୍ତର ଲେଖିଦେଲୁ । ସେ ସେହିଠି ବସି ତାକୁ ଦେଖି ମୂଲ୍ୟାଙ୍କନ କଲେ । ଶେଷରେ ଶୁଣାଇଦେଲେ ପରୀକ୍ଷାଫଳ । ଦୁର୍ଯ୍ୟୋଧନକୁ କହିଲେ ଯେ ୨ୟ ଶ୍ରେଣୀର ଉତ୍ତର ଦେଇଛି । ଚେଷ୍ଟା କଲେ ୧ମ ଶ୍ରେଣୀ ପାଇ ପାରିବ । ଉମାକୁ କହିଲେ ଯେ ୩ୟ ଶ୍ରେଣୀର ଉତ୍ତର ଦେଇଛି । ଚେଷ୍ଟାକଲେ ୨ୟ ଶ୍ରେଣୀ ପାଇଁ ପାରେ । ମୋତେ କହିଲେ ୟାର ଫେଲ ଶ୍ରେଣୀ । ଯେ ଖୁବ୍ ଖଟିଲେ ୩ୟ ଶ୍ରେଣୀ ପାଇ ପାରେ । ବାକିମାନଙ୍କ କଥା "ନୈବଚ ନୈବଚ" ।

ସେ ବୋଧେ ଏପରି ପରୀକ୍ଷାକରି କହିବାର ଉଦ୍ଦେଶ୍ୟ ଥିଲା ଯେ ଆମେ ଅଧିକ ପରିଶ୍ରମକରି ପଢ଼ିବୁ ଓ ଶେଷବର୍ଷ ପାଇଁ ପ୍ରସ୍ତୁତ ହେବୁ । ମାତ୍ର ଏହାର କୁ ପ୍ରଭାବ ଆମ ଉପରେ ପଡ଼ିଲା । ସେହିଦିନ ସେ ଶ୍ରେଣୀଛାଡ଼ି ଯିବାପରେ ଆମଭିତରେ ବିଚାର ପଡ଼ିଲା । ଆମେ ତ ଅଢ଼େଇ ବର୍ଷ ମାଟି ବୋହିଲୁ, ଇଟା ବୋହିଲୁ, ଛଣ ବାଉଁଶ ମାଗିଲୁ । ଭଲ ଶିକ୍ଷକ ନାହାନ୍ତି । ଭଲ ଭାବେ ସବୁ ଶ୍ରେଣୀରେ ପାଠ ପଢ଼ା ହଉନି । ଏଥିରେ ଆମର କି ଦୋଷ । ଏମିତି ଚାଲିଲେ ଆମ ଭିବିଷ୍ୟତ ନିଶ୍ଚିତ ଭାବେ ଅନ୍ଧକାରାଚ୍ଛନ୍ନ । ଏବେ କିଛି ସମୟ ଅଛି । ଏବେ ଚାଲ ସମସ୍ତେ ଶ୍ରେଣୀ ଛାଡ଼ି ଚାଲିଯିବା ଏବଂ ଅନ୍ୟତ୍ର ଭାଗ୍ୟ ପରୀକ୍ଷା କରିବା । ଆଲୋଚନା ପରେ ଏ ଯେଉଁ ନିଷ୍ପତ୍ତି ହେଲା ତାକୁ ସମସ୍ତେ ପାଳନ କରିବାକୁ ପ୍ରତିଜ୍ଞା କରି ସ୍ଥିର କଲୁ । ତହିଁ ଆରଦିନ ଠାରୁ ଆଉ କେହି ସ୍କୁଲକୁ ଆସିଲେନି ।

ସଚ୍ଚିବାବୁଙ୍କ ମୁଣ୍ଡରେ ତେନ୍ତୁଳିଆ ବିଛା କାମୁଡ଼ିଲା । ଭଲ କରିବାକୁ ଯାଇ ସେ ଭେଲରେ ପଡ଼ିଲେ । ଆମଘରକୁ ଥରେ ସକାଳେ ଆସିଲେ । ମୁଁ ତାଙ୍କୁ ଆଉ ଫେରି ଯିବାକୁ ସ୍ପଷ୍ଟ ମନା କରିଦେଲି । ଚନ୍ଦ୍ରମଣିବାବୁ ଡ଼କାଇଥିଲେ । ତାଙ୍କୁ ମଧ୍ୟ ସେହିପରି ମନା କରିଦେଲି । ପରେ ଶୁଣିଲି ଉମା ତାର ଭାଇ ପାଖରେ ଯାଇ ଦୋହଲୀ ମଡ଼େଲ ସ୍କୁଲରେ ନାମ ଲେଖାଇ ସରିଲାଣି । ଦୁର୍ଯ୍ୟୋଧନ ସଚ୍ଚିବାବୁଙ୍କ ପ୍ରବର୍ତ୍ତନାରେ ଏକା ସ୍କୁଲକୁ ଫେରି ଆସିଛି । ଅନ୍ୟମାନଙ୍କର ପତ୍ତା ନାହିଁ । ମାଇନର ପାଶ୍‌ପରେ ଏ ଘରୋଇ ନୂଆ ସ୍କୁଲରେ ପଢ଼ିବା ଫଳରେ ନିୟମିତ ସ୍କୁଲ ପଢ଼ା ଶେଷ ହୋଇଥିଲା । ଯାହାଟିକେ ଥିଲା ଏ ସ୍କୁଲଛାଡ଼ିବା ପରେ ସେତକ ମଧ୍ୟ ପୁରା ବନ୍ଦ ହୋଇଗଲା ।

ହେଲେ ଈଶ୍ୱରଙ୍କ ଇଚ୍ଛା ବଳବତ୍ତର । ଦେଢ଼ବର୍ଷ ପରେ ମାଟ୍ରିକ୍ ଫଳାଫଳ ଠିକ୍ ଓଲଟା ହେଲା । ଦୁର୍ଯ୍ୟୋଧନ ଫେଲ ହେଲା । ଉମା ୩ୟ ଶ୍ରେଣୀ ପାଇଲା ଓ ମୋର ହେଲା ୨ୟ ଶ୍ରେଣୀ । ଏସବୁ ଈଶ୍ୱରଙ୍କ ଇଚ୍ଛା ନୁହେଁତ ଆଉ କ'ଣ ? ସେତେବେଳେ କ'ଣ କପି କରି ଏପରି ହୋଇଥିଲା ? କେବଳ ଈଶ୍ୱରଙ୍କ ଇଚ୍ଛା ଓ ତାଙ୍କରି କରୁଣା ଛଡ଼ା ଏଠି ଆଉ କିଛି ନଥିଲା କି ନାହିଁ ।

## ୫୦. ନାଆ କୂଳ ଧଇଲା

ସ୍କୁଲଛାଡ଼ି ଏହିପରି ଦୁଇମାସ ଘରେ ବସିବା ଓ ବୁଲିବା ସମୟରେ ଦିନେ ଠାକୁରେ ଡ଼ାକି କହିଲେ କିରେ ତୁ କ'ଣ ଆଉ ପାଠ ପଢ଼ିବୁନି ? ଏତିକିରେ ଛାଡ଼ିଦେବୁ ? କେଜାଣି କାହିଁକି ସକାଳୁ ମୁଠାଏ ପଖାଳଖାଇ ଏକ ମୁହାଁ ଚାଲିଲି ସାଲେପୁର । କେବେ ଦିନେ ଯାଇନି । ପଚାରି ପଚାରି ପହଞ୍ଚିଗଲି ସାତ ମାଇଲ ବାଟ ଚାଲି । ପଚାରିବୁଝି ସାଲେପୁର ହାଇସ୍କୁଲ ଛାତ୍ରାବାସରେ ମଧ୍ୟ ପହଞ୍ଚିଲି । ସେତେବେଳେ ଶ୍ରେଣୀ କାର୍ଯ୍ୟ ଚାଲିଥାଏ । ଛାତ୍ରାବାସ ବାରଣ୍ଡାରେ ୪ଟା ବାଜିଲା ।

ସେହିଠାରେ ବସି ଖବର ନେଲି ମୋର ପୂର୍ବ ସହପାଠୀ ସଉରୀ ମଧ୍ୟ ୧୧ଶ ଶ୍ରେଣୀରେ ପଢ଼ିବା ସହ ପ୍ରଧାନ ଶିକ୍ଷକଙ୍କ ପାଖରେ ଇଂରାଜୀ ଟିଉସନ ହେବାର ସୁଯୋଗ ପାଇଥାନ୍ତି । ରାତିରେ ମେସରେ ଖାଇ ତାଙ୍କରି ସହ ଏକା ଖଟରେ ଶୋଇ ପରାମର୍ଶ କରାଗଲା । ପରଦିନ ସକାଳୁ ପ୍ରଧାନ ଶିକ୍ଷକଙ୍କୁ ସାକ୍ଷାତ ହେବ । ନାମ ଲେଖାଇବାକୁ କୁହାଯିବ । ସେଇଆ ହେଲା । ମାତ୍ର ସେ ଶ୍ରେଣୀରେ ବହୁତ ପିଲା, ବସିବାର ଯାଗା ନାହିଁ; ତେଣୁ ନାମଲେଖା ଅସମ୍ଭବ ବୋଲି ପ୍ରଧାନ ଶିକ୍ଷକ ଶୁଣାଇଦେଲେ । ସେତିକିରେ ଫେରି ନଆସି ସଜ୍ଜଳ ନୟନରେ ସେଠି ଛିଡ଼ା ହୋଇ ରହିବାରୁ ତାଙ୍କର ମନ ତରଳିଲା । ସେ କହିଲେ ହଉ ଆସି ଘରୋଇ ଭାବେ ୧୦ମ ଶ୍ରେଣୀରେ ଯୋଗ ଦିଅ । ଆରବର୍ଷକୁ ନାମ ଲେଖାଇବା ପରୀକ୍ଷା ଫଳ ଦେଖିବା ପରେ । ଏତକ

ବରଦାନ ମିଳିବା ପରେ ପୁଣି ସାତ ମାଇଲ ଗାଁକୁ ଆସି ରାତିରେ ପହଞ୍ଚି ବୋଉକୁ ଜଣାଇ ଦିଆଗଲା । ବାସ୍ତବିକ୍ ଭଗବାନ ସମୁଦ୍ର ଜୁଆରରେ ଭାସି ଯାଉଥିବା ଖଣ୍ଡିଆ ନାଆଟିକୁ କୂଳରେ ଲଗାଇ ଦେଲେ । ଏତକ ନ ହୋଇଥିଲେ ସବୁଦିନ ପାଇଁ ପୋଥିରେ ଡ଼ୋର ବନ୍ଧା ହୋଇଯାଇଥାନ୍ତା ।

ଇଏତ ଆଉ ଆମଗାଁ ନୂଆ ଘରୋଇ ସ୍କୁଲ ନୁହେଁ । ସାଲେପୁର ଏକ ପୁରୁଣା ପ୍ରତିଷ୍ଠିତ ସ୍କୁଲ । ସେଠି ସେତେବେଳେ ତିନିଟି ମେସ୍ ଚାଲୁଥିଲା । ବହୁ ଦୂରଦୂରାନ୍ତରୁ ପିଲା ଆସିରହି ପଢୁଥିଲେ । ସାଲେପୁର ବଡ଼ ବଜାର ନହେଲେ ମଧ୍ୟ ସେଠି ଦୁଷ୍ଟପିଲା ବଡ଼ ବଜାରୀ ହୋଇଯିବାର ସବୁ ସୁବିଧାଥିଲା । ତା ସାଙ୍ଗକୁ ଥିଲା ଜଣେ ଭଲ ମଣିଷ ହୋଇ ବାହରିବାର ସବୁ ସୁବିଧା । ବିଦ୍ୟାଳୟ ଓ ଛାତ୍ରାବାସରେ ନିୟମିତ ସକାଳ ସଂଧ୍ୟା ହାଜିରା ସହ ପ୍ରାର୍ଥନା, ପତ୍ରିକା ପ୍ରକାଶ, ସାପ୍ତାହିକ ତର୍କ ସଭା, ପଢ଼ା ସମୟରେ ଛୁଞ୍ଚି ପଡ଼ିଲେ ଶବ୍ଦ ଶୁଭିବ । ଏଭଳି ଶୃଙ୍ଖଳା ଓ ନୀରବତା କ୍ୱଚିତ୍ ଦେଖାଯାଏ । ଶ୍ରେଣୀ କାର୍ଯ୍ୟରୁ ଗୋଟିଏ ହେଲେ ବାଦ ପଡ଼ିବନି କି ମିନିଟିଏ ବିଳମ୍ବ ମଧ୍ୟ ଦେଖାଯାଏନି ।

ଶାନ୍ତ ସରଳ ସାଧା ଧୋତି ପଞ୍ଜାବି ଓ ଛିଣ୍ଡା ଚପଲ ପରିହିତ ମଣିଷଟି ଏତେବଡ ଅନୁଷ୍ଠାନରେ ଏ ଯେଉଁ ଦେବ ସୁଲଭ ଶୃଙ୍ଖଳା ରକ୍ଷା କରାଇ ପାରିଥିଲେ ତା' କେବଳ ତାଙ୍କର ନିଷ୍ଠା ଓ ଅଧ୍ୟାତ୍ମ ବିଶ୍ୱାସ ଯୋଗୁଁ ସମ୍ଭବ ଥିଲା । ଛାତ୍ରାବାସରେ ପିଲାଏ କ'ଣ କରୁଥିଲେ, କିପରି ପଢୁଥିଲେ, ଶ୍ରେଣୀରେ କିପରି ଓ କଣ ପଢ଼ା ହେଉଥିଲା ସେ ସବୁ ଖବର ତାଙ୍କ ପାଖରେ । ହେଲେ ସେ ଥିଲେ ଏକ କର୍ମ ସନ୍ୟାସୀ । ସବୁକିଛି କରି ମଧ୍ୟ କେଉଁଥିରେ ସଂପୃକ୍ତ ନଥିଲେ । ନିଜେ ଶେଷ ଶ୍ରେଣୀରେ ଘଣ୍ଟା ଘଣ୍ଟା ଧରି ଶ୍ରେଣୀ ବାହାରେ ଛୁଟିରେ ଓ ସକାଳବେଳା କୋଚିଂ କ୍ଲାସ ନିଅନ୍ତି । ସବୁ ବିଷୟ ପଢ଼ାଇବାରେ ସେ ଥିଲେ ଧୁରୀଣ । କିନ୍ତୁ ଫଳପାଇଁ ନିଃସ୍ପୃହ । "କର୍ମଣ୍ୟେ ବାଧିକାରସ୍ତେ - ମାଫଳେଷୁ କଦାଚନ" ଏଥିଲା ତାଙ୍କର ଜୀବନାଦର୍ଶ ।

ନାଆଟି ଯେ କେବଳ କୂଳରେ ଲାଗିଲା ତା ନୁହେଁ ଠିକ୍ କଳ୍ପବୃକ୍ଷ ଛାୟାରେ ଓ ତାର ଦୃଢ଼ଚେରରେ ବନ୍ଧା ହୋଇଗଲା ସବୁଭୟ ଓ ଶଙ୍କାକୁ ତ୍ୟାଗକରି ।ଏହା ସେହି ଈଶ୍ୱରଙ୍କ ଇଚ୍ଛାଛଡ଼ା ଆଉ କ'ଣ ହୋଇପାରେ ? ଅରକ୍ଷିତକୁ ଦଇବ ସାହା ।

## ୫୧. ବାହାଘର ଖୋଜା

ସାଲେପୁରଯାଇ ପଢ଼ିବା ବିଷୟ ସ୍ଥିର ହୋଇ ଯିବାପରେ ବୋଉ କହିଲା; ବଡ ଭାଇତ ଘର କ'ଣ ଜାଣିଲାନି । ତୁ' ପଢ଼ିବାକୁ ସାଲେପୁର ବାହାରିଲୁ । ଆଉ ମୁଁ କ'ଣ ଘରେ ବଢ଼ିଲା ଝିଅକୁ ଧରି ବସିଥିବି । ତା'ର ବାହାଘର ବ୍ୟବସ୍ଥା ଦରକାର । ଏଇ କେଇପଦକଥା କାନରେ ପଶି ମୁଣ୍ଡକୁ ବିଗାଡି ଦେଲା । ଠାକୁରେ କହିଲେ ଭାବିଲେ କ'ଣ ହେବ । ଉଠୁ, ଲାଗେ, ଦଉଡୁ । ଘରେ ବସିରହି ଖାଲିଭାବିଲେ କ'ଣ ହେବ । ଲାଗ୍ ନା ଲଗା ।

ବେଶ୍ ତା'ପର ଦିନଠୁଁ ଆରମ୍ଭ ହୋଇଗଲା ପଦଯାତ୍ରା । ୟାକୁଧରି ସେଠିକୁ, ତାକୁ ଧରି ଏଠିକୁ ବାହାଘର ଯୋଗାଡ଼ରେ ଦୈନିକ ପଦଯାତ୍ରା ଚାଲିଲା । ତୁମକୁ ମିଛ, ମତେ ସତ । ଛୋଟ ପିଲାଟାଏ ଷୋଳ ମାଇଲ ଚାଲିଯାଇ ଚାଲି ଆସିବା ପୁଣି ବଡ଼ ମଣିଷଙ୍କ ସାଙ୍ଗରେ ଚାଲିବା ସହଜ ନହେଲେ ମଧ୍ୟ ସମ୍ଭବ ହୋଇଥିଲା ସେହି ଠାକୁରଙ୍କ କୃପାରୁ । ଚାଲି ଚାଲି ଆସିବା ପରେ ରାତିରେ ପାଦଦୁଇଟି ଦଗଜ ହୋଇ ଫୁଲି ଯାଇ ଥାଏ । ବୋଉ ଉଷୁମ ପାଣିରେ ଧୋଇ ତେଲ ମାଲିସ କରିଦିଏ । ପୁଣି ପରଦିନ ପଖାଳଖାଇ ବା ଖାଲି ତୋରାଣି ପିଇ ଚାଲେ ପଦଯାତ୍ରା ସଂଧ୍ୟାଯାଏ । ଆଖିରେ ଲୁହଗଡ଼େନି, ବେଶୀକଷ୍ଟ ବେଳେ । ଖରାଦିନ, ଖାଲିପେଟ ସାଙ୍ଗକୁ ମାଇଲ ମାଇଲ ପାଦଚଲା । କେତେ ସହିହେବ । କେବଳ ସେ ଏ ଦେହର ଯନ୍ତ୍ରୀ ହୋଇ ଯେଉଁଠିକୁ ଯେମିତି ଚଳାଉଥିଲେ ସେଠିକି ସେତିକି ଚାଲୁଥିଲି । ସବୁକଷ୍ଟ ତେଣୁ ତାଙ୍କରି ।

ସେ ଦୁଃଖ ଦିଅନ୍ତି । କିନ୍ତୁ ଦୁଃଖ ସହି ପାରନ୍ତିନି । ସେ ଆଉ ଲୁହଦେଖି ସହି ପାରିଲେନି । ସେଇ ପାଖରେ ପତ୍ର ତଳେ ଥିଲା ପରି ଭଉଣୀର ବାହାଘରଟି ଯୁଟିଗଲା ବୁହାଳୋ ଗାଁରେ ଓ ଦୁଆର ବାହା ହୋଇଗଲା । ସହଜ କଥା । ଆଜିକାଲି ଭଳି ଏତେ ଯାନି ଯୌତୁକର ପ୍ରଶ୍ନ ନଥିଲା କି ପୁରୁଣାକାଳ ଭଳି କନ୍ୟାସୁନା ଦାବୀ ନଥିଲା । ଆମେ ମଧ୍ୟ ଏତେ ପାଠ, ସେମିତି ଉଚ୍ଚ, ଏମିତି ଚେହେରା ବଡ଼ ଚାକିରୀ, କୋଠାବାଡ଼ି, ଜମିବାଡ଼ିକିଛି ଖୋଜିନୁ । ମାଟିଏ, ପୁଅଟିଏ । ଦୁଇବଖରା ଚାଳଘର । ଯାଇତାଇ ଚାକିରୀଟିଏ ଥିଲା । ଏତିକଦେଖି ଆମେ ଦେଇଦେଲୁ । ସନାକକେଇ ଯାଇ କନ୍ୟାଦାନ କରିଦେଇ ଆସିଲେ । ଧାର ଉଧାର କରି ସେ ବେଳରେ ଲୁଗା, ବାସନ ଭାର ମିଶି ଆମର ଶହେଭଳି ଓ ତାଙ୍କର ମଧ୍ୟ ଦୁଇଶହ ଭଳି ଟଙ୍କା ଖର୍ଚ୍ଚ ହୋଇଥିବ ।

ଆଜିକାଲି ଖୁବ୍ ବଡ଼ଘରର ଝିଅମଧ ଅଭିଆଡ଼ି ରହିଯାଉଛନ୍ତି । ସେମାନେ କୁହନ୍ତି ତା'ର ଧନଥିଲା ପ୍ରଭାବଥିଲା ସେ କରିଗଲା । ଅଥଚ ନିଜେ ପିଣ୍ଡାରୁ ତଳକୁ ଗୋଡ଼ କାଢୁ ନଥିବେ । ମାନହାନୀ ହୋଇଯିବ । କେଉଁଠିକି ଯିବେ ? କାହାକୁ କହିବେ ? ମନେ ମନେ ଖୋଜୁଥିବେ ଛୋଟ ପରିବାର ବହୁତ ପାଠ, ବଡ଼ଚାକିରୀ, ବଡ଼କୋଠା, କନ୍ଦର୍ପ ଚେହେରାର ବର । ପାନରୁ ଚୂନ ଟିକେ ଖସିବନି । ଈଶ୍ୱର ତାଙ୍କୁ ଦେବେ ଓ ଚଳେଇବେ ଏ ବିଶ୍ୱାସ ନାହିଁ । ସବୁଥିବାର ଦେଖି ଦେଇଦେବଯେ ସବୁଦିନପାଇଁ ଦକଯିବ । ଧନଗତ ଅଭାବ ନାହିଁ । ଦରକାର ହେଲେ ଆଉ ଲକ୍ଷେ କି ତିନିଲକ୍ଷ । ଘରିତୁଲ ନହେଲେ କେଉଁଠି ମା ରାଜି ନୁହେଁତ କେଉଁଠି ଝିଅ ଅରାଜି । ବାପାତ ତାଙ୍କ କିଣା ଚାକର । ଏ ସବୁ ଦେଖି ବୁଝି ଜାତି, ଜାତକ ଓ ଯୌତୁକ ବୁଝିବୁଝାଇବା ମାମୁଲି-ପ୍ରାରମ୍ଭିକ କାମ ।

ଆଜିକାଲି ଉଭୟ ବର ଓ କନ୍ୟା ପକ୍ଷର ଏହିପରି ମନୋବୃତ୍ତିରୁ ବହୁ ଝିଅ ଓ ବହୁ ପୁଅ ଅବିବାହିତ ରହିଲେଣି ଓ ରହିବେ । ଯୌତୁକ ଯନ୍ତ୍ରଣା ବଢ଼ିଚାଲିଛି ଓ ଚାଲୁଥିବ । ଆମେ ନିଜେ ସବୁ ଦେଖି ସବୁ ଦେଇଦାଇ ଏମିତି ସ୍ଥିର କରିବା ଯେ ଈଶ୍ୱରଙ୍କର ଭରସା ଆଉ ଦରକାର ନାହିଁ । ତାଙ୍କ ଉପରେ ଭରସା ରଖିଲେ ସେ ଯେ ସବୁକାମ କରି ପାରିବେ ସେ ବିଶ୍ୱାସ ଲୋକେ ହରାଇବାରୁ ହଇରାଣ ହେଉଛନ୍ତି । ଆରେ ମୂର୍ଖ ! ବର୍ତ୍ତମାନକୁ ସିନା ତୁମ ଆଖିଦେଖୁଛି । ଭବିଷ୍ୟକଥା କିଏ ଜାଣେ ? ଭାଗ୍ୟର ଗତି କାହାକୁ ଜଣା ! ଭଗବାନଙ୍କ ଉପରେ ନିର୍ଭର କଲେ ଏତେ ବେଶୀ ଖୋଜା ଲୋଡ଼ା ଦରକାର ନାହିଁ । ତାଙ୍କୁ ଛାଡ଼ିଲେ ସବୁ ଖୋଜା; ମିଳୁକି ନମିଳୁ ! ମୋ ତଳି ଭଉଣୀ ଶୁକପାଇଁ ଠାକୁରେ ଚଳନ୍ତଘର, ଶାଗବାଡ ଓ ଯୁବକ ଜୋଇଁଟିଏ ଦେଇ ତାକୁତ ହାତକୁ ଦିହାତ କଲେ; ମୋତେ ପାଠପଢ଼ିବାକୁ ବାଟ ଫିଟାଇ ଦେଲେ । "ଧନ୍ୟ ହେ ଈଶ୍ୱର ତୁମ ବୁଦ୍ଧି କଉଶଳ- କେମନ୍ତେ ରଚିଲ ମେଘବାୟୁ ଜଳସ୍ଥଳ" ।



ବାମରୁ ଠିଆ ହୋଇଥିବା ଦୁଇ ଭଉଣୀ
ପ୍ରେମଲତା ଓ କୁଞ୍ଜଲତା



ଡ଼ାହାଣରେ ଓ ମଝିରେ
ଦୁଇ ଭିଣୋଇ ଯଦୁନାଥ ମହାପାତ୍ର ଓ
ଦାମୋଦର ତ୍ରିପାଠୀ,
ପିଲାଟି ଭଣଜା ବିଭୁତି



ଦୁଇକଡ଼ରେ ସାନ ଭଉଣୀ କୁଞ୍ଜ ଓ
ଭିଣୋଇ ଦାମୋଦର ତ୍ରିପାଠୀ, ମଝିରେ
ଝିଅ ସଂଘମିତ୍ରା ଓ ଦୁଇ ଭାଣେଜୀ, ତଳେ
ଭଉଣୀର ଶାଶୂ ।



ବାମରେ ବଡ଼ଭାଇ ଶ୍ରୀ ଭଗବାନ ଦ୍ୱିବେଦୀ ମଝିରେ ବଡ଼ଜ୍ୱାଇଁ ଓ
ଡ଼ାହାଣରେ ଲେଖକ ଶ୍ରୀ ପର୍ଶୁରାମ ଦ୍ୱିବେଦୀ

ସେ ଏବେ ତିନି ପୁଅ ଓ ପାଞ୍ଚ ଝିଅର ମା । ପିଲାଏ ବାହା ସା ହୋଇଗଲେଣି । ପକ୍ଷୀ ଲାଗି ଗଲାଣି, ଘର ଦ୍ୱାର କରି ଭଲରେ ଚଳିଲେଣି । ଅବଶ୍ୟ ବହୁ ବର୍ଷ ପରେ ଭିଣେଇ ମଧ ଚାଲି ଗଲେଣି । କିନ୍ତୁ ସେ ଖୁବ୍ ଭଲ ମଣିଷ ଥିଲେ । ସଂପଦ ଓ ବିପଦ ବେଳେ ସେ ପ୍ରକୃତ ବଂନ୍ଧୁ ଥିଲେ । ମୁହଁ ଲାଜ ଛାଡି ଅଣ୍ଟାଭିଡି ସବୁ କାମରେ ଲାଗିଯାନ୍ତି । ଗାଁରେ ମଧ୍ୟ ପାଞ୍ଚଜଣଙ୍କୁ ଡାକି ବସାଇବା, ମେଳା ମହୋତ୍ସବ କରିବାରେ ସେଥିଲେ ଆଗୁଆ । ଯଦୁବାବୁ (ଯଦୁନାଥ ମହାପାତ୍ର) ସେଥିପାଇଁ ସମସ୍ତଙ୍କର ପ୍ରିୟଥିଲେ । କୁନ୍ତୀଙ୍କର ପାଞ୍ଚ ସନ୍ତାନଙ୍କ ମଧରୁ ସାନଭାଇ ଓ ଭଉଣୀଙ୍କ ସଂସାର କଥା କିଛି କହିବା ଦରକାର । ସାନଭାଇ ବଳରାମ ମୋ ପାଖରେ ରହି ବାଲିକୁଦାରୁ ମାଟ୍ରିକ୍ ପାଶ୍‌କରିବା ପରେ ଖ୍ରୀଷ୍ଟ କଲେଜରୁ ଇଣ୍ଟର ବିଜ୍ଞାନ ଓ କୃଷି ମହାବିଦ୍ୟାଳୟରୁ ପଶୁ ଡାକ୍ତରୀ ପାଶ୍ ପରେ ଝିଆରିର ଶାଶୁଘର ଗାଁ ଗନ୍ଧଗା ନରସିଂହ ପୁରରେ ଗାନ୍ଧୀ ପଣ୍ଡାଙ୍କ ଝିଅ ସାବିତ୍ରୀକୁ ବିଭା କରିଛି । ଭାଇନା ବାହାଘର କଥା ବୁଝିଥିଲେ । ଆଉ ସାନଭଉଣୀ କୁଞ୍ଜର ବିଭାଘର ସନା କକେଇ ଓ ମୁଁ ଚାଲି ଚାଲି ଯାଇ ଖୋଜି କେନ୍ଦ୍ରାପଡା ପାଖ କାଦୁଆ ଗାଁରେ ନକୁଳ ତ୍ରିପାଠୀଙ୍କ ପୁଅ ଦାମୋଦରଙ୍କ ସହ କରିଥିଲୁ । ନକୁଳ ତ୍ରିପାଠୀ ୭ ଭାଇ । ବଡ ପରିବାର । ଖୁବ୍ ଥିଲା ବାଲା । ଚାରିଖଞ୍ଜା ଘର । ଧାନ ଟଙ୍କା ଦେଢୀ କାରବାର । ମାତ୍ର ନକୁଳ ଦେଖା ରଖା କରନ୍ତି ଚାଷବାସ । ତେଣୁ ସେ ନିଃସ୍ୱ । ଦାମୋଦର ତାଙ୍କ ପ୍ରାଥମିକ ଶିକ୍ଷକର ଆୟରୁ ଓ ଋଣ କରି ଦୁଇ ଭଣଜା ଓ ଭାଣିଜୀଙ୍କୁ ପଢାଇ ମଣିଷ କରିଥିଲେ ଓ ପରେ ପରେ ସେ ପରିବାର ଖଣ୍ଡ ବିଖଣ୍ଡିତ ହୋଇଯାଇଛନ୍ତି । ମାରିନେଲେ

ମହାପାତ୍ରେ ନ୍ୟାୟରେ ଏ ଚାଷୀ ଭାଇ କିଛି ପୁରୁଣା ଅସ୍ଥାବର ସମ୍ପତ୍ତି ପାଇ ପାରି ନଥିଲେ ମଧ ବଡ ଭଣଜା ପିତାମ୍ବର ତାଙ୍କ ଘରର ଆର୍ଥିକ ଅବସ୍ଥାକୁ ସମ୍ଭାଳି ଦେଲା । ଈଶ୍ୱର କେଉଁ ବାଟେ ହେଲେ ଦିଅନ୍ତି । ନକୁଳଙ୍କ ପରିଶ୍ରମର ଫଳ ନାତି ପିତାମ୍ବର ଦ୍ୱାରା ଠାକୁର ଦେଲେ ।

## ୫୨ . ଦଦାମି ବୁଦ୍ଧି ଯୋଗଂତଂ

ଗାଁରୁ ସାଲେପୁର ସାତମାଇଲ । ନିତ୍ୟକର୍ମ ଓ ଠାକୁର ବସା କାମସାରି ଲୁଗାପିନ୍ଧି ଓଦା ଗାମୁଛାଟିକୁ ଦେହରେ ପକାଇଚାଲେ । ଠିକ୍ ୧୦ଟା ବେଳକୁ ସ୍କୁଲ ଖୋଲିଲା ସମୟରେ ପହଞ୍ଚିଥାଏ । କ୍ଲାସରେ ବହୁତ ପିଲା । ମୁଁ ପହଞ୍ଚିଲା ବେଳକୁ ଘରଟି ଭରିଯାଇଥାଏ । ସବାପଛରେ ଠେଲିଠାଲି ହୋଇ ବସିପଡ଼େ । କେତେ ଶୁଭେ ଆଉ କେତେ କ'ଣ ପଢ଼ାହେଲା ଶୁଭେନା । ନାମ ନ ଲେଖା ପଛ ବେଞ୍ଚ ପିଲା । ଆଉଥରେ ପଚାରିବାକୁ ଲାଜ ଲାଗେ । ସେମିତି ମୁ କ'ଣ ଆଉ କହିବି "ଶୁଭିଲାନି; ଆଉଥରେ କହନ୍ତୁ" ବୋଲି କେବେ କହନ୍ତିନି । ବହିତ ନଥାଏ ଯାହା ଶୁଭିଲା, ମୁଣ୍ଡିଆ ପେନସିଲରେ ଖଣ୍ଡିଆ ଖାତାରେ ଟିପିଆଣେ ।

ଦିନକର କଥା । ୧୦ ମିନିଟ ବିଳମ୍ବରେ ପହଞ୍ଚିଲି । ଶ୍ରେଣୀ ଶିକ୍ଷକ ଦୀନବନ୍ଧୁବାବୁ ଦୁଆର ପାଖରେ ଠିଆ କରିଦେଇ ପଚାରିଲେ ଏତେ ଡ଼େରି କାହିଁକି ? ପୁଣି ପଚାରିଲେ ଏ ଗାମୁଛା ପକେଇ କ'ଣ ଶ୍ରେଣୀକୁ ଆସୁଛ ? ମୁଁ ଯେ ପ୍ରଶ୍ନର ଉତ୍ତର ମୁହଁରେ ନ ଦେଇ ଆଖିରେ ଦେଲି । ମୋ ଆଖି ଛଳଛଳ ଦେଖି ସେ ସାଙ୍ଗେ ସାଙ୍ଗେ କହିଲେ: "ଯା ବସ" । ଏଇ ଯେ ପ୍ରଶ୍ନଟି ହେଲା ସେଇଟା ପ୍ରକୃତରେ ବାଧିଲା । ହେଲେ ୭ମାଇଲ ଚାଲି ଆସି ଠିକ୍ ସମୟରେ ପହଞ୍ଚିବା କାଠିକର ପାଠ । ପିଉସୀ ନାନୀର ଘର ଚମ୍ପତିପାଟଣାରେ । ସାଢ଼େତିନି ମାଇଲ ଦୂର । ସେଇଠି ରହି ଯିବା ଆସିବା ଆରମ୍ଭ କଲି । ବହୁତ ବାଟ କଟିଗଲା । ନାନୀ ବଢ଼ାରେ ଭାତ ବସାଇଦିଏ । ଆଳୁଟିଏ ପକାଇ ଦେଇଥାଏ । ଘିଅଟିପେ ଛିଞ୍ଚାଡ଼ି ଦିଏ । ବେଶ୍ କାମ ଚଳିଯାଏ । ଠିକ୍ ସମୟରେ ସ୍କୁଲରେ ପହଞ୍ଚିଯାଏ । ଆଉଦିନେ ବିଳମ୍ବ ଘଟିନି ।

ହେଲେ ଏ ଯେଉଁ ଯିବା ଆସିବା ଚାଲିଥାଏ ତାର ପ୍ରଭାବ ନିଶ୍ଚୟ ଥାଏ । ସଂଧ୍ୟାରେ ସାମାନ୍ୟ ପ୍ରର୍ଥନାପରେ ବଂଧୁ ସୁବୋଧ ଘରେ ଅବା କେଉଁଦିନ ବଜୁଆନାଙ୍କ ଘରେ ଯେମିତି ପାଠପଢ଼ିବାକୁ ବସିଯାଏ ବେଶ୍ ମାଡ଼ିଆସେ କାଳ ନିଦ । ବହୁଥର ଚେଷ୍ଟା କରି ନିଦଭାଙ୍ଗି ପୁଣି ପଢିବାକୁ ଚେଷ୍ଟା କରେ । ହେଲେ ଦେହର ଯେ କ୍ଳାନ୍ତି ସେ ଯିବ କୁଆଡ଼େ ? ସେ କ'ଣ ମନର ଅନୁଶାସନ ସହଜରେ ମାନେ ?

ଶେଷକୁ ପରୀକ୍ଷା ଥାଏ ମାସେ । ସାଲେପୁର ଯାଇ ସେଠି ଥାନା ସାମନାରେ ଗୋଟିଏ ମେଶ୍‌ରେ ରହିଗଲି । ଚାଉଳ, ଗୁଣ୍ଡିଆଳୁ ଆଉ ଦୁଇଟଙ୍କା ପଡ଼ିଲା । ଯା ହେଉ ଏତେ ଦୂର ଯିବା ଆସିବା'ତ କଟିଗଲା । ଏମିତି ଦଶମ ଶ୍ରେଣୀର ବର୍ଷଟି କଟିଗଲା । ପରୀକ୍ଷା ଦେଇ

ସାରିବା ପରଦିନ ସ୍କୁଲ ପିଣ୍ଡାରେ ସଂଧ୍ୟାରେ ଲଣ୍ଠନ ଜାଳି ଆଉ କେତେଜଣ ପିଲାଙ୍କସହ ପଢୁଥାଏ । ଥଟାରେ ସ୍ୱର ପରିବର୍ତ୍ତନ କରି, ଜଣେ ସାଥିଙ୍କ ପ୍ରଶ୍ନର ଉତ୍ତରରେ ନିଉ ମେଥଡ୍ ଟ୍ରାନ୍ସଲେସନ୍ ବହିରୁ କହିଲି "ଟିଉସିତ ହେବାପାଇଁ ବାପା ଟଙ୍କା ପଠାଇବ ।" ଠିକ୍ ଏତିକିବେଳେ ପଛରୁ ଶୁଭିଲା "କି ଦ୍ୱିବେଦୀ "ଟିଉସିତ" ଶବ୍ଦ ତୁମର କେଉଁ ଅଭିଧାନରୁ ବାହାରିଲା" । ବୁଲି ଦେଖିଲି ପ୍ରଧାନ ଶିକ୍ଷକ ଲକ୍ଷ୍ମୀଧରବାବୁ । ଠିଆହୋଇ ନମସ୍କାର କରିବାରୁ "ପରୀକ୍ଷା ସରିଲାଣି କାହିଁକି ଘରକୁ ଯାଇନା" ବୋଲି ପ୍ରଶ୍ନକଲେ । ମୁଁ କାଲି ଯିବି କହିବାରୁ; ଏହା ତ ମୋ ପ୍ରଶ୍ନର ଉତ୍ତର ନୁହେଁ ବୋଲି କହି ଆଦେଶ ଦେଲେ କାଲି ୯ଟା ବେଳେ ମୋତେ ଦେଖା କରିବ ।

ତାଙ୍କ କଥାମାନି ପରଦିନ ୯ଟାରେ ତାଙ୍କୁ ଯାଇ ବସାରେ ଦେଖା କରିବାରୁ ସେ ମୋ ସହ ସଂସ୍କୃତ ପଣ୍ଡିତଙ୍କ ବସାକୁ ଆସି ମୋତେ ବାହାରେ ଠିଆ କରିଦେଇ ଭିତରକୁ ଯାଇ ତାଙ୍କୁ ପଚାରି ବୁଝିଲେ ଯେ ସଂସ୍କୃତ ମୂଳ ବିଷୟରେ ୯୨ ଓ ଇଚ୍ଛାଧୀନରେ ୯୬ ନମ୍ବର ରଖିଛି । ମୁଁ କାନେଇ ଶୁଣୁଥାଏ । ପଣ୍ଡିତେ କହିଲେ ଟୋକାଟାର ଖାତାରୁ ଭୁଲ ବାହାର କରିବା ମୁସ୍କିଲ୍ । ଏହାପରେ ପଣ୍ଡିତଙ୍କ ବସାରୁ ବାହାରି ଲକ୍ଷ୍ମୀଧରବାବୁ ମୋତେ ଘରକୁ ଯିବାକୁ କହିଲେ । ତା' ସହ କହିଲେ ଜୁଲାଇ ମାସରେ ଆସି ନାମ ଲେଖାଇ ମନ ଦେଇ ପଢ଼ିବାକୁ । ଆସିଲାବେଳେ ନାମ ଲେଖାଇବା ପାଇଁ ଅନ୍ତତଃ ପଚାଶଟଙ୍କା ଆଣିବାକୁ କହିଲେ ମଧ ।

ବହିନଥାଇ,ଖାତା ନଥାଇ, ସାତସାତ ଚଉଦ ମାଇଲ ଚାଲି ପଛଧାଡ଼ିରେ ବସି, ପଢ଼ିଲାବେଳେ ଶୋଇ କେମିତି ଯେ ଏତେ ନମ୍ବର ରହିଲା ମୁଁ ସେକଥା ଆଦୌ ବିଶ୍ୱାସ କରିପାରୁନଥିଲି । ଏ ସବୁହିଁ ଈଶ୍ୱରଙ୍କ ଇଚ୍ଛା । ସେ ପରା କହିଛନ୍ତି; "ମୁଁ ଯାକୁ ହୁଅଇ ସଦୟ, ଜ୍ଞାନତା ହୃଦରୁ ଉଦୟ ।" ବାସ୍ତବିକ ସେ ଦୟା ନକରିଥିଲେ ନାଁ ଲେଖା ପାଇଁ କିପରି ବ୍ୟବସ୍ଥା ହୋଇଥାନ୍ତା । ତାଙ୍କର କରୁଣାର ଅନ୍ତ ନାହିଁ । ତାହା ମଣିଷ ବୁଦ୍ଧିର ବାହାରେ ।

## ୫୩. ମାତାପୃଥ୍ୱୀ - ପିତା ନାରାୟଣ

ଦୁଇମାସ ଖରାଛୁଟି ସମୟଟି ଦୁଇଟି ଟିଉସନ କରି ମାସକୁ ଆଠଟଙ୍କା ହିସାବରେ ଷୋହଳ ଟଙ୍କା ମିଳିଲା । ଆଉ କେଉଁଠୁ ଆସିବ । ପଚାଶ ଟଙ୍କା କେମିତି ପୁରିବ । ନାମ କେମିତି ଲେଖାହେବ ? ଯାହାଙ୍କୁ ଟିଉସନ କରୁଥିଲି ସେଥିରୁ ଜଣେ ବୃତ୍ତି ପାଇଲା । ସେ ହେଲା ନୀଳକଣ୍ଠ । ପରେ ତା ବାପା ବଇଆକେଇ ଆମ ଦୋକାନ ବାକୀରୁ ପାଞ୍ଚଟଙ୍କା ଛାଡ଼ିଦେଲେ । ଆର ଟିଉସନ ଛାତ୍ର ପାଶ୍ କଲା । ସେଥିରୁ ଥିଲା ଜଣେ ହରିଜନପିଲା "କେଳା" । ଜାତିରେ କେଳା ନହେଲେ ମଧ ଆଜିଯାଏ ତଳେ ମୁଣ୍ଡମାରି ପ୍ରଣାମ କରେ । ତା'ଠାରୁ ବା କଣ ଆଶା କରିବି । ସେ କିଲେ ଖଣ୍ଡେ ଆଳୁ ଦେଇଥିଲା । ତା' ବାପ ଅନ୍ୟର ଜମିରେ ଚାଷକରି ଆଳୁ ଲଗାଇଥିଲା ।

କର୍ମକୁ ଆଦରି ସେହି ଷୋହଳଟଙ୍କା ଧରି ଖରାଦିନ ଛୁଟିଶେଷରେ ନାଁ ଲେଖାଇବାକୁ ଗଲି । ନାଁଲେଖାଇବାକୁ ଖଣ୍ଡେ ଦରଖାସ୍ତ ଲେଖିଦେଲି । ପ୍ରଧାନ ଶିକ୍ଷକ ଲକ୍ଷ୍ମୀଧର ବାବୁ ତାକୁ ସ୍କୁଲ କିରାନୀ ସୋମନାଥ ବାବୁଙ୍କୁ ଦେଲେ । କହିଲେ ଏକାଦଶରେ ନାମ ଲେଖା ହେବ । ବହୁତ ପଢ଼ିବୁଝି ଶିକ୍ଷା କୋଡ୍ ଦେଖାଇ ସୋମନାଥବାବୁ ଲେଖିଦେଲେ ଯେ ଏକାଦଶରେ ପ୍ରଥମ ପ୍ରବେଶ ନିଷିଦ୍ଧ । ଲକ୍ଷ୍ମୀଧର ବାବୁ କହିଲେ, ମୁଁ ତାକୁ ଜବାବ୍ ଦେଇଛି । ପୁଣି ଆମର ସେ ଶ୍ରେଣୀରେ କେହି ଭଲପିଲା ନାହାନ୍ତି ।ତେଣୁ ତା'ନାମ ଲେଖା ହେବ । "କୋଡ୍‌ରେ ନଥିଲେ ମଧ୍ୟ ମୁଁ ସ୍ୱତନ୍ତ୍ର ଅଦେଶ ଦେଉଛି, ନାମ ଲେଖାଯାଉ । ଭବିଷ୍ୟତ ଅସୁବିଧା ପାଇଁ ପ୍ରଧାନଶିକ୍ଷକ ଭାବରେ ମୁଁ ଦାୟୀ" ।

ଏତକ ଲେଖି ଦସ୍ତଖତ କରି ସୋମନାଥବାବୁଙ୍କୁ ମୋର ଦରଖାସ୍ତ ବଢ଼ାଇ ଦେବାବରେ ସୋମନାଥବାବୁ ହିସାବକରି କହିଲେ ଚଉବନ ଟଙ୍କା ଦିଅ । ମୁଁ ଟିଉସନ କରି ଆଣିଥିବା ଷୋହଳ ଟଙ୍କା ବଢ଼ାଇ ଦେଲି । 'ଆଉ କାହିଁ ? ଏତିକି କ'ଣ ହେବ" କହି ସେ ଥୋଇ ଦେଲେ । ଲକ୍ଷ୍ମୀଧର ବାବୁ ମୋ ମୁହଁକୁ ଚାହିଁଲେ । ମୁଁ କହିଲି ଦୁଇମାସ ଦୁଇଟି ଟିଉସନରୁ ଏତିକି ମାତ୍ର ମିଳିଥିଲା । ଘରେ ତ ଆଉ କିଛି ନାହିଁ । କ'ଣ କରିବି । ଏତିକିରେ ସେ ଆଉ କିଛି କହି ନାହାନ୍ତି । ଦରିଦ୍ର ଛାତ୍ର, ପାଣ୍ଠି ତାଙ୍କର ସ୍ୱତନ୍ତ୍ର ସାହାଯ୍ୟ, ଚନ୍ଦ୍ର ଶେଖର ମିଶ୍ରଙ୍କ ଆଶ୍ରମରୁ ସାହାଯ୍ୟ ଏମିତି ମିଶାଇ ଚଉବନଟଙ୍କା ସେ ନିଜେ ପଇଠ କଲେ ।
ତାପରେ ରେଜିଷ୍ଟରରେ ନାମ ଲେଖାହେଲା । ହେଲେ ପିତା ବା ଅଭିଭାବକ ଭାବେ କିଏ ଦସ୍ତଖତ କରିବ ? ସାଙ୍ଗେ ସାଙ୍ଗେ ପ୍ରଧାନ ଶିକ୍ଷକ କହିଲେ; "ଯାହାର କେହି ନାହିଁ, ପୃଥିବୀ ତାର ମାତା ଓ ନାରାୟଣ ତାର ପିତା" ଏତକ କହି ସେ ନାରାୟଣ ମିଶ୍ର ଯେକି ଆମଗାଁର ଲୋକ ଓ ସେହି ସାଲେପୁରରେ ଶିକ୍ଷକତା କରୁଥିଲେ ତାଙ୍କୁ ଡ଼କାଇ ଅଭିଭାବକ ଭାବେ ଦସ୍ତଖତ କରେଇ ଦେଲେ ।

ସେତ ମୋ ପାଇଁ ପ୍ରଧାନ ଶିକ୍ଷକ ନୁହନ୍ତି । ମାତାପିତା, ବନ୍ଧୁ, ଶଖା, ବିଦ୍ୟା, ଦ୍ରବିଣ ଓ ସର୍ବ ଦେବଦେବ । ଭଗବାନ ପ୍ରଧାନଶିକ୍ଷକ ଭାବେ ସମସ୍ୟାର ସମାଧାନ କରିଦେଲେ । ତା ନହୋଇଥିଲେ ମୋ ପୋଥିରେ ସେଇଠି ଡ଼ୋରି ବନ୍ଧା ହୋଇଥାନ୍ତା । ଖାଲି ସେତିକି ନୁହେଁ; ଆଦେଶ କଲେ ଯେତେ ଶୀଘ୍ର ପାର ଆସି ଛାତ୍ରାବାସରେ ରହିଯାଅ ଓ ମନଲଗାଇ ପାଠପଢ଼ । ତୁମର ସମସ୍ତ ଖର୍ଚ୍ଚ ଛାଡ୍ କରାଗଲା । ତୁମେ ଯେତିକି ପାରିବ ଦେବ, ନେହେଲେ ନାହିଁ । ଛମାସରୁ ଉର୍ଦ୍ଧ୍ୱ ଛାତ୍ରାବସରେ ରହିବା ଭିତରେ ଦୁଇଥର ପ୍ରାୟ ଦୁଇ ଗଉଣୀ ଚାଉଳ ଆଣି ନାନୀଘରୁ ଦେଇଥିବି । ସେତିକିରେ ଶେଷ ।

ଭଗବାନଙ୍କର କରୁଣା ଅସୀମ । ସେ ହେଉଛନ୍ତି ଦୟାସଗାର ଓ ଦୀନବନ୍ଧୁ । ଆମେ ଆମର କ୍ଷୁଦ୍ରବୁଦ୍ଧିରେ ତାଙ୍କୁ ଚିହ୍ନି ନପାରି କିଏ ପୁଅ, କିଏ ଝିଅ, କିଏ ଟଙ୍କା, କିଏ ସୁନା, କିଏ

ଘର, କିଏ କୋଠା, କିଏ ଜମିଟ କିଏ ଚାକିରୀ ବା ଯଶ ମାଗୁ । ସେ ଯେ ସକଳ ସମ୍ପତ୍ତିର ଆଧାର ଏକଥା ସେତେବେଳେ ଭୁଲିଯାଉ । ସେ ଥରେ ଦାୟିତ୍ୱନେଲେ ଆଉ କାହାକୁ ଖୋଜା ପଡ଼େନା । ସେ ହେଉଛନ୍ତି :- "ଦାତାର ସର୍ବ ସମ୍ପଦାଂ ସର୍ବଲୋକ ମହେଶ୍ୱର ।"

## ୫୪. ପଦଯାତ୍ରାରେ କଟକ

ଏବ୍ରୁଟିଏ ଯାଏ କଟକ ଦେଖି ନଥାଏ । କଟକ ବିଷୟରେ ଭୂଗୋଳରୁ ଓ ଆଉ କେତେ ଲେଖା ପଢ଼ିଥାଏ । ଭାଇନାଙ୍କ ଠାରୁ ବୁଝିଥାଏ । ସେ ସେତେ ବେଳକୁ ଯୋବ୍ରା ଆଇ.ଟି.ଆଇ.ରେ ପଢୁ ଥାନ୍ତି । ନାମଲେଖାବେଳେ ସୋମନାଥବାବୁ କହିଥିଲେ ଯେ "ଯେଉଁ ଘରୋଇ ସ୍କୁଲରେ ପଢୁଥିଲ ସେଠୁ ତୁମର ପ୍ରମାଣ ପତ୍ର ଆଣି କଟକରେ ମଣ୍ଡଳଶିକ୍ଷା ପରିଦର୍ଶକଙ୍କ ସ୍ୱାକ୍ଷରସହ ଦେବ । ନହେଲେ ପ୍ରଧାନଶିକ୍ଷକ ଅସୁବିଧାରେ ପଡିବେ ଓ ଶେଷ ପରୀକ୍ଷା ବେଳକୁ ତୁମର ମଧ୍ୟ ଅସୁବିଧା ହେବ ।"

ଗାଁ ସ୍କୁଲରୁ ପ୍ରମାଣ ପତ୍ର ଆଣି ରଖିଥାଏ । ମାତ୍ର କଟକ କିପରି ଯିବି । ବାଟକୁଆଡେ ? ଖର୍ଚ୍ଚ କିଏ ଦେବ ? କେଉଁଠୁ ପାଇବି ? ପୁରୁଣା ଭୂଗୋଳ ବହିଟିଏ ଖୋଲି ଦେଖିଲି । କେନ୍ଦ୍ରାପଡା କେନାଲ ଯାଇଛି ଜଗତପୁର ଯାଏ । ତାପରେ ମହାନଦୀ । ନଦୀ ପାରି ହେଲେ କଟକ । ବାସ୍ ସେତିକି ଜ୍ଞାନକୁ ସମ୍ବଳ କରି ଦିନେ ଛୁଟିରେ ୧୦ଟା ବେଳକୁ ମେସ୍‌ରେ ଖାଇଦେଇ ଚାଲିଲି । ଠିକ୍ ମହାନଦୀ ଆନିକଟ୍ ମୁଣ୍ଡରେ ପହଞ୍ଚି ଦେଖିଲି ଆନିକଟ ତଳେ ତଳେ କେତେକ ଲୋକ କଟକ ଯାଉଛନ୍ତି । ତାଙ୍କରି ସାଙ୍ଗଧରି ଚାଲିଲି । ସେ ମୁଣ୍ଡରେ ପହଁଚିଲା ବେଳକୁ ସନ୍ଧ୍ୟା । କୋଡିଏ ମାଇଲ୍ ଏକାଦି କ୍ରମେ ଚାଲିବାରେ ଗୋଡ ଫୁଲି ଯାଇଥାଏ ଚାଲି ଚାଲି । ବିନ୍ଧୁଥାଏ ମଧ୍ୟ । ପାଣିରେ ଗୋଡ ବୁଡାଇ ବସି ଭାବୁଥାଏ କେଉଁଠିକି ଯିବି ? ସନ୍ଧ୍ୟା ହେଉଛି; ଭାଇନା ଯୋବ୍ରାରେ କେଉଁଠି ପଢ଼ନ୍ତି ? ଆଉ କେଉଁଠି ରହନ୍ତି ? କିପରି ତାଙ୍କୁ ପାଇବି ? ଏମିତି ଭାବୁଛି ଭାଇନା ଆସି ଛାଏଁ ପହଞ୍ଚିଗଲେ । ଯୋବ୍ରା ଆଇ.ଟି.ଆଇ.ରୁ ସନ୍ଧ୍ୟାରେ ମହାନଦୀ କୂଳ ହାଓ୍ୱା ଖାଇବାକୁ ଆସି ମୋତେ ଦେଖି ପକେଇଲେ । ଠାକୁରେ ତାଙ୍କୁ ପଠାଇ ଦେଲେ ମୋ ଦୁଃଖ ଦେଖି । ପାଦ ପାଣିରେ ବୁଡ଼ାଇବା ପରେ ବିନ୍ଧା ସିନା କମି ଯାଇଥିଲା ଦରଜ ଥିଲା । ତାଙ୍କ ସାଙ୍ଗରେ ପେଙ୍ଗେଇ ପେଙ୍ଗେଇ ତାଙ୍କ ମେସକୁ ଯାଇ ତାଙ୍କ ସହ ରହିଲି ଓ ଖାଇଲି । ସେ ରାତିରେ ତେଲ ଲଗାଇ ଦେଲେ । ପରଦିନ ସାକାଳୁ ଗୋଡ଼ ଭଲ ଲାଗିଲା ।

ଚାଲିଲି ପଚାରି ପଚାରି ଶିକ୍ଷା ପରିଦର୍ଶକଙ୍କ କାର୍ଯ୍ୟାଳୟକୁ । ଯୋଗକୁ ପାଇଗଲି । ହେଲେ ସେ ପିଅନ ଆଉ ଭିତରକୁ ନ ଛାଡ଼େ । ଶେଷରେ ଜବରଦସ୍ତ ପଶିଗଲି । ସେ ପଛରେ ଗୋଡ଼ାଇଥାଏ । ପରିଦର୍ଶକ ଏ ଦଶା ଦେଖି କହିଲେ କ'ଣ ହେଲା । କାହାକୁ ଖୋଜୁଛୁ ? କାମ କ'ଣ ? ମୁଁ ସବୁକହି ପ୍ରମାଣ ପତ୍ରଟି ବଢ଼ାଇ ଦେବାରୁ ସେ ସାଙ୍ଗେ ସାଙ୍ଗେ ସହି କରି ଦେଇ ସେହି ପିଅନକୁ କହିଲେ ଶୀଘ୍ର ମୋହର ମାରି ମୋତେ ଦେଇଦେବାକୁ । ଆଜିକାଲିର

ଯୁଗ ହୋଇଥିଲେ ଅନ୍ତତଃ ପକ୍ଷେ ଫାଇଲ ପୁଟ୍‌ଅପ ହୋଇ ଆଠଦିନ ଲାଗିଥାନ୍ତା । ତାପରେ ଠାକୁରେ ତ ଚଉବାହାକୁ ଅଛନ୍ତି ଚଉପାଖରେ ଓ ନିରନ୍ତର । ସେ କ'ଣ ଦୁଃଖ ଦେଖୁନାହାନ୍ତି । ପଦଯାତ୍ରାର ଯେ ଦୁଃଖ ଓ କଷ୍ଟ ସେ କ'ଣ ତାଙ୍କୁ ଜାଣି ନଥିଲା ? ତେଣୁ ସେ କାଳବିଳମ୍ବ ନକରି ସୁରୁଖୁରୁରେ ଓ ଯେତେଶୀଘ୍ର ସମ୍ଭବ ସବୁ ବ୍ୟବସ୍ଥା କରିଦେଲେ ।

ଫେରିବା ପାଇଁ ସେହି ଦିନ ଚାଲି ଆସିଲି ଜଗତପୁର । ସୁବିଧା ଅସୁବିଧା ପାଇଁ ପାଖରେ ଥିଲା ଦୋଣି ଟିଏ । ତାକୁ ବଢ଼ାଇଦେଇ ବସବାଲାକୁ ସାଲେପୁରେରେ ଛାଡ଼ିଦେବାକୁ କହିବାରୁ ସେ ଟିକେ ମୁହଁକୁ ଚାହିଁ ହଁ ଭରିଲା । ସନ୍ଧ୍ୟା ସୁଦ୍ଧା ଆସି ପୁଣି ଛାତ୍ରାବାସରେ ପହଞ୍ଚି ରାତ୍ରି ଭୋଜନ ଖାଇ ସୁଖନିଦ୍ରାରେ ଶୋଇଯିବାରେ ଯେ ଆନନ୍ଦ ମିଳିଲା ତାହା ସେହି ଜଗଦୀଶ୍ୱରଙ୍କ ଛଡ଼ା କେହି ଜାଣିପାରିବେନି । ସବୁବେଳେ, ସବୁଠେଇଁ ସମସ୍ତଙ୍କଭିତରେ ରହି ସବୁପ୍ରକାର ସହାୟତା ଯୋଗାଇଦେଇ ସେ ଜୀବନକୁ ଧନ୍ୟ କରିଛନ୍ତି । ତାଙ୍କୁ ଭୁଲି ନିଜ ବାହାଦୁରୀ ଦେଖାଇବା ମୂର୍ଖତା ଛଡ଼ା ଆଉ କ'ଣ ? ସୁଦାମା ଏତେବାଟ ଚାଲିଚାଲି ଆସିଥିବାରୁ ସେ ତାଙ୍କ ପାଦ ଧୋଇ ଦେଇ ପୋଛି ଦେଇଥିଲେ ନିଜ ଉତ୍ତରୀୟରେ । ଆଉ ଦରଜ କାଟିବାକୁ ନିଜେ ରୁକ୍ମିଣୀଙ୍କ ସହ ପାଦମର୍ଦ୍ଦନ କରିଥିଲେ । ଆଉ କିଛି ନ ମାଗି ମଧ ଦେଇଥିଲେ ଅଚଳା ଭକ୍ତି,ଅଚଳା ସମ୍ପତ୍ତି ଓ ଅଚଳା ଜଶ । ତେଣୁ ଏ ଦୁଃଖୀର ଦୁଃଖ କେତେ ମାତ୍ର । ଆଡ଼ ନୟନରେ ଚାହିଁ ଦେଲେ ଦୁଃଖର ବାଦଲ କୁଆଡ଼େ ଭାସିଯିବ । ଗଲା ମଧ । ଏ କୃତଜ୍ଞ ଦେହ ତାକୁ ସଦା ମନେ ରଖିଥାଉ ଜୀବନ ଯିବା ଯାଏ ।

## ୫୫. ଗୁରୁକୁଳ ସ୍ମୃତି

ଆମ ଛାତ୍ରାବସ ଗୋଟିଏ ଆଦର୍ଶ ଗୁରୁକୁଳ ଆଶ୍ରମ ପରି ଥିଲା । ସାଲେପୁର ସ୍କୁଲ ଛାତ୍ରାବାସରେ ରହୁଥିବା ପିଲାଏ ବଡ଼ ଶୃଙ୍ଖଳିତ ଥିଲେ । ଉପର ଶ୍ରେଣୀ ପିଲାଙ୍କୁ ମାନିବା ଗୋଟିଏ ବଡ଼ ପରମ୍ପରା ଥିଲା । ଶିକ୍ଷକ ମାନଙ୍କ ପ୍ରତି ଭକ୍ତି ଓ ମାନ୍ୟତା ଖୁବ୍ ଉଚ୍ଚକୋଟିର ଥିଲା । ସକାଳ ଓ ସନ୍ଧ୍ୟାର ହାଜିରାପରେ ପ୍ରାର୍ଥନା ବାଧ୍ୟତାମୂଳକ ଥିବାରୁ ସକାଳେ ଉଠିବା ଏବଂ ସନ୍ଧ୍ୟାରେ ବଜାର ବୁଲିବା ମନା ଥିଲା । ଏସବୁ ଖୁବ୍ ବଡ଼ ବାଡ଼ ପରି ଥିଲା । ଏହାଛଡ଼ା ପ୍ରଧାନ ଶିକ୍ଷକ ଓ ଛାତ୍ରାବାସ ଅଧ୍ୟକ୍ଷକ ସଦା ସର୍ବଦା ନିଜର ପିଲା ପରି ସମସ୍ତଙ୍କ ଉପରେ ନଜର ରଖୁଥାନ୍ତି ।

ଶ୍ରେଣୀର ଭିଡ଼ ପାଠପଢ଼ାରେ ପ୍ରାୟ ସମସ୍ତେ ବ୍ୟସ୍ତ ଥାଉଁ । ତଥାପି ପ୍ରତିଶନିବାର ସନ୍ଧ୍ୟାରେ ଛାତ୍ରାବାସରେ ବକ୍ତୃତା ପ୍ରତିଯୋଗିତା ବା ତର୍କସଭା ହୁଏ । ସେଥିପାଇଁ ପ୍ରସ୍ତୁତ ହେବା ଅବସରରେ କିଛି ଜ୍ଞାନଲାଭ ମଧ ହୋଇଥାଏ । ଥରେ ଶିକ୍ଷକ ରାମବାବୁଙ୍କ ଭାଇ ରାସ୍ତାରେ ଗଲାବେଳେ ମୋର ବକ୍ତୃତା ଶୁଣି ପରଦିନ ଖୁବ୍ ତାରିଫ କରିଥିଲେ । ତର୍କସଭାରେ

ଆମଦଳ ମୋତେ ଅଗ୍ରଣୀ କରିଥାନ୍ତି ସବୁବେଳେ । ଏଇ ଅଭ୍ୟାସ ଓ ଏହାରି ଫଳସ୍ୱରୂପ ସେ ବର୍ଷ ଜାତିସଂଘ ଦିବସ ବକ୍ତୃତା ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ମିଳିଥିଲା ।

ସଂସ୍କୃତ ପରୀକ୍ଷାରେ ଓ ଶ୍ରେଣୀରେ ଭଲ ନାମ ଥିବାରୁ ନିଜ ଶ୍ରେଣୀର ଓ ତଳ ଶ୍ରେଣୀର ପିଲାଏ ବହୁ ସମୟରେ ସଂସ୍କୃତ ପଚାରି ବୁଝନ୍ତି । ଏହି ପ୍ରସଙ୍ଗରେ ଅଚ୍ୟୁତ (ବର୍ତ୍ତମାନର ଦୁର୍ମୁଖର ସଂପାଦକ ପଣ୍ଡିତ ଅଚ୍ୟୁତାନନ୍ଦ କର), ମନ୍ତ୍ରୀ କାଳନ୍ଦୀ ବେହେରାଙ୍କ ବଡ଼ଭାଇ ଭିକାରୀ ବେହେରା ଓ ଯୋଗେନ୍ଦ୍ର ମିଶ୍ରଙ୍କ ନାମ ଏବେ ମନେପଡ଼େ । ସେମାନଙ୍କର ଗୋଟିଏ ହସଖୁସି କମ୍ପାନୀ ଥିଲା । ପରସ୍ପରର ପରିପୂରକ ହୋଇ ଏମିତି ହସଖୁସିଆ ଗୀତ, ନାଚ, ଖେଳ ଓ ଯୁକ୍ତି ତର୍କ କରନ୍ତି ଯେ ସେଥିରେ ପଥର ପାଣି ହୋଇଯିବ। ଶ୍ରୀ କର ତାଙ୍କ ବଲ୍ୟକାଳର ହାସ୍ୟ ବିଶାରଦ ଗୁଣରେ ଏବେବି ଅଧିକାରୀ ଅଛନ୍ତି ଓ ମୋ ତଳ ଶ୍ରେଣୀର ପିଲା ହେଲେ ମଧ୍ୟ ଅନ୍ୟ ଦୁଇଜଣ ଏଇ କେତେ ବର୍ଷ ମଧ୍ୟରେ ସଂସାର ଛାଡ଼ି ଚାଲିଗଲେଣି । ସେମାନେ ସମସ୍ତେ ସଂସ୍କୃତ ଓ ସଂସ୍କୃତି ପ୍ରେମୀ ଓ ପଚାରି ବୁଝିବାରେ ଆନନ୍ଦିତ ହେଉଥିଲେ ।

ଦଶହରା ଛୁଟିରେ ପୀତାମ୍ବର ସ୍ୱାଇଁ ଓ ମୁଁ ଛୁଟିରେ ଘରକୁ ନ ଯାଇ ହଷ୍ଟେଲରେ ଥାଉଁ । ଷ୍ଟୋଭରେ ରାନ୍ଧି ଖାଉ । ପାଠପଢ଼ି ବହୁତ ବିଷୟ ଚର୍ଚ୍ଚାକରୁ । ଉଚ୍ଚ ଚିନ୍ତା ଧାରାରେ ପ୍ରଣୋଦିତ ହେଉଁ । ଥରେ ପାଖ ଗାଁକୁ ଗୀତା ପ୍ରବଚନ ଶୁଣିବାକୁ ଚାଲିଚାଲି ଯାଇଥିଲୁ । ସବୁଗାଁରେ ଭାଗବତ ଟୁଙ୍ଗୀ ଢାଞ୍ଚାରେ ଲାଇବ୍ରେରୀ ଖୋଲି ତା ଜରୀଆରେ ଶିକ୍ଷା ପ୍ରସାର ଗ୍ରାମ ସଙ୍ଗଠନର ଏକ ଭଲ ବାଟ ବୋଲି ତାକୁ କାର୍ଯ୍ୟକାରୀ କରିବାକୁ ପରାମର୍ଶ କରିଥିଲୁ । କର୍ମକ୍ଷେତ୍ରରେ କିଏ କୁଆଡ଼େ ଭାସି ଗଲୁସିନା; ବହୁ ଦିନ ବିଡିଓ ରହିବା ଫଳରେ ଗ୍ରାମ ଉନ୍ନୟନ ପାଇଁ କିଛି ପ୍ରତ୍ୟେକ୍ଷ ସୁଯୋଗ ମିଳିଥିବାରୁ ସେ ସ୍ୱପ୍ନ କିଛି ଅଂଶରେ ସାର୍ଥକ ହେଲା ବୋଲି ଏବେ ଭାବେ ।

ବହି ନଥିବାରୁ ପାଠପଢ଼ାରେ ବହୁତ ବ୍ୟାଘାତ ହୁଏ । କେତେଥର ଇଂରାଜୀ ବହି ପୀତାମ୍ବରଠାରୁ ମାଗି ପଢ଼ିଛି । କିନ୍ତୁ ଯଥେଷ୍ଟ ସମୟ ପାଇଁ ତାହା ମିଳେନା । ତେଣୁ ପାଠପଢ଼ାର ମୁଖ୍ୟ ମାଧମ ଥିଲା ଶ୍ରୁତି । ମୋହିନୀ ବାବୁଙ୍କ (ମୋହିନି ମୋହନ ରଥଙ୍କ) ଅବଦାନ ଏ ଜୀବନରେ ଅମୂଲ୍ୟ, ଅବିସ୍ମରଣୀୟ ଓ ଅନବଦ୍ୟ । ସେ ଶ୍ରେଣୀରେ ଯେପରି ପରିଶ୍ରମ କରି ନାଚି, କୁଦି, ବୁଲି, ବୁଝାଇ, ଦେଖାଇ ଶିଖାଇ, ପ୍ରଶ୍ନକରି ଓ ଉତ୍ତର ବତାଇ ଦେଇ ପଢ଼ାନ୍ତି ତାହା ତ ନ ଦେଖିଲେ କେହି ବିଶ୍ୱାସ କରିପାରିବନି । ଏଥିପାଇଁ ତାଙ୍କୁ ଏତେ ଖଟିବାକୁ ପଡ଼େଯେ ଖେଳଛୁଟିରେ ସେ କ୍ଳାନ୍ତ ହୋଇ ତାଙ୍କ କୋଠରୀରେ ପଡ଼ିଥାନ୍ତି । ଏତିକିବେଳେ ବେଳଉଣ୍ଡି ମୋ ଛିଣ୍ଡାଖାତାରେ ନିଉମେଥଡ଼ ଟ୍ରାନ୍ସଲେସନ୍ ବହିରୁ ଗୋଟେ ଅଧାୟ ଇଂରାଜି ଟ୍ରାନ୍ସଲସନ୍

ମୋ ଖଣ୍ଡିଆ ପେନସିଲରେ କରିନେଇ ତାଙ୍କୁ ଦେଖାଏ । ସେ ବନ୍ଧୁ କଷ୍ଟରେ ଶୋଇ ରହି ତାକୁ ଗୋଟି ଗୋଟି ପଢ଼ି ଶଂସୋଧନ କରି ଦିଅନ୍ତି । ସେଇଟା ହିଁ ମୋର ଏକମାତ୍ର ଇଂରାଜୀ ପଢ଼ା । ଅନ୍ୟକିଛି ବହି ନଥିଲା କି କୋଡୋଟି ବିଷୟ କ'ଣ କେଉଁ ବହିରୁ ପଢ଼ା ହୋଇଥିଲା ମୋର ମନେନାହିଁ । ଗୁରୁ ରୂପରେ ଠାକୁରେ ମୋ ପାଇଁ ତାଙ୍କୁ ପଠାଇଥିଲେ ବୋଝ ଉପରେ ନଳିତା ବିଡ଼ା ବୋହିବା ପରି କ୍ଲାନ୍ତି ମେଣ୍ଟାଇବା ସମୟରେ ସେ ମୋ ଖାତା ଦେଖିବାକୁ । ସେ ଓ ପ୍ରଧାନ ଶିକ୍ଷକ ଲକ୍ଷ୍ମୀଧରବାବୁ ବଳଦେବ ଓ ଶ୍ରୀକୃଷ୍ଣଙ୍କ ପରି ତାଙ୍କ ଋଣ ଅସୁଝା । କେବଳ ହୃଦୟର ଭକ୍ତି ଓ କୃତଜ୍ଞତା ଦେଇ ତାର ସୁଧ ପରିଶୋଧ କରୁଛି ମାତ୍ର । ଋଣ ସୁଝିଛି ବୋଲି କିନ୍ତୁ ମନ ମାନେନା । ଈଶ୍ୱର ଏଦେହ ଦ୍ୱାରା ସେ ଋଣ ଅନ୍ୟତ୍ର ସୁଝିବାର ବ୍ୟବସ୍ଥା କରିଦେଇ ଧନ୍ୟ ହୋଇଛନ୍ତି ।

## ୫୬. ବେଙ୍ଗି ପିତଳ

ବଛାବଛି ପରୀକ୍ଷା ସରିଲା । ପରୀକ୍ଷା ଫିସ୍ ବାନ୍ଧିଲେ ଫର୍ମ ପୂରଣ ହେବ । ଏତିକି ବେଳେ କିଛି ସାହାଯ୍ୟ କରିବାକୁ ମୁହଁ ଖୋଲି ଦୁଇ ତିନି ଜଣଙ୍କୁ ଆଗରୁ କହିରଖିଥିଲି । ଅବଶ୍ୟ ଯେଉଁମାନେ ମୋ ପାଠପଢ଼ା ବିଷୟରେ ମୋତେ ପଚାରି ବୁଝୁଥିଲେ ମୁଁ ତାଙ୍କୁ ସେ ଇଶାରା ଦେଇଥିଲି । କାର୍ଯ୍ୟ ବେଳକୁ ସେସବୁ କେହି କାମକୁ ଆସିଲେନି । ନରେନ୍ଦ୍ରବାବୁ ସୁଉକିଟିଏ ଯାଚିଲେ । ଅଜ୍ଞା ନମସ୍କାର କହି ତାକୁ ନ ନେଇ ଚାଲିଗଲି । ଲକ୍ଷ୍ମୀଧର ପଣ୍ଡିତେ ସାନ୍ତ୍ୱନା ମାତ୍ର ଦେଲେ । ବିଧିର ବିଡମ୍ବନା ଏଇ ଅଳ୍ପଦିନ ତଳେ ସେହି ନରେନ୍ଦ୍ର ମିଶ୍ରଙ୍କ ପୁଅ ଗନ୍ଧି ଅନାହୁତ ପହଞ୍ଚି ଭାଟପରି ପ୍ରଶଂସା କରି କୋଡିଏ ଟଙ୍କା ମୋଠାରୁ ମାଗିନେଲା ଅଭାବ ଗ୍ରସ୍ତ ଅବସ୍ଥାରେ । ଠାକୁରେ କାହାକୁ କେତେବେଳେ କି ଅବସ୍ଥାରେ ପହଞ୍ଚାଇବେ କିଏ କହି ପାରିବ । ମୁଁ ଯେ ନରେନ୍ଦ୍ର ବାବୁ ଯାଚୁଥିବା ସୁକିଏ ପରିସାକୁ ଧୃଷ୍ଟତାସହ ଟ୍ଟାଟିଆସି ଥିଲି ତା'ର ଆର୍ଥିକ ଦଣ୍ଡ ସ୍ୱରୂପ ବୋଧେ ଠାକୁରେ ଏ ଘଟଣାଟି ଘଟାଇଦେଲେ ।

ବୋଉମୋର ଦୁଃଖ ଦେଖି ସମ୍ଭଳି ପାରିଲାନି । ବୁଢ଼ୀମାର ଗୋଟିଏ ସୁନା ନାକ ଦଣ୍ଡି ଥିଲା । ସେ ଥିଲା ସେ ପୁରୁଷର ଏକମାତ୍ର ସନ୍ତକ ଓ ଆମ ଘରର ଶେଷ ସମ୍ବଳ । ତାକୁ ବିକି ଟଙ୍କା ନେବାକୁ ବୋଉ କହିଲା । ରୂପିଆ ଖଉଡ଼ାକୁ ଡ଼କାଗଲା । ସେ ତାକୁ ଦେଖି କହିଲା ଏଥିରେ କିଛି ସୁନା ନାହିଁ । ଖାଲି ବେଙ୍ଗି ପିତଳ ଟାଏ । ଛଅଟଙ୍କା ମାତ୍ର ଦେଇତାକୁ ନେଇଗଲା । ଜଗନ୍ନାଥେ ଲକ୍ଷ୍ମୀଙ୍କୁ ଛାଡ଼ି ଦୁଃଖରେ କାଳାତିପାତ କରୁଥିବାବେଳେ ପାଇଥିବା ସୁନା ମୁଦି ବିକି ଚଳିଯିବାକୁ ମସୁଧା କରୁଥିବା ବେଳେ ତାହା ବେଙ୍ଗିପିତଳ ପାଲଟି ଯାଇଥିଲା ।

ନଗଣପୁରର ନାଥିଆ ବଣିଆ ଆମଗାଁ ଗୋପୀ ଦାଶଙ୍କ ବାଡ଼ିରେ ଚାଳିଟିଏ ବାନ୍ଧି ରହୁଥାଏ । ଗାଁ ଯାକ କାହାକୁ ମାଉସୀ କାହାକୁ ପିଉସୀ କରି ଚଳେ । ମୁଁ ଦେଖିବାରେ ମା

ଦେହରେ କିଛି ସୁନା ଅଳଙ୍କାର ନଥିଲା । କେବଳ ନାକରେ ଥାଏ ସେହି ପୁରୁଣା ଦଣ୍ଡିଟି । ସେ ପୁଣି ବାରମ୍ବାର ଛିଡ଼ିପଡ଼େ । ନାଥିଆ ତାକୁ ନେଇ ଝଲେଇ ଦିଏ । ବଦଳରେ ପାଏ ନଡ଼ିଆଟାଏ । ଆଉ କ'ଣ ତା ମାଉସୀଠାରୁ ନେବ । ଧରମ ମାଉସୀ । ଏମିତି ବାରମ୍ବାର ମରାମତି କରି ନାଥିଆ ତା' ଦେଖିଲାକାମ କରି ସାରିଥିଲା । ଅବଶ୍ୟ ତାକୁ ଗୁପିଆ ଖଉତା କିଣିଲା ବେଳକୁ ନାଥିଆ ସେ ଯାଗାଛାଡ଼ି ତା ଗାଁକୁ କେତେଦିନୁ ଚାଲିଯାଇ ଥାଏ । ପରୀକ୍ଷା ଫର୍ମ ପୂରଣ ପାଇଁ ଆବଶ୍ୟକ ଷାଠିଏ ଟଙ୍କାରୁ ମାର ବେଙ୍ଗିପିତଳ ଦଣ୍ଡିକି ବିକି ମିଳିଥାଏ ମାତ୍ର ଛଅଟଙ୍କା । ସେଥିରେ ଆଉ ଶୂନ ବସିବାର କିଛି ବାଟ ନଥାଏ । ସେଇଆକୁ ଧରି ଗଲି । ସମସ୍ତଙ୍କ ଫର୍ମପୂରଣ ହେଲା । ମୋତେ ଖୋଜା ପଡ଼ିବାରୁ ଶୋଇଥିବାର ଦେଖି ପିଲା ଡ଼ାକି ନେଲେ । ହେଲେ ପଇସାତ ନାହିଁ । କେମିତି ଫର୍ମ ପୂରଣ ହେବ ।

ଦରିଦ୍ର ଛାତ୍ର ପାଣ୍ଠି, ଚନ୍ଦ୍ର ଶେଖର ବାବୁଙ୍କ ଆଶ୍ରମରୁ ସାହାଯ୍ୟ ଓ ପ୍ରଧାନ ଶିକ୍ଷକଙ୍କ ସ୍ୱତନ୍ତ୍ର ବ୍ୟକ୍ତିଗତ ସାହାଯ୍ୟ ବଳରେ ଛଅ ଟଙ୍କାଟି ଷାଠିଏ ହେଲା ଓ ସେ କାମଟି ଚଳିଗଲା ।

ବୁଢ଼ୀମାର ଶେଷ ସନ୍ତକ; ହେଉ ପଛେ; ବେଙ୍ଗି ପିତଳର ଦଣ୍ଡି ଓ ପ୍ରଧାନଶିକ୍ଷକ ଲକ୍ଷ୍ମୀଧର ସାହୁଙ୍କର ଶେଷ ଅବଦାନ ମାଟ୍ରିକ ସାର୍ଟିଫିକେଟର ମୂଳଦୁଆ । ତା'ରି ଉପରେ ଏ ଜୀବନ ଗଢ଼ା । ଠାକୁରେ ଭକ୍ତପାଇଁ କେତେବେଳେ ଗୁରୁରୂପରେ ତ କେତେବେଳେ ଖୁଣ୍ଟ ବା ବନ୍ଧ ରୂପରେ ଅବତାର ହୁଅନ୍ତି । ପୁଣି କେତେବେଳେ ବନ୍ଧୁ, ଦୂତ, ଭାଇ, ବାପା, ମା, ଶିକ୍ଷକ ଓ ଗୁରୁ ରୂପରେ ଅବତାର ନେଇ ଭକ୍ତକୁ ରକ୍ଷାକରନ୍ତି । ଧର୍ମର ସ୍ଥାପନା କରନ୍ତି । ଦୁଃଖୀର ଦୁଃଖ ଦୂରକରନ୍ତି । ଅଧର୍ମର ମୂଳଉତ୍ପାଟନ କରନ୍ତି । ଏ ଜୀବନରେ ତା'ର ଦୃଷ୍ଟାନ୍ତ ଏତେ ବେଶୀଯେ ଗାଆଣି ଗାଇଲେ ସରିବନି । ଏ ଜୀବନ ତାଙ୍କରି ସୃଷ୍ଟି, ତାଙ୍କରି ଲାଳିତ, ପାଳିତ ଓ ବିକଶିତ । ତାଙ୍କରି କୋଡ଼ରେ ଶେଷ ଆଶ୍ରୟ ଅବଶ୍ୟ ମିଳିବ । ଏ ଆଶା ମଧ ଦୃଢ଼ୀଭୂତ ।

## ୫୭. ମରକତ ଚୁଡ଼ି କରୁନେଇ କାଢ଼ି .........

ଟେଷ୍ଟ ପରୀକ୍ଷା ସରି ଫର୍ମ ଫିଲପ୍ ସରିଥାଏ । ଦିନେ ସଂଧ୍ୟା ପ୍ରାର୍ଥନାର ଠିକ୍ ପରେ ପରେ ବହୁତ ପିଲା ପ୍ରଧାନ ଶିକ୍ଷକଙ୍କ ଘରକୁ ଦୌଡ଼ିଲେ । ଖବର କ'ଣ ଜାଣିବାକୁ ମୁଁ ମଧ ଗଲି । ଯାଇ ଦେଖେଯେ ଲକ୍ଷ୍ମୀଧରବାବୁ (ପ୍ରଧାନଶିକ୍ଷକ) ବୀରାସନରେ ବସି ପ୍ରାର୍ଥନାରତ । ମଝିରେ ମଝିରେ "ଓଁ ନମୋ ଭଗବେତ ବାସୁଦେବାୟ" ଉଚ୍ଚାରିତ ହେଉଛି । ଖୁବ୍ ଜୋରରେ ଶ୍ୱାସ ଚାଲିଛି । ଝାଳବୁଡ଼ିଯାଉଛି । ଅସ୍ତବ୍ୟସ୍ତ ମଧ ହେଉଛନ୍ତି । ମାତ୍ର ପ୍ରାର୍ଥନା ଓ ଆସନ ଅବିଚଳିତ ଓ ଓଁ ନମୋ ଭଗବତେ ବାସୁଦେବାୟ ମଝିରେ ମଝିରେ ପୂର୍ବପରି ଉଚ୍ଚାରିତ ।

ଡ଼ାକ୍ତର ବୈକୁଣ୍ଠ ଦେବତାଙ୍କୁ ଡ଼କାଗଲା । ସେ ଆସି ପରୀକ୍ଷା କଲେ ଏବଂ ଇଂଜେକ୍ସନ ଦେବାକୁ କହି ସିରିଞ୍ଜ ଠିକ୍ କଲେ । "ମୋତେ ଶାନ୍ତିରେ ଚାଲିଯିବାକୁ ଦିଅ" କହି ତାଙ୍କ ବାମକଡ଼ରେ ତାଙ୍କୁ ଧରି ବସିଥିବା ଛାତ୍ରାବାସର ମନିଟର ମହେଶ୍ୱର କାନ୍ଧକୁ ଢଳିପଡ଼ିଲେ । ମୁଁ ଡ଼ାହାଣ କଡ଼ରେ ଥାଏ । ତାପରେ ତାଙ୍କୁ ଶୋଇ ଦିଆଗଲା । ଡ଼ାକ୍ତର ଘୋଷଣା କଲେ ଯେ ସେ ଆଉ ନାହାନ୍ତି । ତାଙ୍କର ନିରୀହ ସରଳ ବିଶ୍ୱାସୀ ସ୍ତ୍ରୀ ଓ ଶିଶୁ ସନ୍ତାନଙ୍କୁ କୁହାଗଲା ଯେ ତାଙ୍କୁ ଇଂଜେକ୍ସନ ଦେଇ ଶୋଇ ପକାଯାଇଛି । କଟକରୁ ବଡ଼ ଡ଼ାକ୍ତର ଡ଼କାଯାଇଛି । ପ୍ରକୃତରେ କଟକରୁ ତାଙ୍କ ଭାଇଙ୍କୁ ଡ଼କାଯାଇଥିଲା; ଲୋକପଠାଇ ଅନ୍ତ୍ୟେଷ୍ଟିକ୍ରିୟା ପାଇଁ ।

ସେ ପହଞ୍ଚିବାପରେ ଭୋର ସକାଳୁ ଛାତ୍ର ଜନତା ଓ ଦୁଃଖିତ ଜନ ସାଧାରଣଙ୍କ ପଟୁଆରରେ ତାଙ୍କୁ ନିଆଗଲା ପୂତ ଚିତ୍ରୋତ୍ପଳା ନିକଟ କେନ୍ଦ୍ରାପଡ଼ା କେନାଲ କୂଳ ବିରାଟ ବରମୂଳ ଶ୍ମଶାନକୁ ଓ ଚିତାଗ୍ନିରେ ତାଙ୍କର ମରଦେହକୁ ବିସର୍ଜନ କରାଗଲା । ମୋର ଭେଳା ବୁଡ଼ିଗଲା । ଏକା ମୋର କାହିଁକି ପରେ ବୁଝାଗଲା ଯେ ମୋ ପରି ବହୁ ଛାତ୍ରଙ୍କର ଭେଳା ବୁଡ଼ିଗଲା ଯାହାଙ୍କୁକି ସେ ସ୍କୁଲରେ ଓ କଲେଜରେ ପଢ଼ିବାକୁ ମଧ୍ୟ ନିୟମିତ ସାହାଯ୍ୟ କରୁଥିଲେ । ନିଜେ ଛିଣ୍ଡା ଚପଲ, ସାଦାଧୋତି ପଞ୍ଜାବି ପିନ୍ଧି ଖୁବ୍ ସରଳ ନିରାଡ଼ମ୍ବର ଜୀବନ କଟାଇ ସମସ୍ତ ସଞ୍ଚୟ ଗରିବ ଓ ମେଧାବୀ ଛାତ୍ରମାନଙ୍କ ଶିକ୍ଷା ପାଇଁ ବ୍ୟୟ କରୁଥିଲେ । ତାଙ୍କ ଲିଖିତ ବହିର ଆୟ ମଧ ଛାତ୍ରମାନଙ୍କ ପାଇଁ ଯାଉଥିଲା । ତେଣୁ ମୃତ୍ୟୁ ସମୟକୁ କଣା ପଇସାଟିଏ ମଧ ସଞ୍ଚୟ ନଥିଲା । ତେଣୁ ତାଙ୍କର ମୃତ୍ୟୁରେ ବହୁ ଗୁଣଗ୍ରାହୀ, ସାହାଯ୍ୟ ଗ୍ରାହୀ, ଜ୍ଞାନୀ, ଗୁଣୀ ଓ ସାଧାରଣ ଜନତା ଆଖିରୁ ଲୁହ ଗଡ଼ାଇଛନ୍ତି । ବାସ୍ତବିକ ; ଇଏତ ମୃତ୍ୟୁନୁହେଁ; ସିଧାସଳଖ ସ୍ୱର୍ଗଯାତ୍ରା ।

ଆମେ ସବୁ ତାଙ୍କର ଶବଦାହ କରି ଫେରିଲା ବେଳକୁ ତାଙ୍କ ଦାଣ୍ଡ ପିଣ୍ଡାରେ ଦୈନିକ ବିଶ୍ରାମ କରୁଥିବା ହାତ ଓ ଗୋଡ଼ କଡ଼ି ଲାଗିଥିବା ପାଗଳଟି କାନ୍ଦି କାନ୍ଦି ଗୀତ ବୋଲି ଚାଲିଯାଉଥାଏ:- "ମରକତ ଚୂଡ଼ି- କରୁନେଇ କାଢ଼ି ..." ।

ପାଗଳଟି ସେଇ ଯେ ଗଲା - ଚାଲିଗଲା । ଆଉ ତାକୁ ସେଠି କେହି କେବେ ଦେଖିନି । ସେ କାଳେ ଥିଲା ଗୋଟେ ସାଧକ । ସାଧନାରେ ପାଗଳ । ଘରଲୋକ ତାକୁ ବୁଝି ନପାରି ହାତଗୋଡରେ କଡ଼ିଦେଇ, ବନ୍ଦମନ୍ଦ କରି ବହୁତ ଯାତନା ଦେଉଥିଲେ । ତେଣୁ ସେ ଘରଛାଡି ପଳାଇ ଆସି ଦିନ ସାରା ଏଣେ ତେଣେ ବୁଲେ ଓ ରାତିରେ ପ୍ରଧାନଶିକ୍ଷକଙ୍କ ଦାଣ୍ଡ ବାରଣ୍ଡାରେ ବସି ଯୋଗ ସାଧନା କରେ । ଗୁଣଗ୍ରାହୀ ଲକ୍ଷ୍ମୀଧର ବାବୁ ତାକୁ ଚିହ୍ନିଥିଲେ । ଖାଲି ଚିହ୍ନିନଥିଲେ ଓ ତାକୁ ତା'ର ସାଧନା ପଥରେ ଆଗେଇ ଯିବାକୁ ସବୁମନ୍ତେ ଗୁପ୍ତରେ ସାହାଯ୍ୟ ସହଯୋଗ କରୁଥିଲେ ।

ମୋ ପାଇଁ ସ୍ୱର୍ଗ ଛିଡି ପଡିଲା । ମୋର ଭେଳା ବୁଡିଗଲା । ଯାହାଙ୍କ ପାଇଁ ମୁଁ ଆଜି ମଣିଷ ସେ ମଣିଷ ଦେହଛାଡି ଦେବ ଲୋକକୁ ଚାଲିଗଲେ । ମୁଁ ବାସ୍ତବରେ ଆଜିହିଁ

ବାପଛେଉଣ୍ଡ ପରି ନିଜକୁ ଅନୁଭବ କଲି । ହେଲେ ତାଙ୍କର ଆଶିର୍ବାଦ ଏବେଯାଏ ମୋ ପାଇଁ ଜୀବନ୍ତ । ସେ ବାଟ ଦେଇ ଗଲାବେଳେ ସେ ଘର ପାଖରେ ହାତଦୁଇଟି ଆପେ ଯୋଡି ହୋଇଯାଏ ଓ ମୁଣ୍ଡ ନଇଁ ଆସେ ।

## ୫୮. ଦୀନବନ୍ଧୁ କୃପାକଲେ

ପରିଶେଷରେ ପରୀକ୍ଷା ସମୟ ଆସିଲା । ସେତେବେଳେ ପିଲାମାନେ ପରୀକ୍ଷା ଦେବାକୁ କଟକ ଯାଉଥାନ୍ତି । କ୍ରାଏଷ୍ଟ କଲିଜିଏଟରେ ଆମର ପରୀକ୍ଷାକେନ୍ଦ୍ର ପଡ଼ିଥାଏ । ସାଲେପୁରରୁ ପିଲାଏ ସାଙ୍ଗହୋଇ ବସ୍‌ରେ ଯିବେ । ସୁତାହାଟରେ ଭଡା ନିଆଯାଇଥିବା ଘରେ ରହିବେ । ମିଶନ ହାଇସ୍କୁଲରେ ପରୀକ୍ଷା ଦେବେ । ଗୋଟେ ସପ୍ତାହର ରହଣି । ଏ ସବୁପାଇଁ ଖର୍ଚ୍ଚ ଲାଗିବ କୋଡିଏ ଟଙ୍କା । ଅବଶ୍ୟ ଏ ବିଷୟରେ ଆଗରୁ ଜଣାଇ ଦିଆଯାଇଥିଲା । ଭାଇନା ସେତେବେଳକୁ ବାରଙ୍ଗ ଦୁର୍ଗା କାଚ କାରଖାନାରେ ଆପ୍ରେଣ୍ଟିସ୍ ଥାନ୍ତି । ସେ କୋଡିଏ ଟଙ୍କା ଦେବାକୁ ପ୍ରତିଶୃତି ଦେଇଥିଲେ । ହେଲେ ଦେଇ ପାରିଲେନି । ତେଣୁ ସବୁପିଲା କଟକ ଯାଇ ପରୀକ୍ଷା ଦେବାକୁ ବସ୍‌ରେ ବସିଲେଣି । ମୋତେ ନଦେଖି ଦୀନବନ୍ଧୁ ବାବୁ ଯେକି ଆମର ଶ୍ରେଣୀ ଶିକ୍ଷକ, ଛାତ୍ରାବାସ ଅଧିକ୍ଷକ ଓ ଆମ ସାଙ୍ଗରେ ଯାଉଥାନ୍ତି ଆସି ଡାକି କହିଲେ 'ଆ' ବ୍ୟସ୍ତ ହୁଅନା । ମୁଁ ଅଛି ।

ତାଙ୍କଠାରୁ ଆଶ୍ୱାସନା ପାଇ ବସ୍‌ରେ ଯାଇ କଟକ ସୁତାହାଟରେ ରହି ମିଶନ ସ୍କୁଲରେ ପରୀକ୍ଷା ଦେଲି। ଖେଳଛୁଟିରେ ଦୀନବନ୍ଧୁବାବୁ ରସଗୋଲା ଖାଇବାକୁ ଦିଅନ୍ତି । ପରୀକ୍ଷା ମଝିରେ ଷ୍ଟୁଆଟ କଲେଜରେ ପଢୁଥିବା କେଶବ ମିଶ୍ର (ବୁଲା କକେଇଙ୍କ ବା ପଣ୍ଡିତ ନାରାୟଣଙ୍କ ପୁଅ) ମୋ ନାତୀ ଦେଖାହୋଇ ଟଙ୍କାଟିଏ ଦେଇଥିଲେ । ସେଥିରେ ସେଦିନ କଟକ ଚଣ୍ଡୀଙ୍କ ପାଖରେ ଭୋଗଦେଇ ପାସ୍‌କଲେ ଆଉ ଟଙ୍କାକର ଭୋଗ ମାନସିକ କରିଥିଲି ।

ପରୀକ୍ଷା ମଝିରେ ସୁତାହାଟରେ ରହୁଥିବା ଘରର ମାଲିକ ତାଙ୍କ ବୁଢୀମା ଦୁଇ ପିଲାଙ୍କ ସହିତ ପରିଚିତ ହେଲୁ । ସେ ଖୁବ୍ ଭଦ୍ର ଖ୍ରୀଷ୍ଟିଆନ ପରିବାର ଟିଏ । ସେ ପିଲାଏ ଭଲ ପଢୁଥିଲେ । ପରେ ପ୍ରାଦେଶିକ ସେବାରେ ଜଣେ ଓ ଜଣେ ସହକାରୀ ଯନ୍ତ୍ରୀ ହୋଇ ଥିଲେ । ମୋଟ ଉପରେ ପରୀକ୍ଷା ସମୟରେ ଅଭାବ କ'ଣ ଜାଣିହୋଇନଥିଲା । ବରଂ ପୀତାମ୍ବର ପରୀକ୍ଷା ଦିନ ତା ଇଂରାଜୀବହିଟି ପୁରା ପଢ଼ିବାକୁ ଛାଡ଼ି ଦେବାରୁ ଇଂରାଜୀ ବହିର ସଂପୃକ୍ତ ବିଷୟ ଗୁଡ଼ିକ ଓଲଟାଇ ଯିବାର ଏକ ସୁଯୋଗ ମିଳିଥିଲା ।

ପରୀକ୍ଷା ପରେ ସେଠାରୁ ବାରଙ୍ଗ ଯାଇ ଭାଇନାଙ୍କୁ ଦେଖାକରି ଗାଁକୁ ନିରାଶରେ ଫେରିବାକୁ ପଡିଲା । ଦୀନବନ୍ଧୁ ବାବୁଙ୍କର କୋଡ଼ିଏ ଟଙ୍କା ନସୁଝିଥିବାରୁ ସବୁବେଳେ ଋଣୀପରି

ଲାଗୁଥାଏ । ନସୁଝିବାଯାଏ ଆଉ ସ୍କୁଲକୁ ଯିବାକୁ ମଧ୍ୟ ଦୁଃଖ ଓ ଲାଜ ଲାଗୁଥାଏ । ଠାକୁରେ ମନର କଥା ଶୁଣିଲେ । ଅଳ୍ପଦିନ ମଧ୍ୟରେ କଟକରେ ମାସିକ ୩୦ ଟଙ୍କାରେ ଟିଉସନ ବ୍ୟବସ୍ଥା ହୋଇଗଲା ଓ ସେଥିରୁ ପ୍ରଥମ ମାସର ଟଙ୍କା ଧରି ସିଧା ସାଲେପୁର ଯାଇ ଦୀନବନ୍ଧୁବାବୁଙ୍କୁ କୋଡ଼ିଏ ଟଙ୍କା ଦେଇ ସ୍କୁଲ ସାର୍ଟିଫିକେଟନେଇ ଫେରିବା ଦିନ ଯେଉଁ ଆନନ୍ଦ ତାହା ସେହି ଜଗଦୀଶ୍ୱରଙ୍କୁ ହିଁ ଜଣା । ଦୀନବନ୍ଧୁବାବୁ ସେ ଦିନ ସ୍ନେହରେ ମୋ ମୁଣ୍ଡଟିକୁ ଆଉଁସି ଦେଇ ଯେଉଁ ଆଶିର୍ବାଦ ଜଣାଇଥିଲେ ତାହା ଏବେ ମଧ୍ୟ ଜୀବନ୍ତ । ପୁଣି କହିଥିଲେ ତୋର ଏତେ ଜିଦ୍ । ସେ ଦିନୁ ମନେରଖି ଟ୨ ୦.୦୦ ଦେଇ ସ୍କୁଲ ସାର୍ଟିଫିକେଟ ନେଲୁ । ଧନ୍ୟତେତେ ।

ପରୀକ୍ଷା ଦେବାର ୪୫ଦିନ ପରେ ପରେ ଫଳ ବାହାରିଲା । ତା ପୂର୍ବରୁ ଗାଁର ଟକୁଳି ଉମାକକେଇ ମୋ ସହ ଆଉ କେତେ ପିଲାଙ୍କ ରାଶି ପଗରି ଫଳ ବିଷୟରେ ହାତାଶ ସୂଚକ ମନ୍ତବ୍ୟ ଦେବାରେ ଯେଉଁ ଆଘାତର ଭୟ ଲାଗିଥିଲା ଈଶ୍ୱରଙ୍କ ଦୟାରୁ ତାହା ବ୍ୟର୍ଥ ହୋଇଯାଇଥିଲା । ଅପର ପକ୍ଷେ ସନାକକେଇ ଦିନେ କହିଲେ ଆମ ଇନ୍ଦୁ ପରୀକ୍ଷା ଦେବାପରେ ପଚାରିବାରୁ ସେ ନିଶ୍ଚୟ ପାଶ୍ କରିବ ବୋଲି କହିଥିଲା । ତୋର କ'ଣ ହେବ କହିଲୁ । ମୁଁ ମଧ ନିଶ୍ଚୟ ପାଶ କରିବି ବୋଲି କହିବାରେ ସମସ୍ତେ ସୁଖୀ ହୋଇଥିଲେ । ଈଶ୍ୱର ଏ ଦମ୍ପତିଙ୍କୁ ରକ୍ଷା କରି ଖାଲି ସମ୍ମାନ ରଖିନାହାନ୍ତି ପୂର୍ବରୁ ଦେଇଥିବା ମୋଟାଭାତ ଓ ମୋଟା ଲୁଗାର ବରଦାନକୁ ସଫଳ କରାଇ ତାଙ୍କର ଦୀନବାନ୍ଧବ ନାମକୁ ସାର୍ଥକ କରିଛନ୍ତି । ମୁଁ ନୁହେଁ ସନାକକେଇଙ୍କୁ ସେହିଁ ମୋ ତୁଣ୍ଡରେ ଉତ୍ତର ଦେଇଥିଲେ । ସେ ହିଁ ଉମା କକେଇଙ୍କ ଭବିଷ୍ୟ ବାଣୀକୁ ଓଲଟାଇ ଦେଇଥିଲେ । ଯାହାର ଗଳାରେ ସମଗ୍ର ଗ୍ରହ ଜଗତ୍ ହାରପରି ଲଟକିଛି ତା ପାଖରେ କୋଉ ଗ୍ରହ କ'ଣ କରିବେ ? ତାଙ୍କ ଇଚ୍ଛାହିଁ ଶେଷ ଇଚ୍ଛା ।

## ୫୯. ଚେହେରା ବାଗେଇ ଗଲାଣି

ପରୀକ୍ଷା ଫଳ ବାହାରୁ ନବାହାରୁଣୁ କଟକ ଚାଲିଲି । ସେତେବେଳକୁ କଟକ ତେଲେଙ୍ଗା ବଜାର ଆକୁଳ ପଣ୍ଡିତଘର କୋଠା ତାଙ୍କ ଭାଇବନ୍ଧୁଙ୍କର ମେସ୍ ହୋଇଥାଏ । ଉପର ଖଣ୍ଡାରେ ରହନ୍ତି ପଣ୍ଡିତ ଆକୁଳ ମିଶ୍ର ।ସେ ଯୁବାବସ୍ଥାରୁ ନିରସାଜ ଥିଲେ ଓ ଠାକୁର ରାମକୃଷ୍ଣ ପରମହଂସଙ୍କର ପ୍ରିୟ ଭକ୍ତ ଥିଲେ । ମା' ଠାକୁରାଣୀଙ୍କ ଠାରୁ ସେ ଦୀକ୍ଷିତ । ଭୁବନେଶ୍ୱର ରାମକୃଷ୍ଣ ମଠରୁ କିଏ ଗଲେ ତାଙ୍କୁ ଖୁବ୍ ଖାଇବାକୁ ଦିଅନ୍ତି । କଂସାଏ କଂସାଏ କ୍ଷୀର ପିଇବାକୁ ଦିଅନ୍ତି । ରାମକୃଷ୍ଣ କୁଟୀର ପିଲାଙ୍କୁ ନିଜର ପିଲାପରି ସବୁ ସାହାଯ୍ୟ ସହାନୁଭୁତି ଦିଅନ୍ତି । ଅକ୍ଷୟ ଚକ୍ରବର୍ତ୍ତୀଙ୍କୁ ରଖି ଖାଇବାର ରହିବାର ବନ୍ଦୋବସ୍ତ କରାଇ

ବହିଲେଖାନ୍ତି ଓ କଟକ ଟ୍ରେଡ଼ିଂ କମ୍ପାନିରେ ତାହାପ୍ରକାଶିତ କରନ୍ତି । ତଳଖଞ୍ଜାରେ ରହନ୍ତି ସାନମାମୁଁ ଡ଼ା. କୁଳମଣି ମିଶ୍ର । ସେ ଓ ମାଇଁ ପାଗଳାବାବାଙ୍କ ଭକ୍ତ । ପିଲାଏ ମଧ୍ୟ ଖୁବ୍ ଉଦାର । ବର୍ଷରେ ଥରେ ଯଜ୍ଞ ପାଇଁ ଓ ବାବାଙ୍କ ପୂଜାପାଇଁ ବହୁତ ବ୍ୟୟ କରିଦିଅନ୍ତି । ସେ ପାଖରେ ସୁରିଆନା ଆସିଲେ ରହନ୍ତି ଓ ସାନମାମୁଙ୍କ ପିଲାଏ ମଧ୍ୟ ରହନ୍ତି । ଏ ପାଖରେ ମଝିଆ ମାମୁଁଙ୍କ ପିଲାଏ ରହନ୍ତି ଓ ପଣ୍ଡିତ ମାମୁଁଙ୍କର ଖାଦ୍ୟପେୟ ବୁଲା ବୋଲି ତାଙ୍କର ଜଣେ ବ୍ୟକ୍ତିଗତ ସାହାଯ୍ୟକ ପ୍ରସ୍ତୁତ କରେ ଓ ତାଙ୍କର ସମସ୍ତ ପ୍ରକାର ସେବା ଶୁଶ୍ରୁଷା କରେ; କାରଣ ସେତେବେଳକୁ ତାଙ୍କୁ ଭଲ ଦେଖାଯାଉ ନଥାଏ । ପରେ ସମ୍ପୂର୍ଣ୍ଣ ଦୃଷ୍ଟିଶକ୍ତି ହରାଇ ବହୁଦିନ ସେଇ ବୁଲାର ସେବାଉପରେ ନିର୍ଭରକରି ବଞ୍ଚିଥଲେ । ତଳ ଖଞ୍ଜାରେ ଗୋଟିଏ ଚାକର ସହ ରୋଷେଇ ପାଇଁ ଥାନ୍ତି ଜଣେ ବ୍ରାହ୍ମଣ ଓ ଜଣେ ବ୍ରାହ୍ମଣୀ । ମାଷ୍ଟ୍ରେ ସବୁପ୍ରକାର ଦୋକାନ ବଜାର କରିଦିଅନ୍ତି । ଠିକ୍ ମେସ୍ ଟିଏ ପରି । କେହି କାହାକୁ ପଚାରିବାକୁ ନାହିଁ । ଖାଇବା ବେଳକୁ ଯାଇ ସଫାହୋଇ ଧୂଆହୋଇଥିବା ଥାଳି ଗିନା ଧରି ବସିଗଲେ ଖାଇବାକୁ ପେଟ ପୁରା ମିଳିଯାଏ । ଆମ ଗାଁର ରଘୁଭାଇନା (ତାଙ୍କ ଭାଇଆଳି ପୁତୁରା), ନାରଣ ମିଶ୍ର; ତାଙ୍କ ଭଣଜା ହିସାବ ଯଦୁବାବୁ , ରସା କକେଇ ଇତ୍ୟାଦି ବହୁତ ଲୋକ ସେଠାରେ ରହି ଖାନ୍ତି ଓ ବିଭିନ୍ନ ସ୍ଥାନରେ ଚାକିରୀ କରନ୍ତି । ସେତେବେଳକୁ ତାଙ୍କ ନିଜ ଭଣଜା ସବୁ ପାଶ୍‌କରି ସେ ମଠ ଛାଡ଼ି ସାରିଲେଣି । ଝିଅ ଓ ନାତୀ, ନାତୁଣୀ କିନ୍ତୁ ଥାନ୍ତି । କୋଉଠିକି ଯିବି ଭାବି ନଥିଲି । କେଜାଣି କାହିଁକି ଠାକୁରେ ମୋତେ ସେହିଠିକି ଟାଣି ନେଇଥିଲେ । ମୁଁ ମଧ ଅନ୍ୟମାନଙ୍କପରି ସେଠି ଡ଼େରା ପକାଇ ଦେଲି । ପ୍ରଭା ଭାଇନା ଯେକି ପରେ ଆକାଶବାଣୀରେ ଉଚ୍ଚପଦକୁ ଗଲେ, ଧୀର ବିଶ୍ୱାଳ ଯେ କି ଫିଲ୍ମ ଜଗତର ଉଚ୍ଚକୁ ଗଲେ ଓ ଶକ୍ତି ଭାଇନା ଯେ କି ପରେ ଆଇ.ଏ.ଏସ୍ ହୋଇଥିଲେ ଇତ୍ୟାଦି ବସାଉଠା କରନ୍ତି । 'ସିନେ ଓଡ଼ିଶା' ପତ୍ରିକାଟିଏ ପ୍ରକାଶ ହେଉଥାଏ ।

ପ୍ରଭାଭାଇନା ଅଳ୍ପଦିନ ମଧ୍ୟରେ ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କ ଘରେ ତାଙ୍କ ପୁଅଝିଅଙ୍କୁ ପଢ଼ାଇବାକୁ ଟିଉସନ ବ୍ୟବସ୍ଥା କରିଦେଲେ । ରହିବାକୁ ମିଳିବ ଓ ମାସିକ ଟ୩୦.୦୦ ବେତନ ମିଳିବ । ଖୁସିହୋଇ ସେଠାରେ ଯାଇ ରହିଗଲି । ମନଦେଇ ପିଲାଙ୍କୁ ଦିଓଳି ପଢ଼ାଇଲି । ପଢ଼ାରେ କିଛି ତୃଟିହେଲେ ପ୍ରହ୍ଲାଦବାବୁ ବାଗେଇ ଦିଅନ୍ତି । ସେ ଅତ୍ୟନ୍ତ ଭଦ୍ରଲୋକ । ପରେ ସେ ଓଡ଼ିଆ ବିଭାଗରେ ମୁଖ୍ୟ ଓ ଉତ୍କଳ ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ପାଲି ଭାଷାରେ ତାଙ୍କର ଖୁବ୍ ବ୍ୟୁତ୍‌ପତ୍ତି ଥିଲା । ମାତ୍ର ନୀରବ ସାଧକ ଓ ଶାନ୍ତ ଭଦ୍ରବ୍ୟକ୍ତି ଯୋଗୁଁ ତାଙ୍କ ବାହାଦୁରୀ କମ୍ ଲୋକଙ୍କୁ ଜଣା । ମୁଁ ତାଙ୍କର ଯେଉଁ ପୁଅକୁ ପଢ଼ାଇଥିଲି ସେ ଏବେ କୃଷି ଅଧିକାରୀ ଓ ଝିଅଟି ସଂସ୍କୃତ ଅଧ୍ୟାପିକା । ଅନ୍ୟ ଝିଅ ମାନେ ମଧ ସୁପ୍ରତିଷ୍ଠିତ । ପ୍ରହ୍ଲାଦ ପ୍ରଧାନଙ୍କ ପରି ଜଣେ ଉଚ୍ଚକୋଟୀର ଭଦ୍ରଲୋକଙ୍କ

ପାଖରେ ରହ ତାଙ୍କଠାରୁ ଆଚାର ବ୍ୟବହାର ଏବଂ ଲେଖାପଢ଼ା ଶିଖିବାର ସୁଯୋଗ କେବଳ ସେହି ଦୟାମୟ ବ୍ୟବସ୍ଥା କରିଦେଇଥିଲେ । ତାଙ୍କ ସ୍ତ୍ରୀ ନିଜର ମା ଠାରୁ ବଳି ସ୍ନେହ କରନ୍ତି । ପରବର୍ତ୍ତୀ ଜୀବନରେ ଥରେ ବାଣୀବିହାରକୁ ତାଙ୍କ ଘରକୁ ମୋ ସ୍ତ୍ରୀ ଓ ମୁଁ ଯାଇ ଥିଲୁ । ପାଖରେ ବସାଇ ପ୍ରହ୍ଲାଦ ବାବୁ ଗପ କହିଲେ । ତାଙ୍କ ସ୍ତ୍ରୀ ନିଜେ ଚିନାବାଦାମ ଛଡ଼ାଇ ଖାଇବାକୁ ବଢ଼ାଇଦେଉ ଥାନ୍ତି । ସେ ସ୍ନେହ ଶାଶ୍ୱତ, ଅନାବିଳ । ସେଥିରେ ଥିଲା ଖାଲି ଆଶିର୍ବାଦ ଓ ଆଶିର୍ବାଦ । ପାଇବାର କିଛି ଆଶା ତା ପଛରେ ନଥିଲା । ନଥିଲା ଦବାର ମଧ୍ୟ । ଏଇତ ଈଶ୍ୱରଙ୍କ ଆଶିର୍ବାଦ ଓ ସାକ୍ଷାତକାର । କେବଳ ଖୋଲା ମନରେ ଉପଲବ୍ଧି କରିପାରିଲେ ହେଲା ।

ତାଙ୍କ ଘରେ ରହେ ସିନା ଖାଏ ମାଲଗୋଦାମର ଗୋଟେ ହୋଟେଲରେ । ପାଠପଢାପରେ ନିୟମିତ ଖାଇବା, ରହିବା ଓ ବିଶ୍ରାମ ଯୋଗୁଁ ଚାରିଟା ମାସରେ ଦେହଟିକେ ଲାଗିଗଲା । ସଫାସୁତୁରା ରହିବା ଯୋଗୁଁ ବନମଧ ଫିଟିଗଲା । ଆରମ୍ଭରୁ ମୁହଁରେ ଥିବା ଛୋଟ ଦାଢୀକାଟି ଛୋଟ ଗଜୁରିଆ ନିଶ ଟିକେ ମଧ୍ୟ ସେତେବେଳେ ରଖିଥିଲି । ଦିନେ ବୁଲାକକେଇ ଦେଖା ହେଲେ । ଘରେ ଆସି ବୋଉକୁ କହିଲେ ଆମ ବାଉେପୁରା ବାବୁ ହୋଇଗଲେଣି । ତାଙ୍କର ଚେହେରା ବାଗେଇ ଗଲାଣି । ମୋତେ ଠିକ୍ ତା' ପରେ ପରେ ଜର ହେଲା । ବୋଉ କହିଲା, "ମଣିଷର ହାଇ ଗଛର ଛାଇ ।"

## ୬୦. ଜୁଆଡ଼ି ଘପୁଡ଼ା

ପ୍ରହ୍ଲାଦବାବୁ ରହୁଥିଲେ ମାଲଗୋଦାମ ରୋଡ଼ରେ ରେଭେନ୍ସା କଲେଜ ପଛପଟ ତାଳଦଣ୍ଡା କେନାଲ କୂଳ କ୍ୱାର୍ଟରରେ । ମୁଁ ସେଠି ରହେ । ତାଙ୍କ ଘରେ ଗାଧାଏ । ଝାଡ଼ାଯାଏ; ମାତ୍ର ଖାଇବାକୁ ଦୁଇଥର ମାଲଗୋଦାମ ରାସ୍ତାକଡ଼ ଢ଼ାବା ହୋଟେଲକୁ ଯାଏ । ମାସିକ ବ୍ୟବସ୍ଥା କରିଦେଇଥାଏ । ଦୁଇଓଳି ଖାଏ । ସକାଳବେଳା ଭାତ, ଡ଼ାଲି, ତରକାରି ଓ ଭଜା ବା ଖଟା । ଉପରବେଳା ଭାତ, ଡ଼ାଲି ଓ ତରକାରୀ । ସପ୍ତାହରେ ଦୁଇଥର ମାଛ ତରକାରୀ ମିଳେ । ମାସକୁ ଦେବାକୁ ପଡ଼େ ଟ ୧୦.୦୦ । ହୋଟେଲଟି ସିନା ଢ଼ାବାରେ ହୁଏ ମାତ୍ର ତା ଭିତରେ ବେଶ୍ ସଫାଥାଏ । ବେଞ୍ଚ ଟେବୁଲ ପଡ଼ିଥାଏ । ପରଦା ବ୍ୟବସ୍ଥା ଯୋଗୁଁ ମାଲ ଗୋଦାମର ଗହଳି ଓ ଧୂଳି ଜଣା ପଡ଼େନି । ମାଲ ଗୋଦାମ ରାସ୍ତାରେ ଆଣ୍ଠୁଏ କାଦୁଅ। କ୍ୟାବିନ ଚାରିପଟେ ଓ ତଳେ ମଧ୍ୟ କାଦୁଅ । ମାତ୍ର କ୍ୟାବିନ୍ ଭିତରେ ଚିକ୍‌ଚିକ୍ ।

ରୋଷେଇ ମଧ୍ୟ ବଢ଼ ଘରୋଇଭଳି ହୁଏ । ବଡ଼ି ବାଇଗଣ ଆଳୁ ସହ ସଜନା ଛୁଇଁ ଝୋଳ । କଲରାଭଜା, ଆଳୁଭର୍ତ୍ତା, କେଉଁ ଦିନ କେମିତି ଶାଗ ହୁଏ । ମାଛହେଲା ନଈ ପୋହଳାର ଝୋଳ । ବେଶ୍ ରୁଚି ସମ୍ପନ୍ନ ହୁଏ । ତେଣୁ ଖାଇବାଟା ଗୋଟେ ସଉକ ହୋଇ ଯାଇଥିଲା । ହୋଟେଲର ମାଲିକ ନିଜେ ୧୦ଟା ବେଳକୁ ରାନ୍ଧିବା କାମ ସାରି ପଇସା

ଟେବୁଲ ପାଖରେ ବସିଯାଏ । ବ୍ରାହ୍ମଣ ଲୋକ; ଟୋକାଟିଏ । ଲୁଙ୍ଗୀ ସାଙ୍ଗକୁ ସାର୍ଟ । ମୋତେ ସାର୍ କହି ଭଲ ଖାତିର କରେ । ମୋଠୁଁ ପଇସାଟି ଠିକ୍ ମାସ ଶେଷ ଦିନ ମିଳିଯାଏ । ମାଲ ଗୋଦାମର ଅନ୍ୟ ବ୍ୟବସାୟୀ ଭଲ ଖା'ନ୍ତି ଓ ବେଶୀ ପଇସା ଦିଅନ୍ତି ସତ ସେ ପଇସା ନିୟମିତ ମିଳେନି । ଥରକୁ ତିନିଥର ମାଗିବାକୁ ପଡ଼େ । ମାଲଗୋଦାମରେ ପରିବା ବଜାର ଥିବାରୁ ଶସ୍ତାରେ ଭଲ ପରିବା ମିଳିଥାଏ । ବିକ୍ରୀମଧ୍ୟ ଭଲହୁଏ । ଚକ୍ରଧର ନନା ମୋଟ ଉପରେ ତାଙ୍କ ହୋଟେଲ ବ୍ୟବସାୟଟି ଭଲରେ ଚଳାଉଥିଲେ । ଏମିତି ଆଉକେତୋଟି ହୋଟେଲ ମଧ୍ୟ । ମାଲଗୋଦାମ ଗୋଟେ ଏପରି ଯାଗା ଯେଉଁଠି ଯାହାକିଛି ବ୍ୟବସାୟ କଲେ ଭଲ ଚଳେ । ଯାହାକିଛି ବ୍ୟବସାୟ ସଂଧ୍ୟାଯାଏ; ଆଠଟାକୁ ସୁନସାନ୍ । ଦୁଇପହରଟି ଖୁବ୍ ବ୍ୟବସାୟ ଜମିଯାଏ ।

ପ୍ରଦ୍ୟୁମ୍ନବାବୁଙ୍କ ଘରୁ ମାଲ ଗୋଦାମ ହୋଟେଲକୁ ଯିବା ବାଟରେ ଟିକେ ନିରୋଳା ରାସ୍ତାପଡ଼େ । ତା ପରେ ଗୋଟେ ଛୋଟ ପାଣ୍ଠିଥାଏ । ସେଉଠୁଁ ଆରମ୍ଭ ମାଲ ଗୋଦାମ ଅଞ୍ଚଳ । ଏହି ନିରୋଳା ରାସ୍ତା ଦେଇ ବହୁ ନିରୀହଲୋକ ବିଶେଷ କରି ଗାଉଁଲି ଛୋଟ ବ୍ୟବସାୟୀ ମାଲଗୋଦାମକୁ ଯାଆସ କରନ୍ତି । ତାଙ୍କୁ ଠକିବାକୁ ଗୋଟେ ଜୁଆପାଲି ପଡ଼େ । ମୁଁ ଗଲା ଆସିଲା ବେଳେ ଦୂରରୁ ତା'ଉପରେ ନଜର ଦିଏ । ଦେଖେ କେତେ କେତେ ଲୋକ କାନ୍ଦି କାନ୍ଦି ସେଠୁଁ ଯାଉଥାନ୍ତି । ମୁଁ ତ ଆଗରୁ ଜୁଆ ଆଡା ଦେଖି ନଥିଲି । ଖେଳ କ'ଣ ଜାଣି ନଥିଲି । ଦିନେଜଣେ କାନ୍ଦୁଥିବା ଲୋକଠାରୁ ତା'ର ବିବରଣି ଶୁଣି ସ୍ଥିରକଲି ମୁଁ ନିକଟରେ ରହି ଯଦି ଆସୁଥିବା ଲୋକଙ୍କୁ ଜୁଆ ଖେଳିବାକୁ ବନ୍ଦକରେ ତେବେ ଗୋଟେ ଭଲ କାମ ହେବ ।

ତା'ପରଦିନ ମୋ ନିଷ୍ପତ୍ତି ମୁତାବକ ଜୁଆ ଆଡ୍ଡାର ଅଳ୍ପ ଦୂରରେ ରହି ମୋ କାମ ଆରମ୍ଭ କରିଦେବାରୁ ଜୁଆ ଆଡ୍ଡାକୁ ଆଉ କେହିଗଲେନି । କିନ୍ତୁ ଜୁଆଡ଼ିମାନେ ଏ କଥାକୁ ଲକ୍ଷ କଲେ । ତାଙ୍କ ମଧ୍ୟରୁ ଜଣେ ଦୌଡ଼ି ଆସି ମୋତେ ଚପୁଡ଼ାଟିଏ ପକାଇଲା । ମୁଁ ସାଙ୍ଗେ ସାଙ୍ଗେ ପାଖ ଫାଣ୍ଡିକୁ ଯାଇ ଦେଖିଲି ଦୁଇତିନିଜଣ କନେଷ୍ଟବଲ ଖିଆବେଳେ ଲୁଙ୍ଗିମାରି ଶୋଇଛନ୍ତି । ତାଙ୍କୁ ଘଟଣାଟି କହିବାରୁ ସେ ଗୋଡ଼ାଇ ଗୋଡ଼ାଇ ଦୁଇଜଣ ଜୁଆଡ଼ିଙ୍କୁ ଧରି ନେଇଗଲେ । ମୋତେ ଜଣେ କହିଲା ତାଙ୍କ ସହ ଜୁଆଡ଼ିଙ୍କର ସଟା ଅଛି । ଆପଣ କାହିଁକି ତୁଚ୍ଛାରେ ମାଡ଼ ଖାଇଲେ ! ମୁଁ କହିଲି ଲୋକଙ୍କ ଦୁଃଖ ଦେଖି ମୋ ଦେହ ସହିଲାନି ।

ଯାହାହେଉ, ସେହିଦିନୁ ସେ ରାସ୍ତାରେ ମୁଁ ଥିବା ଯାଏ ଆଉ ଜୁଆ ଆଡ୍ଡା ଦେଖିନି । ସେମାନେ ହୁଏତ ଅନ୍ୟତ୍ର କେଉଁଠି ଆଡ୍ଡା କରିଥିବେ । ହେଲେ ଭଗବାନ ମୋ ମନ ଭିତରେ ଅନ୍ୟାୟର ପ୍ରତିରୋଧ ପାଇଁ ଏ ଯେଉଁ ପ୍ରେରଣା ଦେଲେ ତାହା ଫଳରେ ଅଳ୍ପ ହେଲେ ମଧ୍ୟ କେତେ ଲୋକତ ଜୁଆ ଖେଳର ଶୀକାର ହେବାରୁ ରକ୍ଷା ପାଇଲେ । ଅନ୍ୟାୟ କରିବା ଖରାପ । ଅନ୍ୟାୟ ଦେଖି ତାକୁ ସହି ଯିବା ଆହୁରି ଖରାପ । ଠାକୁରେ ମୋ ମନରେ ସେହି ଦିନର ସେହି ଚପୁଡ଼ା ଖାଇବା ଦିନରୁ ଏ ସତ୍ୟଟିକୁ ବସାବାନ୍ଧି ରଖି ଦେଇଛନ୍ତି । ଅନ୍ୟାୟ ପ୍ରତିରୋଧ ଓ ପ୍ରତିକାର ପ୍ରତ୍ୟେକ ବ୍ୟକ୍ତିର ବିଶେଷ କରି ଶିକ୍ଷିତ ଓ ନ୍ୟାୟ ମାର୍ଗରେ ଥିବା ଲୋକଙ୍କର କର୍ତ୍ତବ୍ୟ ।

## ୬୧. ଶିକ୍ଷକ ପଦରେ

ପିଲାଦିନରୁ ନୈଶ ବିଦ୍ୟାଳୟ କରିବା ଓ ଟିଉସନ କରିବାରେ ବହୁତ ଆଗ୍ରହ ଥିଲା । ମାଟ୍ରିକ ପାଶପରେ ମଧ୍ୟ ସେହି ଟିଉସନ କରୁଥିଲି । ଢେଙ୍କାନାଳ ଜିଲ୍ଲାର ଶିକ୍ଷକ ପଦପାଇଁ ବାହାରିଥିବା ଖବର କାଗଜରୁ ପଢ଼ି ଦରଖାସ୍ତ କରିବାରେ ସାକ୍ଷାତ କରିବାପାଇଁ ଚିଠି ଅସିଲା । ଖଦଡ଼ ଲୁଗା ଖଣ୍ଡେ ଥିଲା । ତାକୁହିଁ ପିନ୍ଧି ସାକ୍ଷାତକାରକୁ ଗଲି । ସେଠାରେ ସ୍ୱର୍ଗତ ପବିତ୍ର ମୋହନ ପ୍ରଧାନ ଓ ଜିଲ୍ଲା ଶିକ୍ଷା ପରିଦର୍ଶକ ସାକ୍ଷାତକାର ନେଉଥିଲେ । ଇଂରେଜିରେ (ଏନଭିରନ୍‌ମେଣ୍ଟ) ଶବ୍ଦର ଅର୍ଥ ପଚାରନ୍ତେ ଆବହାଓ୍ୱା କହିବାରେ କହିଲେ ଆଉତ କେହି ଠିକ କହିଲେନି । ହଉ ଏହାକୁ ବଛାଯାଉ ।

ସତକୁ ସତ ୧୫ଦିନପରେ ନିଯୁକ୍ତିପତ୍ର ଆସିଗଲା । ପହଞ୍ଚିଲି ହିନ୍ଦୋଳର ପାଞ୍ଚମାଇଲଠାରେ । ଗାଁ ନାଁ ଦେବାହାଳି । ସେଠାରେ ସ୍କୁଲ ଇତ୍ୟାଦି କିଛି ନଥିଲା । ଆଗେ କେବେ ଥିଲା । ସେ ଭାଙ୍ଗିଯାଇଥାଏ । ଜିଲ୍ଲା କର୍ତ୍ତୃପକ୍ଷଙ୍କର ଧାରଣା ଯେ ସେଠି ସ୍କୁଲ ଅଛି ତାକୁ ବଢ଼ାଇ ମଧ୍ୟ ଇଂରାଜୀ କରିବାକୁ ହେବ । ଛକ ଯାଗା ।

"ଏମନ ଖୋଜୁଥାଏ ଯାହା" ନ୍ୟାୟରେ ଏଠି ଗାଁ ସଭା ଡ଼ାକି ସମସ୍ତଙ୍କୁ ମିଳାଇ ରାସ୍ତାକଡ଼ରେ ଥିବା ଏକ ଚାଳିଆରେ ସ୍କୁଲ କାର୍ଯ୍ୟ ଆରମ୍ଭ କରାଗଲା । ସ୍କୁଲ ସଭାପତି ଗଦାଧର ମିଶ୍ରଙ୍କ ଘରେ ରହେ ଓ ସେହିଠି ଖାଏ । କେତେବେଳେ ତାଙ୍କ ଭାଇ ରତ୍ନାକର ଓ ପ୍ରାଣକୃଷ୍ଣ ବାବୁ ମଧ୍ୟ ଡ଼ାକି ଖାଇବାକୁ ଦିଅନ୍ତି । ଗଦାଧର ବିପତ୍ନୀକ ଥିଲେ । ସ୍ତ୍ରୀଙ୍କୁ ଛାଡ଼ି ଦେଇଥିଲେ । କୁମୁଦ ଆଦି ପିଲାଏ ରାନ୍ଧନ୍ତି । ଖାଇବା ନଖାଇବା ସମାନ । ରାତିରେ ତାଙ୍କ ଘରଖୋଲା ବାଘ ମୁହାଁରେ ପୋଢ଼ଙ୍କ ପାଖରେ ପିଲାଏ ଓ ଦଉଡିଆ ଖଟିଆରେ ମୁଁ ଶୁଏ । ଏ ଅବସ୍ଥା ଅବଶ୍ୟ ବେଶୀଦିନ ରହିଲାନି । ସ୍କୁଲ ଚାଳିରେ ଖଣ୍ଡକରେ ରହି ଆଉ ଖଣ୍ଡକରେ ପିଲାଙ୍କୁ ପଢ଼ାଇଲି । ଗାଁଟି କେବଳ ଗଉଡ଼ଙ୍କର ଗାଁ । ଏଠାରେ କେବଳ ଘରେ ବ୍ରାହ୍ମଣ ଥିଲେ । ସେ ତିନିଭାଇ ଭିନେ ହୋଇ ୩ଘର ହୋଇଛନ୍ତି । ଗାନ୍ଧିଜୀଙ୍କ ସ୍ୱାବଲମ୍ବନଶୀଳ

ଗ୍ରାମ ଗଠନ ସ୍ୱପ୍ନ ଏହିଠାରେ ହିଁ ସଫଳ ହୋଇଥିଲା । ଗାଁଲୋକେ ଗୋପାଳନ, ଧାନଚାଷ ସହ ସବୁ ଫସଲ କରନ୍ତି । କେବଳ କିରୋସିନ ଲୁଣ ଆଉ ଲୁଗାପାଇଁ ହାଟ ଦରକାର । ବାକି ସବୁ ଚାଷରୁ ମିଳିଯାଏ । ବଢେଇ ଓ କମାର କାମ ମଧ ନିଜେ ନିଜେ କରନ୍ତି । ପରସ୍ପର ମିଶି ଘର ତିଆରି, ମରାମତି ଓ ଛପର ମଧ୍ୟ କରିନିଅନ୍ତି । କାହାକୁ ଅପେକ୍ଷା ନାହିଁ । କ୍ଷୀର, ଘିଅ, ଛେନା ଦହି ସାଙ୍ଗକୁ ଚଇଳାରେ କରୁଥିବା ସୋରିଷ ଓ ଡିଳ ନିଜ ବ୍ୟବହାର ପାଇଁ ରଖି, ତେଲକରି ବାକିତକ ବିକି ଭଲ ଦିପଇସା ପାନ୍ତି ।

ଗାଁଲୋକେ ଏକମନ ଓ ଖୁବ୍ ସାହାସୀ । ଯେଉଁ ବୁଢ଼ୀଟି ତାଙ୍କ ଗୁହାଳୁ କଲରାପତରିଆ ବାଘ ଗୋଟେ ବାଛୁରୀକୁ ଟେକି ନେବାବେଳେ ତା ଲାଙ୍ଗୁଡ଼ଟି ଟାଣି ଧରିଥିଲା ତାକୁ ମୁଁ ଦେଖିଛି । ଗାଁଲୋକେ ହୃଷ୍ଟପୁଷ୍ଟ ଓ ନିରୋଗ ମଧ୍ୟ ।

ଏକଜାତି ଓ ଏକମେଳ ଥିବାରୁ ଏବଂ ତାଙ୍କ ପିଲାଙ୍କୁ ମନଦେଇ ପଢ଼ାଉଥିବାର ଦେଖି ସମସ୍ତେ ଖୁସିହୋଇ ମୋରି ପ୍ରେରଣାରେ ୩ମାସ ଭିତରେ ଭଲ ଘରଟିଏ ତୋଳି ଦେଲେ । ବାଉଁଶ ଚାଞ୍ଚରା ଦେଇ ହତା ବାନ୍ଧିଦେଲେ । ଘର ଭିତରେ ମୋ ପାଇଁ ରୋଷେଇ ଓ ରହିବା ଘର କରିଦେଲେ । ଏଥିରେ ଗଦାଧର ବାବୁଙ୍କର ମୂରବି ପଣ ଟିକେ ମଳୀନ ପଡ଼ିଗଲା । ସେ ଖପା ହୋଇଗଲେ । ସେ ଥିଲେ ଗାଁର ସର୍ବରାକାର ଓ ସ୍କୁଲ ସଭାପତି । ବିନା କାରଣରେ ଦିନେ କଳି ଆରମ୍ଭ କରି କୋଡ଼ି ଉଞ୍ଚାଇ ଉଚବାଚ କଲେ । ମୁଁ ନୀରବରେ ତାକୁ ସହିଯିବାରୁ ପରେ ଆସି ଦୋଷ ସ୍ୱୀକାର କରି ତାଙ୍କ ପିଲାଙ୍କ ଯତ୍ନ ନେବାକୁ କହିଲେ । ଲୋଚନର ବାପା ମୋତେ ଆସି ରାତିରେ ରାନ୍ଧିଦିଅନ୍ତି । ମୁଁ ସେ ସମୟଟି ଲୋଚନକୁ ସ୍ୱତନ୍ତ୍ରଭାବେ ପଢ଼ାଏ । ଏକାଠି ସବୁ ଶ୍ରେଣୀ (ଶିଶୁରୁ ୩ୟ) ଆରମ୍ଭ କରିଥିବାରୁ ବର୍ଷ ଶେଷରେ ୩ୟରେ ଥିବା ଅଚ୍ୟୁତ ପରୀକ୍ଷା ଦେଇ ଯେମିତି ଏକାଥରକେ ପାଶ କରି ଗଲା ଗାଁ ଲୋକଙ୍କ ଉତ୍ସାହ କହିଲେ ନସରେ । କେତେଦିନ ଫରେଷ୍ଟ ବିଟରେ ଥିବା ପାଣିବାବୁ ଓ ରାଜୁବାବୁ (ଉଭୟେ ଫରେଷ୍ଟ ଗାର୍ଡ଼) ମୋତେ ରାନ୍ଧି ଖାଇବାକୁ ଦେଉଥିଲେ । ସମସ୍ତେ ମାଷ୍ଟ୍ରଙ୍କ ପ୍ରତି ଖବୁ ସ୍ନେହୀଥିଲେ ।

ମାତ୍ର ଛଅ ଟଙ୍କା ଖର୍ଚ୍ଚକରି ସେଠୁ ଏକ ଟିଣ ଖାଣ୍ଟି ସୋରିଷ ତେଲ ଘଣାପକାଇ ଆଣି ସାନଭାଇର ବ୍ରତଘର କରେଇଥିଲି । ମାସିକ ଦରମା ଟ୪୦.୦୦ । ସେଥିରେ ଖୁବ୍ ବେଶୀରେ ତିନିଚାରିଟଙ୍କା ଖର୍ଚ୍ଚ ହୁଏ । ସବୁଶସ୍ତା । କେତେବେଳେ ଇନ୍ଦ୍ରଘର ତ କେତେବେଳେ ତ୍ରିନାଥ ବା ଲୋଚନଘର କ୍ଷୀର, ଘିଅ ଓ ଦହି ଯୋଗାଇ ଦେଉଥିଲେ । ଗାଁରେ ସବୁପ୍ରକାରର ପରିବା ହୁଏ । ପିଲାଏ କିଏ କେତେବେଳେ କ'ଣ ଆଣନ୍ତି । ମୁଁ ଦେଖେନି କି କେବେ ପରିବା କିଣେନି । ମୋଟ ଉପରେ ସେ ସମୟଟି ସଫଳ ସ୍ୱପ୍ନପରି ଭଲରେ କଟି ଯାଇଥିଲା । ନିଜ ହାତରେ ଘର ତିଆରି କରି ପିଲା ଡ଼ାକି, ପଢ଼ାଇ ପାଶ୍ କରାଇ ପାରିଥିବାରୁ ଖୁବ୍ ଆତ୍ମ ସନ୍ତୋଷ ମିଳିଥିଲା ।

ସେ ଗାଁ ଛକ ପାଖ ପାହାଡ଼ରେ ଠାକୁରଙ୍କ ପ୍ରେରଣାରେ ପ୍ରତି ରବିବାର କୀର୍ତ୍ତନ କରୁଥିଲୁ ଓ ଶିବ ଉପାସନା ହେଉଥିଲା । ପ୍ରାଣକୃଷ୍ଣ ବାବୁଙ୍କର ସବୁ କୀର୍ତ୍ତନ ସଜ ଥିଲା ।

ବଡ଼ ଗଉଡ଼ ପିଲାଏ ମଧ୍ୟ କରତାଳ ବଜାଇବା ଓ ପାଳିଧରିବାରେ ପାରଙ୍ଗମ ଥିଲେ । ମାଷ୍ଟ୍ରଙ୍କ ପ୍ରେରଣାରେ ସେ ସାପ୍ତାହିକ ମେଳାଟି ଦିନୁଦିନ ବଢ଼ିବାରେ ଲାଗିଲା ।

ଦିନେ ହିନ୍ଦୋଳର ରାଜପୁତ୍ର ସେହିଛକରେ ବନ୍ଧୁକ ଫୁଟାଇ ମୃଗଟିଏ ମାରିଦେଲେ । ତାକୁ ଦେଖି ମନରେ ବହୁତ କଷ୍ଟ ହୋଇଥିଲା । ସେ ମୃଗକୁ ଦେଖିବାର କଥା । ପୁରାପୁରି ସ୍ୱର୍ଣ୍ଣବର୍ଣ୍ଣ । ବେଶ ପୁଷ୍ଟ । ହାତ ପକାଇଲେ ହାତ ଖସି ପଡ଼ିବ । ଏହାଦେଖି ମନରେ ବୈରାଗ୍ୟ ଜାତ ହେଲା । ନିରାମିଷ ଆହାର ପାଇଁ ମନରେ ପ୍ରେରଣା ଆସିଲା । ଆଗରୁ ପାଞ୍ଚ କି ଛ ବର୍ଷ ନିରାମିଷ ଥିଲି ।

## ୬୨. ନବଜୀବନ ଗଢ଼ିବାକୁ ଯାତ୍ରା

ଶିକ୍ଷକତା କରିବାର ପ୍ରାୟ ବର୍ଷେ ତିନିମାସ ହୋଇଥାଏ । ଦିନେ ଗୋଟିଏ କାର୍ଡ଼ ଡ଼ାକରେ ପାଇଲି । ମୁକ୍ତାବିନ୍ଦୁତୁଲ୍ୟ ଅକ୍ଷରରେ ଓ ଭଷାରେ ଚିଠିଟି ଲେଖାଥିଲା । ମଫସଲରେ ସେତେବେଳେ ଭାଷାଖଣ୍ଡେ ପହଞ୍ଚିବା ଏକ ଭାଗ୍ୟ । ଭାଷା ଆସିବା ଖବର ବହୁତ ଲୋକ ଆସି ପଚାରିଲେ; କ'ଣ ଆସିଛି । ମୁଁ ସତ କଥା କହିଦେଲି । ସେଥିରେ ସାରା ଗାଁ ବିଚଳିତ ହୋଇଗଲା । ପିଲାଏ କାନ୍ଦି ପକାଇଲେ । ମୁଁ ମଧ୍ୟ ଏ ଦୁଃଖରେ ମୁହ୍ୟମାନ ହୋଇଗଲି । କିନ୍ତୁ ନିଷ୍ପତ୍ତି ବଦଳାଇଲିନି । ଚିଠିରେ ଚନ୍ତାମଣି ମିଶ୍ର ଲେଖିଥିଲେ ଦିଲ୍ଲୀରୁ ଯେ :- "ଆମେ ଏକ 'ନବଜୀବନ' ଗଢ଼ିବା । ନବଜୀବନ ପତ୍ରିକା ପ୍ରକାଶନ କରିବା । ଗୋପବନ୍ଧୁଙ୍କ ସତ୍ୟବାଦୀର ସମାଜପରି । ତୁମେ ଆସ ମୁଁ ଚାକିରୀ ଛାଡ଼ି ଯାଉଛି" । ସେତେବେଳେ ସେ ଶାସନସଚିବ ଭାବେ ଲୋକସଂପର୍କ ବିଭାଗରେ ଥିଲେ । ସରକାର ସ୍ଥିର କଲେ ଯେ ଆଇ.ଏ,ଏସ୍. ନହେଲେ ସଚିବ ହୋଇ ପାରିବନି । ଏହାରି ପ୍ରତିବାଦରେ ସେ ଏଡ଼େବଡ଼ ଚାକିରୀ ଛାଡି ଦେଲେ । ସେଥିଲେ ସ୍ୱାଧୀନଚେତା, ଭାଷାରେ, ଜ୍ଞାନରେ, ସଂଗଠନ ଶକ୍ତିରେ, ଦମ୍ଭରେ, ଦର୍ପରେ, ନିଜସ୍ୱ ଚିନ୍ତାଧାରରେ ଏକ ଯୋଦ୍ଧା । କେବଳ କ୍ଷଣକୋପକୁ ଛାଡ଼ିଦେଲେ ତାଙ୍କ ପରି ମଣିଷ ଟିଏ ଏବେ ବିରଳ । ସେ ସତ୍ୟବାଦୀ ବନ ବିଦ୍ୟାଳୟର ଛାତ୍ର ଥିଲେ ଓ ପଣ୍ଡିତ ନୀଳକଣ୍ଠଙ୍କ ପ୍ରତିଷ୍ଠିତ "ନବ ଭାରତର" ସଂପାଦନା ମଧ କେତେକାଳ କରିଥିଲେ ।

ତାଙ୍କର ଚିଠିପାଇ ହଠାତ୍ ଚାକିରୀ ଛାଡ଼ି, ନିଜେ ଗଢ଼ିଥିବା ବିଦ୍ୟାଳୟକୁ ଛାଡ଼ି ଓ ପିୟ ଗ୍ରାମବାସୀ ତଥା ଛାତ୍ରବୃନ୍ଦଙ୍କୁ ଛାଡ଼ି ବେଡ଼ିଂ ବିସ୍ତରା ବାନ୍ଧି ରସ୍ତାକଡରେ ଟ୍ରକ୍ ଅପେକ୍ଷାରେ ରହିଥାଏ । ବସ୍ ପ୍ରାୟ ନଥିଲା ସେତେବେଳେ ହିନ୍ଦୋଳକୁ । ହିନ୍ଦୋଳ ରୋଡ଼କୁ ଟ୍ରକରେ ବାଉଁଶ ବୁହାହେଉଥାଏ । ଦିନ ତିନି କି ଚାରିଟା ହେବ । ଠିକ୍ ଏତିକି ବେଳେ ଜଣେ ଭଦ୍ରଲୋକ ସାଇକେଲରେ ଆସି ପହଞ୍ଚି ନିଜର ପରିଚୟ ଦେଲେ । ସେ ହେଉଛନ୍ତି ଗତିକୃଷ୍ଣ ତ୍ରିପାଠୀ ଓ ସେ ଅଞ୍ଚଳ ପାଇଁ ସ୍କୁଲ ସବ୍ ଇନ୍ସପେକ୍ଟର । ମୁଁ ତାଙ୍କୁ କେବେ ଦେଖି ନଥିଲି କି ସେ ମୋତେ କେବେ ଦେଖି ନଥିଲେ । ବର୍ଷକରେ ପ୍ରଥମ ଓ ଶେଷ ଦେଖା । ସେ ଖୁବ୍ ଗୁଣୀ ବ୍ୟକ୍ତି ଓ

ତାଙ୍କର ସଂଗଠନ ଶକ୍ତି ଖୁବ୍ ଉଚ୍ଚକୋଟିର । ସେ ମୋର ଯାତ୍ରାର ଉଦ୍ଦେଶ୍ୟ ଶୁଣି କହିଲେ ମୁଁ ଆଜି ତୁମର ଅତିଥି ହେବି । ତୁମେ ମତେ ଛାଡ଼ି କୁଆଡ଼େ ଯିବ ? ମୁଁ କହିଲି ଆପଣ ସ୍କୁଲରେ ମୋ ଖଟରେ ରହିବେ । ଫରେଷ୍ଟ ଗାର୍ଡ଼କୁ କହି ଯାଉଛି । ସେ ରାନ୍ଧିଦେବେ, ଖାଇବେ । କିଛି ଅସୁବିଧା ହେବନି । ମୁଁ ମୋ ଗନ୍ତବ୍ୟ ପଥରେ ସ୍କୁଲ ଓ ଚାକିରୀ ଛାଡ଼ି ଯାଉଛି ।

ସେ ଚିଠିଟି ପଢ଼ିଲେ । ବହୁ କବିତା, ନୀତିବାକ୍ୟ ଓ ସାହିତ୍ୟରୁ , ଦୃଷ୍ଟାନ୍ତ ଦେଇ ବୁଝାଇଲେ । ମୁଁ କିନ୍ତୁ ମୋ ନିଷ୍ପତ୍ତିରେ ଅଟଳ । ତାପରେ ସେ ପ୍ରଶ୍ନକଲେ ଆଚ୍ଛା ତମେ କେଉଁ ଖାଦ୍ୟକୁ ସବୁଠୁ ଭଲ ପାଅ । ମୁଁ ରସଗୋଲା ବୋଲି କହିଲି । ସେ କହିଲେ ଆଚ୍ଛା ତୁମେ ଭାତ ତରକାରୀ ଖାଉ ଥିବାବେଳେ ଯଦି ଜଣେ ଥାଳିଏ ରସଗୋଲା ଆଣିଥୁଏ ତୁମେ କ'ଣ ଭାତ ଥାଳିକୁ ଫୋପାଡ଼ିଦେଇ, ଦଳିଦେଇ ରସଗୋଲା ଖାଇବ । ମୁଁ କହିଲି ନା, ଭାତ ଥାଳିକୁ ଆଡ଼େଇ ରଖିଦେଇ ରସଗୋଲା ଖାଇବି । ତାଙ୍କୁ ବାଟ ମିଳିଗଲା । ସେ କହିଲେ ତୁମେ ଗୋଟେ ପ୍ରାଥମିକ ଶିକ୍ଷକର ଛୋଟ ଚାକିରୀଟିଏ କରୁଥିଲ । ଏବେ କିଛି ଭଲ କାମ ପାଇଁ ତାକୁ ଫୋପାଡ଼ି ଦଳି ଚାଲିଯାଉଛ କାହିଁକି ? ମୁଁ କହିଲି ମୁଁ ତ ଯିବି । ଆଉ କ'ଣ କରିବି । ସେ କହିଲେ ଆଜି ରୁହ । ଗୋଟେ ଛୁଟି ଦରଖାସ୍ତ କର । ସିଆଡ଼େ ମନ ଲାଗିଗଲେ ରହିବ । ନହେଲେ କାଗଜ ଖଣ୍ଡକରେ ତ ତୁମ ଏଠା ଚାକିରୀ ରହିଥିବ । ତୁମେ ଚାହିଁଲେ ଫେରି ଆସିପାରିବ ।

ମୁଁ ତାଙ୍କ କଥାରେ ସମ୍ମତ ହୋଇ ରାତିଟି ରହିଲି । ସେ ମୋର ଅତିଥି ହେଲେ । ସକାଳୁ ତାଙ୍କୁ ଛୁଟି ଦରଖାସ୍ତଟିଏ ଦେଇ ମୁଁ ମୋ ବାଟ ଓ ସେ ତାଙ୍କ ବାଟ ଧଇଲୁ ।

ଠାକୁରେ ଗୋଟେ ମହତ ଶିକ୍ଷା ଦେଲେ । ସାକ୍ଷାତ୍ ଅବତରି ଆସି ଠାକୁରେ ଉପଦେଶ ଦେଲେ ଯେ ଯେତେ ଛୋଟ ହେଲେ ମଧ ନିଜର ବୃତ୍ତିକୁ ଘୃଣାରେ ତ୍ୟାଗ କରନା । ତାକୁ ସମ୍ମାନ ଦିଅ । ସେହିଦିନୁ ଆଉ ତ୍ରିପାଠୀ ବାବୁଙ୍କୁ ଦେଖିନି ସିନା ତାଙ୍କ ଉପଦେଶକୁ ଅକ୍ଷରେ ଅକ୍ଷରେ ପାଳିଛି ଓ ବହୁ ଲୋକଙ୍କୁ କହିଛି । ଏହିକଥା ଓ ଗଳ୍ପ କହି ବହୁତ ଲୋକଙ୍କ ମତିଗତିରେ ପରିବର୍ତ୍ତନ ଅଣାଯାଇ ପାରିଛି । ଏହା ସେହି ଦୟାମୟଙ୍କ ଅନୁକମ୍ପାପୂର୍ଣ୍ଣ ଉପଦେଶ ଛଳରେ ଆଶୀର୍ବାଦ ।

## ୬୩. ମହାରାଣୀ ସିରସ୍ତା

କଟକରେ ପହଞ୍ଚି ଖବର ନେଲି ଚିନ୍ତାମଣିବାବୁଙ୍କ ଭାଇଁ ସର୍ବେଶ୍ୱର ମିଶ୍ର (ସହର ଭାଇନା) ଯେ କି ମାମୁଁ ପଣ୍ଡିତ ଆକୁଳ ମିଶ୍ରଙ୍କ ପୁତୁରା ଓ ମାମୁଁଙ୍କ ବାର୍ଦ୍ଧକ୍ୟରେ କଟକ ଟ୍ରେଡ଼ିଂ କମ୍ପାନୀ ବୁଝୁଥିଲେ ତାଙ୍କ ଠାରୁ ମୋ ବିଷୟରେ ବୁଝି ଚିନ୍ତାମଣିବାବୁ ମୋତେ ଚିଠି ଲେଖି ଉଦ୍‌ବୁଦ୍ଧ କରେଇ ଡକାଇଥିଲେ । ନିଜ ଜୀବନ ଗଢ଼ିବାକୁ ଧୋତି ପିନ୍ଧି ଓ ଦାଢ଼ୀ ରଖି ଜାଗ୍ରତ ଲକ୍ଷ୍ମଣ ପରି କାମରେ ଲାଗିଗଲି । ସେହି ପଣ୍ଡିତ ମାମୁଁଙ୍କ ଘରେ ରହେ । ସକାଳ ୬ଟା ବେଳକୁ ନିଜର ନିତ୍ୟକର୍ମସାରି

ପ୍ରେସରେ ହାଜର । ଘର ଓଳା ଠାରୁ ଆରମ୍ଭ କରି, ଅକ୍ଷର ବଣ୍ଟନ, କାମ ବଣ୍ଟନ, ପ୍ରୁଫ ଦେଖା, ଅର୍ଡ଼ର ଆଣିବା, କାମନେଇ ଯୋଗାଇବା, ବିଲ୍ ଆଦାୟ କରିବା, ସବୁପ୍ରକାର କିଣାବିକା କରିବା, ହିସାବ ଲେଖିବା, ବ୍ୟାଙ୍କରୁ ଟଙ୍କା ଆଣିବା ଓ ଜମା ଦେବା, କମ୍ପୋଜିଟରେ ମାନଙ୍କର ହିସାବ କରି ପଇସା ଦେବା ଇତ୍ୟାଦି; ମେହେନ୍ତର ଝାଡୁଦାର ଠାରୁ ଆରମ୍ଭ କରି ମ୍ୟାନେଜର ଯାଏ ସବୁକାମ ଚୂଣୀପାଠରୁ ଯୋତା ସିଲେଇ ଯାଏ କରିବାକୁ ପଡ଼େ । ରାତି ୧୦ଟାଯାଏ କାମ ଚାଲେ । ବର୍ଷକ ଭିତରେ ଛୋଟ ଟ୍ରେଡ଼େଲରୁ ଅରୁଣୋଦୟର ବଡ଼ ଛପା ମେସିନ୍ ସହ ସବୁ ଯନ୍ତ୍ରପାତି କିଣିବା, ନବଜୀବନ ପତ୍ରିକା ସହ ଚିନ୍ତାମଣିବାବୁଙ୍କର କେତେକ ବହି ବାହାରିବା କାମ ଆଗେଇ ଚାଲିଥାଏ । ଏ ସବୁ ତାଙ୍କ ବ୍ୟକ୍ତିଗତ ହିସାବରେ ହୁଏ । ଏଥିରେ ତାଙ୍କ ସଂସାର ଖର୍ଚ୍ଚ ସହ କୁକୁର ଖର୍ଚ୍ଚ ମଧ୍ୟ ହୁଏ । ଦରମା ଛିଡ଼ି ନଥିଲା କି ସେ ହିସାବରେ କେବେକିଛି ମାଗିନି କି ନେଇନି । ଯେତେବେଳେ ଯାହା ନିହାତି ଦରକାର ନିଜେ ନେଇଛି ଓ ହିସାବ ଦେଇଛି । କାର୍ଯ୍ୟ ଶେଷରେ ଦେଖୁଛି ମାସିକ ପ୍ରାୟ ଟ୪୫.୦୦ ହାରାହାରି ପଡିଥିବ । ଏଠିତ ଚାକିରୀ ପାଇଁ ଉଦ୍ଦେଶ୍ୟ ନଥିଲା; ଦେଶ ଗଠନ ଓ ନବ ଜୀବନ ଗଠନ ଥିଲା ଉଦ୍ଦେଶ୍ୟ ।

ଦିନକର ଘଟଣା । ନିମାଇଁ ଚରଣ ଦାସଙ୍କ ୱାର୍ଡ଼ ଏଣ୍ଡ ଫ୍ରେଜେସ୍ ବହିଟି ସେ ପୁନଃ ମୁଦ୍ରଣ ପାଇଁ ଦେଇଥିଲେ । ମୁଁ ଯେଉଁ ଦିନ ସେ ବହିକାମ କରିବାକୁ ଦିଏ, ଚନ୍ତାମଣିବାବୁ ଆସି ତାକୁ ବନ୍ଦକରି ଅନ୍ୟକାମ ବରାଦ କରିଦିଅନ୍ତି । ନିମାଇବାବୁ ବହି କାମ କରିବାକୁ ବାରମ୍ବାର ଦୌଡ଼ି ହତାଶ ହୁଅନ୍ତି । ସେତେବେଳେ ସେ ବହିର ବହୁତ ଚାହିଦା । ଦିନେ ସେ ଚିନ୍ତାମଣିବାବୁଙ୍କୁ ଦେଖାକଲେ ଓ ନିଜର ଆପତ୍ତି ଦର୍ଶାଇଲେ । ଚିନ୍ତାମଣିବାବୁ ଯୋରରେ ରାଗିଯାଇ ତାଙ୍କୁ ଏପରି ବାକ୍ୟ ବାଣ ପ୍ରୟୋଗ କଲେ ଯେ ସେ ଫେରିଆସି ମୋ ଟେବୁଲ ଉପରେ ମୁଣ୍ଡରେ ହାତଦେଇ ଲୁହ ଝରାଇଲେ ।

ବହୁ ସମୟପରେ ଶାନ୍ତ ହୋଇ ପାଣି ଗିଲାସେ ମାଗି ପିଇଲେ । ମୋତେ ସବୁକଥା କହିଲେ ଓ ମୋ ଠାରୁ ମୋ ଜୀବନ ପୃଷ୍ଠା ଶୁଣିବା ପରେ ସେ ତାଙ୍କର ଜୀବନୀ ସଂକ୍ଷିପ୍ତ ଭାବେ ମୋତେ ଶୁଣାଇଲେ । ସେ ଥିଲେ ଜଣେ ନିଷ୍ଠାପର ସାଧକ । ଅଳ୍ପ ମାତ୍ର ମାଟ୍ରିକ୍ ପାଠରେ ସେ ଭଲ ଭଲ ବହି ଲେଖି, ଓଡ଼ିଶାର ସ୍କୁଲମାନଙ୍କରେ ବୁଲି ପିଲାଙ୍କୁ ଓ ଶିକ୍ଷକଙ୍କୁ ବୁଝାଇ ବହି ବିକି ବେଶ ଆୟ କରିବା ସାଙ୍ଗକୁ ନାମ ମଧ୍ୟ କରିଥିଲେ । ସେ ତାଙ୍କ ବହିର ମୁଖବନ୍ଧ ଲେଖିବାକୁ କଲିକତା ବିଶ୍ୱବିଦ୍ୟାଳୟର ଇଂରାଜୀ ବିଭାଗର ମୁଖ୍ୟ ଅଧାପକଙ୍କ ପାଖକୁ ଯାଇ ଶ୍ରୁତ ଲିଖନ ନେଇ ଇଂରାଜୀରେ ତାଙ୍କ ମତାମତ ଲେଖିବା ବେଳେ ହାରିଯିବାରେ ସେ ମନ୍ତବ୍ୟ କରିଥିଲେ:- "ଓଡ଼ିଆ ପିଲାର କମ୍ ସାହାସ ନୁହେଁ । ମାଟ୍ରିକ ପାଶ କରି ମୋ ପାଖରୁ ଡ଼ିକ୍ଟେସନ ନେବାର ସାହାସ କରିଛୁ ।" ନିମାଇଁ ବାବୁ ଏହିପରି ସାହାସୀ ଓ ଅଧ୍ୟବସାୟୀ । ସେ ଚାକିରି ଛାଡ଼ି ଯେଉଁ ବହି ଲେଖା କାମ କରୁଥିଲେ ସେଥିରେ ସେ ବେଶ୍ ପ୍ରତିଷ୍ଠିତ ହୋଇ ପାରିଥିଲେ ସୁଲେଖକ ଭାବେ ଓ ଧନଧାନ୍ୟରେ ମଧ୍ୟ ।

ସେ ଗଲା ବେଳେ କହି ଗଲେ ଦେଖ, "ତୁମେ ପିଲା ଲୋକ । ଦେଶ ସେବା କ'ଣ କରୁଛ ଓ କ'ଣ ହେଉଛି ତୁମେତ ନିଜେ କରୁଛ ଓ ଦେଖୁଛ । ନବଜୀବନ ଏଥିରୁ କ'ଣ ଗଢ଼ାଯିବ ବୁଝୁଥିବ । ଆଉ ଯଦି ଚାକିରୀ କରିବାର ଇଚ୍ଛା "ମହାରାଣୀ ସିରସ୍ତା" ରେ କର ; ଅର୍ଥାତ ଚାକିରୀ କରିବତ ସରକାରୀ ଚାକିରୀ କର ।" ନିମାଇ ବାବୁଙ୍କର ଇଞ୍ଜେକ୍ସନ ସଦୃଶ ଏଇ କେଇ ପଦ କଥା ଈଶ୍ୱର ମୋତେ କୁହାଇ ନଥିଲେ ସେହିଠାରେ ବୋଧେ ନବଜୀବନ ଗଢ଼ିବା ଆଶାରେ ଜୀବନଟି ପୁରୁଣା ପାମ୍ପତା ହୋଇ ଯାଇଥାନ୍ତା । ଈଶ୍ୱର ମୋ ପାଦେପାଦେ ଏମିତି ସବୁବେଳେ ଜଗିଥାନ୍ତି । ମୁଁ ଅଣ୍ଡା ସେ ମୋ ମା କୁକୁଡ଼ା ।

## ୬୪. ନବଜୀବନ ନୋହିଲା

**ବିଶୁଦ୍ଧଭ ଅମୃତରଭାଣ୍ଡରେ ବୁନ୍ଦାଏ ବିଷପରି ମଣିଷ ମନରେ ଥରେ କଳୁଷ ପଶିଗଲେ ଆଉ ସେ ସଜାଡ଼ି ହୁଏନା । ବରଂ ତାଙ୍କରି ଦୟାରେ ମନକୁ ସୁହାଇଲା ପରି ସୁଯୋଗ ଆସି ଯୁଟିଥାଏ । ନବଜୀବନ ଗଢ଼ିବାକୁ ଦିନେ ଯେଉଁମନ ଚାକିରୀକୁ ଆଡ଼େଇଦେଇ ଏଠାକୁ ଟାଣି ହୋଇ ଆସିଥିଲା, ସେହି ମନ ଏବେ ଦ୍ୱିତୀୟ ଚିନ୍ତା କରିବାକୁ ଆଗେଇଲା । ଆମେ ଠାକୁରଙ୍କ ଇଚ୍ଛା ବୁଝିବା କଷ୍ଟ । ହୁଏତ ଠାକୁରେ ଜୀବନର ଗତିପଥ ବଦଳାଇବାକୁ ଚାହିଁବାରୁ ମନରେ ଏପରି ଦ୍ୱିତୀୟ ଚିନ୍ତା ଉଦ୍ରେକ କରାଇଥିଲେ ।**

ସବୁଦିନେ ଖବର କାଗଜ ପଢ଼ାଯାଏ । ଦିନେବି କୋଉଁଠି କ'ଣ ଚାକିରୀ ବାହାରିଲା ସେ ପ୍ରତି ନଜର ନଥାଏ । ନିମାଇଁ ବାବୁଙ୍କ "ମହାରଣୀ ସିରସ୍ତା" ମନ୍ତ୍ର ଶୁଣିବା ପରେ ହଠାତ୍ ଦିନେ ନଜର ପଡ଼ିଲା ଯେ କଟକ ସେସନ୍ସ ଜଜ୍ କୋର୍ଟରେ କିରାନୀ ମୁକରିର ହେବେ । କାଗଜଦେଖି ସିଧା କୋର୍ଟ ପାଖକୁଯାଇ ଖବର ସଂଗ୍ରହ କଲି ଓ ଦରଖାସ୍ତ ଲେଖି ପଠାଇ ଦେଇ ଆସିବାକୁ ଟିକିଏ ସ୍ୱାଭାବିକ ବିଳମ୍ବ ହୋଇଗଲା । ସବୁଦିନ ଯେ ସକାଳୁ ଆସେ, ତା'ର ବିଳମ୍ବ ଦେଖି ଚିନ୍ତାମଣିବାବୁ ସାଧାରଣ ଭାବେ ବିଳମ୍ବର କାରଣ କ'ଣ ବୋଲି ପ୍ରଶ୍ନକଲେ । ସେତେବେଳ ତ ଦାଢ଼ିରଖି ନବଜୀବନ ଗଠନର ବ୍ରତରେ ଥାଏ । ସତ ଛଡ଼ା ମିଛ କହିବାର ଅଭ୍ୟାସ ମଧ୍ୟ ନଥିଲା । କହିଲି ଜଜ୍ କୋର୍ଟରେ କିରାଣି ଚାକିରୀ ବାହାରିଥିଲା । କାଗଜ ଦେଖି ସେଠାକୁ ଯାଇ ବୁଝି ଦରଖାସ୍ତ ଦେଇ ଆସିବାକୁ ବିଳମ୍ବ ହେଲା ।

ଏତିକିରେ ଚିନ୍ତାମଣିବାବୁ ଚିହିଁକି ଯାଇ କହିଲେ ତୁମେ ଯେତେବେଳେ ଅନ୍ୟତ୍ର ଚାକିରୀ ଖୋଜିଲଣି ଆମେ ମଧ୍ୟ ଲୋକଟିଏ ଖୋଜିବା । ଏତକ କଥା ଗୋଟେ ଚାବୁକ୍ ପରି ଲାଗିଲା । ଭାବିଲି ମୁଁ କ'ଣ ଏଠି ଚାକିରୀ କରିଛି ? ସଙ୍ଗେ ସଙ୍ଗେ ଆସି ହିସାବ ଖାତା ଲେଖି ଦେଇ ଟଙ୍କା; ହିସାବ ଖାତା, ଚେକ୍ ବହି ଇତ୍ୟାଦି ନେଇ ଚିନ୍ତାମଣିବାବୁଙ୍କୁ ଧରାଇଦେଇ

ନମସ୍କାର କରି କହିଲି- ଆପଣ ଲୋକ ପାଇଲେ ମୋତେ କାହିଁକି ଯିବାକୁ କହିବେ; ମୁଁ ଆଗରୁ ଚାଲିଯାଉଛି । ଏତକ କହି ରାସ୍ତାକୁ ଚାଲି ଆସିବାକ୍ଷଣି ପ୍ରେସ୍‌ର ପ୍ରାୟ ସମସ୍ତ କର୍ମଚାରୀ ମୋ ପଛେ ପଛେ ରାସ୍ତାକୁ ଆସିଗଲେ ଓ କାରଣ ପଚାରି ବୁଝିଲେ; କାରଣ ଆଗରୁ ତ କେହି କିଛି ଜାଣି ନଥିଲେ ।

ଏ ଅବସ୍ଥା ଦେଖି ଚିନ୍ତାମଣିବାବୁ ଭାବିଲେ ବୋଧେ ଶିଖାଶିଖି ହୋଇ ସମସ୍ତେ ପ୍ରେସ୍ ଛାଡ଼ି କାମ ବନ୍ଦ କରି ଚାଲିଗଲେ । ତାଙ୍କପରି ଚତୁର ଲୋକ କ୍ୱଚିତ୍ ଦେଖାଯାଆନ୍ତି । ସେ ହଠାତ୍ ଉପର ମହଲାରେ ଥିବା ତାଙ୍କ ସ୍ତ୍ରୀଙ୍କୁ ଡ଼ାକି କହିଲେ:- ହଇହେ ଶାନ୍ତି ବୋଉ ତୁମ ପୁଅ କ'ଣ କରୁଛନ୍ତି ଆସି ଦେଖ । ସେ ତଳକୁ ଆସି ରାସ୍ତାରୁ ମୋତ ହାତଧରି ମା ପରି ଟାଣି ନେଇ ଉପରକୁ ଚାଲିଗଲେ । ପଖାଳ, ମାଛଭଜା ଖାଇବାକୁ ଦେଲେ । ମୋ ମୁଣ୍ଡ ବିନ୍ଧୁଛି । ଦେହ ଭଲ ଲାଗୁନି । ମୁଁ ବସାକୁ ଯାଉଛି । ଆସିଲେ ପରେ ଖାଇବି କହି ତାଙ୍କୁ ବୁଝାଇ ଦେଇ ମାମୁଁ ଘରକୁ ଚାଲି ଆସି ସବୁ ଘଟଣା ମାମୁଁ ପଣ୍ଡିତ ଆକୁଳ ମିଶ୍ରଙ୍କୁ କହିବାରେ ସେ କହିଲେ ଖୁବ୍ ଭଲ କରିଛ ।

ପରେ ଚିନ୍ତାମଣି ବାବୁ ଆସି ମାମୁଁଙ୍କୁ (ସେ ତାଙ୍କ ସମୁଦୀ) ମୋ କଥା କହିବାରେ ମାମୁଁ କହିଲେ ସେ ନୀତିବାଦ ଉପରେ ବିଶ୍ୱାସ କରେ । ସେ ଥରେ ଚାଲି ଆସିଛି ମାନେ ଆଉ ଯିବନି । ସେ କ'ଣ ସେଠି ଚାକିରୀ କରିବାକୁ ଆସିଥିଲା ? ମୁଁ ତାକୁ ଯିବାକୁ କହିପାରିବିନି । ଆପଣ କିଛି ଭାବିବେନି । ତାକୁ ତା' ବାଟରେ ଯିବାକୁ ଦିଅନ୍ତୁ । ଯେଉଁ ଠାକୁରେ ମନରେ ବସି ନବଜୀବନ ଛାଡ଼ିବାର ବ୍ୟବସ୍ଥା କରେଇ ଦେଇଥିଲେ ସେହି ଠାକୁରେ ମାମୁଁଙ୍କ କଣ୍ଠରେ ବସି ଚିନ୍ତାମଣି ବାବୁଙ୍କ ମୁହଁ ବନ୍ଦ କରିଦେଲେ । ଗୋଟିଏ ବଡ଼ ସମ୍ଭାବ୍ୟ ଅସୁବିଧାରୁ ରକ୍ଷା ମିଳିଗଲା । ଯେ ଦ୍ରୌପଦୀର ମାନ ରଖିଥିଲେ ସେହିଁ ଏ ବେଳରେ ସହାୟକ ହେଲେ । କିନ୍ତୁ ଚିନ୍ତାମଣିବାବୁଙ୍କ ଠାରୁ ଆତ୍ମବିଶ୍ୱାସ, ସ୍ୱାଭିମାନ, ଦୃଢ଼ମନା ହେବାର ଶିକ୍ଷା ମିଳିଥିଲା । ତାଙ୍କରି ପାଖରେ ଥିବା ବେଳେ ବକୁଳ ବନ ବିଦ୍ୟାଳୟର ପ୍ରଧାନ ଗୁରୁଜୀ ମନିଷୀ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ମିଳିଥିଲା । ଖୁବ୍ କମ୍ ସମୟ ପାଇଁ ହେଲେ ମଧ ଦୁଇ ତିନି ଥର କାର୍ଯ୍ୟ ବ୍ୟୋପଦେଶରେ ତାଙ୍କ ପାଖକୁ ଯାଇ ତାଙ୍କ ଉପଦେଶରେ ଏ ଜୀବନ ଧନ୍ୟ ହୋଇଥିଲା । ବାର୍ଦ୍ଧକ୍ୟର ଶେଷ ସୀମାରେ ପହଞ୍ଚି ମଧ ତାଙ୍କର ସିଂହ ଗର୍ଜନ କମି ନଥିଲା ଓ ଭାଷାଜ୍ଞାନ ସଂପୂର୍ଣ୍ଣ ଉଜ୍ଜୀବିତ ଥିଲା ।

## ୬୫. ପୁରାଣ ଜଗତରେ

ରତ୍ନାକର ଗର୍ଗ ବଟୁଙ୍କ ପୁଅ ଲକ୍ଷ୍ମୀଧର ଗର୍ବ ବଟୁ । ତାଙ୍କ ସାନପୁଅ କମଳଲୋଚନ । କମବାବୁ ଆମ ଦଦେଇପୁଅ ଭାଇ ନୀରଭାଇନାଙ୍କର ସହପାଠୀ ଥିଲେ । ପାଠ ଛାଡ଼ି କୌଳିକ ବୃତ୍ତି ରାଧାରମଣ ପ୍ରେସ୍ ଓ ପୁସ୍ତକାଳୟ ସେ ବୁଝା ସୁଝା କରୁଥାନ୍ତି । ପୁରୁଣା ଦୋକନଟିକୁ

ଆଧୁନିକ ଛାଞ୍ଚରେ ସଜାଇ ସେହି ପୁରୁଣା ପୁରାଣ ବ୍ୟବସାୟକୁ ଉଜ୍ଜୀବିତ କରେଇଥାନ୍ତି ଯୁଗକୁ ଚାହିଁ । ସେ କେଉଁଠୁ ଖବର ପାଇଲେ ଯେ ମୁଁ ନବଜୀବନ ଛାଡ଼ିଛି । ତତ୍‌କ୍ଷଣାତ୍ ନୀରଭାଇନାଙ୍କ ଜରୀୟାରେ ମୋତେ ଡ଼ାକି ମାସିକ ଟ୬୦.୦୦ ବେତନରେ ପ୍ରୁଫ୍ ରିଡ଼ର ଭାବେ ନିଯୁକ୍ତି ଦେଇଦେଲେ । ଇଏତ ନିଯୁକ୍ତି ନୁହେଁ । ଯେ ହେଉଛି ଜୀବନ ଗଢ଼ିବାର ଗୋଡ଼ି ବାଲି ସିମେଣ୍ଟ ମିଶିଥିବା ଗୋଟେ ସୁଦୃଢ଼ ନିଅଁ ।

ଏ ପ୍ରେସରେ ଭାଗବତ, ରାମାୟଣ, ମହାଭାରତ ଇତ୍ୟାଦି ବହୁ ପୁରାଣ ଛାପାଯାଇ ସାରା ଭାରତ ବର୍ଷକୁ ପାର୍ଶଲ କରି ପଠାଯାଏ ଓ ଦୋକାନରେ ବିକ୍ରୟ କରାଯାଏ । ପ୍ରୁଫ୍ ରିଡ଼ର ହିସାବରେ ଠାକୁରେ ସବୁ ପୁରାଣକୁ ନିଠାଇ ପଢ଼ିବୁଝିବାର ସୁବର୍ଣ୍ଣ ସୁଯୋଗ ଦେଲେ ଓ ଜୀବନକୁ ସାର୍ଥକ କରିଦେଲେ । ସବୁଠାରୁ ବଡ଼ ସୁଯୋଗ ଯାହା ଏଠାରେ ମିଳିଲା ସେ ହେଉଛି ରାମଚରିତ ମାନସ ବା ତୁଳସୀ ରାମାୟଣର ଛପେଇ ବେଳେ ଶଂସୋଧନ କରିବା । ବହିର ଦୋହା ଓଡ଼ିଆ ଅକ୍ଷରରେ ଲେଖାଥିଲା । ଦୋହା ଓ ଚୌପାଇ ହିନ୍ଦିରେ ଥିଲେ ମଧ୍ୟ ଓଡ଼ିଆ ଲିପିରେ ଓ ତାର ଓଡ଼ିଆ ସରଳ ଗଦ୍ୟାର୍ଥ ତା' ତଳକୁ ଥିଲା ଓଡ଼ିଆ ଭାଷାରେ । ଏପରି ଚେଷ୍ଟା ସେତେବେଳକୁ ବିରଳ । ମୋର ମନେପଡ଼ୁଛି ଜଣେ ମୌନୀ ସନ୍ୟାସୀ ଏବହିର ପାଣ୍ଡୁଲିପି ଧରି ନବଜୀବନକୁ ଆସିଥିଲେ ଛପାଇବାକୁ । ଚିନ୍ତାମଣିବାବୁ ତାଙ୍କୁ ପାଣ୍ଡୁଲିପି ଚୋର ବୋଲି କହିବାରେ ସେ କାନ୍ଦି କାନ୍ଦି ପଳାଇ ଯାଇଥିଲେ । ଯୋଗକୁ ସେ ପାଣ୍ଡୁଲିପିଟି ରାଧାରମଣକୁ ଧରି ଆସିଲେ ଛପାଇବାକୁ । ସେ ମୌନୀ ସନ୍ୟାସୀ ବାୟାବାବାଙ୍କର ଶିଷ୍ୟ ଓ ଗୁରୁଙ୍କ ନିର୍ଦ୍ଦେଶ ପାଳି ଘରେ ଘରେ ବୁଲି ଭୀକ୍ଷା କରି ସେ ବହିଟିକୁ ଛପାଇବାକୁ ଆଗେଇ ଥିଲେ ।

ପରମ ପୁରୁଷୋତ୍ତମ ଶ୍ରୀରାମଙ୍କର ପରମ କରୁଣା ଯେ ସେ ବହିର ପ୍ରୁଫ୍ ଦେଖା କାର୍ଯ୍ୟ ମୋ ଦ୍ୱାରା କରେଇବା ତାଙ୍କର ଇଛାଥିଲା । ସେଥିପାଇଁ ନବଜୀବନ ଛାଡ଼ିବା ପରେ ରାଧାରମଣ ପ୍ରେସକୁ ତୁଳସୀ ରାମାୟଣ ଛପା କାମଟି ଆସିଗଲା । ରାଜୁବାବୁଙ୍କ ସହିତ ମିଶି ତାଳମାନରେ ଗାନକରି ଖାଲି ପ୍ରୁଫ୍ ଶଂସୋଧନ କରୁନା, ତାସହ ରାମଚରିତ ମାନସର ସଂପୂର୍ଣ୍ଣ ରସାସ୍ୱାଦନ, କରିଥିଲୁ । ଏ ସୁଯୋଗ କାହାକୁ ମିଳେ ? ଠାକୁରଙ୍କ ଦୟାହେଲେ ଏପରି ସଂଯୋଗ ମିଳେ । ମୋର ସ୍ମୃତିକୁ ଉଜ୍ଜୀବିତ ରଖିବାକୁ ସେଥିରୁ ଗୋଟିଏ ସେଟ୍ ଏପର୍ଯ୍ୟନ୍ତ ମୋ ପାଖରେ ଅଛି । ଖାଲି ପାଖରେ ନାହିଁ; ସେହି ଦୁଃଖୀର ବାନ୍ଧବ ପରମ କାରୁଣିକ ଶ୍ରୀରାମଚନ୍ଦ୍ରଙ୍କ ଦୟାରୁ ଶ୍ରୀରାମଚରିତ ମାନସ ଫଳଶ୍ରୁତି ମଧ୍ୟ ପ୍ରାପ୍ତ ହୋଇଛି । ଯେ ସମ୍ବନ୍ଧରେ ଆଉ ଅଧିକ କହିବା, ଲେଖିବା ଓ ପ୍ରକାଶ କରିବା ଶାସ୍ତ୍ର ଦୃଷ୍ଟିରେ ଅସମୀଚିନ । ଏହା କେବଳ ଅନୁଭବର ବିଷୟ ।

ଅଳ୍ପଦିନ ହେଲେ ମଧ୍ୟ ରାଧାରାମଣରେ ଅନୁଭୂତି ମଧୁର । କମବାବୁଙ୍କ ବନ୍ଧୁ ସୁଲଭ ବ୍ୟବହାର ଏବେ ମଧ୍ୟ ଉଜ୍ଜୀବିତ । ତାଙ୍କ ବାପା ଲକ୍ଷ୍ମୀଧର ବାବୁ ଜଣେ ନୀତିନିଷ୍ଠ ବ୍ୟକ୍ତି ଥିଲେ । କର୍ମଚାରୀମାନେ ବ୍ୟବହାର କରୁଥିବା ପାଇଖାନା ମଇଳା ଦେଖି ସେ ନିଜେ

ସଫାକରି ଦେଉଥିଲେ । ତାଙ୍କର ପ୍ରତ୍ୟେକ କାରବାରରେ ସ୍ୱାତନ୍ତ୍ର୍ୟ ଥିଲା । ତାଙ୍କୁ ସମସ୍ତେ ଭକ୍ତି ଓ ଶ୍ରଦ୍ଧା କରୁଥିଲେ । ସେ ବହୁତ ଦୀନଦୁଃଖୀ ଓ ଗରିବ ଛାତ୍ରଙ୍କୁ ମଧ୍ୟ ସାହାଯ୍ୟ କରୁଥିଲେ । ତାଙ୍କଠାରୁ କିଛି ବ୍ୟବହାରିକ ସଦ୍‌ଗୁଣ ଶିଖିବାର ମଧ୍ୟ ସୁଯୋଗ ଠାକୁରେ ଦେଇଥିଲେ, ଯାହାକି ଏବେ ମଧ୍ୟ ବ୍ୟବହାରରେ ପ୍ରକଟିତ ।

ରାଧାରମଣରେ ଥିବାବେଳେ ସନ୍ଧ୍ୟାରେ କଟକ ଟ୍ରେଡ଼ିଂ କମ୍ପାନିର ଅଣଓସାରିଆ ପିଣ୍ଡା ବେଞ୍ଚରେ ସନ୍ଧ୍ୟାକଟେ । ସେଠୁ ଚନ୍ଦ୍ରମଣିବାବୁ ଓ ମୁଁ ଚାଲୁ ଗୋପାଳଜୀଉ ମଠ । ସେଠାରେ ଦର୍ଶନ ଓ ପାଦୋଦକ ପାଇ ଯେ ଯାହା ଘରକୁ ଯାଉ । ଚନ୍ଦ୍ରମଣିବାବୁ କହିଥିଲେ; "ସବୁ ଦିନେ ଦର୍ଶନ କରିବ । ମନର ପରିବର୍ତ୍ତନ ହେବ । ସନ୍ଧ୍ୟାରେ ଚାଲିବା ଦ୍ୱାରା ଦିନକର ବସିବା ଜନିତ କ୍ଲାନ୍ତି ଦୂର ହେବ । ଠାକୁରଙ୍କ ପାଦରେ ଭକ୍ତି ହେବ ଓ ତାଙ୍କର କରୁଣା ଲାଭ ହେବ । ଏତଦ୍‌ବ୍ୟତିତ ତମ୍ବାପାତ୍ରରେ ଥିବା ତୁଳସୀ ଓ ପାଣି ଔଷଧୀୟ ଗୁଣଯୁକ୍ତ ହୋଇଥିବାରୁ ଦେହ ପକ୍ଷରେ ବହୁତ ହିତକାରକ" । ଏ କଥାଗୁଡ଼ିକ ମୋର ଏବେବି ମନେ ଅଛି ।

ଟ୍ରେଡ଼ିଂ କମ୍ପାନୀର ହାଡୁବାବୁ କେଜାଣି କାହିଁକି ଖୁବ୍ ଭଲପାନ୍ତି । ଗୋପାଳଜୀଉ ଦର୍ଶନ ପାଇଁ ସେ ମଧ ଉତ୍ସାହିତ କରନ୍ତି । ତାଙ୍କ ମନକୁ ସେ କହି ଦେଇଥିଲେ ଯେ ସରକାରୀ ଚାକିରୀ ମିଳିଲେ ଗୋପାଳଜୀଉଙ୍କ ପାଖରେ ଭୋଗ ଲଗାଇବ । ତାଙ୍କ କଥା ସତ ହେଲା । ଭୋଗ ଲାଗିଲା ଓ ସେ ମଧ ସେ ପ୍ରସାଦ ପାଇ ଭାରି ଖୁସି ହୋଇଥିଲେ । ଏବେବି କଟକ ଗଲେ ଗୋପାଳଜରୀଉଙ୍କୁ ଦେଖିବାକୁ ମନହୁଏ । ସେହି ଗୋପଳଜୀଉଙ୍କର ଜଣେ ନିଷ୍ଠାପର ଭକ୍ତମଧ ମୋର ବହୁ ଉପକାର କରିଛନ୍ତି । ତେଣୁ ନଯାଚିଥିଲେ ମଧ୍ୟ ଓ ନ ମନାସିଥିଲେ ମଧ୍ୟ ସବୁ ଦୁଃଖ ଓ ସୁଖବେଳେ ଛାଏଁ ଛାଏଁ ଏ ଦେହକୁ ତାଙ୍କ ପାଖକୁ ନିଶ୍ଚୟ ଥରେ ସେ ନେଇଯାନ୍ତି ବା ଟାଣିନିଅନ୍ତି ଡ଼ୋରି ଲଗାଇ । ସେଠିମଧ୍ୟ ସେତେବେଳେ ଦୈନିକ ପୁରାଣ ପାଠ ହେଉଥିଲା ଖୁବ୍ ଶାନ୍ତ ପରିବେଶରେ । ପୁରାଣ ଶୁଣିବା ସେଠିକାର ଏକ ବିଶେଷତ୍ୱ ।

ଠାକୁରେ ଅଭାବ ସମୟରେ ପିଲାଦିନୁ ଯେ ଭାଗବତାମୃତ ପାନ କରେଇଥିଲେ ବଡ ଅବସ୍ଥାରେ ମଧ୍ୟ ତାଙ୍କରି କରୁଣାରୁ ସେ ସେଥିରୁ କେବେ ଦୂରକୁ ଠେଲି ନଦେଇ ବରଂ ସେଥିରେ ଅଧିକରୁ ଅଧିକ ଅବଗାହନ କରେଇଥିଲେ । ଏ ସବୁ ତାଙ୍କରି ଇଚ୍ଛା ଓ କରୁଣା ।

## ୬୬. ଅୟମାରମ୍ଭ ଶୁଭାୟ

ଲିଖିତ ପରୀକ୍ଷା ଦେବା ପରେ ମନେ ହେଉଥିଲା ଯେ ଜଜ୍ କୋର୍ଟରେ ଚାକିରୀଟି ନିଶ୍ଚୟ ହୋଇଯିବ । ଲୋକାକେଇ ଜଣେ ପୋଖତା ସଂସାରୀ । ସେ ସଂସାର କୁ ଓ ସଂସାରୀ ଲୋକଙ୍କୁ ଭଲ କରି ଚିହ୍ନନ୍ତି । ସେ କଚେରୀ ପାଠ ପଢ଼ି ନଥିଲେ ମଧ ସରକାରୀ କଳକୁ ଭଲ କରି ଚିହ୍ନିଥିଲେ । ମନ୍ତ୍ରୀ ଓ ସରକାରୀ ଲୋକଙ୍କର ଗତିବିଧି ତାଙ୍କୁ ବେଶ୍ ଜଣାଥିଲା । ଦିନେ

କଟକରେ ମତେ ଆସି ପଚାରିଲେ ପରୀକ୍ଷା ଦେଇଥିଲ କ'ଣ ହେଲା ? ମୁଁ କହିଲି ଭଲ ହୋଇଛି । ଚାକିରୀ ମିଳିଯିବାର ଆଶା । ସେ ହସିଲେ ଓ କହିଲେ ଏମିତି ପରୀକ୍ଷା ଦେଇ ଚାକିରୀ ମିଳିବାର ସମୟ ଆଉ ଏବେ ନାହିଁ । ସେ ବହୁ କଷ୍ଟକରି ତାଙ୍କ ପୁଅକୁ ପାଠପଢାଇ ମଣିଷ କରିଥିଲେ । ସେବେଳକୁ ଚାକିରୀମିଳିବା ସହଜଥିଲା ।ଏବେ ସେ ପରିସ୍ଥିତି ନାହିଁ ବୋଲି ସେ ଜାଣିଥିଲେ । ତେଣୁ ନିଜର ଅନୁଭୂତିରୁ ଶିକ୍ଷାପାଇ ସେ ମୋପାଇଁ ଆଗେଇ ଆସିଥିଲେ । ତାଙ୍କୁ ଆମ ପରିବାରର ଦୁଃଖ ବେଶ୍ ଜଣାଥିଲା ।

ବାଙ୍କା ବଜାରରୁ ପାଏ ଘିଅ ଓ ଚଉଧୁରୀ ବଜାରରୁ ୪ଟି ନଡ଼ିଆ କିଣି ମତେ ସାଙ୍ଗରେ ନେଇ ଜଣେ ଭଦ୍ରଲୋକଙ୍କ ଘରକୁ ସଂଧ୍ୟାରେ ଗଲେ । ସେ ଏସବୁ ଦେଖି ଲମ୍ବ ହୋଇ ଗୋଡ଼ ତଳେ ପଡ଼ିଗଲେ । ଆପଣ ବ୍ରାହ୍ମଣ ଲୋକ । ମୋତେ କ୍ଷମା କରନ୍ତୁ । ମୁଁ ସେ ଚାକିରୀ କଥା ବୁଝୁନି । ତଥାପି ଖବର ନେବି ଓ ସାହାଯ୍ୟ କରିବି । ସେ ପ୍ରକୃତରେ ଜଣେ ଭକ୍ତ ଥିଲେ । ପ୍ରତ୍ୟେହ ଗୋପାଳଜୀଉ ମନ୍ଦୀର ଦର୍ଶନ, ଭାଗବତ ଶ୍ରବଣ ସହ କାହାରି ପ୍ରତି ଅନ୍ୟାୟ ଆଚରଣ କରନ୍ତିନି । ବରଂଯେତିକି ପାରନ୍ତି ସହାୟତା ଦିଅନ୍ତି । ସେଭଳିଲୋକ ଏବେ ଦୁର୍ଲ୍ଲଭ । ମୁଁ ନିରାଶ ହୋଇଗଲି । ନିଜକୁ ଦୋଷୀ ପରି ଲାଗିଲା । ମାତ୍ର ଲୋକାକେଇ କହିଲେ- ଏବେ ସଂସାରଟି ଘୋର ଅନ୍ୟାୟରେ ଚାଲିଛି । ତୁମର ବା କିଏ ଅଛି ? ତାଚ୍ଛୁଡା, ସେମୁଣ୍ଡ ପୂରାଇ ନଥିଲେ ତୁମକୁ ନ୍ୟାୟ ମିଳି ନଥାନ୍ତା । ଏଥର ତୁମେ ବିଶ୍ୱାସ କରିପାର ଯେ ତୁମର ଚାକିରୀ ହେଉ କି ନହେଉ ତୁମ ପ୍ରତି ଅନ୍ତତଃ ଅନ୍ୟାୟ ହେବନି ।

ସତକୁ ସତ ବୁଝିଲା ବେଳକୁ ପ୍ରାୟ ପରୀକ୍ଷା ଦେଇଥିବା ୪୦୦ ପିଲାଙ୍କ ମଧ୍ୟରୁ ଦୁଇ ଜଣ ନିର୍ଦ୍ଦିଷ୍ଟ ଗୋଷ୍ଠୀର ପିଲାଙ୍କୁ ହିଁ ବଛା ଯାଇଛି । ଏ କଥାରେ ସେହି ଭଦ୍ର ଲୋକ ହିଁ ଚଟ୍ଚଳାଇ ଜଜ୍ ସାହେବଙ୍କ ଦୃଷ୍ଟିକୁ ଏ ଅନ୍ୟାୟଟିକୁ ଆଣିଲେ; ଯେକି ଆମର ଲମ୍ବ ହୋଇ ଗୋଡ଼ ତଳେ ପଡ଼ିଯାଇଥିଲେ । ଜଜ ସାହେବ ଖାତା ସବୁ ପୁଣି ଥରେ ପରୀକ୍ଷା କରିବାକୁ ଆଉ ଜଣେ ସବଜଜ୍‌ଙ୍କୁ ଦେଲେ । ଫଳରେ ପୂର୍ବର ୨ ଜଣଙ୍କ ସହ ମୋର ନାମ ପ୍ରଥମ ୬ ଜଣଙ୍କ ତାଲିକାରେ ବାହାରିଲା ଓ ନିମାଇଁ ବାବୁଙ୍କ ତଥା କଥିତ ମହାରାଣୀଙ୍କ ସିରସ୍ତାରେ ପ୍ରବେଶ ହୋଇଗଲା । ୟେ ହେଲା ୧୯୫୭ ଫେବୃୟାରୀ ମାସର କଥା । ଠିକ୍ ତା ପରେ ପରେ ନିର୍ବାଚନ କାମରେ ପୁରୁଣା କର୍ମଚାରୀ ମାନେ ଯିବାରୁ କେନ୍ଦ୍ରୀୟ ଡ଼ାଇରୀରେ କାମ ପଡ଼ିଲା । ସେଠି ପ୍ରଥମ ଦିନ ଖୁବ୍ ଘାବରାଇ ଯାଇଥିଲି । ଦିଲ୍‌ଭର ଖାଁ ନାମକ ଜଣେ ଚପରାଶି ଲୋକ କେବଳ ନିଜର ନାଁଟି ଲେଖି ପାରେ । ସେ ହିଁ କାମ ବତାଇ ଦେଲା । ସେ ବିଭିନ୍ନ ହେଡିଂ, ଫର୍ମ, ରଙ୍ଗ ଓ ଦସ୍ତଖତ ଦେଖି କୋଉ ଚିଠି କୋଉଠୁ ଆସିଛି ଓ କ'ଣ ବିଷୟ କହିଦେଇ ପାରେ । ୟେ ତାର ୪୦ ବର୍ଷର ଅଭିଜ୍ଞତା । ୨ୟ ଦିନ ବର୍ଷା ହେଉଥାଏ । ଦିଲଭର ଡ଼ାକନେଇ ଆସି ଓଲଟାଇ ରଖିଦେଲା ଓ ଗୋଟିଏ ନୂଆ ଖଡ଼ ଖଡ଼ିଆ ପାଞ୍ଚ ଟଙ୍କିଆ

ନୋଟ ମୋତେ ବଢ଼ାଇ ଦେଲା । ମୁଁ ଯେତିକି ଖୁସି ସେତିକି ଆଶ୍ଚର୍ଯ୍ୟ ହୋଇଗଲି । କୌତୁହଳରେ କାହିଁକି ଓ କିପରି ଟଙ୍କା ମିଳିଲା ପଚାରିଲାରୁ କହିଲା ଏହି ଯେ ଡ଼ାକ ଓଲଟାଇ ରଖିଦେଲି ସେଇଥିରୁ ମିଳିଲା । ବୁଝାଇ ଦେଲା; ଡ଼ାକ ଓଲଟାଇ ଦେବା ଫଳରେ ଓକିଲ କମିଶନର ମଗାଇଥିବା ପାର୍ଟି ତାଲିକାରେ ପଛରେ ଥିବା ବ୍ୟକ୍ତିକୁ ପାଇବ । ସେ ତାର ସହାୟତା କରିବେ । କଥାଟା ବହୁ କଷ୍ଟରେ ପରେ ଭଲ ଭାବରେ ବୁଝିଲି ।

ଆଠ ମାସ ପରେ ଲେଖାକାର ଟ୍ରେନିଂ ପାଇଁ ନାମ ମଗାଗଲା । ଖୁବ୍ ଅଭିଜ୍ଞ ପୁରୁଣା ହେଡ୍ କ୍ଲର୍କ ବା ଲେଖାକାର ମାନେ ଯିବା କଥା । ଜଜ କୋର୍ଟରେ ତ ବାପ ମାଙ୍କ ଶୁଦ୍ଧି ହେବାକୁ ଶେଷ ୩ ଦିନ ଛୁଟି ନିଅନ୍ତି ।ଆଉ ୩ ମାସ ଟ୍ରେନିଂ ଯିବ କିଏ ? ତେଣୁ ୩ଥର ଆଦେଶ ହୋଇ ଉପରୁ ତଳକୁ ଗଡି ଚାଲିଲା । ଶେଷକୁ ଆମ ଇଂଲିସ୍ ସେକ୍ସନର ପୃଷ୍ଟିବାବୁ ଦଶରା ଛୁଟିର ଭେକେସନ ଜଜଙ୍କ ଠାରୁ ଅର୍ଡ଼ର ନେଇ ମୋତେ ଧରାଇଦେଲେ । ମୁଁ ଖୁସିରେ ଭୁବନେଶ୍ୱର ଚାଲିଲି । ଠାକୁରେ କିପରି ପରମ ଦୟାଳୁ ତାହା ହିଁ ଦେଖିବାର କଥା । ଅନୁଭୁତି ସମ୍ପନ୍ନ ବୁଢ଼ା ଲୋକେ ଯେଉଁ ଟ୍ରେନିଂ ନେବା କଥା ଚାକିରୀ ବର୍ଷେ ନପୁରୁଣୁ ସେ ଟ୍ରେନିଂ ବ୍ୟବସ୍ଥା ହୋଇଯିବାରୁ ଚାକିରୀ ଜୀବନରେ ହଟିବାକୁ ପଡ଼ିନି ବରଂ ମୋର ଚାହିଦା ବଢ଼ିଗଲା । ଏସବୁ ଅଲକ୍ଷରେ ଠାକୁର ହିଁ କରେଇ ନେଇଥିଲେ; ତାଙ୍କରି ଇଚ୍ଛାରେ ଅଦ୍ଭୁତ ଭାବରେ ।

## ୬୭. ଅକର୍ମା କର୍ମ ଦାୟକ

ଖୁବ୍ ଆନନ୍ଦରେ ଟ୍ରେନିଂ ନେବାକୁ ଚାଲି ଆସିଲି ସିନା କାର୍ଯ୍ୟକ୍ଷେତ୍ରରେ ଏକ୍‌ଦମ୍ ହଦ୍‌ବଦ୍‌ହେଇ ଗଲି । ବହିପତ୍ର କ'ଣ ଦରକାର ଜଣା ନଥିଲା । ଆମ ରାଧାକେଇ ଓ ଅନ୍ୟଜଣେ ଲୋକଙ୍କ ଠାରୁ ଦୁଇଖଣ୍ଡ ବହି ମାଗି ଆଣିଲି । ହେଲେ ସେ ବହି ପଢ଼ିବା, ବୁଝିବା ଓ ଶ୍ରେଣୀରେ ଯାହା ପଢ଼ାଯାଉଥିଲା ତାହା ବୁଝିବା କଷ୍ଟକର ଥିଲା । ଆଙ୍ଗ୍ଲୋଇଣ୍ଡିଆନ ଆର୍ଥର ସାହେବ ଥିଲେ ପ୍ରିନ୍ସିପାଲ । ତାଙ୍କ ସାଙ୍ଗକୁ କେ.କେ. ଆଚାରୀ, ବେହେରା ଓ ରଥ ସାହେବ ଥିଲେ ଲେକ୍‌ଚରର୍ କେବଳ ନାରାୟଣ ରଥଙ୍କୁ ଛାଡ଼ିଦେଲେ କେହି ଓଡ଼ିଆରେ କଥାବାର୍ତ୍ତା ମଧ ହୁଅନ୍ତିନି । ଆକାଉଣ୍ଟ ସମ୍ବନ୍ଧୀୟ ସମସ୍ତ ବହି ଇଂରାଜୀରେ ଓ ଏମାନେ ସମସ୍ତେ ଇଂରାଜୀରେ ହିଁ ପଢ଼ାଉଥିଲେ । ତେଣୁ ତାକୁ ମାଟ୍ରିକ ପାଶ ପରେ କୌଣସି ଚାକିରୀ ଅଭିଜ୍ଞତା ନଥାଇ ବୁଝିବା ବଡ କଷ୍ଟ ହେଲା । ସପ୍ତାହକ ପରେ ଓଡ଼ିଆରେ ପଢ଼ାଇବାକୁ ଓ ବୁଝାଇବାକୁ କହିବା ପରେ ସେ ଶ୍ରେଣୀର ଛାତ୍ର ଥିବା ୫୯ ଜଣ ବୃଦ୍ଧ ଲେଖାକାର ଓ ପ୍ରଧାନ କିରାଣୀ ମାନେ ହସିବାକୁ ଲାଗିଲେ । ଶ୍ରେଣୀରେ ତାଳି ମଧ ବାଜିଲା । ମୁଁ ଯେ ଇଂରାଜୀ ଲେକ୍‌ଚର ଏକା ବୁଝୁନଥିଲି ତାନୁହେଁ ; ତ୍‌କାଳୀନ ସବୁ ମାଟ୍ରିକ ପାସ୍ ପିଲା କଲେଜ ଆସି ଏଇଠି ଝୁଣ୍ଟନ୍ତି । କେତେ ଆଣ୍ଠୋଇ ପଡନ୍ତି ତ କେତେ ଉଠି ପଡି ଆଗକୁ ଚାଲନ୍ତି । କଲେଜରେ ନାମ ଲେଖାଇଥିବା ଅଧାପିଲାଙ୍କର ପାଠରେ ଏଇଠି ଡୋରି ବନ୍ଧାହୁଏ । ଆଉ ମୁଁ ତ ଖଣ୍ଡେ

ଇଂରାଜୀ ବହି ମଧ୍ୟ ମାଟ୍ରିକ୍‌ରେ ପଢ଼ିବାକୁ ପାଇନଥିଲି । ଯାହା ହେଉ ଏ ହସ ଓ ତାଳି ମୋତେ ବଡ଼ ଅପମାନ ଦେଲା । ପରଦିନ ଠାରୁ ଶ୍ରେଣୀକୁ ଯିବା ବନ୍ଦ କରିଦେଲି । ସକାଳୁ ଉଠି ଝାଡ଼ା ଝପଟ ସାରି କେଦାର-ଗୌରୀ ଯାଏ । ସେଠି ଗାଧୋଇ ଦିଅଁ ଦର୍ଶନ କରି, ଦୁଧ କୁଣ୍ଡରୁ ପେଟେ ପାଣି ପିଇ ବେଲପତ୍ର କିଛି ଓ ଢ଼ାଳେ ପାଣି ଧରି ଆସେ । ତାକୁ ଲିଙ୍ଗରାଜ ମହାପ୍ରଭୁଙ୍କ ଉପରେ ଢ଼ାଳେ । ସେଇଠି ଦେଖାହୁଏ ଧୂଳିଆ ପଣ୍ଡା ଅବକାଶ ମହାସୁଆରଙ୍କ ସହିତ । ସେ ବଡ ପାଟିକରି କହନ୍ତି, ବାବୁଙ୍କର ବଡ଼ ଚାକିରୀ ହେଉ । ଶରୀର ସୁସ୍ଥ ହେଉ ଇତ୍ୟାଦି ମୁଁ କହିଲି ମୁଁ ପଢ଼ିବାକୁ ଆସିଛି । ପାଠ ବୁଝିପାରୁନି । ହଷ୍ଟେଲରେ ଶୋଉଛି । ତିନି ମାସପରେ ଫେରିଗଲେ ଚାକିରୀରୁ ଖଲାସ ହୋଇଯିବି । ଆଉ ଲିଙ୍ଗରାଜ ବଡ଼ ଚାକିରୀ କ'ଣ ଦେବେ ! ଅବକାଶ କଣ ସେ କଥାର ମାନେ ବୁଝେ ? ସେ ଆହୁରି ବଡ଼ ପାଟିରେ କହେ "ଲିଙ୍ଗରାଜ ଅକର୍ମା କର୍ମଦାୟକ ।" ସବୁ ଠିକ୍ ହୋଇଯିବ । ମୋ ମନ କିନ୍ତୁ ବୁଝେନା । ଏମିତି ସାତ ଦିନ ଯାଇ ହଷ୍ଟେଲରେ ଖାଇ ଶୋଇବା ପରେ ମନରେ ଚେତା ପଶିଲା । ଖରା ବେଳେ ଉଠି ଅନ୍ୟବାବୁ ମାନଙ୍କର ଟିପାଟିପି ନୋଟ୍ ଦେଖିଲି । ସେ ସମାଧାନ କରିଥିବା ପ୍ରଶ୍ନୋତ୍ତର ଧୀରେ ଧୀରେ ତାଙ୍କ ଖାତାରୁ ଦେଖିଲି । ମୋ ଅଳ୍ପ ବୁଦ୍ଧିରେ ମୁଁ ଆପେ ଧୀରେ ଧୀରେ ପଢ଼ି ବୁଝି ଦେଖିଲି । ଏସବୁ ସେମିତି କିଛି ବଡ଼ କଥା ନୁହେଁ । ମାଇଲକୁ ଖର୍ଚ୍ଚ ଏତେ ୨୫ ମାଇଲକୁ କେତେ ଗସ୍ତ ଖର୍ଚ୍ଚ ମିଳିବ । ବଦଳି ବେଳେ କେତେ ଦିନ ପ୍ରସ୍ତୁତି ଓ ଗମନା ଗମନ ପାଇଁ ଛୁଟି ମିଳିବ । ପଦୋନ୍ନତି ବେଳେ କେମିତି ଉପର ହାରରେ ଦରମା ଧାର୍ଯ୍ୟ ହେବ । ଏସବୁ ଥରେ ବୁଝିଗଲା ପରେ କଥାଟା ଖୁବ୍ ସହଜ ହୋଇଗଲା ।

ତା ପରେ ମନରେ ଦମ୍ଭ ଧରି ପୁଣି ଥରେ ଶ୍ରେଣୀକୁ ଯିବାରେ "ପୁଣି କାଳିଆ ଲେଉଟିଲା" ବୋଲି ବହୁତ ଲୋକ ବଡ଼ ପାଟିରେ ଟିପ୍ପଣି କଲେ । ଏଥର କିନ୍ତୁ ଧୀର ସ୍ଥିର ଭାବେ ବସି ନିଠେଇ ନିଠେଇ ସବୁ ଶୁଣେ ଓ ବୁଝେ । ମାସ ଶେଷବେଳକୁ ସବୁ ଇଂରାଜୀ କଥା ବେଶ୍ ବୁଝି ଗଲି । ତା ପରେ କଣ ହେଲାନା, ସବୁ ଶିକ୍ଷକ ମୋତେ ହିଁ ଗୁଡ଼େଇ ତୁଡେଇ ପ୍ରଶ୍ନ କଲେ । ମୁଁ ଇଂରାଜୀ ଓଡ଼ିଆ ମିଶାଇ ସଠିକ୍ ଉତ୍ତର ଦେବାରେ ବହୁ ବୃଦ୍ଧ ସେ ପ୍ରଶ୍ନର ଉତ୍ତର ନ୍ ଦେଇ ପାରି ଲଜ୍ଜିତ ହୋଇଥିଲେ । ୩ମାସ ପରେ ପରୀକ୍ଷା ହେଲା । ମୋର ଉପସ୍ଥାନ ଉପରୋକ୍ତ କାରଣରୁ କିଛି କମି ଯାଇଥିଲା ସିନା ପ୍ରଥମ ଶ୍ରେଣୀଟି ମିଳିଗଲା । ସେତିକି ନୁହେଁ ସାଙ୍ଗରେ ଜଜସିପ୍‌ରୁ ଆସିଥିବା ଆଉ ୩ ଜଣ ଫେଲ ହୋଇଗଲେ ।

ଏଇ ଅବସ୍ଥାରେ କଟକ ଫେରି ଜଜ୍ ସାହେବଙ୍କ ଠାରୁ ଧନ୍ୟବାଦଟିଏ ପାଇବା ସହ ବହୁ ଦିନରୁ ପଡ଼ି ରହିଥିବା ବହୁ ବୃଦ୍ଧଙ୍କର ପେନ୍‌ସନ୍ କାଗଜ ପ୍ରସ୍ତୁତି ଦାୟିତ୍ୱ ମିଳିଗଲା ଲେଖା ବିଭାଗ ଅଧୀନରେ । ସେହି କେତେ ମାସ ମୋତେ ଯେତେ ଯେତେ ବୃଦ୍ଧ ଅସହାୟଙ୍କ ଆଶିର୍ବାଦ ମିଳିଲା ତାହା କଳନା କରାଯାଇ ପାରିବନି । ସେଠିତ ଲୋକ ଚାକିରୀ ସର୍ବସ୍ୱ,

ବଦଳୀ, ଛୁଟି, ପଦୋନ୍ନତି କିଛି ଲୋଡ଼ାନାହିଁ । ହେଲେ ଚାକିରୀ ଗଲା ପରେ ହାତରୁ ପଇସା ସରିବା ପରେ ପେନସନ୍ ନପାଇ ବହୁତ ହନ୍ତସନ୍ତ ହୁଅନ୍ତି । କିଏ ସେ କାମ ଜାଣେଯେ ପେନସନ୍ କାଗଜ କରିବ ? ବହୁ ବୃଦ୍ଧ ମୋ ପଛପଟେ ଠିଆ ହୋଇ ତାଙ୍କ କାମ କରିଦେବାକୁ କହିବା ବେଳେ ତାଙ୍କର ଆଖି ଲୁହ ମୋ ମୁଣ୍ଡରେ ପଡ଼ିବାର ଦୃଷ୍ଟାନ୍ତ ଅଛି ।

ଠାକୁରେ ପ୍ରକୃତରେ "ଅକର୍ମା କର୍ମ ଦାୟକ" । ସେ କେବଳ ପାଶ୍ କରିବା ବ୍ୟବସ୍ଥା କଲେନି ବହୁ ଆଶିର୍ବାଦ ଲାଭର ବ୍ୟବସ୍ଥା କରି ଦେଲେ । ଭାଗବତର ବାଣୀ- "ମୁଁ ଯାକୁ ହୁଅଇ ସଦୟ- ଜ୍ଞାନତା ହୃଦରୁ ଉଦୟ" କଥାଟି ଅକ୍ଷରେ ଅକ୍ଷରେ ଠାକୁରେ ସତ୍ୟ ବୋଲି ପ୍ରମାଣିତ କରିଦେଲେ । ପୁଣି ସେଠିକା ପଇସା ନିଶା ଯଦି ଥରେ ଘାରିଥାନ୍ତା ସେହିଠି ହିଁ ସମାଧି ହୋଇଥାନ୍ତା ଜୀବନର । ଠାକୁରେ ତା ପାଇଁ ବାଟ କାଟି ଦେଇ ପ୍ରଗତି ପଥରେ ଏ ଜୀବନ ରଥକୁ ଆଗେଇ ଦେଲେ । ସେ ପରମ କୃପାଳୁ; ମନ ଘେନି ଫଳ ।

## ୬୮. ଗଡ଼ଗଡ଼ିଆ ବାଲିଗରଡ଼ାରେ ଶିଉଳୀ ଲାଗେନା

ଲେଖାକାର ତାଲିମ୍ ପରେ ଗୋଟିଏ ଉଚ୍ଚତର ପଦବୀ ସୃଷ୍ଟିକରି ସେଠାରେ ମୋତେ ରଖାଇବାକୁ ସରକାରଙ୍କୁ ଏକ ପ୍ରସ୍ତାବ ଯିବାକ୍ଷଣି ଶହ ଶହ ଦରଖାସ୍ତ ପଡ଼ିଗଲା । ଏବେ ମଧ୍ୟ ଲେଖାକାର ବିଭାଗରେ ପେନ୍ସନ୍ କାଗଜ ପ୍ରସ୍ତୁତି କାମ ଯୋର୍ ସୋର୍ ଚାଲିଥାଏ । ତା ବ୍ୟତୀତ, କିଏ କେମିତି ନଥିଲେ ଚାଲାଣ ପାଇଁ କାମ ମଧ୍ୟପଡ଼େ । ଜଜ କୋର୍ଟରେ ଯେଉଁ ବାହାରିଆ ଆୟହୁଏ ତାହା ଦରମା ପରି ଧାର୍ଯ୍ୟ । କାମକୁ ଚାହିଁ ଦରମଧ ଧାର୍ଯ୍ୟ ଥାଏ । କୌଣସି ପକ୍ଷ ସହ ମଧ୍ୟ କାରବାର ନଥାଏ । ବଡ଼ ଓକିଲଙ୍କ ମୋହରିର ମାନେ କାମର ହିସାବ ରଖି ଦିନ ଶେଷରେ ସବୁ ପଇସା ବିଭାଗର ମୁଖ୍ୟଙ୍କୁ ପୈଠ କରିଦିଅନ୍ତି ।

ଲେଖା ବିଭାଗରେ ଆମେ ଥାଉ ୪ ଜଣ । ମୁଖ୍ୟ ଲେଖାକାର ପ୍ରଭାସବାବୁ ପଇସା ନିଅନ୍ତିନି । ଗୋଲଖବାବୁ ତାଙ୍କ ପାଇଁ ହାଇକୋର୍ଟ କ୍ୟାଣ୍ଟିନ୍‌ରୁ ଭଲ ଦାମିକା ଜଳଖିଆଟିଏ ଦ୍ୱିପ୍ରହରରେ ମଗାଇ ଦିଅନ୍ତି । ମୁଁ ସେ ହିସାବ ଦେଖେନି, ବୁଝେନି କି ପଇସାବି ଧରେନି । ତେଣୁ ବାକି ଦୁଇଜଣଙ୍କର କଚ୍ଛେବାର । ସେହି ଯେ ଚାକିରୀର ୨ୟ ଦିନରେ ବର୍ଷା ପାଗରେ ଖଡ଼ଖଡ଼ିଆ ପାଞ୍ଚଟଙ୍କିଆ ନୋଟ୍‌ଟି ଦିଲଭର ଖାଁ ଦେଇଥିଲା ସେଇଟି ଆରମ୍ଭ ଓ ଶେଷ ।

ଠାକୁରଙ୍କ ଦୟାର ସୀମା ନାହିଁ । ଯଦି ଜଜ୍ କୋର୍ଟର ଏହି ବାହାରିଆ ଆୟରେ ଥରେ ମୁହଁ ବୁଡ଼ାଇ ଦେଇଥାନ୍ତି, ହୁଏତ ଅନ୍ୟ ଅନେକଙ୍କ ପରି ୫୮ ବର୍ଷରେ ସେହିଠି ସେହି ପଦବୀରେ ଅବସର ମିଳିଥାନ୍ତା । ନିଜେ ଈଶ୍ୱର ଯେଉଁ ଡ଼ଙ୍ଗାର ନାଉରୀ ସେ କିପରି ସେ ପଇସା ଭଉଁରୀରେ ଡ଼ଙ୍ଗାଟିକୁ ପକାଇ ଦେଇଥାନ୍ତେ ! ଏହାକୁ ହିଁ କୁହାଯାଏ ଈଶ୍ୱର କୃପା ।

ଅପର ପକ୍ଷେ ଯେଉଁ ମହାଶୟ ପ୍ରଥମ ପରୀକ୍ଷାରେ ମୋତେ ବାଦ୍ ଦେଇଥିଲେ ସେ କାମ ଦେଖି କାମରେ ତୃପ୍ତ ହୋଇ ମୋ ପାଇଁ ଉଚ୍ଚ ପଦବୀ ସୃଷ୍ଟି କରିବାକୁ ଲେଖି ବନ୍ଧୁ ଅଭିଯୋଗର ସମ୍ମୁଖୀନ ହୋଇ ମଧ୍ୟ ନିଜ ନିଷ୍ପତ୍ତିରେ ଅଟଳ ଥିଲେ । ହେଲେ ମୁଁ ଏ ସମ୍ବାଦ ପାଇ ମତ୍ସ୍ୟ ନିର୍ଦ୍ଦେଶାଳୟରେ ବାହାରିଥିବା ଉଚ୍ଚବର୍ଗ କିରାଣୀ ଦରମାରେ ଲେଖାକାର ପଦବୀ ପାଇଁ ଦରଖାସ୍ତ କରିଦେଲି । ଦରଖାସ୍ତ ଦେଖି ସେ ବିସ୍ମିତ ହେଲେ । ସେ ହିଁ କହିଥିଲେ ଯେ "ଗଡ଼ି ଗଡ଼ି ଯାଉଥିବା ବାଲିଗରଡା ପଥରରେ ଶିଉଳୀ ଲାଗେନା" । ଅର୍ଥାତ୍ ସେ ସେହିଠାରେ ମୋର ରହିବାକୁ ଚାହୁଁଥିଲେ । ମାତ୍ର ମୁଁ ଏତେ ଆପତ୍ତି ଅଭିଯୋଗକୁ ପଛୁକୁ ପକାଇ ସେଠି ରହିବାକୁ ନଚାହିଁ ଚାଲି ଆସିଲି ମତ୍ସ୍ୟ ବିଭାଗକୁ । କଥାଟି ସେ ଇଂରାଜୀରେ କହିଥିଲେ । ମୁଁ ସେଥିରୁ ଅଧେ ବୁଝିଥିଲି-ପରେ ମନସ୍ଥ ହୋଇ ବୁଝିଲି ଓ ଠିକ୍ କଲି ମୋର ଶିଉଳୀ ଦରକାର ନାହିଁ । କହିଥିଲେ:- " ରୋଲିଂ ଷ୍ଟୋନ ଗ୍ୟାଦର୍ସ ନୋମସ ।"

୧୯୫୮ ରେ ସେଠି ସ୍ୱାଧୀନ ଭାବେ ଲେଖାକାର କାମଟି ଉପକୂଳ ବିଭାଗ ଉପ ନିର୍ଦ୍ଦେଶକଙ୍କ କାର୍ଯ୍ୟାଳୟରେ କିଛି ଦିନ କଲାପରେ ଠିକ୍ ସେହି ଅବସ୍ଥା ଉପୁଜିଲା । ସେଠି ମଧ୍ୟ ଗୋଟେ ଉଚ୍ଚ ପଦବୀର ଲେଖାକାର କାର୍ଯ୍ୟ ସୃଷ୍ଟି ହେଲା । ମୋ ଆଗରୁ ଆଉ କେହି ଲେଖାକାର ଟ୍ରେନିଂବାଲା ଉଚ୍ଚବର୍ଗ କିରାଣୀ ପଦବୀରେ ନଥିବାରୁ ତାହା ମୋର ହିଁ ପ୍ରାପ୍ୟ । ମାତ୍ର ମୋର ପ୍ରତିବାଦ ସତ୍ତ୍ୱେ ଗୋଟେ ପରୀକ୍ଷା କରାଗଲା । ସେଥିରେ ମଧ୍ୟ ପ୍ରଥମ ସ୍ଥାନ ପାଇବା ସତ୍ତ୍ୱେ ପୁଣିଥରେ ପରୀକ୍ଷା କରାଯାଇ ଆଉଜଣେ ବ୍ୟକ୍ତିକୁ ଯେକି କନିଷ୍ଠ ବର୍ଗର ଥିଲେ ଓ ମୋ ପରେ ଲେଖାକାର ତାଲିମ୍ ପାଇଥିଲେ ତାଙ୍କୁ ସେ ପଦବୀ ଦିଆଗଲା । ଏଥିରେ ରଷ୍ଟ ହୋଇ ତତ୍କାଳୀନ ଆଇନ ବିଭାଗ ଅନୁଶାସନ ସଚିବ ଥିବା ଜଣେ ମୁସଲମାନ ବଂନ୍ଧୁ ବ୍ୟକ୍ତିଙ୍କଦ୍ୱାରା ଚିଠା କରାଯାଇଥିବା ଦରଖାସ୍ତ ମତ୍ସ୍ୟ ନିର୍ଦ୍ଦେଶକଙ୍କୁ ଦେବାରେ ସେ ବିସ୍ମିତ ହୋଇ ମଧ୍ୟ କହିଲେ ଆଗରୁ କାହିଁକି କହିଲନି । ଏବେ ପାଣିରେ ଘର କରି କୁମ୍ଭୀର ସହ କଳି କରିବେକି ? ମୁଁ ନାହିଁ କଲି ଓ ଅନ୍ୟାୟର ପ୍ରତିବାଦ କରି ମୋର ନାମ ପଞ୍ଚାୟତ ଅଡ଼ିଟଇନ୍ସପେକ୍ଟର ପଦବୀ ପାଇଁ ସୁପାରିଶ କରିବାକୁ କହିବାରୁ ସେ ଖୁବ୍ ଉଚ୍ଚ ମନ୍ତବ୍ୟ ସହ ତାହା ସଙ୍ଗେ ସଙ୍ଗେ ପଠାଇ ଦେଲେ । ପଠାଇ ଦେଲେସିନା; ସେ ଚାକିରୀ ତ ହୋଇନଥିଲା । ଏକ ଯିଦ୍‌ରେ ବିନା ଛୁଟିରେ ଥାଇ ୭ ଦିନ ବସିବା ମଧ୍ୟରେ ଦ୍ରୌପଦୀର ମାନ ରଖିବା ପରି ଠାକୁରେ ମୋର ମାନ ରକ୍ଷା କଲେ ଓ ସେ ଚାକିରୀଟି ମିଳିଲା । ଏଥିରେ ନିର୍ଦ୍ଦେଶକ ଓ ଅନ୍ୟମାନେ ଠାକୁରଙ୍କ ପ୍ରଶଂସା ନକରି ଅନ୍ୟାୟର ଠିକ୍ ଉତ୍ତର ମିଳିଲା ବୋଲି ନ ଚେତି ବରଂ ମୋର ଯିଦ୍ ପାଇଁ ମୋତେ ଈର୍ଷା କଲେ । ହେଲେ ଈଶ୍ୱର ବଡ଼ ଲୋକ; ତାଙ୍କର ଇଚ୍ଛା ବଳୀୟାନ । ସେ ଯାହାକୁ ରଖିବେ ତାର କିଏ କଣ କରିବ ? ବଲ୍‌କୁ ତଳକୁ ଫିଙ୍ଗିଲେ ସେ ଉପରକୁ ଉଠିବ ସିନା । ମୋହ ଗ୍ରସ୍ତ ମଣିଷ ଏ ସତ୍ୟକୁ ସହଜରେ ବୁଝେନା । ତାହା ହିଁ ସୃଷ୍ଟିର ବୈଚିତ୍ର୍ୟ ।

# ୬୯. ଖାଇବାକୁ ଭାତ ନାହିଁ- ହଗିବାକୁ ପାଇଖାନା

ଘର ଭାଙ୍ଗିଯିବା ବେଳେ ରସା ଭାଇ ଯେଉଁ ନା ଚାଳିଆଟି ତିଆରି କରି ଦେଇଥିଲା ବାର ବର୍ଷକାଳ ସେଇଥିରେ କଟିଗଲା । ପାଣ୍ଡବମାନଙ୍କର ୧୨ବର୍ଷ ବନବାସ ପରି ଏ ବାରବର୍ଷର ଇତିହାସର ଅବସାନ ହେଲା ଗୃହାରମ୍ଭରେ ୧୯୫୭ରେ। ଗୁଣ ଅବଧାନ ମାମୁଁଘର ଗାଁର । ବୋଉର ହାତ ମାପ କାଠିନେଇ ସାତସତରରେ କାନ୍ଥ କାଟି ଦେଲେ । ସେ ଦିନ ଦୈବାତ୍ ବାବାଜୀ କକେଇ ଥିଲେ । ସେ ମଧ ଆଶିର୍ବାଦ ଦେଇଥିଲେ । ତାଙ୍କ ପାଦ ଧୂଳୀ ପଡ଼ିଥିଲା । ବୋଉରତ ଗୋଡ଼ ତଳେ ଲାଗୁନଥାଏ । ତାର ପ୍ରସନ୍ନତା ଆମର ପ୍ରେରଣା ହୋଇଥାଏ ।। ମୁଁ ପୁରା ଗୀତା ଟି ବସିକି ପଢ଼ିଥିଲି । ଠାକୁରେ ଉଚ୍ଚମନ ଦେଇଥିଲେ । ଖାଇବାକୁ ଖାଦ୍ୟ ନଥିଲେ ମଧ ଜମି ନକିଣି ଆଗ ଘର କରିବାକୁ ମନବଳିଲା । ଘର କରିବା ଆଗରୁ ବାଡ଼ିରେ ପାଇଖାନାଟିଏ ପକାଇଲି । ରଥ କକେଇ କହିଲେ; "ଖାଇବାକୁ ନଥାଉ ପଛେ ହଗିବାକୁ ଆଗ ପାଇଖାନା କର" । ଏ ସମାଲୋଚନାକୁ ଭୃକ୍ଷେପ ନକରି ସାଙ୍ଗର ଭାଇ ରଘୁରାଉତଙ୍କ ସହ ପରାମର୍ଶକରି ହଜାର ଛଅଟଙ୍କା ଦର ଛିଡ଼ାଇ ଠିକାରେ ଇଟା ପକାଗଲା । ବୋଉ ସେ ଇଟାକୁ ବର୍ଷାଦାଉରୁ ରକ୍ଷା କରିବାକୁ ବହୁତ କାଲୁବାଲୁ ହୋଇଛି । ରଘୁଆ ଭାଇ ମଧ ବଡ଼ ହଇରାଣ ହେଲା । ତେଣୁ ମାତ୍ର ତିରିଶି ହଜାର ଇଟା ପଡ଼ିଲା । କୋଇଲା ପାଇଁ ଭାଇନା ଦେଇଥିଲେ ପଚାଶ ଟଙ୍କା । ଡ଼ଙ୍ଗାରେ କୋଇଲା ଆଣି କାଠ ଓ କୋଇଲା ଦେଇ ଇଟା ପୋଡ଼ାଗଲା ଓ ସେହିଥିରେ ଘରତିଆରି ଆରମ୍ଭ ହେଲା ।

ପିଲା ବୟସ । କାମରେ ବହୁତ ଆଗ୍ରହ । ମତ୍ସ୍ୟ ବିଭାଗର ଲେଖାକାର ପଦରେ ବହୁତ କାମଥାଏ । ରାତିରେ ବସି ସେ ସବୁକାମ ସାରି ଦେଇ ଲମ୍ବା ଛୁଟିରେ ଯାଇ ଘରକାମ ଆରମ୍ଭ କରିଦିଆଗଲା । ଜଗବନ୍ଧୁ ଦାସ ମୋ ବୋଉର ମହାପ୍ରସାଦିଆ ଭାଇ ଚନ୍ତିଘର ବାଲା ମାମୁଁଙ୍କ ବଡ଼ପୁଅ । ଭୋର ୫ଟାକୁ ଜଗୁଆ ଆସିବା ବେଳକୁ ମୁଁ ଗାଧୋଇ ପଖାଳ ଖାଇ ପ୍ରସ୍ତୁତ ଥାଏ । ଦୁହେଁ ମିଶି ରାଜମିସ୍ତ୍ରୀ ପାଇଁ ଇଟାବୁହାଠୁଁ ମସଲା କରିବା, ଭାଡ଼ିବାନ୍ଧିବା ଇତ୍ୟାଦି ସବୁକାମ ଶେଷ କରିଦେଇଥାଉ । ବିଚରା କୃଷ୍ଣରାଉତ ମିସ୍ତ୍ରୀବୃନ୍ଦା ୮ଟାରେ ପହଞ୍ଚି ସଙ୍ଗେ ସଙ୍ଗେ ହାତ ଚଳାଏ । ଜଗୁଆ ଉପରେ ଏଥି ପାଇଁ ବିରକ୍ତ ହୁଏ । ଦରହସୁରା ଜଗୁଆ ତାକୁ ଥଟ୍ଟାରେ ଓ ହସରେ ଉଡ଼ାଇ ଦିଏ । ପାଠକେ ବିଶ୍ୱାସ କରନ୍ତୁ ବା ନ କରନ୍ତୁ ମାତ୍ର (୩୬) ଛତିରିଷ ଦିନରେ ୩ବଖରା ଘର, ୨ ଟି ବାଘ ମୁହିଁ ଓ ବାହାରେ ଓ ଭିତରେ ଲମ୍ବା ଓସାରିଆ ପିଣ୍ଡାର ଗଢ଼ିଇ କାମ ଶେଷ ହୋଇଗଲା । ସମସ୍ତେ ଦେଖି ଆଶ୍ଚର୍ଯ୍ୟ । ଆଜି, ମୋ ପାଇଁ ମଧ ସେ ଗୋଟେ ଆଶ୍ଚର୍ଯ୍ୟପରି ପ୍ରତୀତ ହେଉଛି ।

ତା ପରେ କଟକ ଯାଇ ନିଜେ ମାପ କରି କାଠ କଟାଇ ଡ଼ଙ୍ଗାରେ ଟିଣ, କାଠ, କଣ୍ଟା,ଇତ୍ୟାଦି ଆଣି ଆଠ ଦିନରେ ଇନ୍ଦ୍ରମଣି ମହାରଣା, ପାଣୁଆ ଓ ଜଗୁଆ ସାହାଯ୍ୟରେ ଛାତକାମ ମଧ୍ୟ ଯୁଦ୍ଧକାଳୀନ ଭିତ୍ତିରେ ଶେଷ ପ୍ରାୟ ହେବା ବେଳକୁ ଭାଇନା ଆସି ପହଞ୍ଚିବାରେ ତାଙ୍କୁ ଛାଡ଼ିଦେଇ ଚାକିରୀକୁ ଚାଲିଗଲି । ଅଳ୍ପ କେତେ ଖଣ୍ଡ ଟିଣ କେବଳ ସେ ବଢ଼େଇ ସହ ମିଶି ବାଡେଇ ଥିଲେ । ସେହି ସମୟକୁ ମୋର ମାତୃପ୍ରତିମ ଭାଉଜ ରୋଷେଇ କରି ବଢ଼େଇ, ରାଜ, ମୁଲିଆ ଓ ମୋତେ ଖାଇବାକୁ ଯୋଗାନ୍ତି, ମାତ୍ର ୧୭ ବର୍ଷ ବୟସରେ । ବୋଉ, ପୁରୀକୁ ହବିଷ ପାଇଁ ଯାଇଥାଏ ମାସେ । ପିଉସୀ ନାନୀ ଥାଏ ଘର ଜଗୁଆଳି । ଭାଉଜ ତାର ମଧ୍ୟ ସେବା କରନ୍ତି । ଦିନେ ସଂନ୍ଧ୍ୟାରେ କ୍ଳାନ୍ତ ହୋଇ ଅଣ୍ଟା ସଳଖୁଥାଏ । ବାଡିଆର ପଟୁ ଦଦେଇ କହିଲେ "ହଁରେ ପୁଅ । ଘର କରୁଛୁ ଏକା ରହିବୁ । କିଏ କୁଆଡ଼େ ଦେଖା ଦର୍ଶନ ନାହିଁ ।" ସେ କଥା "ଘରଭଙ୍ଗା" କଥା ବୋଲି ସେତେବେଳ ମୋତେ ଲାଗିଥିଲା । ଆଜି ଯେତେବେଳେ ନ୍ୟାୟ ନିମିତ୍ୟରେ ଗାଁକୁ ଗଲେ ନନ୍ଦ ଘରେ ଶୋଇବାକୁ ପଡ଼େ ଦଦେଇଙ୍କ କଥା ମନେ ପଡ଼ିଥାଏ ।

ଭଗବାନ ବରାହ ଅବତାର ହୋଇ ଅସୁର ବିନାଶ ପରେ ମର୍ତ୍ତ୍ୟରେ ସୁଖରେ ବିଭୋର ହୋଇ ସ୍ତ୍ରୀ ପିଲାଘର ସଂସାର କରି ବିଷ୍ଠାଖାଇ, ପଙ୍କରେ ଲୋଟି ଆରାମ କରୁଥିବା ବେଳେ ଦେବତାମାନେ ଦେଖି ଦୁଃଖରେ ମୁହ୍ୟମାନ ହୋଇ ଦେହଛାଡ଼ିବାକୁ ଗୁପ୍ତରେ ଆସି ଅନୁରୋଧ କରନ୍ତେ ସେ ଅସନ୍ତୋଷ ପ୍ରକାଶ କରି ସେଥିରେ ଅନିଚ୍ଛୁକ ହେଲେ । ତେଣୁ ସେମାନେ ମାୟାରେ ଅନ୍ୟସମୟରେ ଆସି ତାଙ୍କ ଦାନ୍ତକୁ ଦେଖେଇ ବଜ୍ର ପ୍ରହାର କରନ୍ତେ ତାଙ୍କର ମୋହ ଭାଙ୍ଗିଗଲା । ସେ ଦୁଃଖ ସହି ନପାରି ଦେହ ତ୍ୟାଗ କରି ସ୍ୱର୍ଗ ଯାତ୍ରା କରିବାକୁ ସ୍ଥିର କରିଥିଲେ । ଠିକ୍ ସେହିପରି ମୁଁ ଘର କରିଛି । ମୋ ଘରର ମୁଁ ମାଲିକ । ଏ ଯେଉଁ ଗର୍ବ ବା ମୋହ ଥିଲା ଠାକୁରେ ତାକୁ ନ ଭାଙ୍ଗିଥିଲେ ହୁଏତ ନିଜେ ଗଢ଼ିଥିବା ଘରକୁ ନିଜେ ଦଉଡ଼ି ପକାଇ ମାପ କରି ଅନିଚ୍ଛା ସତ୍ତ୍ୱେ ଭାଗ ବଣ୍ଟୁଆରା କରି ମନ ଦୁଃଖରେ ଭାଙ୍ଗି ପଡ଼ିଥାନ୍ତି ଓ କେବେ ଘରକୁ ଗଲେ ସେଠାରେ କେଉଁ କଣରେ କଟାଇବାକୁ ହୋଇଥାନ୍ତା ।

ସେ ଘରର ମୋହ ମଧ୍ୟ ସେହି ଦୟାମୟ ଭାଙ୍ଗି ଦେଇଛନ୍ତି; ଯିଏ ଐଶୀ ଶକ୍ତି ରୂପେ ଏ ଦେହରେ ପଶି ସିଂହ ବିକ୍ରମରେ ଘରଟିଏ କରାଇ ବାରବର୍ଷର ଗୃହହୀନ ଦୁଃଖରୁ ମକ୍ତି ଦେଇଥିଲେ । ମନୁଷ୍ୟ ଈଶ୍ୱରଙ୍କ ଇଚ୍ଛାକୁ କ'ଣ ବୁଝିବ ? ବରଂ "ଦଇବ ଦଉଡ଼ି ମଣିଷ ଗାଈ" ନ୍ୟାୟରେ ତାଙ୍କରି ଇଚ୍ଛାରେ ସଂପୂର୍ଣ୍ଣ ସମର୍ପିତ ହୋଇ ଚାଳିତ ହୋଇ ତାଙ୍କରି ଦାନକୁ ଆନନ୍ଦରେ ସମସ୍ତଙ୍କର ଅନୁଭବ କରିବା ଶ୍ରେୟସ୍କର । ମା ମରିବା ପରେ ଯେଉଁ ସାନ ପୁତୁରା ତା ଖୁଡୀ କୋଳରେ ବଢିଥିଲା ଓ ମୋ ପାଖେ ରହି ପଢିଥିଲା, ମୋ ଯୋଗୁଁ ଚାକିରୀ ଖଣ୍ଡିଏ ପାଇଥିଲା ତା' ବାହାଘରକୁ ଆମ ଇଚ୍ଛା ବିରୁଦ୍ଧରେ ଅତିଥି ଡାକିବାରେ ଆମେ

ପ୍ରତିବାଦ କରିବାରୁ ସେ ତା ବାହାଘର ଉତ୍ସବରେ ଆମକୁ ଉପସ୍ଥିତ ରହିବାକୁ ଚାହିଁଲାନି । ଯେଉଁ ଛୋଟ ବଖରାଟିରେ ଶେଷରେ ଶଶୁରଘର ଦେଇଥିବା ଖଣ୍ଡେ ଖଟ ଓ କାଠ ଅଲମାରିଟିଏ ଶେଷ ସନ୍ତକ ହୋଇ ପଡିଥିଲା ସେଘରେ ବିଭାପରେ ପୁତୁରା ରହିବାର ବ୍ୟବସ୍ଥା ହେବାରୁ ସେ ଦୁଇଖଣ୍ଡକୁ ଭାଙ୍ଗି ବାରଣ୍ଡାରେ ପକାଇ ଦିଆଯାଇଛି । ଆଉ ବିଭାଘରରେ ଅନିଚ୍ଛାସତ୍ତ୍ୱେ ଲୋକବେଭାରକୁ ଅତିଥି ହୋଇ ଆମେ ନନ୍ଦଘର ବାରଣ୍ଡାରେ ରାତ୍ରି ଯାପନ କରି ଆନନ୍ଦରେ ଫେଂରିଲୁ । ବରାହଅବତାରଙ୍କ ଦାନ୍ତ ଭାଙ୍ଗି ତାଙ୍କମୋହଭାଙ୍ଗିବାପରି ଅପମାନ ଓ ଗ୍ଲାନି ଦ୍ୱାରା ଆମର ମୋହ ଭଙ୍ଗହେଲା, ସେହି ଈଶ୍ୱରଙ୍କ କରୁଣାରୁ ।

## ୭୦. ଗୃହ ଆରମ୍ଭେ ଗୃହୀ ମିଳେ

ଘରକାମ ଆରମ୍ଭ ହୋଇଥାଏ । କୋଇଲରୁ ଭାଇନାଙ୍କ ବିଭାଘର ସମ୍ବନ୍ଧରେ ପ୍ରସ୍ତାବଟିଏ ଆସିଲା । ସେତେବେଳକୁ ଭାଇନା କଳିଙ୍ଗ ଟିଉବ୍‌ରେ ଚାକିରୀଟିଏ ପାଇଲେଣି । ସନାକେଇ ଓ ମୁଁ ଦେଖଣା କରିବାକୁ ଗଲୁ । କିପରି କନ୍ୟା ଦେଖାଯାଏ କକେଇ ମତେ ବାଟଯାକ ତାଲିମ ଦେଇ ଦେଇ ନେଉଥାନ୍ତି । କନ୍ୟାର ବୟସ ୧୫ ବର୍ଷ । ମିଶ୍ର ବ୍ରାହ୍ମଣ । ବିଖ୍ୟାତ ସଂସ୍କୃତଜ୍ଞ ଭଜକୃଷ୍ଣ ପଣ୍ଡିତଙ୍କ ଭାଇ ବଙ୍ଗ ପଣ୍ଡିତଙ୍କ ଝିଅ । ବାପ ନ ଥାନ୍ତି । ଭାଇ ଓ ମା ମୁରବି । କନ୍ୟା ଲାଜରେ ନିଜ ମୁହଁକୁ ହାତରେ ଘୋଡାଇ ଆମକୁ ଦେଖାଦେବାରେ କକେଇ ହାତ ଖୋଲି ମୁହଁ ଦେଖାଇବାକୁ କହିଥିଲେ । ହାତ କହୁଣି ଯାଏ ଓ ପାଦ ମଧ ଦେଖିଥିଲେ । ସେଇଠି ଚୁପ୍ କରି କହିଲେ ମନକୁ ଗଲାଚ ! ମୁଁ ହଁ କରିବାରେ ମୋଠାରୁ ନେଇ ପାଞ୍ଚଟଙ୍କା ବୋହୁ ଦେଖାଦେଲେ । ତାପରେ ତାଙ୍କଘର ଲୋକେ ଆମ ଘରକୁ ଆସି ନିର୍ବନ୍ଧ କରିଦେଇ ମାଳୀ ଟେକି ଦେଇଗଲେ ।

ବିବାହ ଦିନ ପାଲିଙ୍କି ଓ ବାଜା ସହ ଆମ ସାଇର ପ୍ରାୟ ସମବୟସ୍କ ପିଲା ଓ ମୁରବି ସ୍ଥାନୀୟ ଲୋକ ମିଶି ୫୦ ଜଣ ବରଜାତି ରୁପେ ଚାଲି ଚାଲି ଯାଇଥିଲେ । ତାଙ୍କର ସେଠି ଘରର ଅଭାବ । ଭିନେ ହୋଇ ଗୋଟେ ଚାଷଘରେ ଆସି ରହୁଥାନ୍ତି । ଆମେ ଗଲାବେଳକୁ ରୋଷେଇ ବାସ ଚାଲିଥାଏ । ଖାଇବାକୁ ବାଢିବାକୁ ମଧ ଲୋକର ଅଭାବ । ଆମ ଲୋକେ ସବୁ ମିଶି ନିଜେ ପତ୍ର ପକାଇ, ଖାଦ୍ୟ ପରିବେଷଣ କରି ମନଖୁସିରେ ଖାଇପିଇ ସନ୍ଧ୍ୟା ସୁଦ୍ଧା ଫେରିଗଲେ । ପରଦିନ ସକାଳଯାଏ ସନାକେଇ ଓ ମୁଁ ଉପସ୍ଥିତ ରହିଥିଲୁ ବୋହୁ ଘେନି ଆସିବାକୁ । ସକାଳେ ବେଭାର ଚଳାଚଳି ହେଲା । ଆମେ ନେଇଥିବା ହାର ଓ ଲୁଗା ଦେଲୁ ଓ ଚତୁର୍ଥୀ ପାଇଁ ଗୁଆ ଚଳାଇଲୁ । ସେ ମଧ ସେମିତି ଆମକୁ କ'ଣ କିଛି ଦେଲେ । ତାରି ଭିତରେ ସାମାନ୍ୟ ବଚସା ହୋଇଗଲା । ଭଜ ପଣ୍ଡିତେ ରାଗି ଉଠିପଡିବାରେ ତାଙ୍କ ମୁଣ୍ଡରେ

ତାଙ୍କ ଦୁଆର ବନ୍ଧ ବାଜିଗଲା । ସେତିକିରେ ସବୁ କଳି ଶେଷ । ଆମେ ସବାରୀରେ ବୋହୂ ଘେନି ଦିନ ୧୦ଟା ସୁଦ୍ଧା ଗାଁକୁ ଫେରିଲୁ ।

ଏଇଥିଲା ସେବେଳର ବିବାହ । ଯାନି, ଯୌତୁକ ଯାଚକ ଏସବୁ କିଛିର ବିଶେଷ ବିଚାର ବା ଆଲୋଚନା ବା ଦାବୀ ଆଦୌ ନ ଥିଲା । କି ସୁନ୍ଦର, ସରଳ ଓ ଶାନ୍ତ ପରିବେଶରେ ୭ ପୁରୁଷ ପାଇଁ ବନ୍ଧୁ ହେଉଥିଲା । କାଳକ୍ରମେ ତାହା ଆଜି ଗୋଟିଏ ବେପାରରେ ପରିଣତ ହେଲାଣି ଓ ୭ ପୁରୁଷର ବନ୍ଧୁଘର ୭ ଦିନରେ ଭାଙ୍ଗି ଉଜୁଡି ପଡୁଛି । ବଧୂହତ୍ୟା, ନିର୍ଯ୍ୟାତନା ଆଜି ଦୈନନ୍ଦିନ ଘଟଣାରେ ପରିଣତ ହେଲାଣି । ଏମିତି କୌଣସି ଦିନ ନାହିଁ ଯେଉଁଦିନ ଏପରି ଅଘଟଣ ଖବର କାଗଜ ପୃଷ୍ଠା ମଣ୍ଡନ ନକରିଛି । ମହିଳା କମିଶନ୍, ଯୌତୁକ ନିରୋଧ ଆଇନ ଓ ଶାଶୁ-ନଣନ୍ଦ ବନ୍ଧନ ବ୍ୟବସ୍ଥା ସତ୍ତ୍ୱେ ଏ କଳଙ୍କ ଦିନୁଦିନ ବଢିଚାଲିଛି ।

ବିଭାଘର ଓ ଘର ହେବାର ଅଳ୍ପଦିନେ ବୋଉର ସଂସାର ଲୀଳା ଶେଷ ହେଲା । ମାତ୍ର ସେତେବେଳକୁ ନୂଆବୋଉ ମାତ୍ର ଚାରିଟି ବର୍ଷରେ ଘରର ପୂରା ଦାୟିତ୍ୱ ନେଇସାରିଥିଲେ । ବୋଉତାଙ୍କୁ ଶାରୀରିକ ଓ ମାନସିକ ଉଭୟ ଦୃଷ୍ଟିରୁ ପ୍ରସ୍ତୁତ କରିଦେଇଥିଲେ । ତାଙ୍କ ବେକରେ ଲାଗିଥିବା ମଇଳା ବୋଉ ନିଜେ ସଫାକରି ଦେଇ ଲୁଗା ପିନ୍ଧିବାକୁ ମଧ୍ୟ ଶିଖାଇ ଦେଇଥିଲେ । ରାନ୍ଧିବା, ବାଢିବା, ଘର ସଫା କରିବା, ଜିନିଷ ସାଇତି ରଖିବା ଓ ନିଜ ଲୋକଙ୍କ ପ୍ରତି କିପରି ବ୍ୟବହାର କରାଯିବ ସବୁ ମାଷ୍ଟର ପରି ଶିଖାଇ ପକ୍କାଘରଣୀ କରି ଗଢି ଦେଇଥିଲେ । ସେ ହୋଇଯାଇଥିଲେ ଆମ ସମସ୍ତଙ୍କର ମା'ପରି । ଖାଲି ମା ପରିନୁହେଁ । ମା'ର ସ୍ନେହ, ଶ୍ରଦ୍ଧା, ବ୍ୟବହାର, ସାହାଯ୍ୟ ସହାନୁଭୂତି ସହ ମା'ର ସବୁପ୍ରକାର ଗୁଣରେ ସେ ଭୂଷିତ ହୋଇ ସାରିଥିଲେ । ଆମେ ତାଙ୍କ ଯୋଗୁଁ ଖୁବ୍ ଶୀଘ୍ର ମା'ର ବିୟୋଗ ଦୁଃଖ ଭୁଲିଯାଇଥିଲୁ ।

ଘର ତିଆରି ବେଳେ ସେ ଅଷ୍ଟାଭିଡି ରାଜମିସ୍ତ୍ରୀ, ବଢେଇ ମହାରଣା, ମୂଲିଆ, ପିଉସୀନାନୀ ଓ ମୋ ପାଇଁ ହାଣ୍ଡିହାଣ୍ଡି ଭାତ ରାନ୍ଧି ଖାଇବାକୁ ଦେଉଥିଲେ ଓ ନାନୀର ପାଦ ସେବା କରୁଥିଲେ । ବାରବର୍ଷ ମଧ୍ୟରେ ୩ଟି ସନ୍ତାନ ଜନ୍ମ ପରେ ଅକାଳରେ ତାଙ୍କୁ ଆତ୍ମହତ୍ୟାପରି ଦୁଃଖଦ ପରିସ୍ଥିତିରେ ହରାଇ ଆମେ ସେହିଦିନ ପ୍ରକୃତରେ ମାତୃ ବିୟୋଗ ଦୁଃଖ ଅନୁଭବ କଲୁ । ଈଶ୍ୱରଙ୍କର ଇଚ୍ଛା ଉପରେ କିଏ ବଳବାନ ଅଛି ?

## ୭୧. ପଣ୍ଡିତଙ୍କୁ ଗୁଆ

ମତ୍ସ୍ୟ ନିର୍ଦ୍ଦେଶାଳୟରେ ଯେଉଁ ଅନ୍ୟାୟ କରାଗଲା ତା'ର ପ୍ରତିବାଦରେ ନିର୍ଦ୍ଦେଶକଙ୍କୁ ଆପତ୍ତି ସୂଚକ ଦରଖାସ୍ତଟିଏ ଦେବାସହ ତାଙ୍କଠାରୁ ସୁପାରିଶ୍ କରିଆଣି ଗୋଟିଏ ଦରଖାସ୍ତ ରାଜ୍ୟ ସରକାରଙ୍କ ଗ୍ରାମ ପଞ୍ଚାୟତ ବିଭାଗରେ ଦେବା ବେଳକୁ ସେଠାରେ ସେ ପଞ୍ଚାୟତ ଅଡିଟ୍ ଇନ୍ସପେକ୍ଟର ପଦବୀପାଇଁ ବଛାବଛି ଶେଷ ହୋଇଯାଇଥିଲା । ହତାଶାରେ

ସଂପୂର୍ଣ୍ଣ ଭାଙ୍ଗିପଡିବା ବେଳକୁ ଲୋକାକେଇ ଗୋପାଳ ପଣ୍ଡିତଙ୍କୁ ୩ ଦିନ ଅକର୍ମା କର୍ମଦାୟକ ଲିଙ୍ଗରାଜ ମହାପ୍ରଭୁଙ୍କ ପାଖରେ ଅଭିଷେକ କରିବାକୁ ତିନି ଟଙ୍କା ଓ ଗୁଆଟିଏ ମୋ ଦ୍ୱାରା ଟେକାଇଦେଲେ । ଗୋପାଳ ଚନ୍ଦ୍ର ଶତପଥୀ କଳାବୁହା ଗୋବିନ୍ଦପୁରର ଲୋକ । ସେ ଥିଲେ ଆମ ପ୍ରାକ୍ତନ ମୁଖ୍ୟ ଶାସନ ସଚିବଙ୍କ ପତ୍ନୀ ଉଷା ଦେବୀଙ୍କର ପିଲାଦିନର ଗୃହଶିକ୍ଷକ । ଗୋପାଳ ପଣ୍ଡିତ ଥିଲେ ଜଣେ ସିଦ୍ଧ ପଣ୍ଡିତ ଓ ଜ୍ଞାନ ବୃଦ୍ଧ । ତାଙ୍କୁ ବହୁତ ଲୋକ ମାନନ୍ତି । ସେ ବେଶୀ କଥା କହନ୍ତିନି । କେଉଁକାମ ହେବ, କିଏ ନ ହେବ ସେ ଅଭିଷେକ ସମୟରେ ଜାଣିପାରନ୍ତି । ପ୍ରଥମ ଦିନ ଅଭିଷେକ ପରେ ସେ ଜାଣିଲେ ଯେ କାମଟି ହୋଇଯିବ । ଅଭିଷେକ ଶେଷ କରି ଘରକୁ ଫେରିବାବେଳେ ବାଟରେ ପଞ୍ଚାୟତ ବିଭାଗ ନିର୍ଦ୍ଦେଶକଙ୍କ ପତ୍ନୀଙ୍କ ସହିତ ସାକ୍ଷାତ୍ ହେଲା । ସେ ଥିଲେ ତାଙ୍କର ଛାତ୍ରୀ । ସେ ତାଙ୍କୁ ଡାକି ନେଇ ସେବାକଲେ ଓ ସବୁ ବିବରଣୀ ଶୁଣି ନିର୍ଦ୍ଦେଶକଙ୍କୁ ଜଣାଇବାରେ ସେ କହିଲେ ଯେ ସେ କାମତ ସରିଯାଇଛି । ପଣ୍ଡିତେ କି ଛାଡିବା ଲୋକ । ସେ କହିଲେ ମୁଁ ତ ଲିଙ୍ଗରାଜଙ୍କ ଅଭିଷେକ ସମୟରେ ଅନୁଭବ କରିଛି ଯେ ସେକାମ ହେବ । ସରିଗଲେ କ'ଣ ହେବ ।

୨ୟ ଓ ୩ୟ ଦିନ ଅଭିଷେକ ଶେଷ ହେଲା । ମୋତେ ଲିଙ୍ଗରାଜଙ୍କ ଧଣ୍ଡା ଦେଇ ପଣ୍ଡିତେ ଆଶୀର୍ବାଦ କଲେ । କହିଲେ ମୁଁ ଠାକୁରଙ୍କୁ ଓ ମଣିଷଙ୍କୁ କହିଛି । ଏଣିକି ତୁମଭାଗ୍ୟ । ଲୋକାକେଇ କହିଲେ ପଣ୍ଡିତେ ସେକଥା କହିଲେ ହେବ ? ଠାକୁରେ ଯଦି ପ୍ରକୃତ ପ୍ରସନ୍ନ ତେବେ ତା'ର ଭାଗ୍ୟ କ'ଣ କରିବ ? ଚତୁର୍ଥ ଦିନ ସେହି ବିଭାଗର ଉପନିର୍ଦ୍ଦେଶକ ସ୍ୱର୍ଗୀୟ ଉଦୟନାଥ ସାହୁଙ୍କୁ ସାକ୍ଷାତ୍ କରିବାରେ ସେ ଆସି ନିର୍ଦ୍ଦେଶକଙ୍କୁ ସାକ୍ଷାତ୍ କରିବାକୁ ପରାମର୍ଶ ଦେଲେ । ଉଭୟେ ଗୋଟିଏ କୋଠରୀରେ ବସିଥାନ୍ତି । ସନ୍ତର୍ପଣରେ ତାଙ୍କୁ ଦେଖା କରିବାରୁ ଉପନିର୍ଦ୍ଦେଶକ ବୁଝାଇ ଦେଲେ ଯେ ସରକାରୀ ସ୍କୁଲରୁ ଆକାଉଣ୍ଟ ପ୍ରଥମ ଶ୍ରେଣୀରେ ପାସ୍ କରିଥିବାରୁ ଅଡିଟ ଇନ୍ସପେକ୍ଟର କାର୍ଯ୍ୟପାଇଁ ସେ ଅଧିକ ଉପଯୁକ୍ତ ହେବ । ମାତ୍ର ଏହାର ଚେହେରା ଯେପରି ଦେଖାଯାଉଛି ସେ କେମିତି କ'ଣ କରିବ ଜାଣି ହେଉନି । ପ୍ରଶ୍ନହେଲା:- ଏ ଧୋତି ପିନ୍ଧି ସାଇକେଲ କରି ଦୁଇଟି ଥାନା ଅଞ୍ଚଳରେ ବୁଲି ଦିନରାତି କାମ କରି ପାରିବ'ତ ? ସାଇକେଲ ଜାଣିଛି ଓ ପେଣ୍ଟ ତିଆରି କରି ନେବି କହିବାରେ ୨ୟ ପ୍ରଶ୍ନହେଲା:- କାଶିପୁର କେଉଁଠି ଜାଣ ? ସେଠି ବାଘ ଅଛନ୍ତି ଟେକିନେବେ । ସେଇଠି କାମ କରିପାରିବ ? ସେତେବେଳେ କଳାହାଣ୍ଡିରେ ଥିବା କାଶୀପୁରରେ କ'ଣ ମଣିଷ ନାହାନ୍ତି ? ମୁଁ କ'ଣ ମଣିଷ ସାଙ୍ଗରେ ମଣିଷଙ୍କ କାମ କରିପାରିବନି ? ନିଶ୍ଚୟ ପାରିବି ।

ଏତିକିରେ ସାକ୍ଷାତ୍କାର ଶେଷ ହେଲା ଓ ସନ୍ଧ୍ୟାକୁ ଆଦେଶ ହୋଇ ଫାଇଲ୍ ଫେରିଲା । ଆମ ଗୋପିଆନା ରାତାରାତି ଚିଠି କରାଇ ଧରାଇ ଦେଲେ । ଗୋପାଳ ପଣ୍ଡିତଙ୍କ ଅଭିଷେକ ଓ ଭବିଷ୍ୟବାଣୀ ସତ୍ୟ ହେଲା ? ଉସୁନାଧାନ ଗଜା ହେବା, ସୂର୍ଯ୍ୟତାପ ଶୀତଳ

ହେବା ଓ ପର୍ବତାଗ୍ରରେ ପଦ୍ମ ବିକଶିତ ହେବା କେବଳ ସେହି ପରମେଶ୍ୱରଙ୍କ ଦୟାରେ ସମ୍ଭବ। ଏଥିପାଇଁ ଆତ୍ମଗର୍ବ ମୂର୍ଖତାର ପରିଚାୟକ। ସେଇଥିପାଇଁ ଭାଗବତକାର ଲେଖିଛନ୍ତି। "ମୂକଂ କରୋତି ବାଚାଳଂ, ପଙ୍ଗୁ ଲଙ୍ଘୟତେ ଗିରି"। ଏବକାର ପିଲାଏ ସେହି ଦୃଢ ବିଶ୍ୱାସ ହରାଇ ଛୁରୀ ଦେଖାଇ, ଦାଦାଗିରି କରି କାର୍ଯ୍ୟହାସଲର ଦାୟିତ୍ୱ ଠାକୁରଙ୍କ ହାତରେ ନଛାଡି ନିଜ ହାତକୁ ନେଇଥିବାରୁ ସବୁ ଦୁଃସ୍ଥିତିର ଅଭ୍ୟୁଦୟ। ଆଧାତ୍ମିକତାର ଅଭାବ ସବୁ ପାଠ ଓ ବୁଦ୍ଧିକୁ ଅବାଟରେ ଚଳାଇ ଆତ୍ମ ବିଶ୍ୱାସ ନାମରେ ଆତ୍ମ ଗର୍ବ ସୃଷ୍ଟି କରୁଛି। ଏହାର ଏକମାତ୍ର ସମାଧାନ ସେହି ଗୀତା:- କର୍ମଣ୍ୟେ ବାଧିକାରସ୍ତେ-ମା ଫଳେଷୁ କଦାଚନ।

## ୭୨. କର୍ମନିଶା

ଏତେବେଳକୁ ଭାଇନା ମାସକୁ କୋଡିଏ ଟଙ୍କା ବୋଉକୁ ଘର ଖର୍ଚ୍ଚପାଇଁ ଧରେଇ ଦେଇ ଆରାମ କରୁଥାନ୍ତି। ଆମ୍ଭ ଚାକିରୀ କରିବା, ଘର କରିବା ଓ ଉନ୍ନତି ମାର୍ଗରେ ଗତିକରିବାର ଦେଖି ଦୁଃଖିନୀ ବୋଉ ସଂସାର ଆଡୁ ମନ ଫେରାଇ ଠାକୁରଙ୍କ ଦିଗକୁ ବାଗେଇ ଦେଇଥାଏ। ନିକଟରେ ଆଉ କିଛି ଗୁରୁଦାୟିତ୍ୱ ଘରପାଇଁ ନଥାଏ। ସାନ ଭଉଣୀଟି ଗାଁ ସ୍କୁଲରେ ପଢୁଥାଏ ଓ ସାନଭାଇ ମୋ ପାଖରେ ରହି ପଢୁଥାଏ। ତେଣୁ ନିଜର କର୍ତ୍ତବ୍ୟକୁ ଯେତେ ଦୂର ସମ୍ଭବ ତତ୍‌ପରତାର ସହ କରିବା ହୋଇଥିଲା ଜୀବନ ଦର୍ଶନ।

ପ୍ରଥମ ଅଡିଟ୍ ଇନ୍‌ସ୍‌ପେକ୍ଟର ଚାକିରୀ ବେଣାହାର ବାଲିକୁଦା କଣିହାଁ ଗାଁ। ଘରୁଯାଇ ଟାଉନ୍ ଛାଡି ମଫସଲରେ ଚାକିରୀ କରିବା ଏଇ ପ୍ରଥମ। ହରିକାନ୍ତୁନ୍‌ଗୋଙ୍କ ଖଳାଘରେ ଉଭୟେ ରହିବା ଓ ଅଫିସ୍ କାମହୁଏ। ପ୍ରଥମ କେଇଦିନ ପାଣୁବାବୁ ତାଙ୍କ ଘରେ ଖାଇବାକୁ ଦେଲେ। ତା ପରେ ସେ ନିଜେ ରାନ୍ଧିଦେଲେ। ହେଲେ ତଥାପି ରାନ୍ଧିବା କାମଟା ଶିଖି ହେଲାନି। ଶେଷରେ ସେ ଜଣେ ବ୍ରାହ୍ମଣ ପିଲା ରୋଷେଇ ପାଇଁ ଯୁଟେଇ ଦେଲେ। ତାଙ୍କ ପୁଅ ନରୋତ୍ତମବାବୁ ଯେ କି ହାଇସ୍କୁଲ ଶିକ୍ଷକ ଥିଲେ ; ମୋ ସାନ ଭାଇର ପଢା ଦାୟିତ୍ୱ ମଧ୍ୟ ନେଇଗଲେ। ଏଥିପାଇଁ ବାସ୍ତବରେ ମୋ ପ୍ରଥମ କ୍ଷେତ୍ର -ଚାକିରୀ ସଫଳ ହୋଇପାରିଲା। ସେଥିପାଇଁ ପାଣୁବାବୁ ଚିରନମସ୍ୟ। ସେ ଥିଲେ ଜଣେ ପ୍ରମୋଟି ପୋଲିସ୍ ଇନ୍‌ସ୍‌ପେକ୍ଟର - ପ୍ରାଣକୃଷ୍ଣ ମହାନ୍ତି। କଣିହାର ଲୋକ। ଅବସର ପରେ ସରପଞ୍ଚ ହୋଇଥିଲେ। ତାଙ୍କୁ ଲୋକେ ଖାତିରି କରୁଥିଲେ। ତାଙ୍କଠାରୁ ଏ ଯେଉଁ ପୁତ୍ର ସ୍ନେହ ମିଳିଥିଲା ତାହା ଏବେ ବିରଳ। ତାଙ୍କ ପାଇଁ କିଛି କରିହୋଇନି। ସେ ବି କିଛି ଖୋଜି ନାହାନ୍ତି। ତେଣୁ ତାଙ୍କ ଅନ୍ତେ ମଧ୍ୟ ସେ ଅତୀତ ଦିନର ବନ୍ଧୁତା ଏବେ ମଧ୍ୟ ତାଙ୍କ ପୁଅ ନରୋତ୍ତମ ବାବୁ (ବର୍ତ୍ତମାନକୁ କାଳ ହୋଇଗଲେଣି) ଓ ତାଙ୍କ ନାତି ମଣ୍ଟୁସହ ଅତୁଟ ରହିଛି।

ବାଲିକୁଦା ଓ ଏରସମା ଦୁଇଟି ଥାନା ଏବେ ଯାହାକି ୩ଟି ବ୍ଲକ୍ ହୋଇଛି, ସେଥିଲା କର୍ମକ୍ଷେତ୍ର । ବର୍ଷରେ ସବୁ ପଞ୍ଚାୟତ ୨ଥର ପରିଦର୍ଶନ ଓ ଥରେ ଅଡିଟ୍ ସହ ୩ଟି ଯାକ ରିପୋର୍ଟ ପଠାଇବା ଏବଂ ତାର ସମାଧାନ କରି ରିପୋର୍ଟ ପଠାଇବା ମୂଳକାମ ଥିଲେ ମଧ୍ୟ ଉଦ୍ଭିଦ ସାର ପାଇଁ ଧନିଚା ଚାଷ, କୂଅ, ରାସ୍ତା, ଓ ଗ୍ରେନ୍‌ଗୋଲା ନିର୍ମାଣ ମଧ୍ୟ ପଞ୍ଚାୟତ ଦ୍ୱାରା କରାଇବାକୁ ପଡୁଥିଲା । ପ୍ରତିମାସରେ ଦୁଇ ଥାନାରେ ଥରେ କରି ସରପଞ୍ଚ ଓ ସଂପାଦକ ମାନଙ୍କର ବୈଠକ କରାଯାଉଥିଲା । ଗ୍ରା: ପ: ମାନଙ୍କ ଅଧୀନରେ ସେତେବେଳେ ଗ୍ରାମ ଚୌକିଦାର ଥିଲେ । ଗ୍ରାମବାସୀ ମାନଙ୍କଠାରୁ ଟିକସ ଆଦାୟ କରି ପଞ୍ଚାୟତ ଏମାନଙ୍କୁ ସରକାରୀ ଅନୁଦାନ ମିଶାଇ ଦରମା ଦେଉଥିଲେ । ଏହି କର ଆଦାୟ ବଡ କାମ ଥିଲା । ପଞ୍ଚାୟତର ଏ କାର୍ଯ୍ୟ ଦେଖିବା ସହ ପଞ୍ଚାୟତକୁ ଏଥିରେ ସାହାଯ୍ୟ ପାଇଁ ଶହ ଶହ ଛୋଟ ବଡ ନଦୀ ନାଳ ଅନ୍ତଃବସ୍ତ୍ର ପରିଧାନ କରି ପାରିହୋଇ  ଗାଁ ଗାଁ ବୁଲିବାକୁ ପଡୁଥିଲା । ଏହି ଚୌକିଦାର ମାନେହିଁ ତାଙ୍କ ଧରା ବାଡିରେ ସାଇକେଲକୁ ଫୁରାଇ କାନ୍ଧେଇ କାନ୍ଧେଇ ନଦୀ ନାଳ, ବିଲ, କାଦୁଅରୁ ପାର କରୁଥିଲେ । ଡେରିକି ପଞ୍ଚାୟତ ଓ ସରପଞ୍ଚ ଦୋଳଗୋବିନ୍ଦ ବିଶ୍ୱାଳଙ୍କ ସମ୍ବନ୍ଧରେ, ଧନିଚା ଚାଷ, ସମ୍ବନ୍ଧରେ ଓ ଆଦର୍ଶ ଗ୍ରା: ପ: ସମ୍ପାଦକ ମୋର ବାଲ୍ୟ ସହପାଠୀ "ଚୈତନ୍ୟ ଭାଇନା" ଙ୍କ ସମ୍ବନ୍ଧରେ କେତୋଟି ଲେଖା ସେତେବେଳେ ଗ୍ରା: ପ: ବିଭାଗ ପତ୍ରିକାରେ ପ୍ରକାଶ ପାଇବାରେ ଖୁବ୍ ଆନନ୍ଦିତ ହୋଇଥିଲି । ଏଗୁଡିକ ମୋର ଛପା ଯାଇଥିବା ପ୍ରଥମ ଲେଖା । ଦୋଳ ଗୋବିନ୍ଦ ବିଶ୍ୱାଳ ବଙ୍କେଇ ବୁଲେଇ ଦସ୍ତଖତଟିଏ ଜାଣିଥିଲେ । ସେତିକି ତାଙ୍କର ପାଠ । ଧ୍ରୁବ ତାଙ୍କ ସେକ୍ରେଟାରୀ । କାଗଜ ପତ୍ରରେ ଧୁରନ୍ଧର । ଦୋଳ ବାବୁ ଲୋକଙ୍କୁ ମିଳାଇ ଦେବୀ ନଈ କୂଳରେ ବନ୍ଧଟିଏ କରାଇଥିଲେ ମାଗଣାରେ । ସେଇଥିରୁ ତାଙ୍କର ସୁନାମ । ହେଲେ ମାଛ ପୋଖରୀ ପାଇଁ ମିଳିଥିବା ଟଙ୍କାକୁ ଗୋଟେ ଯୋଡକୁ ମାଟି ବନ୍ଧ ଦେଇ ଖଣ୍ଡ ଖଣ୍ଡ କରି ବାନ୍ଧିଦେଇ ଠକେଇ କରିଥିବାରୁ ଅଡିଟ ଯମଦାଢରୁ ଛାଡ ପାଇନଥିଲେ ।

ସାଧୁତାର ଚରମ ସୀମାରେ ଖଣ୍ଡାଧାରରେ ଚାଲି ପଇସାଟିଏ ଏପଟ ସେପଟ ହୋଇଥିଲେ ତାକୁ ତନଖି ବେଳେ ଆଦାୟ କରି ରସିଦ୍ କଟାଇବାରେ ସବୁ ସରପଞ୍ଚ ଓ ସମ୍ପାଦକ ଭୟଭୀତ ହୋଇଯାଇଥିଲେ ।  ତା ସତ୍ତ୍ୱେ ନିରାମିଷ ଭାତ ଡାଲମା ଗଣ୍ଡେ ଗାଁରେ ତାଙ୍କ ଘରେ ବା ପଞ୍ଚାୟତ ଅଫିସ୍‌ରେ ରାନ୍ଧି ଖାଇବାକୁ ଦେଉଥିଲେ । କେତେଥର ଉପାସରୁ ପେଟେ ଖାଇ ମଧ୍ୟ କାମ କରିବାକୁ ହୋଇଛି ।

ଥରେ ଘରୁ ଗୋଡ କାଢିଲେ ୭ଦିନ । ଏପରି ତିନ ଦଫାରେ ୨୧ ଦିନ ଗସ୍ତରେ ଯିବାକୁ ହୁଏ । ତେଣୁ ସେହି ପରିଦର୍ଶନ ଓ ଅଡିଟ୍ ବେଳେ କାର୍ବନ ପକାଇ ରିପୋର୍ଟ ପ୍ରସ୍ତୁତ ସାଙ୍ଗକୁ ଗତ ରିପୋର୍ଟର ସମାଧାନ ପତ୍ର ମଧ୍ୟ ସେହିଦିନ ସେହିଠାରେ ପଠାଇ ଦେଇ ଜିଲ୍ଲା ମଧ୍ୟରେ ପ୍ରଶଂସାର୍ହ ହେବାର ସୁଯୋଗ ମିଳିଥିଲା ।

କିଏ ଦରମା ନଦେଲା, କିଏ ଚାର୍ଜ ନ ଦେଲା, କିଏ ପଇସା ଖାଇଗଲା ଖବର ଶୁଣିବା ମାତ୍ରେ ଧାଇଁବାକୁ ପଡୁଥିଲା ଓ ତାହା ସମାଧାନ ନକରି ଫେରିବାର ନଥିଲା । ଏପରି ଏକ କାମରେ ମୁଣ୍ଡ ପୁରାଇ ଘରୁ ବୋଉ ଦେହ ବିଶେଷ ଖରାପ ବିଷୟ ତାର ବାର୍ତ୍ତା ପାଇ ମଧ୍ୟ କାମଛାଡି ଆସିପାରି ନଥିବା ବିଷୟ ମନେଅଛି ।

ସେ ଯେଉଁ କର୍ମ ପ୍ରେରଣା ସେଥିଲା ଏକ ନିଶା । ଈଶ୍ୱର ସେ ନିଶାପାନ କରାଇ କର୍ମଯୋଗର ଶିକ୍ଷା ପ୍ରଦାନ କରିଥିଲେ ସାରା ଜୀବନ ପାଇଁ । ଆଜିପରି ସେତେବେଳେ ନଥିଲା ସଂଘ, ଦାବୀ, ଆନ୍ଦୋଳନ ଓ ନଥିଲା ଠକାମି । ୨୦ଦିନ ଗସ୍ତ କାର୍ଯ୍ୟକ୍ରମ, ଗସ୍ତ ବିବରଣୀ ସହ ଗସ୍ତ ବିଲ୍ ଦେଲେ ଧାର୍ଯ୍ୟ ଗସ୍ତଖର୍ଚ୍ଚ ୨୫ଟି ଟଙ୍କା ତିନିଚାରି ମାସରେ ମିଳୁଥିଲା । ସେତେଦିନ ଘରୁଖାଇ ଘୋଡା ଆଗରେ ଦୌଡ । ସରକାରୀ ସାଇକେଲଟିଏ ମଧ୍ୟ ନଥିଲା । ନଥିଲା ପିଅନଟିଏ ମଧ୍ୟ । ହଳେ ଚଉକି ଟେବୁଲ ସରକାରୀ ଆସବାବ ପତ୍ର । ଘରଭଡା ମଧ୍ୟ ମିଳୁ ନଥିଲା । ଥିଲା କେବଳ କାମ, କାମ ଆଉକାମ । ପଞ୍ଚାୟତ ନିର୍ବାଚନର ସମସ୍ତ ଦାୟିତ୍ୱ ସେହି ସାଇକେଲରେ ସୁସଂପନ୍ନ ହେଉଥିଲା ୨ଟି ଥାନା ଅଞ୍ଚଳରେ ।

ଏବେ ପିଅନ, ଗାଡି, ଘର, ଅଫିସ୍, ଗସ୍ତଖର୍ଚ୍ଚ ନେଇ ସେହି ୨ଟି ଥାନା ଅଞ୍ଚଳକୁ ୩ଟି ବ୍ଲକ୍‌ରେ ବିଭକ୍ତ କରାଯାଇ ୩ଜଣ ଲୋକ ଦିଆଯାଇଥିଲେ ମଧ୍ୟ ଏବଂ ଅଡିଟ୍ ପାଇଁ ଅଲଗା ସଂସ୍ଥା ଗଢାଯାଇଥିଲେ ମଧ୍ୟ ପଞ୍ଚାୟତ ପରିଦର୍ଶନ ଓ ଅଡିଟ ଏବଂ ତାର ସମାଧାନ ବର୍ଷ ବର୍ଷ ପଡି ରହୁଛି । ତେଣୁ ପ୍ରତିଦିନ ତୋଷର ପାତର ଖବର ସମ୍ବାଦ ପତ୍ର ପୃଷ୍ଠା ମଣ୍ଡନ କରୁଛି । ଏ ସବୁର କାରଣ ହେଉଛି କେବଳ ସୁବିଧା ହାସଲ କରିବା ଦାବି ଓ କାମରେ ମନଇଚ୍ଛା ଠକେଇବା ମନୋବୃତ୍ତି । ଯଦି ଉପରିସ୍ଥ ଅଧିକାରୀଙ୍କୁ ତୋଷାମଦ କଲେ ଭଲ ଚରିତ୍ର ପଞ୍ଜିକାଲେଖା ହେଲା, ଦରମା, ଗସ୍ତଖର୍ଚ୍ଚ ଓ ଘରଭଡା ମିଳିଗଲା, ପଦୋନ୍ନତି ମିଳିଲା ତେବେ ଏତେ କଠିନ ପରିଶ୍ରମ କରି ଖଟିବା କ'ଣ ଦରକାର ?

ବିଶ୍ୱାସ କରନ୍ତୁ ବା ନକରନ୍ତୁ ଦିନେ ଦିନେ ୮୨ ମାଇଲ୍ ସାଇକେଲ କରିବାକୁ ପଡିଛି । ବର୍ଷାରେ ଭିଜି ମାସିକ ବୈଠକକୁ ଆସିବାବେଳେ କାଦୁଅରେ ସାଇକେଲ କାନ୍ଧେଇ କାନ୍ଧେଇ ଅବଶ ହୋଇପଡିଛି । ଏହିସବୁ କଠୀନ କାର୍ଯ୍ୟ କରିବା , ସାଧୁତା ଅବଲମ୍ବନ କରିବା, କର୍ମ ତତ୍ପରତା ପ୍ରକାଶ କରିବାର ପ୍ରଭାବ ଲୋକ ପ୍ରତିନିଧି ସରପଞ୍ଚ ଓ ପଞ୍ଚାୟତ କର୍ମଚାରୀ ମାନଙ୍କ ଉପରେ ନିଶ୍ଚୟ ପଡୁଥିଲା । ତେଣୁ ତାଙ୍କ ମନରେ ଭୟ, ଶ୍ରଦ୍ଧାଥିଲା, ଥିଲା ବିଶ୍ୱାସ ଓ ଭରସା । ଜଣେ ସର୍ବସାଧାରଣର ସେବକ ବା କର୍ମଚାରୀ ଯଦି ଏତକ ନ କରିପାରଲା ବା କରି ଦେଖାଇ ନ ପାରିଲା ତେବେ ସେ କେବେ ସଫଳତା ହାସଲ କରି ପାରିବନି । ଏଥିପାଇଁ ଯେଉଁ ଠାକୁରେ କର୍ମପ୍ରେରଣା ଯୋଗାଇ କର୍ମ ନିଶାଗ୍ରସ୍ତ କରି ଦେଇଥିଲେ; ସେ ନିଷ୍ଠୁର ନୁହଁନ୍ତି, ସେ ହେଉଛନ୍ତି ପଥପ୍ରଦର୍ଶକ ପରମଗୁରୁ ଓ ଚରମ ସତ୍ୟ ନିଷ୍ଠାର ପ୍ରତୀକ । ଏହାହିଁ ଗୀତାର କର୍ମଯୋଗ । କର୍ମହିଁ ଧର୍ମ , କର୍ମ ହିଁ କର୍ମ, କର୍ମରେ ହିଁ ମୃତ୍ୟୁ , କର୍ମ ହିଁ ସ୍ୱର୍ଗ ।

## ୭୩. ଦୁଃଖିନୀ ଦୁଃଖର ଅବସାନ

ଆମ୍ବଶାଳ ପଞ୍ଚାୟତର ସରପଞ୍ଚ ବିପିନ ବାବୁ ପ୍ରଜା ସୋସାଲିଷ୍ଟ ପାର୍ଟିର । ବଡ ଟାଣୁଆଲୋକ । ହେଲେ ନିର୍ବାଚନରେ ହାରି ମଧ୍ୟ ନୂଆ ସରପଞ୍ଚଙ୍କୁ ଦାୟିତ୍ୱ ଦେବାରେ ଅହେତୁକ ବିଳମ୍ବ କରିବାରେ କଟକର ପଞ୍ଚାୟତ ଅର୍ଗାନାଇଜର ଚେଟି ସତ୍ୟନାରାୟଣ ଆସି ବାରଟା ସୁଦ୍ଧା ପହଞ୍ଚିଲା ବେଳକୁ ତାଙ୍କ ସାଥିରେ ଆସି ପହଞ୍ଚିଲା ଏକତାର ବାର୍ତ୍ତା "ମା ଅସୁସ୍ଥ-ଶୀଘ୍ର ଆସ" । କର୍ତ୍ତବ୍ୟର ନିଶା ସେତେବେଳେ ଏତେ ଘାରିଥିଲା ଯେ ଏ ତା'ର ବାର୍ତ୍ତା କର୍ତ୍ତବ୍ୟରୁ ଟଳାଇ ପାରିଲାନି । ଚେଟି ସତ୍ୟନାରାୟଣଙ୍କ ପ୍ରବର୍ତ୍ତନା ମଧ୍ୟ ବିଫଳ ହେଲା । ସାନଭାଇ ସ୍କୁଲକୁ ଯାଇଥାଏ । ଆମେ ଦୁହେଁ ଆମ୍ବଶାଳ ଗଲୁଁ ଓ ୫ଟା ସୁଦ୍ଧା ବନ୍ଧୁ କଷ୍ଟରେ ଦାୟିତ୍ୱ ହସ୍ତାନ୍ତର କରାଇ ଫେରିଲା ପରେ ନିଶାଛାଡି ଗଲା । ଦୁଃଖିନୀ ବୋଉର ମୁହଁ ଦିଶିଗଲା । ସତେ ଯେମିତି ସେ ଡାକୁଛି ।

ଚେଟି ସତ୍ୟନାରାୟଣଙ୍କୁ ବସାରେ ରଖାଇ ଦେଇ ଓ ସାନଭାଇକୁ ଦରକାର ହେଲେ ଖବର ଦେବି କହି ସନ୍ଧ୍ୟାରେ ସାଇକେଲ ଧରି ବାହାରି ପଡିଲି । ଯୋଗକୁ ଗୋଟେ ଟ୍ରକ ମିଳିଗଲା । ସବୁବସ୍ ସମୟ ଚାଲିଯାଇଥିଲା । ତେଣୁ ଟ୍ରକ୍‌ରେ ସାଇକେଲ ଲଦି କଟକ ବିଦ୍ୟାଧରପୁର ଯାଏ ଆସି ସେଠୁ ଅନ୍ଧାରରେ ରେଳ ପୋଲ କଡରେ ପଡିଥିବା ଅଣ ଓସାରିଆ ଲୁହାପାତ ଉପରେ ସାଇକେଲ ଗଡାଇ ଜଗତପୁର ପହଞ୍ଚିଲା ବେଳକୁ ରାତି ୯ଟା । ସେତେବେଳେ କଟକ ଚାନ୍ଦବାଲି ରାସ୍ତା ପିଚୁ ହୋଇନଥାଏ । ରାତିରେ କିଛି ବସ୍ ମଧ୍ୟ ନଥାଏ । ତେଣୁ ଅନ୍ଧାରରେ ଠାକୁରଙ୍କୁ ଡାକି ଖାଲଢିପ ରାସ୍ତାରେ ୨୫ ମାଇଲ ସାଇକେଲ ଚଲାଇ ଗାଁ ରାସ୍ତାଧରିବାରେ ସାଇକେଲ ଆଉ କାଦୁଅରେ ନଚାଲେ । ଶେଷରେ ପାଖ ବିଲ ଭିତରେ ଧାନ କିଆରିରେ ସାଇକେଲକୁ ଛାଡିଦେଇ ଘରେ ଆସି ରାତି ଗୋଟାଏ ବେଳେ କବାଟ ବାଡେଇ ଡାକିବାରୁ ଭାଇନା ଦୌଡିଆସି କୁଣ୍ଢେଇ ପକାଇ କହିଲେ ଯା ହେଉ ତୁ ଆସିଗଲୁ । ସେ ପୂର୍ବରାତିରୁ ଅନିଦ୍ରାଥିଲେ । ନୂଆବୋଉ ଓ ମୁଁ ବୋଉକୁ ଜଗିବସିଲୁ । ସେ କଥା କହୁଥିଲା ଓ ଅଳ୍ପଟିକେ କ୍ଳାନ୍ତ ହେବା ପରି ମଝିରେ ମଝିରେ ଶୋଇ ପଡୁଥାଏ । ପଚାରି ବୁଝିଲି ପ୍ରଥମାଷ୍ଟମୀ ଦିନ ଅରୁଆ ପିଠା ଓ ଅଟକାଳି ଇତ୍ୟାଦି ଖାଇବା ସାଙ୍ଗକୁ ଅସୁସ୍ଥ ନାତୁଣୀ କିନ କୁ ପେଟ ଉପରେ ପକାଇ ଶୋଇବା ଯୋଗୁଁ ତରଳ ଝାଡା ରୋଗରେ ଆକ୍ରାନ୍ତ ହୋଇ ଶଯ୍ୟାଶାୟୀ ହୋଇଯାଇଛି । ସକାଳ ହେଲା । ଗାଁର ତଥାକଥିତ ଅର୍ଦ୍ଧଶିକ୍ଷିତ ଶରତ ମିଶ୍ର ଯେକି ଚିକିତ୍ସା କରୁଥିଲେ ସେ ଆସି ରୋଗୀ ଦେଖିଲେ । କଟକ ନେବାର ଆବଶ୍ୟକତା ସମ୍ବନ୍ଧେ ପଚାରିବାରେ ଉତ୍ତର ମିଳିଲା; "ରୋଗୀ ସଂପୂର୍ଣ୍ଣ ସୁସ୍ଥ ହେଇଯାଇଛି । ତୁମର ଯଦି ବେଶୀ ପଇସା ଅଛି କଟକ ନିଅ । ମୋର କ'ଣ କରିବାର ଅଛି ?"

ଏତିକି କହି ସେ ଚାଲିଯିବାପରେ ଆସିଲେ ସନାକେଇ । ସେତେବେଳକୁ ବୋଉକୁ ଔଷଧ ଖାଇବାକୁ ଦେବାରେ ସେ ଆପତ୍ତି କରୁଥାଏ । ସନାକେଇଙ୍କୁ ପଚାରି ବୁଝି କହିଲା ଦେଖ ସନା ! ଆଜି ଏକାଦଶୀ । ଏମାନେ ମତେ ଔଷଧ ଗୁଡାଏ ଖାଇବାକୁ ବାଧ କରୁଛନ୍ତି । ଯାପରେ କେତୋଟି ହିକା ଆସିଲା । ଭୟରେ ଅଥୟ ହୋଇ ଡାକ୍ତର ଡାକିବାକୁ ଜାମାପେଣ୍ଟ ପିନ୍ଧୁପିନ୍ଧୁ ପୁଣି ଧୈର୍ଯ୍ୟ ହରାଇ ଠାକୁର ଘରକୁ ଯାଇ ମୁଣ୍ଡିଆଟେ ମାରି ଅଗାଧୁଆ ଗାଦିରୁ ଉପରେ ଥିବା ଭଗବତ ବହିଟି ଆଣି ରକ୍ମିଣୀ ବିବାହ ସମ୍ବନ୍ଧେ ଅଳ୍ପ କେତୋଟି ପଦ ପଢିଛି କି ନାହିଁ ଦୁଃଖୀନିର ଦୁଃଖର ଅବସାନ ଘଟିଗଲା ।

ପାଁଟି ଫିଟୁ ଥିଲା ।.କଥା କହୁଥିଲା ।. ତା'ର କିଛି ଅବଶୋଷ ନ ଥିଲା । ସେ ଦେଖିଗଲା ଯେ ତାର ପିଲାଏ ଦୁଃଖର ରେଖା ଅତିକ୍ରମ କରିଗଲେଣି । ମୁଣ୍ଡ ଗୁଞ୍ଜିବାକୁ ଘରଟିଏ ଓ ଦାନା ପାଇଁ ଜମି କିଛି ସଂଗ୍ରହ କଲେଣି । ତେଣୁ ଦୁଃଖ, ଅଭାବର ବିଷାଦ କାଳିମା ଲିଭିଯାଇ ସୁଖର ଶୁଭଚନ୍ଦ୍ରୋଦୟ ହୋଇଛି । ଆମ ପାଇଁ ତାର ସମସ୍ତ ଦୁଃଖ ଓ ଅପନୋଦନ ପାଇଁ ଚେଷ୍ଟା ସଫଳତାର ରୂପ ଗ୍ରହଣ କରିଛି । ତା'ର ଆଉ କ'ଣ ଦରକାର । ସେ ଜନ୍ମ ନେଇଥିଲା ଏକ ସୁଖ ସଂସାରରେ ସିନା ତା'ର କର୍ମକ୍ଷେତ୍ର ଥିଲା ସଂପୂର୍ଣ୍ଣ ଦୁଃଖର ଭଣ୍ଡାର । ସ୍ୱାମୀ ଚିରରୁଗ୍ଣ-ଧଇଁଆ, ନିଜେ ବାତରୋଗ ଗ୍ରସ୍ତ, ପିଲାଏ ଅନାଥ ଅଭାବ ଗ୍ରସ୍ତ, ଭୂମିହୀନ, ଗୃହହୀନ, ପିତୃହୀନ, ଗୋଟିଏ ନାହିଁ ନାହିଁର ଘରେ ସେ ୫ଟି ସନ୍ତାନଙ୍କୁ ମଣିଷ କରିସାରିବା ପରେ ତା'ର ଆଉ କ'ଣ କର୍ତ୍ତବ୍ୟ ବାକୀ ଥିଲା ଯେ ଆଉ ବେଶୀଦିନ ରହିଥାନ୍ତା ? କର୍ମଜୀବନର ଅବସରପରେ ତାର ମନ ରଥକୁ ଉଜାଣି ମୋଡିଦେଇ ପୁରୀରେ ହବିଷ କରିବା, ଗୁରୁମନ୍ତ୍ର ଦୀକ୍ଷା ନେଇ ଦୈନିକ ଭାଗବତ ଶୁଣିବା, ଖାଇବା ସ୍ଥାନରେ ବସିଥିଲେ ମଧ୍ୟ ଦୁଃଖୀ ରଙ୍କୀଙ୍କ ଡାକ ଶୁଣି ଉଠିଆସି ତୋକେବା ଗୁଣ୍ଡାଏ ଦେବା, ରାସ୍ତାରେ ଚାଲିଯାଉଥିବା ଦୀନ ହୀନମୂଲିଆଙ୍କୁ ପାନଖଣ୍ଡେ କି ଗୁଣ୍ଡି ପତରଟିକେ ଦେବା, କାହାରା ଅଭାବ ଅସୁବିଧାବେଳେ ବାରଅବାର ନଦେଖି ଧାରଉଧାର ଦେବା ଇତ୍ୟାଦି କାର୍ଯ୍ୟ ଧୀରେ ଧୀରେ ଓ ମନ୍ଥର ଗତିରେ ହେଲେ ମଧ୍ୟ ଦୃଢ ମନରେ ଆରମ୍ଭ କରିଥିଲେ । ଝିଅପୁଅ, ନାତି ନାତୁଣୀଙ୍କ ସଙ୍ଗରେ ଘାଣ୍ଟିହୋଇ ସମୟ ଅତିବାହିତ କରିବାକୁ ଅଧିକ ପସନ୍ଦ କରୁ ନଥିଲେ ।

ସେପୁରର ଡାକରା ତାକାନରେ ବାଜିସାରିଥିଲା । ତେଣୁ ସେ ଏପୁରରୁ ତାମନଙ୍କୁ କ୍ରମେ ଫେରାଇ ନେଇଥିଲେ । ଶେଷରେ ବିଷ୍ଣୁଏକାଦଶୀ ଦିନ ବୋଲି ବୁଝି ଦିବାଲୋକରେ ଦେବଲୋକକୁ ଚାଲିଗଲା । ଭାଗବତ ଶୁଣି ଶୁଣି, "ମାସାନାଂ ମାର୍ଗଶୀର୍ଷୋହଂ" ରେ । ଏହାହିଁ ପ୍ରତ୍ୟେକ ମଣିଷର ଏକାନ୍ତ ଶେଷଇଚ୍ଛା ଏବଂ ଚିର କାମ୍ୟ । ଠାକୁରେ ଦୁଃଖିନୀର ସାଂସାରୀକ ଦୁଃଖ, ଶାରୀରିକ ଦୁଃଖ ଦୂରକରିବା ସହ ମନର ଭାବବୁଝି ବୁଢା ଅଭିଜ୍ଞ ବୈଦ୍ୟପରି ଠିକଣା ଔଷଧର ସୁବ୍ୟବସ୍ଥା କରିଦେଲେ ଠିକ୍ ସମୟରେ ।

ଏବେକାର ଆମ ଅର୍ଜିତ ଦୁଃଖ ଆମେ ଭୋଗୁଛେ । ଆମ ପାଇଁ, ଆମ ପିଲାଙ୍କ ପାଇଁ ଓ ତାଙ୍କ ପିଲାଙ୍କ ପାଇଁ ବ୍ୟବସ୍ଥା ନକରିବାଯାଏ ଆମ ଆଖିକୁ ନିଦ ନାହିଁ । ବାସାଙ୍କେ ସାଙ୍ଗେ ସେଥିପାଇଁ ସୁଖବି ନାହିଁ । ଈଶ୍ୱର ଏଯେଉଁ ବାନପ୍ରସ୍ଥାଶ୍ରମ ମନୋବୃତ୍ତିଟି ବୋଉ ମାଧ୍ୟମରେ ଶିକ୍ଷାଦେଲେ ତାହାହିଁ ବାକି ଜୀବନର ଧ୍ୟେୟ ଓ ଲକ୍ଷ ହୋଇରହିଛି ଓ ରହିବ । ପଥଭ୍ରଷ୍ଟ ହୋଇ ଅନ୍ତରେ ସନ୍ତୋଷ ନହେବା ଓ ଉଡିଲା ପକ୍ଷୀ ସାବକ ପାଇଁ ନାକତଳେ ଘଷିହେବା ଯାଏ, ଲାଞ୍ଛିତ ଓ ଭର୍ତ୍ସିତ ହୋଇ କର୍ମକୁ, ଭାଗ୍ୟକୁ, ଭଗବାନଙ୍କୁ ନିନ୍ଦାକରିବା ସାର ହେବ । ଈଶ୍ୱର ସଦ୍‌ବୁଦ୍ଧି ଦିଅନ୍ତୁ । ବୋଉ ଜୀବନରୁ ଶିକ୍ଷାମିଳୁ ।

## ୭୪. ମୃତାହେ ଭୂରି ଭୋଜନ

ସେ ଆସିଥିଲା କେତେଗୁଡିଏ ଅନାଥଙ୍କୁ ଜୀବନ ଦେବାକୁ, ଦାନାଦେଇ ବଞ୍ଚେଇବାକୁ ଓ ମଣିଷକରି ଠିଆ କରିବାକୁ । ସଂସାରରେ ନିଜେ ସବୁ ଦୁଃଖ ସହିଛି ସିନା କାହାକୁ ଦୁଃଖ ଦେଇନି । ତେଣୁ ମଲା ବେଳକୁ କାହିଁକି କାହାକୁ ଦୁଃଖ ଦେବ !

ଆଶ୍ଚର୍ଯ୍ୟର କଥା ଶବସଂସ୍କାର ପାଇଁ ଆବଶ୍ୟକୀୟ ସୁଖିଲା କାଳଠାରୁ ଆରମ୍ଭ କରି ନୂଆଲୁଗା, ନୂଆହାଣ୍ଡି, ଅରୁଆ ଚାଉଳ, ମୁଗଡାଲି, କଦଳୀ, ମାଠିଆ, ଚନ୍ଦନ, ଘିଅ ସବୁକିଛି ସେ ଘରେ ସଞ୍ଚୟ କରି ରଖିଥିଲା ଏବଂ କେଉଁଠିକି ଖୋଜିବାକୁ କି କିଣିବାକୁ ଯିବାକୁ ପଡିନଥିଲା । ବାପାଙ୍କର ଫଟୋଟିଏ ତ ନଥିଲା । ବୋଉର ଗୋଟିଏ ଫଟୋ ରଖିବାକୁ ଫଟୋଗ୍ରାଫର ଡାକି ଯିବାକୁ ବାହାରିବାରୁ କିଏ କିଏ ମନାକଲେ । ମଲା ଲୋକର କି ଫଟୋ ରଖିବ ? ସଂସ୍କାର କାର୍ଯ୍ୟ ବିଳମ୍ବ ହେବ । ତା'ର ବୋଧେ ଇଚ୍ଛା ନଥିଲା । କାହିଁକି କିଏ ତା'ଫଟୋ ଦେଖି କିଏ ବୋଲି ପଚାରିବ ? ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ପରି ସେ ତାର ନାମ ରଖିବାକୁ ଚାହିଁ ନଥିଲା । ଶେଷରେ ସଂସ୍କାର ପାଇଁ ପ୍ରସ୍ତୁତି ଆରମ୍ଭ ହୋଇଥିଲା । ଏତେ ଶୀଘ୍ର ଏ କାର୍ଯ୍ୟ ସମାପ୍ତ ହୋଇଥିଲା ଯେ ସାଇ ଭାଇରେ କାହାକୁ ଦ୍ୱିପ୍ରହର ସମୟରେ ଉପବାସ ରହିବାକୁ ପଡିନଥିଲା ।

ବୋଧହୁଏ ତା'ରି ପ୍ରେରଣାରେ ସେହିଦିନ ହିଁ ସଜଶୁଦ୍ଧି କ୍ରିୟା ଆରମ୍ଭ ହେଲା । ଚାକିରୀ ସ୍ଥାନରେ ଛାଡି ଆସିଥିବା ସାନଭାଇ ଓ ନିକଟଗାଁରେ ବିବାହିତା ସାନ ଭଉଣୀଙ୍କ ପାଖରେ ଚିର ଦିନ ଦୋଷୀ ହୋଇ ରହିବାକୁ ପଡିଲା । ଏମାନେ ଶେଷ ଦର୍ଶନରୁ ବଞ୍ଚିତ ହୋଇଥିଲେ ବୋଧେ ମୋରିପାଇଁ । ହେଲେ କିଏ ଜାଣିଥିଲା ବୋଉ ଏତେ ଶୀଘ୍ର ଆମକୁ ଛାଡି ଚାଲିଯିବ ? ଶବ ସଂସ୍କାର କରି ଫେରିବା ବେଳକୁ ମୋ ପାଖରେ ଟ ୮୬ ଙ୍କା ଓ ଭାଇନାଙ୍କ ପାଖରେ ଟ ୩୦ ଙ୍କା ଥିଲା । କ୍ରିୟା କିପରି ହେବ ? ସେଇ ଚିନ୍ତାରେ ଥିବା ସମୟରେ ତା'ରି ପ୍ରେରଣାରେ ପଡିଶାର ଚଞ୍ଚଳୀ ଖୁଡି ଓ ଗେନ୍ଦୁ ଖୁଡୀ ଆପଣା ଛାଏଁ ଡାକି କହିଲେ ବୋଉତ ହଠାତ୍ ଚାଲିଗଲା । ଶୁଦ୍ଧି ବ୍ୟବସ୍ଥା କ'ଣ କେମିତି କରୁଛ ? କେତେଇକୁ

ପଚାରି ଯେତେ ଭଲରେ ଯାହା ହୋଇପାରିବ ସବୁକାମ ହେବ ବୋଲି କହିବାରେ ଟଙ୍କା ଅଛି କି ନାହିଁ ସେ ଦୁହେଁ ପଚାରି ବୁଝିଲେ । ଟଙ୍କା କଥା ଶୁଣି କୁନୁ କୁନୁ ହେବାରେ ସେମାନେ ବୁଝିପାରି ସାଙ୍ଗେ ସାଙ୍ଗେ ଅଯାଚିତ ଭାବେ ହଜାରେ ହଜାରେ ଟଙ୍କା ଆଣି ଦେଲେ ଓ ପରେ ଆଉ ଟଙ୍କା ଦେଲେ । ବୁଲାଠାରୁ ତିନିଶହ ଆଉ କିଛି ଦୋକାନ ବାକି କରି ଖୁବ୍ ଧୁମ୍ ଧାମ୍‌ରେ ଶୁଦ୍ଧିକ୍ରିୟା କରାଗଲା । ଗୋପବନ୍ଧୁ ମିଶ୍ରଙ୍କ ଶୁଦ୍ଧି କ୍ରିୟାରେ ଖୁବ୍ ବଡ ଆୟୋଜନ ହୋଇଥିଲା ଓ ବହୁତ ଲୋକ ଖାଇଥିଲେ । ତା' ତଳକୁ ହେଲା ବୋଉର ଶୁଦ୍ଧିକ୍ରିୟା । ମୃତାହେ ଭୂରିଭୋଜନ କଥାଟି ଅକ୍ଷରେ ଅକ୍ଷରେ ରକ୍ଷା କରି ପ୍ରତ୍ୟହ ବହୁ ସଂଖ୍ୟକ ଲୋକ ବିଶେଷ କରି ଚତୁର୍ଥ, ସପ୍ତମ, ନବନ ଓ ଦ୍ୱାଦଶାହ ଦିନ ଲୋକଙ୍କୁ ଏପରିକି ଆମଗାଁର ସବୁ ଲୋକଙ୍କ ସହ ପାଖର ୪ ଖଣ୍ଡି ଗାଁ ଲୋକଙ୍କୁ ଭୋଜନ ଦିଆଯାଇଥିଲା । ଏତଦ୍ ବ୍ୟତୀତ ଦାନାଦି କାର୍ଯ୍ୟ ମଧ୍ୟ କରାଯାଇଥିଲା ।

ଏଥିପାଇଁ ବନ୍ଧୁବାନ୍ଧବରୁ ପ୍ରଚୁର ଭାର' ତ ଆସିଥିଲା, ଘରେଥିବା ତାରି ସଂଚିତ ପ୍ରଚୁର ଶସ୍ୟ ରାଶି କାର୍ପଣ୍ୟରହିତଭାବେ ବ୍ୟୟିତ ହୋଇଥିଲା । ସବୁଠାରୁ ସ୍ମରଣୀୟ ହେଉଛି ନିକଟତମ ପ୍ରତିବେଶୀ ରଥ କକେଇ ରୋଷେଇ ଦାୟିତ୍ୱନେଇ ବିଭିନ୍ନ ସ୍ୱାଦିଷ୍ଟ ମିଷ୍ଟାନ୍ନ ପ୍ରସ୍ତୁତି ଏବଂ ସେ କାର୍ଯ୍ୟସହ ଅନ୍ୟ ସବୁକାର୍ଯ୍ୟରେ ଭିଣୋଇ ଯଦୁବାବୁଙ୍କର ଅକୁଣ୍ଠ ଓ ନିରଳସ ସହଯୋଗ । ଆଶ୍ଚର୍ଯ୍ୟର କଥା ଜଣେ ମହାନ୍ତଙ୍କ ବାକ୍ୟ ସତ୍ୟହେଲା । ଏ ବାବଦ ସମସ୍ତ ଖର୍ଚ୍ଚ ଏକବର୍ଷ ମଧ୍ୟରେ ଭରଣା ହୋଇଯାଇଥିଲା । ଏହା ଆଉ ଚିନ୍ତାର ବିଷୟ ହୋଇନଥିଲା । ଠାକୁରେ ଯଦି ଅଯାଚିତ ଭାବେ ଯଥେଷ୍ଟ ଅର୍ଥର ବ୍ୟବସ୍ଥା କରି ନଦେଇଥାନ୍ତେ ଦୁଃଖୀନୀର ଅନ୍ତ୍ୟେଷ୍ଟିକ୍ରିୟା ମନମୁତାବକ ହୋଇ ପାରିନଥାନ୍ତା । ଯେ ଖାଇବା ସ୍ଥାନରୁ ଭୋକିଲାର ଡାକ ଶୁଣି ଉଠିଆସି ଖାଇବାକୁ ଦେଉଥିଲା ତା' ଶ୍ରାଦ୍ଧରେ ଯଥେଷ୍ଟ ସଂଖ୍ୟକ ସବୁଜାତିର ଓ ସବୁ ଶ୍ରେଣୀର ଲୋକ ଭୂରିଭୋଜନ ପାଇନଥିଲେ ଗୋଟିଏ ବିରାଟ ତ୍ରୁଟି ରହିଯାଇଥାନ୍ତା ଓ କେବେହେଲେ ମନରେ ତୃପ୍ତି ଆସିନଥାନ୍ତା । ତାର ଫଟୋଟିଏ ସ୍ମୃତିପାଇଁ ସିନା ନାହିଁ ତାର ଅନ୍ତେଷ୍ଟି କ୍ରିୟାର ମଧୁର ସଫଳ ସ୍ମୃତି ଏବେ ମଧ୍ୟ ଉଜ୍ଜୀବିତ । ମନଥିଲେ ଠାକୁର ଠିକ୍ ଠିକ୍ ସବୁ ଖଞ୍ଜିଦିଅନ୍ତି । ଧନ୍ୟ ତାଙ୍କର ମହିମା । ସେ ତାଙ୍କୁ ଟାଣକରି ଧରିଥିଲା । ତେଣୁ ଠାକୁରେ ତା' କାମ ପାଇଁ କିଛି ଅସୁବିଧା ରଖିଲେନି । ଏହାହିଁ ତାଙ୍କର କରୁଣା ।

## ୭୫. ପଣ୍ଡିତେ ହତାଶରେ ଲେଉଟିଲେ

କହନା ମୂଳେ କାଳଥାଇ । ବାସ୍ତବରେ ଏକଥାଟି ଅକ୍ଷରେ ଅକ୍ଷରେ ସତ୍ୟ । ଅଡିଟ୍ ଇନ୍‌ସପେକ୍ଟର ଚାକିରୀ କରିବାବେଳେ ଅକର୍ମା କର୍ମଦାୟକ ଲିଙ୍ଗରାଜଙ୍କ ନିକଟରେ ବରଣ ରହି ଯେଉଁ ତପସ୍ୟା କରିଥିଲେ ତାହା କେବେହେଲେ ଅକାରଣ ହେବାର କଥାନୁହେଁ । ମାତ୍ର ଦୁଇଟି ବର୍ଷରେ ସାକ୍ଷାତ୍‌କାର ଦେଇ ଅଡିଟ୍ ଇନ୍‌ସପେକ୍ଟରରୁ ଗୋଷ୍ଠୀ ଉନ୍ନୟନ ଅଧିକାରୀ ଭାବେ ନିଯୁକ୍ତି ମିଳିଗଲା । ସେ ପୁଣି କଟକ ସଦର ଦୁଇ ନମ୍ବର ବ୍ଲକର ସର୍ବପ୍ରଥମ ଅଧିକାରୀ ଭାବେ ।

ଯାପୂର୍ବରୁ ପଣ୍ଡିତେ ଲୋକାକେଇଙ୍କ ସାଙ୍ଗରେ ପରାମର୍ଶ କରି ତାଙ୍କ ନାତୁଣୀ ସହ ଏକ ବିବାହ ପ୍ରସ୍ତାବ ଆଣି ଭାଇନା ଓ ବୋଉଙ୍କୁ ଜଣାଇବାରେ ସନାକେଇ, ଭାଇନା, ଲୋକାକେଇ ଓ ଯଦୁବାବୁ ଇତ୍ୟାଦି ଦେଖଣା ଯାଇଥିଲେ । ସେଠାରେ ନିର୍ବନ୍ଧ ପାଇଁ ମଧ୍ୟ ଦିନଧାର୍ଯ୍ୟ ହୋଇଥିଲା । ମୋ ଦେଖିବା କଥାଟା ଫେରିଲା ବେଳେ ବାଟରେ ଉଠିବାରୁ ଲୋକାକେଇ କହିଲେ ସେ ଆଉ କ'ଣ ଦେଖିବ ଓ କହିବ ? ଆମେ ସବୁ ଦେଖିଲେ ହେଲା । ଏଥିରୁ ଭାଇନା ସନ୍ଦେହ କଲେ ଯେ ବୋଧେ ମୋ ସହିତ କଥାହୋଇ ଏ ପ୍ରସ୍ତାବ ଆଗରୁ ଧାର୍ଯ୍ୟ ହୋଇଯାଇଛି । ଯେ ନେଇ ଟିକେ ଛୋଟ କାଟର ବଚସା ହେଲା ମଧ୍ୟ ।

ଧାର୍ଯ୍ୟଦିନ ଗୋପାଳ ପଣ୍ଡିତେ ନିର୍ବନ୍ଧ କରିବାକୁ ଆସିବା ବେଳକୁ ତାଙ୍କୁ ମନାକରି ଦିଆଗଲା । ଖରାଦିନ । ଦ୍ୱିପ୍ରହର ବେଳ । ସେ ଓପାସ ରହି ମାଳୀ ଟେକିବାକୁ ଆସିଥିଲେ । ବିବାହ ହେବନି ଶୁଣି ସେ ସମ୍ପୂର୍ଣ୍ଣ ହତାଶ ହୋଇଗଲେ ଓ ସେହି ଅଖିଆ ଅପିଆ ଫେରିଗଲେ । ତାହାହିଁ ଅଭିଶାପ ପରି ଫଳିଲା ଓ ବର୍ଷକ ମଧ୍ୟରେ ବୋଉର କାଳ ହୋଇଗଲା । ଏକଥାଟି ଅବିସ୍ମରଣୀୟ ହୋଇ ରହିଗଲା । ଏକଥାଟି ବୋଉର ପ୍ରାଣକୁ ଖୁବ୍ ବାଧିଥିଲେ ମଧ୍ୟ ଭାଇନାଙ୍କ ମୁହଁରେ ସେ କିଛି କହିନଥିଲା । ଯେ ଆଶାକରି ମନପ୍ରାଣ ଢାଳିଦେଇ ଲିଙ୍ଗରାଜଙ୍କ ପାଖରେ ବରଣ ରହି ତପସ୍ୟା କରି ସବୁଦିନ ପାଇଁ ଉନ୍ନତିର ବାଟ ଖୋଲିଦେଲେ ସେ ସିନା ହତାଶ ହୋଇ ଫେରିଲେ ଓ ସେହି ଅନୁତାପରେ ବୋଉର କାଳହୋଇଗଲା ; ସେ ତପସ୍ୟା କେବେହେଲେ ଅକାରଣ ଯାଏନି । ମାତ୍ର ୨ବର୍ଷ ମଧ୍ୟରେ ସାକ୍ଷାତ୍କାର ଦେଇ ଗୋଷ୍ଠୀ ଉନ୍ନୟନଅଧିକାରୀ ଭାବେ ଯୋଗଦେବାର ସୁଯୋଗ ମିଳିଗଲା । ଯେଉଁ ସାକ୍ଷାତ୍କାର ହେଲା ତାହା ସାକ୍ଷାତ୍‌ରେ ଠାକୁରଙ୍କ ଦୟାର ପ୍ରତିଫଳନ । ଯେଉଁ ନିର୍ଦ୍ଦେଶକ ଅଡିଟ୍ ଇନ୍ସପେକ୍ଟର ଭାବେ ନିଯୁକ୍ତିପାଇଁ ସାକ୍ଷାତ୍କାର କରିଥିଲେ ସେ ହିଁ ଗୋଷ୍ଠୀ ଉନ୍ନୟନ ଅଧିକାରୀ ପଦବୀ ପାଇଁ ସାକ୍ଷାତ୍କାର କଲେ । ଏତେବେଳକୁ ପଞ୍ଚାୟତ ଅଭିଜ୍ଞତା ଓ ପୂର୍ବରୁ ଥିବା ଲେଖାକାର ତାଲିମ୍ ଖୁବ୍ କାମରେ ଆସିଲା । ସାକ୍ଷାତ୍କାର ନେଉଥିବା ତିନିଜଣ ଉଚ୍ଚପଦବୀର ଅଧିକାରୀଙ୍କର ସବୁ ପ୍ରଶ୍ନର ସଫଳ ଉତ୍ତର ପାଇ ସେମାନେ ଚମତ୍କୃତ ହୋଇଯାଇଥିଲେ । ତେଣୁ ଅବିଳମ୍ବେ ପଦୋନ୍ନତି ଓ ବି.ଡି.ଓ ଚାକରୀଟି ମିଳିଗଲା ।

୧୯୫୪ରେ ମାଟ୍ରିକ ପରୀକ୍ଷା ଦେଇ ଟିଉସନ୍ ଆରମ୍ଭ କରିବାଠାରୁ ୧୯୬୧ରେ ବି.ଡି.ଓ ଚାକିରୀ ପାଇବାଯାଏ ସାତଟି ପଦୋନ୍ନତି କଥା ସ୍ମରଣ କଲେ ମନେହୁଏ ଈଶ୍ୱରଙ୍କ ଆଶିର୍ବାଦ ଓ କଠିନ ପରିଶ୍ରମରେ ସବୁକିଛି ସମ୍ଭବ । ସେଇଥିପାଇଁ ଗୀତାର ଶେଷ ବାକ୍ୟ ହେଲା "ଯତ୍ର ଯୋଗେଶ୍ୱର କୃଷ୍ଣ ଯତ୍ର ପାର୍ଥ ଧନୁର୍ଦ୍ଧର - ତତ୍ରଶ୍ରୀ, ବିଜୟ ଭୁତି ଧ୍ରୁବାନ୍ନିତି ମତିର୍ମମ" । ଯେ ଇଚ୍ଛାକଲେ "ମୂକଂ କରୋତି ବାଚାଳଂ-ପଙ୍ଗୁଲଙ୍ଘୟତେ ଗିରି" ତାଙ୍କ ପାଇଁ ଇଏ କି ସାମାନ୍ୟ କଥା । ଏ ଦୁଃଖ ସୁଖର କାହାଣୀ ଏବେ ଆମ ପିଲାଙ୍କୁ କହିଲେ ସେମାନେ ଆଦୌ ବିଶ୍ୱାସ କରୁନାହାନ୍ତି ବରଂ କହୁଛନ୍ତି ଏସବୁ କହିବା ଦରକାର କ'ଣ ? କି ଆଶ୍ଚର୍ଯ୍ୟ !

## ୭୬. କାନ୍ଦୁଥିବ - ଯାହା ଦେଉଥିବେ ବାନ୍ଧୁଥିବ

ଦିନେ ଖୁସି ବେଳେ ଠାକୁରେ ପୁଣି ଥରେ ଦେଖାଦେଇଥିଲେ । ସେତେବେଳେ ଆନନ୍ଦାଶ୍ରୁ ବୋହିଯାଇଥିଲା । "ସୁଖରେ ଏବଂ ଦୁଃଖରେ ସବୁବେଳେ ତାଙ୍କର ସ୍ମରଣ ହେଉ, ତାଙ୍କ ଦେଖାମିଳୁ ଓ ସବୁ ସୁଖ ଦୁଃଖ ତାଙ୍କରି ପାଦରେ ସମର୍ପଣ କରେଁ ।" ଏହାହିଁ ମାଗି ବସିବାରେ ସାଙ୍ଗେ ସାଙ୍ଗେ ଛୋଟ ଦରଖାସ୍ତଟି ମଞ୍ଜୁର ହୋଇଗଲା । ଏବେଯାଏ ତାହାହିଁ ଘଟୁଛି ଏବଂ ଶେଷ ନିଃଶ୍ୱାସଯାଏ ଚାଲୁଥାଉ; ଏତିକି ମାଗୁଣି । ସମସ୍ତ ଦୁଃଖ ସୁଖର ସେ ହିଁ ଦାତା । "ନନ୍ଦାଦି ଗୋକୁଳ ତ୍ରାତା  ଦାତା ଦାରିଦ୍ର୍ୟ ଭଞ୍ଜନ" ।

ବୋଉର ବର୍ଷିକିଆ ଦିନ ମୋର ମଙ୍ଗଳ ପାଗ ପଡିଥାଏ । ଏକାମାତକେ ବ୍ରାହ୍ମଣ ଭୋଜନ ହୋଇଗଲା ।  ଭାଇନା' ତ କେବେ କିଛି ନିମିତ୍ୟ କରିନଥିଲେ । ତେଣୁ ଜିନିଷ କିଣାଠାରୁ ଖଳା ଚାପ୍ପୁ ଛାମୁଣ୍ଡିଆ ବାନ୍ଧିବା ସବୁକାମ ନିଜକୁ କରିବାକୁ ପଡିଥିଲା । ବିଭାଘର ଦିନ ଉପବାସ ଓ ତା ପୂର୍ବଦିନ ଅବେଳାରେ ଶ୍ରାଦ୍ଧ ଯୋଗୁଁ ଭୋଜନଯୋଗୁଁ ମୁଣ୍ଡ ଭୀଷଣ ବିନ୍ଧୁଥାଏ ।  ଦିନ ୪ଟାରେ ବରଯିବଯିବ ବୋଲି ରାତି ୮ଟା ହେଲା । ଗାଡିର ଦେଖାନାହିଁ । ଯାହାହେଉ ବିଳମ୍ବିତ ରାତିରେ ଗୋଟିଏ ଗାଡିରେ ଯାଇ ୫ ମାଇଲ ପରେ ତାକୁ ବଦଳାଇ ଗୋଟେ ଜିପ୍‌ରେ ଅବଶିଷ୍ଟ ୧ ମାଇଲ ଯିବାକୁ ହେଲା । ସେତେବେଳକୁ ରାତି ଅଧ । ଶଶୁର ଘର ବ୍ରାହ୍ମଣ ଭୋଜନୀ କାମ ଶେଷକରି ପ୍ରାୟ ସମସ୍ତେ ଶୋଇଥିଲେ । ଯେନ ତେନ ପ୍ରକାରେଣ ବରଜାତି ଚର୍ଚ୍ଚା ଶେଷ ସହ ବିଭାଘର ମଧ ଶେଷ ହେଲା । ଶବ୍ଦ ହିସାବ ଶରତ ଭାଇନା ପୋଥିଦେଖି ସାମବେଦୀ ମନ୍ତ୍ର ପାଠକରି ହୋମ କରାଇଲେ । କାରଣ ଆମ ପୁରୋହିତ ଶିବକେଇ ଯଜୁର୍ବେଦୀ ବାଲା ଥିଲେ । ସନାକେଇ ବରପିତା ହୋଇଥିଲେ । ସେ ହିଁ ଆମ ପାଞ୍ଚ ଭାଇ ଭଉଣୀଙ୍କର ବ୍ରତ ଓ ବିଭାକାର୍ଯ୍ୟ କରିଥିଲେ । ଆସିଲା ବେଳେ କହି ଆସିଲେ "କାନ୍ଦୁଥିବ ଯାହା ଦେଉଥିବେ ବାନ୍ଧୁଥିବ" । ସେ ଥିଲେ ଆମର ମୁରବି ଏବଂ ଗାଁର ଚର୍ଚ୍ଚିଲ୍ । କଥାଟା ବୁଝିହେଲା ଓ ମନକୁ ଗଲା ।  ଯୌତୁକ ମିଳିଥିଲା ଗୋଟେ ସାଇକେଲ ଗୋଟେ ଘଣ୍ଟା । ରେଡିଓଟିଏ ମିଳିବାକୁ ଆଶା ଥିଲେ ମଧ ତାହା ନ ମିଳିବାରୁ ଠିକ୍ ବିଭାଘର ପରେ ନିଜେ କିଣି ପକାଇ ଥିବାରୁ ମନସାଧ ମେଣ୍ଟିଥିଲା ।

ଏବେ ଦୈନିକ ଖବରକାଗଜ ପୃଷ୍ଠା ମଣ୍ଡନ କରୁଛି ଯୌତୁକ ହତ୍ୟା, ବଧୁ ନିର୍ଯାତନା । କନ୍ୟା ବାଛିବାକୁ ଜାତି, ଜାତକ ଓ ଯୌତୁକ ସହ ଶିକ୍ଷା, ବର୍ଣ୍ଣ, ଉଚ୍ଚତା, ମୋଟା, ଚାକିରୀ ବଂଶ ପରମ୍ପରା, ବାପ ମା'ଙ୍କ ଚାକିରୀ ଓ ଅନ୍ୟବିଷୟ ବୁଝାଯାଉଛି । ସେତେବେଳେ ସେସବୁ କିଛି ନ ଥିଲା । ବିଭାବାସୀ ଶଳାଠାରୁ ପଚାରି ବୁଝିଲି ଯେ ସ୍ତ୍ରୀଙ୍କ ବିଦ୍ୟା ତୃତୀୟ ଶ୍ରେଣୀ । ଆମେ କ'ଣ ସଂସାର କରିନୁ ? ହେଲେ ସଂସାର କ'ଣ ରହିଯାଇଛି ? ବିଭାଘର ପାଇଁ ଘରକୁ ଆସିବାକୁ ଡାକରା ପୂର୍ବରୁ କେଉଁଠି, କିପରି ବିଭାଘର ସ୍ଥିର ହୋଇଛି ତା' ଜଣାନଥିଲା ।

ଗୋଦରା କୋଡେ ଯେତେ - ମାଡେ ସେତେ । ଚାକିରିଆଟିଏ ବିଭାହେଲେ ଘର ଓ ଝିଅଙ୍କ ଚର୍ଚ୍ଚା ପାଇଁ ଲୋକଟିଏ ପୋଷିବ ଓ ଝିଅକୁ ମଧ୍ୟ ପରହାତରେ ଅମଣିଷ କରିଗଢିବ । ନ ହେଲେ ଦୁଇପ୍ରାଣୀ ଖଟି ଖଟି ମରିବ ଓ ଦିନ ରାତି କଳିକରି ଜୀବନକୁ ନଷ୍ଟ କରିବ । ଏ ବେପାରୀ ଓ ବର ନିଲାମ ମନୋବୃତ୍ତି ନବଦଳିଲେ ସାମାଜିକ ବ୍ୟାଧିଟି ବଢି ଚାଲିବ । ଏଥିପାଇଁ ଉଭୟ ବର ଓ କନ୍ୟା ପକ୍ଷ ଏବେ ଅଙ୍କ କଷାଳି ସାଜି ଚୁନ୍ତି । ମଧ୍ୟସ୍ଥି ଚେଷ୍ଟେର ଫିଙ୍କ୍ କରୁଛନ୍ତି । ସେତେବେଳେ ବିବାହ ବିଶ୍ୱାସ ଉପରେ ପ୍ରତିଷ୍ଠିତ ହେଉଥିବା ବେଳେ ଏବେ ଅବିଶ୍ୱାସର ବେପାରୀ ମନୋବୃତ୍ତି ସମଗ୍ର ଜୀବନକୁ ନଷ୍ଟଭ୍ରଷ୍ଟ କରିଦେଉଛି ।

ଶେଷ କଥା ହେଲା ଠାକୁରେ ଦେଇଥିବା ବର ଅନ୍ୟଥା ହୁଅନ୍ତା କିପରି ! ପିଲା ବୁଦ୍ଧିରେ ଯେତିକି ମାଗିଥିଲି ଠିକ୍ ସେତିକି ଦେଲେ । ଅଧିକ ଆସିବ କୁଆଡୁ ? "ଯେ ଯଥା ମାଂ ପ୍ରପଦ୍ୟନ୍ତେ ସ୍ତାଂ ତଥୈବ ଭଜାମ୍ୟହଂ ଓ ଭୋକିଲା ପେଟରେ ଜମିଦାର ଘର ପିଣ୍ଡାରେ ଠାକୁରେ ଦେଖା ଦେଇଥିବା ବେଳେ "ନ ଯାଚେହଂ ବରବଧୂ" ପରିବର୍ତ୍ତେ ମାଗିଥିଲି; ଗୋଟିଏ ଗୋରା ପିଲା ତାହା ହିଁ ମିଳିଲା । ହେଲେ ଦାତାନିଷ୍ଠୁର ନୁହଁନ୍ତି । ଅତଏବ ମନାନୁସାରିଣୀ ମିଳିଥିବା ଯୋଗୁଁ ବିଶେଷ ଅସୁବିଧା ପରିବର୍ତ୍ତେ ବରଂ ଠାକୁରେ ଶାନ୍ତିମୟ ସଂସାରର ବ୍ୟବସ୍ଥା କରିଛନ୍ତି । ଏହା ନିଶ୍ଚିତ ।

## ୭୭. ନିଶ ଉଠା ପାଠ

ଦିନେ ରାତିରେ ଖବର କାଗଜ ପୃଷ୍ଠା ଓଲଟାଇଲା ବେଳକୁ ସେଥିରେ ଆଇଏ ପରୀକ୍ଷା ଫଳ ବାହାରି ଥିବାର ମହେଶ୍ୱର ଓ ମୁଁ ଦେଖିଲୁ । ସେଥିରେ ଅଲେଖ ଆଇଏ ପାଶ କରି ଥିବାର ଦେଖି ଏକ ଉଦ୍ଦୀପନା ମନରେ ଜାଗ୍ରତ ହେଲା । ଅଲେଖ ଘରୋଇ ଭାବେ ପଢି ଆଇଏ ପାଶ କଲା । ଆମେ କଣ ପାରିବାନି ! ଦୁହେଁ ମିଶି ସ୍ଥିର କଲୁ ପରୀକ୍ଷା ଦେବାକୁ । ଦୁଇ ତିନୋଟି ବହି ସଂଗ୍ରହ କରି ଦିଆଗଲା ଓ ଫର୍ମ ପୂରଣ କରାଗଲା । ପରୀକ୍ଷା ବେଳକୁ ଅଡ଼ିଟ୍ ଇନ୍‌ସପେକ୍ଟର ଚାକିରୀ ଥାଏ । କାମ ଅସୁମାରି, ପରୀକ୍ଷା ପାଇଁ ଅନୁମତି ମଧ୍ୟ ମିଳିଲାନି । ଯେତେବେଳେ ବହି ଧରି ବସିଲେ କାମ କଥା ମନେ ପଡ଼େ ବା ନିଦ ଆସେ । ଏମିତି ହଉ ହଉ ପରୀକ୍ଷା ନିକଟ ହୋଇଗଲା ।

ଚଉଦ ଦିନ ପରୀକ୍ଷା ଚାଲିବ । ଛୁଟି ନେଇ କଟକ ଆସି କୈଳାସକୁ ପରାମର୍ଶ କରି ପଚାରି ବୁଝିଲୁ । ତା ପାଖରେ ଇଂରାଜୀ ଓ ଧନିଆ ପାଖରେ ଇତିହାସ ଏବଂ ଅର୍ଥନୀତି ପଢ଼ିଲି । ପରୀକ୍ଷା ପୂର୍ବ ଦିନର ଘଟଣା । ପ୍ରତିଦିନ ସନ୍ଧ୍ୟାରେ କୈଳାସ ଚଉଧୁରୀ ବଜାର ଛକରେ ଥିବା ପୂର୍ଣ୍ଣ ସାହୁ ଦୋକାନରେ ବରା ଖାଇବାକୁ ଯାଏ । ପରୀକ୍ଷା ପୂର୍ବଦିନ ସାଇକେଲରେ ଗଲା ବେଳେ ତା ଡ଼ାହାଣ ହାତ ବୁଢା ଆଙ୍ଗୁଠି ଭାଙ୍ଗିଗଲା । ତା କକେଇ ଡାକ୍ତର କୁଳମଣି ମିଶ୍ର (ସୋନମାମୁଁ) ହାତଦେଖି କହିଥିଲେ ପ୍ଲାଷ୍ଟର କର - ପରୀକ୍ଷା ବନ୍ଦ । ଧନିଆ ମଧ୍ୟ ଦୁର୍ଭାଗ୍ୟ ବଶତଃ ପରୀକ୍ଷାରେ ଫେଲ ହେଲା । ଉଭୟେ ଖ୍ରୀଷ୍ଟ କଲେଜର ଛାତ୍ର ଥିଲେ । ଠାକୁରଙ୍କ ଦୟାରୁ ପୂର୍ବରୁ କିଛି ପାଠ ନପଢ଼ି ମଧ୍ୟ ଓ ଚାକିରି ବହି ଓ ନୋଟ ମାତ୍ର

୧୪ ଦିନ ଦେଖି ପଢ଼ି ପାଶ୍ ହୋଇଗଲା ଆଇ.ଏ । ଅବଶ୍ୟ ଏତେବେଳକୁ ଇଂରାଜୀ ଲେଖାପଢ଼ା ଓ ବୁଝିବା ସମ୍ବନ୍ଧୀୟ ସାଧାରଣ ଜ୍ଞାନ ଅଫିସ୍ କାମ କରିବା ଦ୍ୱାରା ହାସଲ ହୋଇସାରିଥିଲା । ସେଇଥିପାଇଁ ଇଂରାଜୀ ମାଧ୍ୟମରେ ପଢ଼ା ଓ ପରୀକ୍ଷା ହେଉଥିବା ଆଇ.ଏ ପରୀକ୍ଷାଟା ସହଜ ହୋଇଗଲା ବୋଲି ମନେ ହେଲା । ଏସବୁ ଆସ୍ଫାଳନ ବୃଥା । ଯାହାଙ୍କ ଇଚ୍ଛା ବିନା ଶୁଖିଲା ପତ୍ରଟିଏ ହଲିପାରେନା; ସେ ନ ଚାହିଁଥିଲେ ଏ କ'ଣ ସମ୍ଭବ ହୋଇଥାନ୍ତା !

ତେଣୁ ଏସବୁ ମୂଳରେ ସେହି କରୁଣାମୟଙ୍କ ଅବଦାନ ଅବିସ୍ମରଣୀୟ । ହାଡୁବାବୁ ପରୀକ୍ଷା ପାଇଁ ମଧ୍ୟ ଗୋପାଳଜୀଉଙ୍କୁ ଭୋଗ ଯାଚିଥିଲେ । ଭୋଗହେଲା । ଭୋଗ ହେବା ସହିତ ବି.ଏ. ପରୀକ୍ଷା ଦେବାପାଇଁ ମଧ୍ୟ ମନସ୍ଥ କରାଗଲା । ଏତେ ବେଳକୁ ବିଭାଘର ସରିଥାଏ । ବିଡିଓ ଚାକିରୀର କାମ ମଧ୍ୟ ବହୁତ ବଢ଼ିଯାଇଥାଏ । ସେ ଯାହା ହେଉନା କାହିଁକି "ମୁଁ ଯାକୁ ହୁଅଇ ସଦୟ-ଜ୍ଞାନ ତା' ହୃଦରୁ ଉଦୟ" ଏହି ଭାଗବତ ବାଣୀ କେତେବେଳେ ହେଲେ ଅନ୍ୟଥା ହୋଇପାରେନା । ଯାହାଙ୍କ ଦୟାରେ ପଙ୍ଗୁ ଗିରି ଲଙ୍ଘିପାରେ ଓ ମୂକ ବାଚାଳ ପାଲଟିଯାଏ ତାଙ୍କର ଦୟାହେଲେ କ'ଣ ନହେବ ?

ସବୁବେଳେ ମନରେ ଦୁଃଖ ଓ ବିସ୍ମୟ ଆସେ । କୈଳାସ ଭଲପଢ଼େ । ସେ ଏତେ ସାହାଯ୍ୟ କଲା । ତାଙ୍କରି ଘରେ ରହି ଡାରିନୋଟ୍ ଓ ବହି ପଢ଼ିଲି । ଅଥଚ ସେ ଦୁର୍ଘଟଣା ଘଟାଇ ଆଙ୍ଗୁଠି ଭାଙ୍ଗି ପରୀକ୍ଷା ଦେଇ ପାରିଲାନି । ଧନିଆ ବହୁତ ପରିଶ୍ରମ କରେ । ମତେ ନୋଟ ଦେଖାଇ ପାଠ ବତାଇ ଦିଏ । କିନ୍ତୁ ବିଧିର ଏକି ନିଷ୍ଠୁର ନିର୍ଦ୍ଦେଶ । ସେ ଫେଲ୍‌ହେଲା କିପରି ? ଏହିପରି ବିଚାରରେ ଆଇ.ଏ ପାଶ୍ କରିବାର ସୁଖ ଉପଭୋଗ କରିବା ସମ୍ଭବ ହେଲାନି । ଖଟା ମିଠାର ମିଶ୍ରିତ ସ୍ୱାଦ ଅନୁଭବୀ ବ୍ୟତୀତ ଆଉ କିଏ ଜାଣିବ ?

## ୭୮ . ଡିଗ୍ରୀ କିନ୍ତୁ ଏକାଠି ନେଲୁ

କୈଳାସ ଓ ଧନିଆ ସେହି ବର୍ଷ ପରୀକ୍ଷା ଆଉ ନଦେଇ ପରବର୍ଷ ବାର୍ଷିକ ପରୀକ୍ଷା ଦେଇ ଆଇ.ଏ ପାଶ୍ କରିଗଲେ ଓ ବି.ଏ ପଢ଼ିଲେ । ବି.ଏ ଦୁଇ ବର୍ଷ ପଢ଼ା ଯାଏ । ସେମାନେ ଦୁଇବର୍ଷ ପଢ଼ି ବି.ଏ ପରୀକ୍ଷା ଦେବା ବେଳକୁ ମୋର ତିନି ବର୍ଷ ହୋଇଥାଏ । ସେତେବେଳେ ନିୟମଥିଲା ଘରୋଇ ଭାବେ ପରୀକ୍ଷା ଦେବାକୁ ତିନିବର୍ଷ ସମୟ ଦରକାର । ଠାକୁରଙ୍କ ଇଚ୍ଛା ଦେଖନ୍ତୁ । ପୁଣି ତିନିହେଁ ଏକାଠି ବି.ଏ ପରୀକ୍ଷା ଦେବାର ସୁଯୋଗ, ଅନୁମତି ଓ ଛୁଟି ମିଳିଲା । ଛୁଟି ମିଳିଲା କେବଳ ପରୀକ୍ଷା ଚାଲିଥିବା ୧୭ ଦିନ ପାଇଁ ।

ଆଗରୁ ଖ୍ରୀଷ୍ଟ କଲେଜ୍‌ର ଜଣେ ଅଧ୍ୟାପକଙ୍କର ତିନି ଚାରିଟି ନୋଟ୍ ପଢ଼ିଥିଲି । ସେ ଟଙ୍କା ନେଇ ପରୀକ୍ଷାର୍ଥୀଙ୍କ ପାଇଁ ନୋଟ ଦିଅନ୍ତି । ଏତିକିରେ କ'ଣ ହେବ ? ପୁଣି ପୂର୍ବପରି ସୁବିଧା ମିଳିଲା । କୈଳାସ ଓ ଧନିଆର ବହି ଓ ନୋଟ ପଢ଼ିବାକୁ ମିଳିଗଲା; ଏହି ସତର ଦିନ । ସେମାନେ ତ ଦିନରେ ପଢ଼ିବେ । ମୁଁ ତାଙ୍କ ସାଙ୍ଗରେ ଓଳିଏ ଓଳିଏ ବସି ତାଙ୍କ ପଢ଼ା କେବଳ ଶୁଣେ । ଏଥର ଧନିଆ ଘରେ ରହି ପରୀକ୍ଷା ଦେଉଥାଏ । ଏକା ପଢ଼ିବାକୁ ସମୟ ହେଉଛି ରାତି । ତେଣୁ ରାତିରେ ଠିଆହୋଇ ଦୁଇଟି ଛୋଟ ରୁଟି ଦୋକାନରେ ହାତରେ

ଧରି ଖାଇ ଦେଇ ଗିଲାସେ ପାଣି ପିଇଦିଏ । ପେଟ ବୋଝେଇ ହେଲେ ନିଦ ଆସିବ ? ପଢିବି କିପରି ? ଠାକୁରଙ୍କ ପ୍ରେରଣାରୁ ପରୀକ୍ଷା ସତର ଦିନ ପାଠପଢା ବେଳେ କାମଚିନ୍ତା ବା ନିଦ ଆଖିକୁ ବା ମନକୁ ଆସିନି । ତେଣୁ ସାଙ୍ଗ ହୋଇ ତିନିଜଣଯାକ ପରୀକ୍ଷା ଦେଲୁ । ଠାକୁରେ ଆଉ ପୂର୍ବପରି ଦୁଃଖ ନଦେଇ ତିନିଜଣଯାକଙ୍କୁ ଏକାଠି ପାଶ୍ କରାଇଦେଲେ । ସେତିକି ନୁହେଁ ଯେଉଁ ମହେଶ୍ୱର ସହ ଉନ୍ମାଦନାରେ ଆଇଏ ପରୀକ୍ଷା ଦେବାର ନିଷ୍ପତ୍ତି ନିଆଯାଇଥିଲା ସେ ମଧ୍ୟ ଏଇଥର ଏକାଠି ବି.ଏ. ପାଶ୍ କରିଗଲା ।



ମଝିରେ କୈଳାସ ଓ ମହେଶ୍ୱର- ବାମକଡ଼ରେ ଲେଖକ ଓ ଡ଼ାହାଣ କଡ଼ରେ ଧୀରେନ୍ଦ୍ର ନାଥ ଦାଶ

ଚାରି ବନ୍ଧୁଙ୍କର ଆନନ୍ଦର ସୀମା ନାହିଁ । ଚାରି ଜଣଯାକ ଏକାଠି ହୋଇ ସମାବର୍ତ୍ତନର କଳା ପୋଷାକ ଓ ଟୋପି ପିନ୍ଧି ଡିଗ୍ରୀ ଆଣିଲୁ । ସାଙ୍ଗହୋଇ ଫଟୋ ଉଠାଇଲୁ । ଆଜିଯାଏ ଚାରି ବନ୍ଧୁଙ୍କର ସେହି ଡିଗ୍ରୀ ଫଟୋଟି ସ୍ମୃତି ଜାଗ୍ରତ କରିବାକୁ ରହିଅଛି । ସାନ ପୁଅ ଗୁଲନ ହାତରେ ସେ ଛୋଟ ଫଟୋଟିକୁ ଏବେ ଲାମିନେସନ୍ କରିରଖିଛି । ଏସବୁ ସତ୍ତ୍ୱେ ମନରେ ଗୋଟିଏ କଥା ଥାଏ ଉଜ୍ଜୀବିତ । ଧନିଆ ଓ କୈଳାସ ନିୟମିତ ଛାତ୍ର । ବୟସରେ ସାନ । ଧନରେ ମଧ୍ୟ ତାଙ୍କ ପରିବାର ମଧ୍ୟ ନିଶ୍ଚିତ ଭାବେ ଆଗୁଆ । ତେଣୁ ତାଙ୍କ ସହିତ ବନ୍ଧୁତା କେବଳ ନିଜର ସ୍ୱାର୍ଥସିଦ୍ଧି ପାଇଁ । ସମାସ୍କନ୍ଧତା ଏହି ବଂଧୁତାର ଭିତ୍ତିଭୂମି ନଥିଲା । ଅବଶ୍ୟ ଏଥିପାଇଁ ମନରେ ଈର୍ଷାନଥିଲା । ବରଂ ଥିଲା ତାଙ୍କ ପ୍ରତି ସ୍ନେହ ଓ ଶ୍ରଦ୍ଧା । ସେମାନଙ୍କର ମଧ୍ୟ ଥିଲା ଶ୍ରଦ୍ଧା ଓ ସମ୍ମାନ । ଏବେବି ଅଛି, ନା, ଧନିଆ ଚାଲିଗଲାଣି । ତାକୁ ଦେଖିବାକୁ

ଗଲାବେଳେ ସେ ବହୁତ କାନ୍ଦିଥିଲା, ମୁଁ ମଧ୍ୟ ବହୁତ କାନ୍ଦିଥିଲି । । ଏସବୁ ହେଉଛି ଠାକୁରଙ୍କ ଦାନ । ଏଥିରେ ଗର୍ବ ନାହିଁ । ଗରିମା ନାହିଁ । ଅଛି ତାଙ୍କ ପ୍ରତି ଓ ତାଙ୍କର ଅନୁକମ୍ପା ପ୍ରତି କୃତଜ୍ଞତା । ବି.ଏ ଖବରଟି ପାଇ ବଡ଼େଇ ଶଶୁର ଚୌଧୁରୀ ଗୋପୀନାଥ ନନ୍ଦ "Con-gratulation" ବୋଲି କହି ପିଠି ଆଉଁସି ଦେଇଥିଲେ । ଆମେ ତାଙ୍କର ଝିଅ ଜୋଇଁ ହେଲେ ମଧ୍ୟ ଆଗରୁ ସେ ଜୋଇଁ ହିସାବରେ ଦିନେ ବି ସ୍ନେହ ଶ୍ରଦ୍ଧା ପ୍ରକାଶ କରି ନଥିଲେ । ଈଶ୍ୱରଙ୍କ ଦୟାରୁ ତାଙ୍କଠାରୁ ଯେଉଁ ପଦକ କଥା ମିଳିଲା ସେତିକି ଲକ୍ଷେ ଟଙ୍କା, ଏସବୁ ସେହି ଠାକୁରଙ୍କ ଆଶୀର୍ବାଦ ତାଙ୍କରି ମୁହଁରେ ।

## ୭୯. ଘରେ ନ ପଶୁଣୁ ଚାଳ ବାଜିଲା

ପଂଚାୟତରେ ପୂର୍ବ ଅଭିଜ୍ଞତା ଥିବାରୁ କି କ'ଣ ପ୍ରଥମ ବିଡିଓ ଭାବେ କଟକ ସଦର ଦୁଇନମ୍ବର ବ୍ଲକ୍‌ରେ ନିଯୁକ୍ତି ମିଳିଲା । ୧୯୬୧ ଜୁନ୍ ୧୩ରେ କାର୍ଯ୍ୟରେ ଯୋଗଦେଇ ସେହି ବ୍ଲକ୍‌ର ବନ୍ୟା ପିଡୀତଙ୍କ ସେବାପାଇଁ ଚୁଡ଼ା ଚାଉଳ ଧରି ଜଣେମାତ୍ର ପିଅନକୁ ସାଙ୍ଗରେ ନେଇ ଡଙ୍ଗାରେ ବାହାରି ସଂଧ୍ୟା ସମୟରେ ଗଣ୍ଡର ପୁରରେ ପହଞ୍ଚିଲୁ । ସେଠାରେ ବଣ୍ଟନ କାର୍ଯ୍ୟକରି, ରାତିରେ ଜଣେ ଭଦ୍ର ଲୋକଙ୍କର ଅତିଥି ହୋଇ ରହିଲୁ । ତିନିଦିନ ସାହାଯ୍ୟ ବଣ୍ଟନ କରିଫେରିଲୁ । ନିଜେ ବସ୍ତା ଟେକିବା, ଡଙ୍ଗା ଠେଲିବା, ବଣ୍ଟନ ଫର୍ଦ ପ୍ରସ୍ତୁତ କରିବା ଇତ୍ୟାଦି ସବୁକାମ କରିବାକୁ ହେଲା । ଠାକୁରଙ୍କର ସେ ଏକ ପରୀକ୍ଷା । ପିଲାଦିନୁ ଜନସେବା କରିବାର ଯେ ଚିନ୍ତାଧାରା ମନରେ ଉଦ୍ରେକ ହୋଇଥିଲା ତା ପ୍ରତି କିପରି ବାସ୍ତବ ଶ୍ରଦ୍ଧା ଅଛି ଏଇଠି ତାର ପରୀକ୍ଷା ହୋଇଗଲା । ଖୁବ୍ ଶ୍ରଦ୍ଧା ଓ ଆନନ୍ଦରେ ଏବଂ କର୍ତ୍ତବ୍ୟବୋଧ ତଥା ସେବା ମନୋବୃତ୍ତି ନେଇ କାମଟି କରିଥିବାରୁ ଈଶ୍ୱର ଖୁବ୍ ଆମ୍ଭ ସନ୍ତୋଷ ଦେଇଥିଲେ । ଯୁଦ୍ଧ କାଳୀନ ଭିତ୍ତିରେ କାର୍ଯ୍ୟଟି ସନ୍ତୋଷ ଜନକ ଭାବରେ କରାଯାଇ ପାରିଥିବାରୁ ଲୋକେ ମଧ୍ୟ ଖୁବ୍ ଖୁସି ହୋଇଥିଲେ । ସତ କଥାଟି ହେଉଛି ଘୋର୍ ବନ୍ୟାବେଳେ କାଠଯୋଡ଼ିର ପ୍ରଖର ସ୍ରୋତରେ ପୋଲ ଖୁଣ୍ଟରେ ଡଙ୍ଗା ବାଡେଇ ହୋଇଯିବା ଭୟରେ ସେ ଅଞ୍ଚଳକୁ କେହି ରିଲିଫ ବାଣ୍ଟିବାକୁ ବାହାରୁ ନଥିଲେ । ଠାକୁରେ ସେ କାମଟି ଏ ଅକିଞ୍ଚନ ଦ୍ୱାରା କରାଇବାର ଥିଲା । ନିଜସ୍ୱ ଘର ନଥିବାରୁ ତେଲେଙ୍ଗା ପେଣ୍ଠସ୍ଥ ଜଗନ୍ନାଥ ସଡକ ଟ୍ରଷ୍ଟଫଣ୍ଡର ଧର୍ମଶାଳା ଘରେ ବ୍ଲକ୍ କାର୍ଯ୍ୟ ଆରମ୍ଭ ହେଲା । କିରାଣି ନଥିବାରୁ ନିଜ ଉପରେ ସେ ଦାୟିତ୍ୱ ପଡିଲା । ପୂର୍ବରୁ ପରିଚିତ ଥିବା ଅଳ୍ପଦିନ ନିମ୍ନଶ୍ରେଣୀ କିରାଣୀ ଭାବେ କାମ କରିଥିବା ଭାଗିରଥୀ ମିଶ୍ରଙ୍କୁ ଉଚ୍ଚ ବର୍ଗ କିରାଣି ଭାବେ ନିଯୁକ୍ତି ଦେଇ ପାଖକୁ ସହାୟତା ପାଇଁ ଆଣିଲି ସିନା ସେ ମୋତେ କାଳ ହେଲେ । ବନ୍ୟାପରେ ଚାଷୀଙ୍କୁ ରିହାତି ମୂଲ୍ୟରେ ବିକିବାକୁ ଆସିଥିବା ବିହନ ବିକ୍ରିକରି ସେ ଗୁଡ଼ିଏ ପଇସା ଖର୍ଚ୍ଚ କରିଦେଲେ । ବେଙ୍ଗ ପେଟରେ ଘିଅ । ପୁରୁଣା ଅଡିଟ୍ ଇନ୍ସପେକ୍ଟର ଯେ କି ଟଙ୍କାଟାଏ କିଏ ଖାଇଥିଲେ ତାକୁ ଆଦାୟ କରାଇ ଜମା କରାଉଥିଲା ସେ କ'ଣ ୟାକୁ ସହିଯିବା ସହଜ । ଦୁଇଥର କହି ଟଙ୍କା ଭରଣା ନ ହେବାରୁ ଧକ୍କାଟିଏ ଦେଇ ବାହାର କରିଦେବାକୁ

ଧମକ ଦେବାରେ କିଛି ଟଙ୍କା ମିଳିଲା ଓ ବାକିତକ ଦରମାରୁ କାଟି ଭରଣା ହେଲା । ତେଣୁ ଆଶଙ୍କାରୁ ମୁକ୍ତି ପାଇଁ ନିଜେ ଟଙ୍କା ରଖିବା ଓ କ୍ୟାସ୍‌ବହି ଲେଖିବାକୁ ହୋଇଥିଲା । ଏତିକିବେଳେ ପୂର୍ବରୁ ପାଇଥିବା ଲେଖାକାର ତାଲିମଟି ଠିକଣା କାର୍ଯ୍ୟରେ ଆସିଲା ।

ବାରଙ୍ଗ ଅଞ୍ଚଳରୁ ବହୁସଂଖ୍ୟକ ଶିକ୍ଷକ ଏତେଦୂର ଆସି ଦରମାନେବା କଷ୍ଟକୁ ଲାଘବ କରିବା ଆଶାରେ ବାରଙ୍ଗ ଯାଇ ସେଠିକାର ଶିକ୍ଷକ ମାନଙ୍କ ବାକିଆ ପାଉଣା ଦେବାକୁ ଧାର୍ଯ୍ୟ କରି ଦିନେ ଗଲୁ । କମ୍ ସଂଖ୍ୟକ ଶିକ୍ଷକ ଆସିଥିବାରୁ ବହୁତ ଟଙ୍କା ବଳିଲା । ତାକୁ ଧରି ଫେରିବା ବେଳେ ପ୍ରତାପ ନଗରୀ ସାଇଫୋନ ବାଟେ ଆସୁଥାଉ । ବିରାଟକାୟ ଜଣେ ଗୁଣ୍ଡା ମଦୁଆ ଆମକୁ ଅନୁସରଣ କଲା । ଶେଷରେ ଭାଗିରଥୀବାବୁଙ୍କ ହାତରୁ ଟଙ୍କା ବ୍ୟାଗଟା ଛଡାଇ ନେଲା । ଆମେ ସାଇପାଖ ଘରର ଚାଳରୁ ବତା ଇତ୍ୟାଦି ଧରି ଯେତେ ପ୍ରତିରୋଧ କଲୁ ସବୁ ନିଷ୍ଫଳ ହେଲା । ଗଣେଶ ଓ ଭାଗିରଥୀବାବୁ ଯୁଦ୍ଧରତ ଥିବାବେଳେ ହେ ଜଗନ୍ନାଥ ରକ୍ଷାକର କହିକହି ଜଗନ୍ନାଥ ସଡକକୁ ଧାଇଁବା ବେଳକୁ ଦଳେ ଯୁବକ ସାଇକେଲରେ ଜଗନ୍ନାଥ ଦର୍ଶନପାଇଁ ପୁରୀ ଯାଉଥାନ୍ତି । ସେମାନେ ମୋର ଏ ଦୁଃଖ ଶୁଣି ସାହାଯ୍ୟ ପାଇଁ ଆଗେଇ ଆସିବାରେ ଟଙ୍କା ଥଳି ଫିଙ୍ଗିଦେଇ ସେ ମଦ୍ୟପ ପଳାଇଲା । ଯାହାକୁ ରଖିବେ ଅନନ୍ତ- କି କରିପାରେ ବଳବନ୍ତ । ସ୍ୱୟଂ ଜଗନ୍ନାଥ ତାଙ୍କ ସେନାକୁ ପଠାଇ ରକ୍ଷା କଲେ । ଘରେ ନପଶୁଣୁ ଚାଳବାଜି ଯେଉଁ କ୍ଷତ ହୋଇଥିଲା ଠାକୁରଙ୍କର ବିଭୂତି ବୋଳାରେ ସେ କ୍ଷତ ଶୁଖିଗଲା ।

ଗୋଟିଏ ଗ୍ରେନ୍‌ଗୋଲାରେ ଗଚ୍ଛିତ ଥିବା ସାରକୁ ଜଣେ ପ୍ରଭାବଶାଳୀ କର୍ମକର୍ତ୍ତା ସେ ଗୋଲାର ସଭାପତିଙ୍କ ନାମରେ ପକାଇ ବିକି ହଜାର ହଜାର ଟଙ୍କା ଖାଇଗଲେ । ସ୍ୱଳ୍ପ ସହାୟକଙ୍କୁ ନେଇ ନୂଆ ଚାକିରୀରେ ସେ କ୍ଷମତାସୀନ ବ୍ୟକ୍ତିକୁ ପ୍ରତିରୋଧ କରିବାପାଇଁ ଗୁପ୍ତ ପତ୍ର ଦେଇ ଜିଲ୍ଲାପାଳଙ୍କୁ କହିଦେବାରେ ସେ ତାଙ୍କୁ ଧରିଲେ ଓ କେଶ୍ ଦାଏର କଲେ । ଗରିବ ବିଚରା ରକ୍ଷା ପାଇଗଲା । ଏକାର୍ଯ୍ୟଟି ପରିଚୟ ଦେଇ ଖୋଲା ଖୋଲି କରିଥିଲେ ମୃତ୍ୟୁ ନିଶ୍ଚିତ ।

କେଉଁଠି ବ୍ଲକ୍ ସଦର ମହକୁମା ହେବ ଏବଂ କେଉଁଠି ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ହେବ ସେ ନେଇ ବିବାଦ ଘନେଇଲା । ପଂଚାୟତ ସମିତି ଡାକି ସବୁ ସଭ୍ୟଙ୍କୁ ବୁଝାଇ ଏକମତ କରିବାକୁ ପଡିଲା ଯେ କଳିରେ ମାତି ଉନ୍ନୟନ କାର୍ଯ୍ୟର ଧାରାକୁ ବନ୍ଦକରି ଲୋକଙ୍କର କ୍ଷତି କରିବା ଅପେକ୍ଷା ଠାକୁରଙ୍କ ନିଷ୍ପତ୍ତି ଉପରେ ନିର୍ଭର କରିବା ଭଲହେବ । ଠାକୁରଙ୍କର ଇଚ୍ଛା ବଳବାନ୍ । ସମସ୍ତେ ବୁଝିଗଲେ । ସେତେବେଳକୁ ବାଲିଅନ୍ତାରେ ଏଇ ବିଷୟ ନେଇ ବର୍ଷ ବର୍ଷ ଧରି କେଶ୍ ଚାଲିଥାଏ । ଧର୍ମ ଗୁଳାରେ ବାରଙ୍ଗରେ ବ୍ଲକ୍ ଅଫିସ୍ ଓ ମଇଧରପଡାରେ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ହେବାର ସ୍ଥିର ହେଲା ।

ପଞ୍ଚାୟତ ହିଁ ସବୁ ଉନ୍ନୟନ କାର୍ଯ୍ୟ କରିବ ବୋଲି ସରକାରୀ ହୁକୁମ୍ ନାମାକୁ ଅକ୍ଷରେ ଅକ୍ଷରେ କାର୍ଯକାରୀ କରି ସବୁ ପଞ୍ଚାୟତରେ ଉନ୍ନୟନ କାମର ସ୍ରୋତ ସୃଷ୍ଟି କରାଯିବା ସହ ଠିକାଦାର ନିଯୁକ୍ତ କରି କାମ କରାଇବା ବଦନାମରୁ ମୁକ୍ତି ମିଳିଥିଲା । ଏହି ସମୟରେ ମୋ ବଡ ଝିଅର ବାଣୀବିହାରର ପ୍ରଥମ ଶିଶୁଭାବେ ତା'ବଡ ମାମୁଁ ଘରେ ଜନ୍ମ । ଅଳ୍ପ ବୟସରେ, ପ୍ରଥମ ଚାକିରୀରେ ସୀମିତ ସହାୟକଙ୍କୁ ନେଇ ଏ ଯେଉଁ ମହାଜଳଧି ପାରହେବାକୁ ହେଲା ତାହା କେବଳ ସେହି ଦୟାମୟଙ୍କ ଅଶେଷ କରୁଣାରୁ ସମ୍ଭବ ହେଲା । ଉପହାସ ଓ ବଦନାମରୁ ଖାଲି ରକ୍ଷା ମିଳିଲାନି ବରଂ ବିଡିଓ ହିସାବରେ ସୁନାମ ଆଣିଦେଲେ ଠାକୁରେ ପ୍ରଥମ ଚାକିରୀରୁ । ତାଙ୍କର ଯଶର ପତାକା ଉଡିଲା ।

## ୮୦. ସଫଳତାର ପୁରସ୍କାର

ଏତେ ସଫଳତାର ସହିତ କାମକରିବା ସତ୍ତ୍ୱେ ସରକାରୀ ନିଷ୍ପତ୍ତି ହେଲା ଯେ ସବୁ ଅଣଗେଜେଟେଡ ବିଡିଓ ସହକାରୀ ବିଡିଓ ହୋଇଯିବେ । ତେଣୁ ମନ୍ତ୍ରର ଗୁଣରେ ଆମେ ସବୁ ପୁନର୍ମୂଷିକ ପରି ସହକାରୀ ବିଡିଓ ହୋଇଗଲୁ । ସେହିଠି ହାକିମ ଥାଉଁଣୁ ଆମ ଉପରେ ଜଣେ ହାକିମ ଆସିଗଲେ । ହେଲେ କ'ଣ ହେବ ପୂର୍ବର ଖାତିରେ ସେ କ୍ଷୁଣ୍ଣ ଓ ଈର୍ଷୁକ ହୋଇପଡିଲେ । ଲୋକେ କିନ୍ତୁ ପୂର୍ବପରି ସମ୍ପୂର୍ଣ୍ଣ ବିଶ୍ୱସ୍ତ ଥିଲେ ଓ ସବୁବେଳେ ସହଯୋଗ ପାଇଁ ହସ୍ତ ପ୍ରସାରିତ କରିଥିଲେ । ଏଥିରୁ ଗୋଟିଏ ଶିକ୍ଷା ମିଳେ ଯେ ସର୍ବଶେଷ ନିଷ୍ପତ୍ତିର ମାଲିକ ହେଉଛନ୍ତି ଜନସାଧାରଣ । ତାଙ୍କର ସହଯୋଗ, ତାଙ୍କର ସୁଆଶିଷ ସବୁବେଳେ ସମସ୍ତଙ୍କର ପୁଞ୍ଜି ହେବା ଦରକାର । ତେବେ ସଂସାର କ୍ଷେତ୍ରରେ ଆଉ ହାରିବାର ନାହିଁ; କାରଣ ଜନତାହିଁ ବାସ୍ତବରେ ଜନାର୍ଦ୍ଦନ ।

ଏହିପରି ପରିସ୍ଥିତିରେ ତିନିମାସ ବାଙ୍କିରେ ରହିବାପରେ କୁଜଙ୍ଗ ବଦଳିହେଲା । ସେଠି ନାଳକୂଳ ହାଡିବନ୍ଧୁ ଶତପଥିଙ୍କ ଘରେ ରହୁଥାଏ ସ୍ତ୍ରୀ ଓ ଝିଅକୁ ଧରି । ସବୁବେଳେ କାମ ଯୋଗୁଁ ତାଙ୍କର ଯତ୍ନ କ'ଣ ସର୍ବନିମ୍ନ ସୁବିଧା ଦେଖିବାକୁ ମଧ ସମୟ ନଥାଏ । ସେଇଠି ତାଳଦଣ୍ଡା କେନାଲ୍‌ରେ ଆରମ୍ଭ ହେଲା ପିତୃପକ୍ଷର ତର୍ପଣ । ଏସବୁ ବ୍ୟସ୍ତତା ମଧରେ ଅନନ୍ତଦର କୃଷି ସଂପ୍ରସାରଣ ଅଧିକାରୀ ସାନଭାଇପରି ସବୁବେଳେ ସାହାଯ୍ୟ କରନ୍ତି । ଘରେ ଝିଅଟିକୁ ଧରିବାଠାରୁ ଅଫିସ୍‌ରେ ବ୍ୟାଗ୍ ବୋହି ସାଇକେଲ ପଛରେ ବସାଇ ଗସ୍ତ କରାଉଥିଲେ । ଏ ସ୍ମୃତି ଅଭୁଲା ରହିଛି ଓ ରହିବ । ତାଙ୍କ ଭିତରେ ଯେଉଁ କର୍ମ ପ୍ରେରଣା ସୃଷ୍ଟିକରାଯାଇଥିଲା ସେ ମଧ ଏବେବି ଜାଗ୍ରତ ଯେଉଁଥିପାଇଁ ସେ ଆଜିବି କୃତଜ୍ଞ ଓ ଉଚ୍ଚ ପଦାଧିକାର କରିଛନ୍ତି ।

ଧୁନବାବୁ ଥାନ୍ତି ବିଡିଓ । ପାଖରେ ଘର । ସବୁଦିନ ଘରକୁ ଚାଲିଯାନ୍ତି । ବିଳମ୍ବରେ ଆସନ୍ତି । ଗାଡିଟା ଗାଡିରେ ବନ୍ଧା । ଗ୍ରାମ ସେବିକା ମାନଙ୍କ ସମ୍ବନ୍ଧରେ ମଧ ତାଙ୍କର ନିନ୍ଦା

ହୁଏ । ସେ ତାକୁ ଭ୍ରୂକ୍ଷେପ କରନ୍ତିନି । କୌଣସି ଗୋଟିଏ ହେଲେ ଉନ୍ନୟନ କାମ ଆରମ୍ଭ ମଧ୍ୟ କଲେନି । ଗପ୍ପ କରନ୍ତିନି ଏବଂ ଯାହାବା କରନ୍ତି ତାର ବିବରଣୀ ଦିଅନ୍ତିନି । କାମର ପିଆରା ଓ ସବୁଠୁ କାମିକା ଜିଲ୍ଲାପାଳ ଭେଙ୍କଟ ରମଣି ତାଙ୍କର ଏତାଦୃଶ ବ୍ୟବହାରରେ କ୍ଷୁର୍ଣ୍ଣହୋଇ ତାଙ୍କୁ ତାଲିମ୍ ପାଇଁ ପଠାଇ ମୋତେ ଦାୟିତ୍ୱ ଦେଇ କାମସବୁ ଆରମ୍ଭ କରିଦେବାରେ ସମସ୍ତେ ସୁଖୀ ହେଲେ । ମାତ୍ର ଧୁନ ବାବୁଙ୍କମନ ତାଲିମ୍‌ରେ ନଥିଲା । ଗଲାବେଳେ ଟ୍ରେଜେରୀ ଚାବି ଦେଇନଥିଲେ । ବିଳମ୍ବରେ ମିଳିଲା । ଅଧାତାଲିମରୁ ଫେରି ଏସବୁ କାଣ୍ଡ କାରଖାନା ଦେଖି ଚମକି ପଡିଲେ । ଖଟି ଖଟି ସେତେବେଳକୁ ମୁଁ ବେମାର ହୋଇଯାଇଥାଏ । ଶର୍ଦ୍ଦିକାଶରେ ଅସ୍ତବ୍ୟସ୍ତ ହେଉଥିବାରୁ ଚିକିତ୍ସାପାଇଁ ଡାକ୍ତରଙ୍କ ପାଖକୁଯିବାରୁ ସେ ଯକ୍ଷ୍ମା ବୋଲି ସନ୍ଦେହ କଲେ । ଛୁଟିରେ କଟକ ଆସି ରକ୍ତ ପରୀକ୍ଷା ଓ ଛାତିର ଫଟୋ ନେବାରେ ଅଟିରିକ୍ତ ଇସୋନଫେଲିଆ ବୋଲିଜାଣି ମାମୁଁ ଡାକ୍ତର କୁଳମଣି ମିଶ୍ରଙ୍କ ଚିକିତ୍ସାରେ ଭଲହୋଇ ପୁଣି ଚାକିରୀରେ ଯୋଗଦେଲି ।

ସେତେବେଳେ ସଭାପତି ଥାନ୍ତି ସ୍ୱାଧୀନତା ସଂଗ୍ରାମୀ ନାରାୟଣ ବୀରବର ସାମନ୍ତ । ତାଙ୍କୁ କମ୍ୟୁନିଷ୍ଟମାନେ ବ୍ୟତିବ୍ୟସ୍ତ କରନ୍ତି ଧୁନବାବୁଙ୍କ ନିଷ୍କ୍ରିୟତା ପାଇଁ । ଯାହାହେଉ ସେ ଏଥିରୁ ରକ୍ଷା ପାଇଲେ । ଖଟିଖଟି, ଖାଇବା ପିଇବା, ଗୋଧୋଇବା, ଶୋଇବା ସବୁଥିରେ ହେଳାକରି ଶର୍ଦ୍ଦିକାଶ ବଢିଗଲା । ଛୁଟି ନେବାକୁ ହେଲା । ଚିକିତ୍ସାରେ ସୁସ୍ଥ ହୋଇଛି କି ନାହିଁ ପୁଣି ଏକ ଯୁଦ୍ଧର ଡାକରା ଆସିଲା ।

କୁଜଙ୍ଗରେ ଥିବା ସମୟରେ ଦିନେ ତାର ବାର୍ତ୍ତା ଆସିଲା । ମାଥ୍ୟୁସ୍ ସାହେବ ଆସିବେ । ଆଗରେ ଆସି ପହଞ୍ଚିଲେ ପରିଜା ସାହେବ । ଗାଡିରେ ଗାଡିଏ ଝିଅଧରି । ପାରାଦ୍ୱୀପରେ ରହଣି ହେବ । ବ୍ୟବସ୍ଥା କରିବାକୁ ହେବ, ଖଟିଖିଆ, ନେଙ୍ଗୁଟିମରାବ୍ରାହ୍ମଣ କି ଜାଣେ ଡାକ ବଙ୍ଗଳା, ନୌକା ବିହାର, ଦଳେ ଝିଅଙ୍କ ସହ ଭି.ଆଇ.ପିଙ୍କର ରାତ୍ରି ରହଣି ବ୍ୟବସ୍ଥା । ଦୁଇଟଙ୍କାର ଲୁଣି ବିସ୍କୁଟ୍ ଆଉ ଦଶକପ୍ ଚା, ପାଞ୍ଚଟଙ୍କା ମଧ୍ୟରେ ବ୍ୟବସ୍ଥାକରି ରାତ୍ରିରହଣି ବ୍ୟବସ୍ଥା ସମ୍ବନ୍ଧରେ ନିଜର ଅପାରଗତା ଜଣାଇବାରେ ତହସିଲଦାର ଖୁସିହୋଇ ସେ ଦାୟିତ୍ୱ ନେଇଗଲେ । ବହୁତ ଲୋକ କହିଲେ ଚାକିରୀ ଗଲା । ମାଥ୍ୟୁସ୍ କ'ଣ ଛାଡିବ ! ରଖିବା ଲୋକ ସେଇ ମହାବଳବନ୍ତ ଠାକୁରେ ଯାହାକୁ ରଖିବେ ତା'ର କିଏ କ'ଣ କରିବ ? ତାଳଗଛ ପ୍ରମାଣ ଲହଡି ଆସିବା ଦେଖି ମୁଣ୍ଡ ନଇଁ ଦେଲେ ସେ ଚାଲିଯିବ । ଛାତି ଦେଖାଇ ଦେଲେ ତୁମେ ଭାସି ଚାଲିଯିବ । ଠାକୁରେ ସବୁଠୁଁ ବଡ ରଖୁଆଳ । ସେ ହିଁ ରଖିଲେ ।

## ୮୧. ବିଦ୍ରୋହ ଦମନ

ସେତେବେଳେ ଏବେକାର ଜଗତସିଂହପୁର ଜିଲ୍ଲାର କୁଜଙ୍ଗ ଓ କଟକର ଟାଙ୍ଗୀ ଏକା କଟକ ଜିଲ୍ଲା ଓ କଟକ ସଦର ସବ୍‌ଡିଭିଜନ୍ ଭିତରେ ଥିଲା । ଉମାଚରଣ ପାତ୍ରୀ ଥାନ୍ତି ଏସ୍.ଡି.ଓ । ଶ୍ରୀରାମ ମହାନ୍ତିଙ୍କ ପରେ ସେ ଖୁବ୍ ପାରିବାର ଲୋକ ଥିଲେ । ଦିନେ ଯାଇ

କହିଲେ ଟାଙ୍ଗି ଚାଲ । ଜିଲ୍ଲାପାଳଙ୍କ ଆଦେଶ; ସେଠି ଗଣ୍ଡଗୋଳ ହୋଇଛି । ଯାଇ ଶୀଘ୍ର ଚାର୍ଜ ନିଅ । ଅବଶ୍ୟ ହଠାତ୍ ଯାଇ ନପାରିବାରୁ ଗଲାବେଳକୁ ପୂର୍ବତନ ବି.ଡି.ଓ ଚାର୍ଜ ଦେଇ ଚାଲିଯାଇଥିଲେ ।

ସେଠିକାର ପ୍ରତ୍ୟେକ ଗୋଡି ଶାଳଗ୍ରାମ । ଟାଇପିଷ୍ଟ ଗୋକୁଳି ଟେବୁଲ ପାଖରେ ଅଧଟୋକେଇ ସିଗାରେଟ୍ ମୁଣ୍ଡି ପକାଇଥାଏ । ପାଟିରୁ କେବେ ସିଗାରେଟ୍ ଛାଡେନି । କଥାମାନି କାମ କରେନି । ଯେତିକି କରେ ଅବଶ୍ୟ ଭଲକାମ ଓ ଫୁର୍ତ୍ତିକାମ ମଧ୍ୟ । ଭଲ ହେଉ ମନ୍ଦ ହେଉ ଯାହା ଟାଇପ୍ କରେ ସମସ୍ତଙ୍କୁ ଜଣାଇଦିଏ । ଆଉ ଜଣେ ଥିଲେ ଲେଙ୍କାବାବୁଙ୍କ ପୁତୁରା । ସେ କ୍ଷମତାସୀନ ଦଳର । ଧରାକୁ ସରା ମଣନ୍ତି । ମନଇଚ୍ଛା ଆସନ୍ତି ଓ ଯାନ୍ତି । ପଶୁଡାକ୍ତର ଚୌଧୁରୀ ସମ୍ପୂର୍ଣ୍ଣ ସାହେବ । ତାଙ୍କୁ କିଛି ପଚାରିବା ଅପରାଧ । ସେ ନିଜ ହାତରେ ଚଉଦପା । ଡ୍ରାଇଭର ପଣ୍ଡା ଗଞ୍ଜେଇରେ ଓସ୍ତାଦ୍ । ଟିକେ ଚିଡିଗଲେ ଦୋ ଅକ୍ଷରି ବାହାରେ ଚଡପାଟିରେ । ସମବାୟ ସଂପ୍ରସାରଣ ଅଧିକାରୀ ସ୍ଥାନୀୟ । ଘରୁଯାଆସ କରନ୍ତି । କିଛି କାମ ବତାଇଲେ ସେ ଅସୁସ୍ଥ ଲୋକ ଓ ତାଙ୍କୁ ବ୍ୟସ୍ତକରିବାର ଫଳ ଖରାପ ବୋଲି ତାଗିଦ୍ କରିଦିଅନ୍ତି । ଓଭରସିଅରଙ୍କର ଚାରଖୁଣ ମାଫ୍ । ଉନ୍ନୟନ କାମ ନଥିବାରୁ ସେ ପୂରାପୂରା ଫାଙ୍କିଆ । ଅବଶ୍ୟ ମନଟି ଭଲଥାଏ । କିନ୍ତୁ ସେ ସ୍ଥାନୀୟ ବୋଲି ତାଙ୍କ ପଛରେ ରାଜନୀତି ଅଛିବୋଲି ସେ ମଧ୍ୟ ଶୁଣାଇ ଶୁଣାଇ କହନ୍ତି । ସ୍ଥା । ନ ୀ ୟ ସରପଞ୍ଚ ଅରକ୍ଷିତ ବାବୁ ମନ୍ଦ ପୋଖରୀରେ ରହନ୍ତି । ଦିନ ଦ୍ୱିପ୍ରହରରେ ଓ ସଂଧ୍ୟାରେ ମାଇକ୍ ଲଗାଇ ଆଖିବୁଜା ଅସଭ୍ୟ ଭାଷାରେ ଗାଳିବର୍ଷଣ କରନ୍ତି । ତାଙ୍କୁ ପାଟି ଫିଟାଇବାର ଯୁ କାହାର ନଥାଏ । ଭଗତ୍‌ପୁରର ସରପଞ୍ଚ ହେଉଛନ୍ତି ରାଜା ତିଆରି କରିବାବାଲା । ତାଙ୍କୁ ହାକିମ ମାନେ ଡରନ୍ତି । ଜମିଦାରୀ ଉଠିଯାଇଥିଲେ ମଧ୍ୟ ସେ ଥିଲେ ସେବେଯାଏ ଜମିଦାର । ନାଁ ଖାଲି ସରପଞ୍ଚ । ଏପରି ପରିସ୍ଥିତିରେ ସମସ୍ତେ ଏକଜୁଟ୍ ହୋଇ ହସଖୁସି ବିଡିଓ ରଣାବାବୁଙ୍କୁ ସେଠୁ ଖବରକାଗଜରେ ଲେଖି, ରାଜନୀତିଆଙ୍କୁ ଧରି ବିଦା କରିଛନ୍ତି । ବିଜୟର ଉଲ୍ଲାସରେ ସମସ୍ତେ ମଜଗୁଲ୍ । ତେଣୁ କାହାକଥା କିଏ ଶୁଣୁଛି ? ହେଲେ ଏସ୍‌ଡିଓ ଓ ଜିଲ୍ଲାପାଳ ଦୃଢ ହସ୍ତରେ ଏମାନଙ୍କୁ ଦମନ କରି ଉନ୍ନୟନ କାମ ଯୋରସୋର କରିବାକୁ ବଳ ଦେଇଥାନ୍ତି । ପ୍ରଥମ କରି ଓଭରସିଅରକୁ ଧରି ଅଫିସ ଘର ପାଇଁ ଟେଣ୍ଡର ମାଗିବା ନୋଟିସ୍ ଜାରି ହେବା କ୍ଷଣି ଜିଲ୍ଲାପାଳଙ୍କଠାରୁ ଆସିଲା ରହିତା ଦେଶ । ଯାହାହେଉ ନିଜେ ଯାଇ ଅବସ୍ଥାଟି ବୁଝାଇ ଦେବାରୁ ରହିତା ଦେଶ ଉଠିଲା ଓ କାର୍ଯ୍ୟ ଆଦେଶ ଦିଆଯାଇ ଅଫିସଘର କାମ ଆରମ୍ଭ ହେଲା । ଏତକ ଦେଖିବା ପରେ ଯେଉଁ ବଳବାନ ପକ୍ଷ ଟେଣ୍ଡର ବନ୍ଦ କରିଥିଲେ ଭାବିଲେ ଯେ ଏ ଲୋକର ମଧ୍ୟ କିଛି ବଳ ଅଛି ।

କେତେଜଣ ବଦଳି ହେଲେ । ଅଫିଂସଘର ଓ ବିଶାନାହାକାଣୀ ଆଶ୍ରମ ସ୍କୁଲ ପରି ବଡ ବଡ ବହୁତ ଉନ୍ନୟନ କାମ ଆରମ୍ଭ ହେଲା । ସବୁ କର୍ମୀମାନେ କାମ ମୁହାଁ ହେଲେ । ଧାରା ବଦଳିଗଲା । ଏତିକି ବେଳେ ଗୋପବାବୁ ବି.ଡି.ଓ ହୋଇ ଆସିଲେ । ସେ ଖୁବ୍ ଟାଣୁଆ ଓ ସ୍ନେହୀ । ତାଙ୍କ ସ୍ତ୍ରୀ ମୋ ଅସୁସ୍ଥତା ବେଳେ ବହୁତ ସାହାଯ୍ୟ କରିଛନ୍ତି । ଏବେ ମଧ୍ୟ ସେକଥା ମନେପଡେ । ଏବେଯାଏ ମାସିକ ଟ ୧୪୭ ଦରମାରେ କାମ କରୁଥାଏ । ଏଇଠି ଟିକେ ବିଶ୍ରାମ ମିଳିବାରୁ ଦରମା ଧାର୍ଯ୍ୟ କରାଇବାର ସୁଯୋଗ ମିଳିଲା ଓ ବାକିଆ ବଢ଼ା ଦରମା ମିଳିଲା । ଏହି ସମୟରେ ଜଗତପୁର ନଈକୂଳ ଡାକ ବଙ୍ଗଳାରେ ସବୁ ବି.ଡି. ଓ. ଓ ଏସ୍. ଡି. ଓ ମିଶି ସଭାକଲେ ଓ ଚନ୍ଦା ଦେଇ ଭୋଜି ଭାତ ହେଲା । ସ୍ଥାନୀୟ ବି.ଡି. ଓ ହିସାବରେ ମୋତେ ଆୟୋଜନ କରିବାକୁ ପଡିଲା । ଗାଁରୁ ରଥ କକେଇଙ୍କୁ ଡାକି ଭଲ ରୋଷେଇ କରି ଖାଇବାକୁ ଦେବାରେ ସମସ୍ତେ ଖୁସି ହୋଇ ରୋଷେଇ ବାଲାଙ୍କୁ ଡାକିଲେ । ମୁଁ ପରିଚୟ ଦେଲି, ସେ ମୋ ଗାଁ ଓ ପଡିଶାର କକେଇ । ରଥ କକେଇ ଜିଭ କାମୁଡିପକାଇ କହିଲେ, " ତୁ ଜଣେ ହାକିମ ହୋଇ ମୋତେ କକେଇ ଭାବେ ପରିଚୟ ଦେବାକୁ ଲାଜ ଲାଗିଲାନି ।" ମୁଁ କହିଲି କକେଇ କକେଇ । ସେ କିପରି ବଦଳିବେ ।

ଏହିଠାରେ ଥିବାବେଳେ ଶତ୍ରୁଘ୍ନ ସାହୁ ଥିଲେ ପଂଚାୟତ ସମିତିର ଅଧ୍ୟକ୍ଷ । ଆମ ଦୁହିଁଙ୍କର ମନରେ ଖୁବ୍ ମେଳ । ସେତେବେଳେ ଅନି (ମୋସ୍ତ୍ରୀ)ର ଟାଇଫଂଏଡ୍ ହୋଇ ଗିଲାସକଲା । ତାଙ୍କଗାଡିରେ ତାକୁ ତାଙ୍କ ଗାଁରୁ ଆଣି ଭାଇନାଙ୍କ ପାଖରେ ଚୌଦ୍ୱାରରେ ରଖି ରାଘବ ବାବୁଙ୍କ ଚିକିତ୍ସା ସୁରୁ କଲି । ଶତ୍ରୁଘ୍ନ ବାବୁଙ୍କ ପ୍ରେରଣାରେ ସେତେବେଳେ ନିର୍ମାଣାଧୀନ ଜାତୀୟ ରାଜପଥର ପୋଲ, ଗଡା ଓ ନିର୍ଗୁଣ୍ଡି ପିରିବର୍ତେ ମଙ୍ଗୁଳି ଚୁକରୁ ଢେଙ୍କାନାଳ ଆଡକୁ ରାସ୍ତାପାଇଁ ବହୁତ ଚିଠି ଲେଖିଥିଲୁ । ଏସବୁ ବ୍ଲକର କାମ ନହେଲେ ମଧ୍ୟ ଏଥିରେ ବ୍ଲକ ଲୋକଙ୍କର ସ୍ୱାର୍ଥ ଜଡିତ ଥିଲା ।

ଖଟିବାର ମଜୁରୀ ମିଳିଲା । ଠାକୁରେ କାହାରି ମୂଳ ବୁଡାନ୍ତିନି । ୩ ବର୍ଷ ପୁନର୍ମୂଷିକ ଅବସ୍ଥାରୁ ମୁକ୍ତି ମିଳି ପୁଣି ବିଡିଓ ହୋଇ ପାଲଲହଡା ଚାଲିଯିବାକୁ ହେଲା ।

## ୮୨. ଫକୀର ମୋହନଙ୍କ ପୁରୁଣା ସ୍ଥାନରେ

ସେକାଳରେ ବ୍ୟାସକବି ଫକୀର ମୋହନ ପାଲଲହଡାକୁ ଦେୱାନ୍ ହୋଇଯାଇଥିଲେ । ସେତେବେଳେ ହୁଏତ ରାଜୁଡା ଶାସନରେ ପାଲଲହଡା ଖୁବ୍ ସମୃଦ୍ଧ ଥିବ । ପୁଣି ବ୍ୟାସକବି ଫକୀର ମୋହନଙ୍କ ପରିଚାଳନାରେ ପ୍ରଜାକୁଳ ନିଶ୍ଚିତ ସୁଖ ଶାନ୍ତିରେ ଥିବେ । ହେଲେ ଏତେବେଳର ପାଲଲହଡାର (୧୯୬୬) ଅବସ୍ଥା କହିଲେ ନ ସରେ । ପାଲଲହଡାକୁ ରାସ୍ତା ନାହିଁ । ଦିଆସିଲି ଖୋଳଭଳି କାଞ୍ଜିମଞ୍ଜି କମ୍ପାନୀର ବସ୍‌ଟିଏ ଚାଲିଥାଏ । ହାଟ ଗଣତି

କେତେଖଣ୍ଡ ଦୋକାନ, ଥାନା, ଜଙ୍ଗଲ ବିଭାଗ ସହିତ ଗୋଟିଏ ବ୍ଲକ୍‌କୁ, ଗୋଟିଏ ତହସିଲ୍ ଓ ଗୋଟିଏ ସବ୍‌ଡିଭିଜନ୍ । ଲୋକଙ୍କର ଆର୍ଥିକ ପରିସ୍ଥିତି ଦୟନୀୟ ।

ରାଜନଅର ଭାଙ୍ଗିରୁଜି ନାଗଖାର । ରଜା ଘର ଚାଉଳ କିଣା । ହେଲେ ରାଜାଙ୍କ ସ୍ଥାନରେ ଥିବା ଏସବୁ ଥିଲେ ଖୁବ ଜାକଜମକରେ । ସେ ନିଜକୁ ମଣୁଥିଲେ ରାଜାଧିରାଜ । ରାଜୁତା ଯିବାପରେ କୋର୍ଟ, ଜିପ୍, ବଙ୍ଗଳା, ପିଅନ । ରଜାଙ୍କର ଏସବୁ କାହୁଁ ଆସିବ ? ଆମ ବ୍ଲକ୍‌ର ଅର୍ଦ୍ଧ ଶିକ୍ଷିତ କୃଷି ସଂପ୍ରସାରଣ ଅଧିକାରୀ ପୁରା ଶାଳିଆ କଦଳୀ କାନ୍ଦି, ବଡ ବଡ ଅମୃତଭଣ୍ଡା ଭେଟିଦେଇ କୃଷିର ଅଗ୍ରଗତି ତାଙ୍କୁ ହିଁ ବୁଝାଇ ଦିଅନ୍ତି । ତତ୍‌କାଳୀନ ଅବିବାହିତ ବଙ୍ଗାଳୀ ଜିଲ୍ଲାପାଳ ମଧ୍ୟ ଏ ଅମୃତଭଣ୍ଡା ଓ କଦଳୀ କାନ୍ଦିର ମୋହରେ ବନ୍ଧା ଓ କୃଷି ଅଗ୍ରଗତିରେ ସନ୍ତୁଷ୍ଟ । ହେଲେ ଏଣେ ଢୋଲ ଭିତରେ ମୂଷା । ବିହନ ବିକ୍ରୀ ଖର୍ଦ୍ଦି ଓ ପ୍ରଦର୍ଶନ କ୍ଷେତ୍ରପାଇଁ ମିଳୁଥିବା ସାର, ଔଷଧ ଓ ବିହନ ସମ୍ପୂର୍ଣ୍ଣ ଭାବେ ଆତ୍ମସାତ୍ । ତାଙ୍କୁ ଦୃଢ ହସ୍ତରେ ଧରି ତାଙ୍କ କାଗଜ ପତ୍ର ଗୁପ୍ତରେ ରେଜେଷ୍ଟ୍ରି ଡାକରେ ପଠାଇଥିଲେ ଓ ଜିଲ୍ଲାପାଳ ପାଇ ମଧ୍ୟ କୃଷି ଅଗ୍ର ଗତିରେ ବିଭୋର ହୋଇ କାହିଁକି କାଗଜ ଜବତ୍ ହୋଇଛି ବୋଲି ଓଲଟି ପ୍ରଶ୍ନ କରିବାକୁ ପଛେଇ ନଥିଲେ । ହେଲେ ତାଙ୍କର ଇଚ୍ଛାପୂର୍ଣ୍ଣ ହେବା ଆଗରୁ ସେ ବଦଳୀ ହୋଇଗଲେ ଏସ୍ ଡି ଓଙ୍କ ସହିତୀ ଫଳରେ କୃଷି ସଂପ୍ରସାରଣ ଅଧିକାରୀ ନିଲମ୍ବିତ ହୋଇଗଲେ ଓ ମୋର ବଦଳି ବେଳେ ଗଣ୍ଡଗୋଳ ସୃଷ୍ଟି କରିବାକୁ ଉଦ୍ୟମ କରି ପୋଲିସ୍ ଦ୍ୱାରା ନିବୃତ୍ତ ହେଲେ ।

ସେଠାରେ ଦୁର୍ଗାପୂଜା ସମୟରେ ହେଉଥିବା ଡ୍ରାମାରେ ନିର୍ଦ୍ଦେଶନା ଓ କୃଷି ସଂପ୍ରସାରଣ ଅଧିକାରୀଙ୍କ କାଗଜ ଜବତ କରିବା ଅପରାଧରେ ଔଷଧ ଆଳରେ ଟାଟିଆ କାମୁଡିବା ପରି ମୋର ଗୁପ୍ତ ଚରିତ୍ର ପଞ୍ଜିକାରେ ଉଭୟ ଉପଜିଲ୍ଲାପାଳ ଓ ଜିଲ୍ଲାପାଳ ବଙ୍କେଇ କରି ଧାଡିଏ ଲେଖିବାକୁ ପଛେଇ ନ ଥିଲେ । ମାତ୍ର ସେଠାରେ କରାଯାଉଥିବା ବହୁଳ ଉନ୍ନୟନ କାର୍ଯ୍ୟ ବିଶେଷ କରି ଭୁଷାବାହାଲ କଦଳୀ ଚାଷ ଓ କମଳା ଚାଷର ସଂପ୍ରସାରଣ ସହ କୂପ, ପୁଷ୍କରିଣୀ ଓ ରାସ୍ତା ନିର୍ମାଣରେ ସ୍ଥାନୀୟ ଲୋକେ ଖୁବ୍ ସନ୍ତୁଷ୍ଟ ଥିଲେ ଏବଂ ଗଣନାରାୟଣଙ୍କର ଯେ ସନ୍ତୋଷ ସେ ବଙ୍କାଲେଖା ଧାଡ଼ିକୁ ଅଦୃଶ୍ୟରେ ସଳଖ କରିଦେଇଥିଲା ।

ଏଠାରେ ଥିବା ସମୟରେ ବଡପୁଅ ଟୁକୁର ପେଟରେ ଅସ୍ତ୍ରୋପଚାର କରିଥିଲେ ହୁରୁମାକେଇ (ଡା: ରମାକାନ୍ତ ମିଶ୍ର) ଯେ କି ସେତେବେଳେ ବୁର୍ଲା ସୁରେନ୍ଦ୍ରସାଏ ଡାକ୍ତରୀ କଲେଜ୍‌ରେ ସହକାରୀ ପ୍ରଫେସର ଥିଲେ । ସେଠୁ ମୋ ସ୍ତ୍ରୀ ହାଡଫୁଟି ନେଇ ଆସିଲେ । ଗୋଟିକପରେ ଗୋଟିଏ ଆମେ ସମସ୍ତେ ସେଥିରେ ଦୁଃଖ ଭୋଗିଲୁ । ଏପରିକି ଫେରିବା ବାଟରେ ମାଧ ଭାଇନାଙ୍କ ଘରେ ରାତିଟିଏ ରହି ତାଙ୍କ ପିଲାଙ୍କୁ ହାଡଫୁଟିର କଷ୍ଟ ଦେଇ

ଆସିଲୁ । ସେଠୁ ଫେରି ସହକାରୀ ରିଟର୍ଣ୍ଣିଂ ଅଫିସର ଭାବେ ଦଶଦିନ କଠିନ ପରିଶ୍ରମ କରିବା ପରେ ଶେଷରେ ମୁଁ ମଧ୍ୟ ଆକ୍ରାନ୍ତ ହୋଇଥିଲି । ମୋର ଅର୍ଦ୍ଦଳୀ ପିଅନ ଭୋଳାର ସେବା ଓ ବଙ୍ଗାଳୀ ଡାକ୍ତର ନନିଗୋପାଳ ବାବୁଙ୍କ ଚିକିତ୍ସା ଅବିସ୍ମରଣୀୟ ।

ଏତିକି ବେଳେ ପବିତ୍ରବାବୁ ହେଲେ ନିର୍ମଳ ଶାସନର ଉପମୁଖ୍ୟମନ୍ତ୍ରୀ । ସେ ଥିଲେ ଦୁର୍ନୀତି ବିରୋଧି । ସାରା ଓଡିଶା ବୁଲିବୁଲି ଭୈରବ ଡାକ ଦେଉଥିଲେ । ଦୁର୍ନୀତି ଗ୍ରସ୍ତ ଅଧିକାରୀଙ୍କୁ ଧରିବାକୁ ଲୋକଙ୍କୁ ମତାଉଥିଲେ ଓ ସମସ୍ତଙ୍କୁ ଡରାଉଥିଲେ । ସେ ଥରେ ଗସ୍ତରେ ଆସିଥିଲେ । ତାଙ୍କ ଶିବିରରେ ଖାଇଲେ ପ୍ରାୟ ଦେଢଶହ ଲୋକ । ସେଥିରୁ ମୁଖ୍ୟମାନଙ୍କ ପାଇଁ ମାଂସ ଦହି ଇତ୍ୟାଦି ସ୍ୱତନ୍ତ୍ର ଖାଦ୍ୟ ବ୍ୟବସ୍ଥା ହେଲା । ମୁଁ କିନ୍ତୁ ଧରା ଦେଇନଥିଲି । ସେ କଥା ତାଙ୍କ କାନକୁ ଗଲା । ସେ ବୁଝାଇ କହିଲେ ସୁରେନ୍ଦ୍ରବାବୁ ପାର୍ଲାମେଣ୍ଟରେ ଆମର ମୁଖପାତ୍ର । ତେଣୁ ତୁମେ ମଧ୍ୟ ଆମ ଲୋକ । ଆମ ଲୋକଙ୍କ କଥା ଦେଖିବନା ।

ତାପରେ ସେ ୩୧୪ଟି ଯାକ ବ୍ଲକର ବିଡିଓ ମାନଙ୍କୁ ନିର୍ମଳ ଶାସନର ଆଳରେ ବଦଳୀ କରି ପଞ୍ଚାୟତ ନିର୍ବାଚନ କରାଇବାରେ ପୁଣି ତାଙ୍କ ରାଜ୍ୟ ପର୍ଲଙ୍ଗକୁ ଯିବାକୁ ହେଲା । ସେଠିକାର ଅଧକ୍ଷ ଅର୍ଜୁନବାବୁ ଥିଲେ ତାଙ୍କରି ଲୋକ । ସେଠିକାର କୀର୍ତ୍ତିରାଜି ଶୁଣି ଖଣ୍ଡେ ଦଉଡିଆ ଖଟ, ବେଡିଂଭିତରେ ବନ୍ଧା ଶେଜ ବ୍ୟତୀତ ଆଉକିଛି ନ ଫିଟାଇ ଯାଉଁ ଯାଉଁ ବଦଳୀ ଚେଷ୍ଟାରେ ସବୁବେଳେ ରହିଥାଏ । ମୃଗୁଣୀକୁ ତା ଛୁଆସହ ଯେ ଉଦ୍ଧାର କରିଥିଲେ ତାଙ୍କରି ଦୟାରେ ମାତ୍ର ଛଅ ମାସ ମଧରେ ସେ ନର୍କରୁ ଉଦ୍ଧାର ମିଳିଗଲା ।

## ୮୩. ନିର୍ମଳ ଅମାନତ

ଯାଉଁ ଯାଉଁ ଚାଲିଲା ପଞ୍ଚାୟତ ନିର୍ବାଚନ । ଜଣେ ସରପଞ୍ଚ ଦ୍ୱିପ୍ରହରରେ ଧଇଁ ସଇଁ ହୋଇଆସି କହିଲେ – ହୋଇଗଲା । ଏଥର ପୂର୍ବ ପଞ୍ଚାୟତର ଅଗ୍ରୀମ ଥିଲେ ମଧ ଜଣେ ପୁଣି ପ୍ରାର୍ଥୀ ହୋଇ ପାରିବ ବୋଲି ଆଇନି ହୋଇଗଲା । ହେଇଆସି ପହଞ୍ଚିଯିବ । ପବିତ୍ରବାବୁ କରିଦେଲେ ଓ କହିଲେ । ସେ ଭଦ୍ର ଲୋକଙ୍କର ଠିକ୍ ତା' ପରଦିନ ଥାଏ ପ୍ରାର୍ଥୀପତ୍ର ଯାଞ୍ଚ । ଆଖିବୁଜି ଆଇନି ମୁତାବକ ନିର୍ମଳ ଭାବେ ପ୍ରାର୍ଥୀପତ୍ର ଅଗ୍ରୀମ ଥିବା କାରଣରୁ ନାକଚ କରିଦେବାରେ ସେ ଖୁବ୍ କିଛି ତମ୍ବି ତୋଫାନ କରି ତୁନି ରହିଲେ; ଠିକ୍ ଯୋକ ମୁହଁରେ ଲୁଣ ଦେଲାପରି । ଯୋଗକୁ ବ୍ରହ୍ମା ଖଣ୍ଡନ୍ତିନି । ସେହି କୋକୁଆ ଭୟରେ ସେ ଆଠଦିନ ମଧ୍ୟରେ ପ୍ରାର୍ଥୀପତ୍ର ଯାଞ୍ଚ ପୂର୍ବରୁ ଅନ୍ୟୂନ ଲକ୍ଷେ ଟଙ୍କା ଅଗ୍ରୀମ ଫେରସ୍ତ ମିଳିଗଲା । ହେଲେ ଟଙ୍କା ଦେଇ ମଧ ଛାଡନାହିଁ । ନିର୍ମଳ ଶାସନରେ ଶାସକଙ୍କ ସମର୍ଥକମାନେ ହିଁ ନିର୍ମୂଳ ହୋଇଗଲେ ।

ମାଣିକ ମରାର ସରପଞ୍ଚ ପ୍ରାଥମିକ ଭୋଟ ଗଣତିରେ ହାରିଯାଇଥାନ୍ତି । ସେ ହେଉଛନ୍ତି ନିର୍ମଳ ଶାସକଙ୍କ ନିର୍ମଳ ଓ ନିକଟ ସହକର୍ମୀ ଓ ପୁରୁଣା ବନ୍ଧୁ । ଖରାବେଳେ ଆସି

ପହଞ୍ଚିଲେ ରାମବାରିକ; ଦୃଢ ପଣରେ । ଘରେ ତ' ଏକାଥାଏ । ଘରେ ପଶି ଦୁଇଟଙ୍କିଆ ନୋଟ୍‌ର ବିଡାଟା ଟେବୁଲ ଉପରେ କାଡେଇ ଦେଇ ଥୋଇ ଦେଲେ । କହିଲେ, ଏଇଟା ରହିଲା ଆପଣଙ୍କ ପାଖରେ ଘରୋଇ ଭାବେ ଆମ ଅମାନତ । ଆପଣ ନିଜେ ଆଉ ଥରେ ଗଣି ଦେଖନ୍ତୁ । ଭୋଟ ଗଣତିରେ ଭୁଲ୍ ଅଛି । ଆମେ ହାରିଲେ କି ଜିତିଲେ ଆଉ ଏ ଟଙ୍କା ନେବୁନି । ଆଇନି କହୁଛି ବିଭିନ୍ନ ୱାର୍ଡରୁ ମିଳିଥିବା ଗଣତିର ଫଳକୁ ମିଶାଇ ଚନଖିକରି ଫଳାଫଳ ଘୋଷଣା କରାଯିବ । ଏପରିସ୍ଥଳେ ପୁନର୍ଗଣତିର ପ୍ରଶ୍ନ ନାହିଁ କହି ଏ ଟଙ୍କା ଶୀଘ୍ର ନେଇ ଏଠୁ ପଳା ନ ହେଲେ ଅସୁବିଧାରେ ପଡିବ ବୋଲି ନିର୍ମଳ ଓ ରୋକ୍‌ଠୋକ୍ ନିର୍ଦ୍ଦେଶ ପାଇ ସେ ଟଙ୍କା ନେଇ ପଳେଇଲେ ।

ନିର୍ବାଚନ ପରେ ଉନ୍ନୟନ କାମ ସବୁ ଯାଞ୍ଚ ମାପ ଆରମ୍ଭ ହେଲା । ପାଣିପୋଖରୀରେ ଗାମୁଛା ପିନ୍ଧି ପଶି ମାପିବାର ଦେଖି ଅର୍ଜୁନବାବୁ ଯେ କି ପଞ୍ଚାୟତ ସମିତି ସଭାପତି ଥିଲେ ସେ ହସିଲେ । ତାଙ୍କ ସହ ଆଉ ବହୁତ ଲୋକ ମଧ ହସିଲେ । ନିର୍ମଳ ଶାସନରେ ଆଉ କ'ଣ ଘରେ ବସି ମାପ ବହିରେ ଦସ୍ତଖତ ଚଳେ ? ସଭାପତି ଦୁଇ ତିନିଥର ବୁଝାଇ ନିରସ୍ତ ହେଲେ । କଟକ ଭୁବନେଶ୍ୱର ଆସିଲେ କିଛି ଫଳ ଇତ୍ୟାଦି କିଣିନେଇ ପଠାନ୍ତି । ଘରୁ ଆଣିଥିବା ନଡିଆ ଇତ୍ୟାଦି ଦେଇ ସେ ଋଣ ପରିଶୋଧ କରାଯାଏ ।

ଯେ ଅବସ୍ଥା ଦେଖି ସେ ହତାଶ ହୋଇ ଖୋଲି ପଚାରିଲେ; ଆପଣ କ'ଣ ସତରେ ଏଠି ରହିବେନି ? ତେବେ ମୁଁ କ'ଣ ବଦଳୀ ବ୍ୟବସ୍ଥା କରିବି ? ଆସ୍ତିସୂଚକ ଉତ୍ତର ପାଇ ତା ଆରଦିନ ଭୁବନେଶ୍ୱର ଯାଇ ନୀଳଗିରିକୁ ବଦଳି କରିଦେଲେ । ସତକୁ ସତ ଏତେଶୀଘ୍ର ଏ ବ୍ୟବସ୍ଥା ଦେଖି ଭୁବନେଶ୍ୱର ଆସି ସଚିବାଳୟ ବାରଣ୍ଡାରେ ବୁଲୁଥାଏ । ଠାକୁରଙ୍କ ଛଡା ଅନ୍ୟକେହି ରଖୁଆଳ ନାହିଁ; ଏକଥା ଦୃଢ ଭାବରେ ଜାଣି ମଧମୋହ ଗ୍ରସ୍ତ ଅବସ୍ଥାରେ ଆଶ୍ରାଖୋଜୁ ଥାଏ । ଏତେବେଳକୁ ଚାକିରୀରେ ବଦଳି କେତେଥର ହେଲାଣି । ଯୋଉଠିକି ହୁଏ ଖୁସିରେ ଚାଲିଯାଏ । ଏଥର କାହିଁକି କେଜାଣି ମାୟା ଘାରିଲା; ସେ କଥା ସେହି ମାୟାଧରଙ୍କୁ ଜଣା ।

ସୁରିଆନା ଯୋଜନା ବୋର୍ଡର ଉପାଧକ୍ଷ ଥାନ୍ତି । ହଠାତ୍ ସଚିବାଳୟ ବାରଣ୍ଡାରେ ଦେଖାହେଲା । ସବୁ କହିଲି । ଉତ୍ତର ମିଳିଲା ମୁଁ ସେସବୁ କାମରେ ମୁଣ୍ଡ ପୁରାଉନି । ଏତିକି କହି ସେ ଚାଲିଗଲା ପରେ ସେହିଠାରେ ଦେଖାହେଲେ ମନ୍ତ୍ରୀ ବୃନ୍ଦାବନ ତ୍ରିପାଠୀ । ବଡ ଖୋଲା ଲୋକ । କାନ୍ଧରେ ହାତଟି ପକାଇ ସବୁକଥା ପଚାରି ବୁଝି କହିଲେ; ଏସବୁ ଅର୍ଜୁନର କାମ । ଆସନ୍ତୁ ମୋ ସାଙ୍ଗରେ । ତାଙ୍କ ସାଙ୍ଗରେ ତାଙ୍କ କକ୍ଷକୁ ଯିବାରେ ସେ ପଞ୍ଚାୟତ ରାଜ ମନ୍ତ୍ରୀଙ୍କୁ ଫୋନ୍ କରି ସାଙ୍ଗେସାଙ୍ଗେ କେନ୍ଦ୍ରାପଡା ଦୁଇନମ୍ବର ବ୍ଲକ୍‌କୁ ପୁଣି ବଦଳୀ କରିଦେଲେ । ତାଙ୍କୁ ଧନ୍ୟବାଦ ଦେଇ ସାଙ୍ଗେ ସାଙ୍ଗେ ପର୍ଜଙ୍ଗ ଯାଇ ଭୋରରୁ ତର୍ପଣ କାମ ସାରି ସକାଳ ୬ଟାରେ ତାଳଚେରରୁ ଟ୍ରେନ ଧରି ଘରକୁ ଚାଲିଆସିଲି; କେନ୍ଦ୍ରାପଡା ଉଦ୍ଦେଶ୍ୟରେ । ତର୍ପଣ

ସେତେ ବେଳକୁ ୯ଦିନ ଯାଇଥିଲା । ହାତରନ୍ଧା, ଏକଓଲିଆ ଖିଆ ବହୁତ କଷ୍ଟ । ଘରକୁ ଆସିଯିବାରେ ଟିକେ ଶିହାଟି ମିଳିଗଲା । ତର୍ପେଣ ଶେଷରେ ଯାଇ କେନ୍ଦ୍ରାପଡାରେ ଯୋଗଦେଲି । ଅର୍ଜୁନବାବୁ ଯଦି ବଦଳୀ ନ କରାଇଥାନ୍ତେ ଛ'ମାସରେ ମୁଁ କେମିତି ପର୍ଜଙ୍ଗଠାରୁ ଖସିଥାନ୍ତି ? ଈଶ୍ୱର ତାଙ୍କ ଦ୍ୱାରା ଏ ବଡ କାମଟି କରାଇଦେଲେ । ନୀଳଗିରି କମ୍ୟୁନିଷ୍ଟ ଜାଗା । ସେଠିକି ଗଲେ ପାନେ ପାଇବି । ଏହାଥିଲା ତାଙ୍କର ଭିତିରି ଇଚ୍ଛା । ଈଶ୍ୱରଙ୍କ ଇଚ୍ଛା ସେ କୁଆଡୁ କେମିତି ଜାଣିବେ ?

ପର୍ଜଙ୍ଗ ଗୋଟେ ଅଜବ ଯାଗା । ଏପଟେ ତାଳଚେର ପାଖ । ହେଲେ ରାସ୍ତାନାହିଁ । ନଈ ପ୍ରତିବନ୍ଧକ । ଟ୍ରେଜରୀ ଓ ସବ୍‌ଡିଭିଜନ ଅଫିସ୍ କାମାକ୍ଷା ନଗରରେ । ସେଠାକୁ ରାସ୍ତାନାହିଁ ଓ ନଈ ପ୍ରତିବନ୍ଧକ । ବସ୍ ମଧ୍ୟ ନଥାଏ । ବ୍ଲକ୍ ଗାଡି ବାହାରିଲେ ନିହାତି ୧୦ଜଣ ସହଯାତ୍ରୀ ବାହାରନ୍ତି । ଜାତି ନନ୍ଦିଘୋଷ ବୋଲି ମୁଁ ନାଁ ଦେଇଥାଏ । ଧନ୍ୟ ସେ କେଶୀ ଡ୍ରାଇଭରକୁ । ଗାଡିଟିକୁ ସବୁବେଳେ ସଚଳ ରଖିଥାଏ । ଲୋକେ ମଧ୍ୟ ଭଦ୍ର । ବିଡିଓ ନବସିଲେ କେହି ବସନ୍ତିନି ।

ବହୁତ ଗ୍ରାମ କୁଷ୍ଠରୋଗୀରେ ଭରା । ସାନ୍ଦା ସେ ମଧ୍ୟରୁ ପ୍ରଧାନ । ନିର୍ମଳ ଶାସନରେ ନିର୍ମଳ ପଞ୍ଚାୟତ ନିର୍ବାଚନରେ ବହୁ ନିରକ୍ଷର, ଟାଉଟର, ପୁରୁଣା ପ୍ରତିନିଧି ନିର୍ମୂଳ ହୋଇଯାଇଥିଲେ ଓଡିଆ ଆଇନିବହି ପଢିନପାରି, ଅଗ୍ରୀମ ଓ୍ୱାପସ୍ କରିନପାରି ଓ ଟିକିଟିକି ଆଇନି ଖିଲାପ କରି । ଏଠି ଦୋକାନ ବଜାର, ଜଳଖିଆ ଦୋକାନ ବା ହୋଟେଲ ନଥାଏ । ଯଦିକିଏ କରେ ପାଇକାଳିଆ ଗାଁ ଲୋକେ ବାକି ଖାଇ ଶେଷକରି ଦିଅନ୍ତି । ପଇସା ମାଗିଲେ ଘର ପୋଡିଯାଏ । ତେଣୁ ଏଠି ଗମନା ଗମନ ପାଇଁ ଭରସା କେଶୀର ବ୍ଲକ ଗାଡି ଓ ଖାଇବାକୁ ଭରସା ଅର୍ଦ୍ଦଳୀ ପିଥନ ଦାନି । ସେ ବିଚରା ଯାହା ରୋଷେଇ ଜାଣେ ସମୟ ଧରି ଗଣ୍ଡିଏ ଫୁଟାଇ ଦିଏ । ସେ ଅର୍ଜୁନବାବୁଙ୍କର ଅତି ବିଶ୍ୱସ୍ତ । ମୋର ଅର୍ଦ୍ଦଳୀ ପିଥନ ଦାନି ଯାହା ଯେଉଁଠି ଶୁଣେ ସବୁ ଅର୍ଜୁନବାବୁଙ୍କୁ ଶୁଣାଇଦିଏ । ତେଣୁ ମୋର ମଧ୍ୟ ସବୁ ନିର୍ମଳ । କିଛି କେଉଁଠି ଲୁଚାଇବାକୁ ନଥାଏ । ଅନାହାର ମୃତ୍ୟୁ ଖବର ତଦନ୍ତପାଇଁ ଉପଜିଲ୍ଲାପାଳ ପ୍ରାଣକୃଷ୍ଣ ସ୍ୱାଇଁ ଆସିଥିଲେ । ଚାଲିଚାଲି ଥୟା, ଫଳହେଲା ବହୁତ ତାଳପିଠା ଖାଇ ଝାଡାରେ ବୁଢିଟିଏ ମରିଛି । ନିର୍ମଳତାରେ ଏ ମଳି ଲଗାଇବାକୁ ଚେଷ୍ଟା କରି ନିର୍ମଳ ଶାସନରେ ନିର୍ମୂଳ ହୋଇଥିବା ପରାଜିତ ଗଣ ନିରାଶ ହୋଇପଡିଥିଲେ ।

ନିର୍ମଳ ଶାସନର ଏଇ ଛଅ ମାସର କଠୀନ ପରୀକ୍ଷାରେ ସେହି ନିର୍ମଳତାର ଓ ସ୍ୱଚ୍ଛତାର ଠାକୁର ନୀରଞ୍ଜନ ଓ ନିତ୍ୟ ସ୍ୱରୂପ ଉତୀର୍ଣ୍ଣ କରାଇ ଦେଇନଥିଲେ ପବିତ୍ର ବାବୁଙ୍କ ଭୈରବ ଡାକରାରେ ସଫାହୋଇ ଯିବା ଛଡା ଅନ୍ୟବାଟ ନଥିଲା; କାରଣ ତାଙ୍କର ଚଣ୍ଡି ଚାମଣ୍ଡାମାନେ କ୍ଷତିଗ୍ରସ୍ତ ହୋଇ ତୁଣ୍ଡଖୋଲି ଆଖିତରାଟି ଚାହିଁଥିଲେ କ୍ଷୁଧାର୍ତ୍ତ ଭଙ୍ଗୀରେ । ଠାକୁରେ ତାଙ୍କୁ ଭଲ ଆହାର ଦେଲେ ଓ ମୋତେ ନୂତନ ତଥା ସୁନ୍ଦର କର୍ମସ୍ଥଳି ଦେଲେ ।

## ୮୪. ଏଣୁ ମାଇଲେ ବ୍ରହ୍ମହତ୍ୟା- ତେଣୁମାଇଲେ ଗୋ ହତ୍ୟା

୧୯୬୭ରେ କେନ୍ଦ୍ରାପଡା ଦୁଇନମ୍ବର ବ୍ଲକ୍‌ରେ ଯୋଗଦେବା ବେଳକୁ ସେଠାରେ ପ୍ରଜା ସୋସାଲିଷ୍ଟ ପାର୍ଟିରୁ ଡା: ସରୋଜ କାନୁନ୍‌ଗୋ ଏମ୍.ଏଲ୍.ଏ ଥିଲେ । ସେଠାକାର ପ୍ରଖ୍ୟାତ ଓକିଲ (ପରେ ମନ୍ତ୍ରୀହୋଇଥିବା) ଭାଗବତ ପ୍ରସାଦ ମହାନ୍ତି ତାଙ୍କର ପୃଷ୍ଠରକ୍ଷକ । ଏମ୍.ପି. ଥାନ୍ତି ସୁରେନ୍ଦ୍ର ନାଥ ଦ୍ୱିବେଦୀ । କିନ୍ତୁ ଦୁଇନମ୍ବର ବ୍ଲକ୍‌ର ସଭାପତି ଥାନ୍ତି ପରୁଷୋତ୍ତମ ନାୟକ । ସେ ଖାଣ୍ଟି କଂଗ୍ରେସୀ ଲୋକ । ତାଙ୍କର ସମର୍ଥକଙ୍କ ସଂଖ୍ୟା ସବୁଶ୍ରେଣୀର ଲୋକଙ୍କ ମଧ୍ୟରେ ବହୁତଥିଲା । ସେ ପୁଣି ଆମଗାଁର ଜୋଇଁ । ନାରୀ ନେତ୍ରୀ ଧୀରାମଣିଙ୍କର ସ୍ୱାମୀ । ସୁରେନ୍ଦ୍ର ଦ୍ୱିବେଦୀ ପରିଚୟରେ ଦଦେଇ ପୁଅଭାଇ ହୋଇଥିଲେ ମଧ୍ୟ କୌଣସି କାମରେ କି ପଦେ କଥାରେ ମଧ୍ୟ ସାହାଯ୍ୟ କରିନାହାନ୍ତି । ହେଲେ ପୁରୁଷୋତ୍ତମବାବୁଙ୍କ ଆଖିରେ ଆମେ ଥାଉ ସୋସାଲିଷ୍ଟ ।

ଏସବୁ ଜାଣି ମଧ୍ୟ ପୁରୁଷୋତ୍ତମବାବୁ ବାଧ୍ୟ ହୋଇ ଏ କଥାକୁ ସାଢେ ତିନିବର୍ଷ ଔଷଧ ବଟିକାପରି ଗିଳିଥିଲେ । ତା'ର କାରଣ ହେଲା ମୋ ଆଗରୁ ସେଠି ଯେଉଁ ବି.ଡି.ଓ ଛଅମାସ ଥିଲେ ଓ ତାଙ୍କ ଆଗରୁ ଯେ ଏକବର୍ଷ ଥିଲେ ସେ ତାଙ୍କୁ ମଣିଷ ବୋଲି ଖାତିରି କରୁନଥିଲେ । ସଭାପତି ଭାବେ ତାଙ୍କର କିଛି କଥା ରହୁନଥିଲା । ସବୁ ଷ୍ଟାଫ୍ ତାଙ୍କ ସହ ମିଶିମଧ୍ୟ ସେ କିଛି ଉପକୃତ ହୋଇପାରୁନଥିଲେ । ତେଣୁ ମୁଁ ଆସିବା ବେଳକୁ ସେ ତ୍ରାହି ତ୍ରାହି ଡାକୁଥିଲେ । ତାଙ୍କ ପାଇଁ ମୁଁ ଯେପରି ମୋ ପାଇଁ ମଧ୍ୟ ସେଠିକ୍ ସେହିପରି । ଉଭୟକୂଳ ରକ୍ଷା କରିବାକୁ ଯାଇ ମୁଁ ଆଇନି, ନ୍ୟାୟ ଓ ଈଶ୍ୱରଙ୍କ ଇଚ୍ଛାକୁ ହିଁ ମୋର କାର୍ଯ୍ୟପନ୍ଥା ଭାବେ ଗ୍ରହଣ କରିଯାଇଥିଲି । କାରଣ ଏଣୁ ମାଇଲେ ଗୋହତ୍ୟା ଏବଂ ତେଣୁ ମାଇଲେ ବ୍ରହ୍ମହତ୍ୟା । ଅବଶ୍ୟ ପୁରୁଷୋତ୍ତମବାବୁ ଅଚ୍ଛ କେତେଥର ଏକଥା କର ସେ କଥାକର କହିଥିଲେ ମଧ୍ୟ ସରୋଜବାବୁ ଓ ଭାଗବତବାବୁ ଶେଷଯାଏ କେବେ କିଛି କହିନାହାନ୍ତି । ସେଇଟା ସେ ଦୁହିଁଙ୍କର ବିଶେଷତ୍ୱ । ସବୁଷ୍ଟାଫ ପୂର୍ବଶାସନରେ ବ୍ୟତିବ୍ୟସ୍ତ ହୋଇ ବାଲା ବାବାଙ୍କୁ ମୁଢୀଭୋଗ ଯାଚିଥିଲେ । ମୋ ଯୋଗଦେବା ପରେ ଆନନ୍ଦ ବିହ୍ୱଳ ହୋଇ କେତେଭୋଗ ପୂଜା ଇତ୍ୟାଦି ହେଲା । ସବୁଭୋଗ ଖାଇ ମଧ୍ୟ କେଉଁଥିରେ ମୁଣ୍ଡ ନ ପୁରାଇ ନଜାଣିଲାପରି ସବୁଶୁଣି ଏକାନରେ ପୁରାଇ ସେକାନରେ ପାରେଇଦିଏ ।

ଆଉ ଗୋଟିଏ ଜୀବନ ଓ କର୍ମ ସିଦ୍ଧାନ୍ତ ହେଉଛି କାମନକରି ବସିରହିବା ଏବଂ ଷ୍ଟାଫ୍‌କୁ ବସିବାକୁ ଦେଲେ ବହୁକଳିର ଉଦ୍‌ଭବ ହୁଏ । ନିଜେ ଯଦି ଆଖିବୁଜି ଖଟିବେ ଓ ସମସ୍ତଙ୍କୁ କାମରେ ଲଗାଇଦେବେ ତେବେ ସୂତାର ଆଂଶୁ ଧରିବାକୁ ଓ ଛୋଟ ଛୋଟ କଥାରେ କଳିକରିବାକୁ ବେଳ ମିଳିବନି । ମନଟା କାମ ମୁହାଁ ଧରିଯିବ । ନିଷ୍ପାପର ଓ ନିରପେକ୍ଷ ଭାବେ କାମ କରିଗଲେ ବହୁକଳିର ମଧ୍ୟ ସ୍ୱୟଂ ଓ ସାଧୁ ସମାଧାନ ହୋଇଯାଏ । କାମକରିବାକୁ ଯିବା

ପୂର୍ବରୁ ଇଆଡୁ ସିଆଡୁ ବାରକଥା ଶୁଣିକରି ଗଲେ କାମ ଉପରେ ତା'ର ପ୍ରଭାବ ପଡେ । କାର୍ଯ୍ୟକ୍ଷେତ୍ରରେ ତା'ର କରଣି ଅଜାଣତରେ ମନକୁ ବାହାରିପଡେ ।

ଅବଶ୍ୟ ଅତୀବ ଚାଲାକ୍ ଏବଂ ତୀବ୍ର ରାଜନୀତିଆଙ୍କୁ ଏ ସବୁକଥା ସବୁଦିନେ ସନ୍ତୁଷ୍ଟ କରିପାରେନି । ତାଙ୍କ କଥା ଦୈବ ଯୋଗେ ବାରବାର କାଟଖାଇଗଲେ ସେ ସ୍ଥିର କରିନିଅନ୍ତି ଯେ ୟା ଦ୍ୱାରା ଆଉ ହେବନି । ବିନା ଆଦେଶରେ କିଏ କେବେ ତାଙ୍କ ମୁହଁ କଥାରେ ବିନା ମୂଳଦୁଆରେ ଛୋଟ ପୋଲଟିଏ କରିଥିଲା । ମୁଁ ଯାଉଁ ଯାଉଁ ତା'କୁ ବିଲ୍ କରିଦେବାକୁ ସେ କହିଥିଲେ । କାମ ଉପରେ ପୋଲର ଦଶାଦେଖି ପରେ ତାଙ୍କ କଥା ଆଉ ରଖିହେଲାନି । କନିଷ୍ଠ ଯନ୍ତ୍ରୀମାନେ ମଧ୍ୟ ମାନିଲେନି । ତାଙ୍କରି ମୁଣ୍ଡରେ ସାଢେ ତିନିବର୍ଷ ଚାଲିଗଲା । କିନ୍ତୁ ପଞ୍ଚାୟତ ନିର୍ବାଚନରେ ଆଇନିରେ ଟିକେ ଫାଙ୍କାଦେଖି ତାଙ୍କ ଲୋକଙ୍କୁ ଜିତାଇ ନପାରିବାରୁ ସେ ଚୋରଧରି ପକାଇଲେ ଓ ଧରାଇ ଦେବାକୁ ଲାଗିଗଲେ । ତଥାପି ଏଇଟା ମାନିବାକୁ ହେବ ଯେ ନିଜେ ନିର୍ବିକାର ଓ ନିଷ୍କାପଟ ଭାବେ ଖଟି ଅନ୍ୟମାନଙ୍କୁ ଖଟାଇ ପାରିଲେ ସଫଳତା ନିଶ୍ଚେ ମିଳିବ ।

## ୮୫. ଝଡ

କେନ୍ଦ୍ରାପଡା ଦୁଇନମ୍ବର ବ୍ଲକ୍‌ରନାମ ଡେରାବିଶ୍ ବ୍ଲକ । ମାତ୍ର ତାର ସଦର ମହକୁମା କେନ୍ଦ୍ରାପଡା ଟାଉନ ପାଖରେ । ସେ ଗୋଟେ ଝଡ । ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର କେଉଁଠି ହେବ ? ସେ ଆଉଗୋଟେ ଝଡ । ପୂର୍ବତନ ବିଡିଓ ଜଣେ ପିଅନକୁ କାର୍ଯ୍ୟାନ୍ତର କରିଦେଇଯାଇଥିବାରୁ ବହୁତ ଗୁଡିଏ ମାଲି ମକଦ୍ଦମାର ଝଡ ଚାଲିଥାଏ । ତାଙ୍କ ପରବର୍ତ୍ତୀ ବି.ଡି.ଓ ଏବଂ ଷ୍ଟାଫ୍‌ଙ୍କ ମଧ୍ୟରେ ଚାଲିଥିବା କଳିଏକ ବିରାଟ ଝଡ । ସେ ବାକିରଖି ଯାଇଥିବା ବିଭିନ୍ନ କାମର ବିଲ୍ ନ ମିଳିବାରୁ ଠିକାଦାର ମାନଙ୍କର ଝଡ । ମାସମାସ ଧରି ଶିକ୍ଷକମାନେ ଦରମା ନପାଇ ସୃଷ୍ଟି କରିଥାନ୍ତି ଝଡ । ଦୁଇଦଳିଆ ରାଜନୀତି ସର୍ବୋପରି ସୃଷ୍ଟିକରିଥାଏ ଗୋଟେ ବିରାଟ ରାଜନୈତିକ ଝଡ ।

ତା ସାଙ୍ଗକୁ ଦୈବୀକୃତ ଝଡ । କାର୍ଯ୍ୟରେ ଯୋଗଦେବା ବେଳକୁ ରହିବା ବସାଟି ପୂର୍ବତନ ବି.ଡି.ଓଙ୍କ ଦଖଲରେ ଥିଲା । ତେଣୁ ସହର ମଧ୍ୟରେ ସ୍କୁଲ ପରିଦର୍ଶକ ମୋର ବାଲ୍ୟବନ୍ଧୁ ପ୍ରେମାନନ୍ଦ ନନ୍ଦଙ୍କ ଘରେ ରହୁଥାଏ । ଆଗଦିନରୁ ଝିପିଝିପି ବର୍ଷା ହୋଇଯାଇଥାଏ । ୧୯୬୭ ଅକ୍ଟୋବର ନଅ ତାରିଖ । ମାଟି ବତୁରୀ ରହିଥାଏ । ଅପରାହ୍ନରେ ଆରମ୍ଭ ହେଲା ଝଡ-ବାତ୍ୟା । ଆମେ ଥିବା ଛୋଟ ଚାଳଘର ଛାତଟି ଦୋହଲିବାକୁ ଲାଗିଲା । ଚାଳରୁ ଛଣ ଉଡିଗଲା । ଖଟତଳେ ଯାଇ ଆଶ୍ରୟ ନେଲୁ । ମୁହଁରେ ଖାଲି ହରିନାମ । ଏତିକି ବେଳେ ଘରର ଛାତଟି ଅଳ୍ପଉପରକୁ ଉଠିପୁଣି ତା ସ୍ଥାନରେ ପଡିଗଲା । ଆଉ ସେ ଘରେ ଭୟରେ ରହିବା ସମ୍ଭବ ହେଲାନି । ଜଣ ଜଣ ହୋଇ ପଦାକୁ ଯାଇ କାନ୍ଥକୁ ଧରିଧରି ତଳେ ଗୁରୁଣ୍ଡି ଗୁରୁଣ୍ଡି ପାଖ କୋଠାରେ ପଶିଗଲୁ । ଗଲାବେଳେ ପାଖ ଟାଇଲ ଘରୁ ଟାଇଲସବୁ ଗୁଡିପରି

ଉଡୁଥାଏ । ଆମେ ପଶିଥିବା କୋଠାଘର ଆଲୁଅ ଜଳାବାଟେ ଏତେଜୋର ପାଣି ଆସୁଥାଏ ସେ ଦେହରେ ବାଲିଝଡ ପରି ପିଚିହୋଇ କାଟୁଥାଏ । ତାରି ଭିତରେ ଅଖଣ୍ଡ ହରିନାମ କରି ରାତି କଟାଇଲୁ । ରାତିରେ ଝଡର ବେଗ କମିଯାଇଥାଏ ।

ସକାଳେ କବାଟ ଖୋଲିଲା ବେଳକୁ ବାହାରେ କନ୍ଦାକଟା । ଆମର ପେଟ ପୁରା ଖାଲି । ରାସ୍ତାରେ ତାର, ତାରଖୁଣ୍ଟ, ଛଣ, କାଠ, ବାଉଁଶ, ଟାଇଲ ଗଛ ସବୁ ପଡି ରାସ୍ତା ବନ୍ଦ । ଯେ ଅବସ୍ଥାଦେଖି ଘରକଥା ମନେପଡିଗଲା । ଚାଲିଚାଲି ତିନି ଘଣ୍ଟା ମଧ୍ୟରେ ପାଞ୍ଚମାଇଲ ଗଛ ଡାଳ ଡେଇଁ ଡେଇଁ ଯାଇ ସେହି ବ୍ଲକ ମଧ୍ୟରେ ଥିବା କାଦୁଆ ଗ୍ରାମରେ ଭଉଣୀ ଘରେ ପହଞ୍ଚିଲି । ତାଙ୍କ ଚାଳ ଉଡିଯାଇଥାଏ । ସେମାନେ ସମସ୍ତେ ଉପବାସ ଥାନ୍ତି । ସକାଳୁ ଅରୁଆ ଖେଚଡି ଓ ଗୁଣ୍ଡମାଛ ତରକାରୀ କରିଖାଉଥାନ୍ତି । ଦାନ୍ତଘସି ଖାଇସାରିବା ପରେ ଚେତା ପଶିଲା । ଏପରି ଅବସ୍ଥାରେ ବ୍ଲକ୍ ଲୋକଙ୍କ କଥା ବୁଝିବି ନା ଗାଁକୁ ଯାଇ ଘରକଥା ବୁଝିବି ? ଏଇଠି ଠାକୁରେ ପରୀକ୍ଷା କଲେ । ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ବଳ ମଧ୍ୟ ଦେଲେ । ସେଠୁ ଫେରି ପୂରାଦମ୍‌ରେ ମାସେକାଳ ଗାଁ ଗାଁ ଘର ଘର ବୁଲି ସାହାଯ୍ୟ କାର୍ଯ୍ୟରେ ପ୍ରାଣମୂର୍ଚ୍ଛା ଲାଗିଯିବାକୁ ହେଲା । ମାସେ ପରେ ଘରକୁ ଯାଇ ଖବର ପାଇଲି କୋଉଠି କିଛି ହୋଇନି । ଯାହା ହୋଇଛି ସେ କିଛି ନୁହେଁ । ବାତ୍ୟାର ପ୍ରକୋପ ତଳ ଅଞ୍ଚଳକୁ ବିଶେଷ ହୋଇଥାଏ ।

ଧାନଗଛରପତ୍ର ସବୁ ବାଳପରି ଚିରିଯାଇଥିଲା । ଛୋଟ ହୁଲିଡଙ୍ଗା ଉଡିଯାଇ ଗଛ ଡାଳରେ ଲାଗିଥାଏ । ପୋଲର ସ୍ଲାବ୍ ସବୁ ଗୁଡିପରି ଉଡିଯାଇଥାଏ । ଟିଣଘର ଓ ଟାଇଲଘର ଅବସ୍ଥା ଛାଡ । ଚାଳଘରେ ନଡା କୁଟା ନଥାଏ । ସେ ଅଞ୍ଚଳର ସବୁ ପୁରୁଣା ବଡ ଗଛ ସଂପୂର୍ଣ୍ଣ ନଷ୍ଟ ହୋଇଯାଇଥାଏ । ବହୁ ପଶୁପକ୍ଷୀ ଏବଂ କେତେକ ମଣିଷ ମଧ୍ୟ ମରିଯାଇଥିଲେ । ଏହି ଅସମୟରେ ସବୁ ରାଜନୀତିଆ ଲୋକ, ସରକାରୀ କର୍ମଚାରୀ ଓ ବେସରକାରୀ ଲୋକେ ଦିନରାତି ଲୋକଙ୍କୁ ସାହାଯ୍ୟ କରିବାକୁ ଏକମନ ଏକପ୍ରାଣରେ ଲାଗିପଡିଥାନ୍ତି । ମାସେକାଳ ଏ କାମ ଯୁଦ୍ଧକାଳୀନ ତତ୍‌ପରତାର ସହ ଚାଲିଲା । ଶେଷରେ ବିଧାୟକ ସରୋଜବାବୁ ସମସ୍ତଙ୍କୁ ଭୋଜିଟିଏ ଦେଇ କୃତଜ୍ଞତା ଜଣାଇଲେ ।

ଏବେ ଏପରି ଦୈବୀ ବିପତ୍ତି ବେଳେ କେତେ ରାଜନୀତି ବାହାରୁଛି । କେତେ ଦୁର୍ନୀତି କଥା ଶୁଣାଯାଉଛି । ତା ସାଙ୍ଗକୁ ବନ୍ଦ, ପ୍ରତିବାଦ ଓ ହରତାଳ । ଏସବୁ କ'ଣ ଦୁଃଖକୁ ଲାଘବ କରୁଛି ନା ବୃଦ୍ଧିକରୁଛି ? ଠାକୁରେ ଲୋକଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ । ଦୁଃଖବେଳେ ହେଲେ ମଇଁଷି ଶିଙ୍ଗ ନଫାଟି ଗୋଟାଏ ହେଉ । ଦୈବୀ ଦଣ୍ଡସିନା ସମସ୍ତଙ୍କୁ ସମାନ କରିଦେଉଛି ତାଙ୍କ ମନକୁତ ନିୟନ୍ତ୍ରଣ କରିପାରୁନି । ମନର ତିକ୍ତତା ତୁଟୁନି । ବରଂ ଭଲ ମଉକା ଭାବି ଆହୁରି ଜାଗିଉଠୁଛି ସୁବିଧା ହାସଲପାଇଁ । ଭଗବାନ ସମସ୍ତଙ୍କୁ ସଦ୍‌ବୁଦ୍ଧି ଦେଇ ସତ୍ ପଥରେ ଚଳାନ୍ତୁ । ଯେତେବେଳେ ହେଉଥିଲା ଏବେ କାହିଁକି ହେବନି । ପ୍ରାକୃତିକ ଝଡର ଅବସାନ ସହ ପ୍ରଥମରୁ ବର୍ଣ୍ଣିତ ବହୁବିଧ ଝଡ ମଧ୍ୟ ବହୁପରିମାଣରେ ଥମିଗଲା । ତେଣୁ ଠାକୁରେ ଭଲକାମ କରିବାର ସୁଯୋଗ ଦେଇ ତାଙ୍କରି ସେବା ଜୁଟାଇଦେଲେ ।

# ୮୬. ତ୍ରିବେଣୀ

ପ୍ରାଥମିକ ଶିକ୍ଷକମାନେ ପ୍ରତିମାସରେ ଥରେ କେନ୍ଦ୍ର ସଭାକରି ଏକତ୍ରିତ ହେଉଥିଲେ । ସେଠାରେ ଦରମାବିଲ୍ ଦାଖଲ କରୁଥିଲେ । ନିଜ ଭିତରେ ଥିବା ଅଭାବ ଅସୁବିଧାର ଆଲୋଚନା କରୁଥିଲେ । ସରକାରୀ ନିର୍ଦ୍ଦେଶନାମା କିଛି ଆସିଥିଲେ ତାକୁ ନିଜ ଭିତରେ ସଂପ୍ରସାରିତ କରୁଥିଲେ । ଏସବୁ ନୈମିତ୍ତିକ କାର୍ଯ୍ୟ ବ୍ୟତୀତ ଆଉ ଦୁଇଟି ବଡକାମ କେନ୍ଦ୍ର ସଭାରେ ହେଉଥିଲା । ତା' ହେଉଛି ପାଳି ଅନୁଯାୟୀ ବଛାଯାଇଥିବା ଶିକ୍ଷକଙ୍କ ଦ୍ୱାରା ଆଦର୍ଶ ଶିକ୍ଷାଦାନ ଓ ସେହି କାର୍ଯ୍ୟର ପର୍ଯ୍ୟାଲୋଚନା ବା ଗଠନ ମୂଳକ ସମାଲୋଚନା । ସର୍ବଶେଷ କାର୍ଯ୍ୟଟି ଥିଲା ପ୍ରବନ୍ଧ ଓ କବିତା ପାଠ ସହ ସାହିତ୍ୟ ଚର୍ଚ୍ଚା । ଆଗରୁ ଚାରିଟି କେନ୍ଦ୍ରରେ ଏସବୁ ହେଉଥିଲା । କିନ୍ତୁ ଶେଷ କାମ ଦୁଇଟି ନାମକୁ ମାତ୍ର କେଉଁଠି କେଉଁଦିନ ହେଉଥିଲା ବା ହେଉନଥିଲା । ସ୍କୁଲ ପରିଦର୍ଶକ ବନ୍ଧୁ ପ୍ରେମାନନ୍ଦଙ୍କ ସହ କେତୋଟି କେନ୍ଦ୍ର ସଭାରେ ଯୋଗଦେବାପରେ ସେଥିପ୍ରତି ବହୁତ ଆଗ୍ରହ ବଢିଲା । ପରିଦର୍ଶକ ଓ ଶିକ୍ଷକମାନେ ମଧ୍ୟ ଖୁବ୍ ଉତ୍ସାହିତ ହେଲେ । ଏହାରି ସୁଯୋଗନେଇ ଶିକ୍ଷକ ସମାଜକୁ ସଙ୍ଗଠିତ, କାର୍ଯ୍ୟଗ୍ରାହୀ ଓ ଶୃଙ୍ଖଳିତ କରିବାକୁ ସ୍ଥିର କରି ପ୍ରଥମେ ତାଙ୍କର ଅଭାବ ଅସୁବିଧା ବୁଝିବାରେ ଜଣାଗଲା ଯେ ନିୟମିତ ଧାର୍ଯ୍ୟ ତାରିଖରେ ଦରମା ନମିଳିବା, ବର୍ଦ୍ଧିତ ଦରମା ନିୟମିତ ନମିଳିବା ଏବଂ ଭବିଷ୍ୟନିଧି ପାଣ୍ଠି ଜମାନହେବା ହେଉଛି ସାଧାରଣ ଅଭିଯୋଗ । ଶିକ୍ଷକ, ପରିଦର୍ଶକ ଓ ସଂପୃକ୍ତ କିରାଣିଙ୍କ ସହ ଆଲୋଚନା କରି ପ୍ରତିମାସର ଦଶ ତାରିଖରେ ଦରମା ଦିନ ଭାବେ ଧାର୍ଯ୍ୟ ହେଲା ଯେ ଚାରିବର୍ଷ ଶେଷରେ ସେ ଯାଗା ଛାଡିବାଯାଏ ସେଥିରେ ଆଉ ପରିବର୍ତ୍ତନ ହେଲାନି । ମାସିକ ଦରମା ସହ ବର୍ଦ୍ଧିତ ଦରମା ମଧ୍ୟ ନିଶ୍ଚିତ ଭାବେ ସମସ୍ତଙ୍କୁ ମିଳିଗଲା । ପ୍ରତିମାସ ଦଶତାରିଖରେ ଦରମା ଦେବାପରେ ପନ୍ଦର ତାରିଖରେ ଭବିଷ୍ୟନିଧି ଜମାକରା ଯାଉଥିଲା ।

ଏ ତିନୋଟି କାମ ଶିକ୍ଷକ ସମାଜ ଉପରେ ଏତେ ପ୍ରଭାବ ପକାଇଲା ଯେ ସେ ସମସ୍ତେ ବିଶ୍ୱସ୍ତ ନୁହେଁ ସଂପୂର୍ଣ୍ଣ ବଶବର୍ତ୍ତୀ ହୋଇଗଲେ । ଯେଉଁଠି ସବୁବେଳେ ଧର୍ମଘଟ, ହୋ ହଲ୍ଲା ଲାଗିରହିଥିଲା ସେଠି ସଂପୂର୍ଣ୍ଣ ସହଯୋଗର ବାତାବରଣ ସୃଷ୍ଟି ହୋଇଗଲା । ସେହି ଶିକ୍ଷକମାନେ ହିଁ ଗାଁ ଗାଁରେ ପ୍ରତିନିଧି ଭଳି ସବୁ ଖବର ଦେବାରେ, ନେବାରେ, ସଂପ୍ରସାରିତ କରିବାରେ ଓ ସବୁ କାର୍ଯ୍ୟରେ ସାହାଯ୍ୟର ହାତ ବଢାଇଲେ । ଏହାରି ସୁଯୋଗ ନେଇ ପ୍ରାଥମିକ ଶିକ୍ଷକମାନଙ୍କ ଲେଖାକୁ ସମ୍ବଳ କରି ଗୋଟିଏ ପତ୍ରିକା "ତ୍ରିବେଣୀ" ନାମରେ ପ୍ରକାଶିତ ହେଲା; ତାଙ୍କରି ପଇସାରେ । ସମସ୍ତଙ୍କୁ ମାଗଣା ଖଣ୍ଡିଏ ଖଣ୍ଡିଏ ପତ୍ରିକା ନିୟମିତ ପ୍ରତି ତିନିମାସରେ ମିଳିଲା । ଏହାଦ୍ୱାରା ସମସ୍ତେ ଖୁବ୍ ଉତ୍ସାହିତ ହୋଇଉଠିଲେ ଓ ଧର୍ମଘଟ ବା ମେଳିର କୁଫଳ ସୁଫଳରେ ପରିଣତ ହୋଇଗଲା । ଏହି ପତ୍ରିକାର ପ୍ରଥମ ଖଣ୍ଡ ସୁରେନ୍ଦ୍ର ନାଥ ଦ୍ୱିବେଦୀ

ଉନ୍ମୋଚନ କରିଥିଲେ ଏକ ମନୋଜ୍ଞ ସଭାରେ ଗାନ୍ଧୀ ଜୟନ୍ତୀରେ । ସେ ଦିନ ଏ ସଭାସାଙ୍ଗକୁ ସକାଳେ ପ୍ରଭାତଫେରି ଓ ବ୍ଲକ୍ ଅଫିସ ପାଖ ବାଉରୀ ସାହୀ ବସ୍ତୀ ସଫେଇ କରାଯାଇଥିଲା । ଏଥିରେ ମଧ୍ୟ, ପୁରସ୍ତମବାବୁ, ବହୁସ୍ଥାନୀୟ ଲୋକ, ଶିକ୍ଷକ ଓ କର୍ମଚାରୀ ଆନନ୍ଦରେ ଯୋଗ ଦେଇଥିଲେ ।

ନୀରଞ୍ଜନ ନାମକ ଗୋଟିଏ ଗରିବ ବ୍ରାହ୍ମଣ ପିଲା ଖରାଦିନେ ପଙ୍ଖାଟାଣିବାକୁ ଆସୁଥାଏ । ମାସିକ ମଜୁରୀ ତିରିଶି ଟଙ୍କା । ଗରିବ ହେତୁ ପଇଟା ପାଇନଥିଲା । ପାଠମଧ୍ୟ ଛାଡି ଦେଇଥିଲା । ତାକୁ ବହି, ସିଲଟ, କାଗଜ କଲମ ଯୋଗାଇଦେଇ ନାମଲେଖାଇ ପଢିବାର ବନ୍ଦୋବସ୍ତ କରାଯାଇଥିଲା ଏବଂ ତା'ର ବ୍ରତୋପନୟନ ମଧ୍ୟ ବ୍ଲକ୍‌ରେ କରାଯାଇଥିଲା । ପଇସା ସିନା ମୁଁ ଦେଲି ବାକି ସବୁ କାମ ଶିକ୍ଷକ ସଂଘ ମହାଆନନ୍ଦରେ ଓ ସାଦରେ ଆଦରି ନେଇ ମହାଆଡ଼ମ୍ବରରେ ବ୍ରତ ଓ ଶିକ୍ଷାଦାନ ଆରମ୍ଭ କରାଇଥିଲେ ।

ସେହି ଶିକ୍ଷକ ମାନଙ୍କ ପରାମର୍ଶ ଓ ସଂପୂର୍ଣ୍ଣ ସହଯୋଗରେ ଆଉ ଗୋଟିଏ ବଡକାମ ହୋଇଥିଲା । ବ୍ଲକ୍ ଅଫିସ୍ ପାଖରେ ବଡ ଝଙ୍କାଳିଆ ଆମ୍ବଗଛଟିଏ ଥିଲା । ଅଫିସଘର ତିଆରି ହୋଇନଥିବାରୁ ତାରି ତଳେ ପଞ୍ଚାୟତ ସମିତି ବୈଠକ ବସେ । ସେହିଠି ଶିକ୍ଷକ ମାନଙ୍କ ଦରମା ବଣ୍ଟନ ହୁଏ । ସାଧାରଣ ସଭା ସମିତି ଓ ଆଲୋଚନା ତାରି ତଳେ ହୁଏ । ସେ ସ୍ଥାନର ବହୁ ପୁଣ୍ୟ । ସେଠି ମାଟିପକାଇ ବଡ ପିଣ୍ଡିଟିଏ କରାଗଲା ଓ ପ୍ରତିବର୍ଷ ଗୋଟିଏ ଅଷ୍ଟପ୍ରହର ନାମ ସଂକୀର୍ତ୍ତନ ଆରମ୍ଭ କରାଗଲା । ଏଥିରେ ଶିକ୍ଷକମାନେ ମାତିଉଠିଲେ । ଗାଁ ଗାଁରୁ ସାହାଯ୍ୟ ଓ ସଂକୀର୍ତ୍ତନ ଦଳ ଆଣିବା, ତାଙ୍କୁ ରଖାଇବା, ସାଜ ସଜ୍ଜା କରିବା, ରାନ୍ଧିବାଢି ଖାଇବା ପିଇବାର ବନ୍ଦୋବସ୍ତ କରିବା ଇତ୍ୟାଦି ସବୁକାମ ଶିକ୍ଷକମାନେ ମହା ଆନନ୍ଦରେ କରିଥିଲେ । ତାଙ୍କରି ନିଷ୍ପତ୍ତି ଅନୁଯାୟୀ ପ୍ରତିବର୍ଷ ଏ କାମ ଚାଲିଲା । ଏପରିକି ସେଠୁ ବଦଳୀ ହେବାପରେ ମଧ୍ୟ ପ୍ରତିବର୍ଷ ଖଣ୍ଡେ ଖଣ୍ଡେ ନିମନ୍ତ୍ରଣ ପତ୍ର ଆସୁଥାଏ ।

ସେଠି ରହଣି ସମୟରେ ଶିକ୍ଷକମାନଙ୍କ ଦ୍ୱାରା କରାଯାଇଥିବା ସବୁଠାରୁ ବଡକାମ ହେଲା ସାହିତ୍ୟ ଚର୍ଚ୍ଚା, ପ୍ରବନ୍ଧ ଓ କବିତା ଲେଖା ଓ କେନ୍ଦ୍ର ସଭାରେ ପାଠ, ଆଲୋଚନା ଏବଂ ସମାଲୋଚନା । ଏପରି ପ୍ରତିମାସରେ ଚାଲୁଚାଲୁ କେତେକ ଶିକ୍ଷକ ବନ୍ଧୁ ଯତ୍‌ସାମାନ୍ୟ ଆର୍ଥିକ ସାହାଯ୍ୟ ମୋର ସ୍ୱଳ୍ପ ବେତନରୁ ନେଇ ବହିଲେଖିବା ଓ ଛାପିବା ଆରମ୍ଭ କରିଦେଲେ । ଦ୍ୱିତୀୟ ଚିନ୍ତାମଣି ମହାନ୍ତି ଥିଲେ ଏ ଦିଗରେ ଅଗ୍ରଗଣ୍ୟ । ତା'ପରେ ବନ୍ଧୁ ବେଣୁଧର ପଣ୍ଡା ପ୍ରାଚୀନ ସାହିତ୍ୟ କବିତା ରଚନାରେ ଆଗେଇଗଲେ । ଏପରି ଆଉ ଅନ୍ତତଃ ଚାରିପାଞ୍ଚ ଜଣଙ୍କ ନାମ ମନେ ହେଉନାହିଁ ।

ଏସବୁ ସାଙ୍ଗକୁ ବାତ୍ୟାଯୋଗୁଁ ୧୧୦ଟି ବିଦ୍ୟାଳୟକୁ ଏକ ହଜାର କରି ଟଙ୍କା ମଞ୍ଜୁର ଆସିଲା ଏବଂ ସବୁ ସ୍କୁଲ ଟାଇଲ ଛାତ କରିବା ଉଦ୍ଦେଶ୍ୟରେ ସଭାପତିଙ୍କ ଉଦ୍ୟମରେ ଟାଇଲ ଯୋଗାଇ ଦିଆଗଲା । ଏସବୁକୁ ମିଶାଇ ବିଚାର କଲେ ସେ ଚାରିବର୍ଷ ପ୍ରାଥମିକ ଶିକ୍ଷା

କ୍ଷେତ୍ରରେ ସେ ବ୍ଲକ୍‌ରେ ସୁବର୍ଣ୍ଣ ଯୁଗ ଆସିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏ ଯେଉଁ ମିସନ୍ ଚାଲିଲା ତା'ଫଳରେ ଧର୍ମଘଟ, ହୋ ହଲ୍ଲା ସଂପୂର୍ଣ୍ଣ ବନ୍ଦ ହୋଇଗଲା । ସାରା ବ୍ଲକ୍‌ରେ ବିଶେଷ କରି ସବୁ ପ୍ରାଥମିକ ବିଦ୍ୟାଳୟରେ ନିୟମିତ ପାଠପଢା କାମ ଖୁବ୍ ଯୋର ସୋର୍‌ରେ ଚାଲିଲା ଏବଂ ତା' ଏକ ଅଭ୍ୟାସରେ ପରିଣତ ହୋଇଗଲା । ଏପରି ଅବସ୍ଥା ହେଲା ଯେ ବାରମ୍ବାର ଗସ୍ତ ସମୟରେ କେବେ କୌଣସି ଶିକ୍ଷକ ବିନା ଦରଖାସ୍ତରେ ଅନୁପସ୍ଥିତ ରହିବା ବା ସ୍କୁଲ ବନ୍ଦ ହେବା ପ୍ରାୟ ଦେଖା ନ ଥିଲା । ଏ ଯେଉଁ କର୍ମ ଚଞ୍ଚଳତା ହାସଲ ହେଲା ତା' ମୂଳରେ ଥିଲା ଶିକ୍ଷକ ସମାଜର ସଂପୂର୍ଣ୍ଣ ଆସ୍ଥା ଓ ସହଯୋଗ ।

ଆଜିକାଲି, କି ଉପକୂଳ ଅଞ୍ଚଳ ବା କି ଗଡଜାତ ଅଞ୍ଚଳ ସର୍ବତ୍ର ବିନା ଦରଖାସ୍ତରେ ଅନୁପସ୍ଥିତି ଓ ସ୍କୁଲବନ୍ଦ ସାଧାରଣ ସମସ୍ୟାରେ ପରିଣତ ହେଲାଣି । ବିଳମ୍ବରେ ସ୍କୁଲ ଖୋଲିବା, ସ୍କୁଲ ସମୟରେ ବୁଲି, ଗପି, ସମୟ ନଷ୍ଟ କରିବା ଏବେ ସ୍ୱାଧିକାରରେ ପରିଣତ ହେଲାଣି । କିଏ କହିଲେ ତା' ନାଁରେ ମିଥ୍ୟା ମକଦ୍ଦମା ମଧ୍ୟ ଲଗାଇ ଦିଆଯାଉଛି । ସଂଘ ଶକ୍ତି ଆଜି ଗଠନ ମୂଳକ ଭାବେ କର୍ତ୍ତବ୍ୟରେ ଅବହେଳା କରିବାର ଅସ୍ତ୍ର ହୋଇଯାଇଛି । ନିଷ୍ଠାପର କାମକରି, ତାଙ୍କରି ସହଯୋଗ ନେଇ, ତାଙ୍କର ଅସୁବିଧା ଦୂରକରି ଏହାର ଦିଗ ନ ବଦଳାଇଲେ ଧ୍ୱଂସ ନିକଟତମ ହୋଇଯିବ । ଈଶ୍ୱରଙ୍କର ଇଚ୍ଛା ଅବଶ୍ୟ ବଳବାନ । ସେ ନ ଚାହିଁଲେ ଶୁଖିଲା ପତ୍ର ମଧ୍ୟ ହଲିପାରିବ ନି । ତେବେ ଶାସନ ମୁଖ୍ୟଙ୍କର ନିର୍ଦ୍ଦିଷ୍ଟ ସହଯୋଗ ମୂଳକ ଉତ୍ସାହପ୍ରଦ ଗଠନ ମୂଳକ ଭୂମିକା ଏଥିପାଇଁ ସର୍ବାଦୌ ଆବଶ୍ୟକ । ନିଷ୍କାମ କର୍ତ୍ତବ୍ୟ ଜ୍ଞାନରେ କାମରେ ଲାଗିରହିଲେ ବହୁତ ଛୋଟ ଛୋଟ କଥା ଭୁଲି ହୋଇଯାଇ କର୍ମହିଁ ଉପାସନାରେ ପରିବର୍ତ୍ତିତ ହୋଇଯାଏ । ଏହାହିଁ କର୍ମଯୋଗ ଓ ଜ୍ଞାନ ଯୋଗରେ ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କର ନିର୍ଦ୍ଦେଶ ।

## ୮୭. କର୍ମଚାରୀ ମେଳି

ଡେରାବିଶି ବ୍ଲକ୍‌ରେ ଯୋଗଦେବା ପୂର୍ବରୁ ପ୍ରାୟ ସବୁ କର୍ମଚାରୀ ମେଳହୋଇ ପୂର୍ବତନ ବିଡିଓଙ୍କ ବଦଳି ପାଇଁ ଲାଗିଥିଲେ । ଏପରିକି ବାଲାବାବାଙ୍କୁ ମୁଢୀ ନଡିଆ ଭୋଗ ଯଚାଯାଇଥିଲା । ଯେଉଁଦିନ ସେ ଭୋଗ ମୋତେ ମିଳିଲା ସେ ଦିନ ବାସ୍ତବରେ ଗୋଟିଏ ଶୁଭଦିନଥିଲା କହିଲେ ଅତ୍ୟୁକ୍ତି ହେବନି । ଯଦିଓ ତାହାର କାରଣ କିଛି କିଛି ଆଗରୁ ଜଣାଥିଲା ଭୋଗ ବାଣ୍ଟୁଥିବା କର୍ମଚାରୀ ଦଳକୁ କାରଣଟି ଭଲଭାବେ ପଚାରି ବୁଝିବା ସହ ସମସ୍ତଙ୍କୁ ପୂର୍ବପରି ଏକତ୍ରିତ ରଖି ସର୍ବସାଧାରଣ କାମ କରାଇବାର ପ୍ରୟାସଟି ଠାକୁରେ ମନରେ ଢୁକାଇ ଦେଲେ ।

ସତରେ ହେଉ କି ମିଛରେ ହେଉ ଯେଉଁଠି ଯେଉଁ ବ୍ଲକ୍‌ରେ କିଛି ଗଣ୍ଡଗୋଳ ହୁଏ ତା' ମୂଳରେ ନିଶ୍ଚୟ କିଛି କର୍ମଚାରୀ ଥାନ୍ତି । ତା ମୂଳରେ ଥାଏ କାମ ନ କରି ବସିରହିବାର ପରିଣାମ । କର୍ମଚାରୀ ମାନଙ୍କ ମଧ୍ୟରେ ମେଳଥିଲେ କିଛି ଭୁଲଭଟକା ହୋଇଗଲେ ମଧ୍ୟ ତାହା ହଠାତ୍ ପଦାକୁ ଜଣା ପଡେନା । ଏହି କର୍ମଚାରୀମାନଙ୍କର ଅମେଳ ସୁଯୋଗନେଇ

ନେତାମାନେ ତାଙ୍କୁ ଭିନ୍ନ ଭିନ୍ନ ଦଳରେ ବିଭକ୍ତ କରି ଉତ୍ସାହିତ କରି ଶାସନକୁ ଦୁର୍ବଳ କରନ୍ତି ଓ କରଗତ ମଧ୍ୟ କରନ୍ତି । ସେମାନଙ୍କ ମନରେ କିଛି ଦୁଃଖଥିଲେ ବା ତାଙ୍କ କଥା କିଛି କଟିଯାଇଥିଲେ ସେ ମଧ୍ୟ ଏହି କର୍ମଚାରୀ ମାନଙ୍କୁ ଧରିତାକୁ ବଡକରି ବସନ୍ତି । ବିଶେଷରେ ୧୯୬୧ରେ ପଞ୍ଚାୟତି ରାଜ ପ୍ରବର୍ତ୍ତନ ପରେ କର୍ମଚାରୀ ଓ ଅଣକର୍ମଚାରୀ ନେତା ବା ସଂକ୍ଷେପରେ ନିର୍ବାଚିତ ପ୍ରତିନିଧି ଓ ବିଶେଷ କରି ବିଡିଓଙ୍କ ମଧ୍ୟରେ ପ୍ରାୟ ସବୁ ବ୍ଲକ୍‌ରେ କଳି କଜିଆ ଲାଗି ରହିଥାଏ ।

ଏତେ ବେଳକୁ ଛଅବର୍ଷ ବ୍ଲକ୍‌ରେ କାମ କରି ଉପରୋକ୍ତ ସିଦ୍ଧାନ୍ତଟି ସମ୍ବନ୍ଧରେ ସଂପୂର୍ଣ୍ଣ ଅବହିତ ଥିଲି । ଭୋଗବଣ୍ଟା ଦଳକୁ ଆଉ ନ ଛାଡି ସେଇଠି ବସାଇଦେଇ ଅନ୍ୟ ସବୁ କର୍ମଚାରୀଙ୍କୁ ଡକାଇ ଛୋଟ ସଭାଟିଏ କରି ଗୋଟିଏ କର୍ମଚାରୀ ମେଳି ସୃଷ୍ଟି କରିଦିଆଗଲା । ସେଥିରେ ମୂଳମନ୍ତ୍ର ରହିଲା ସ୍ୱାର୍ଥ ନୁହେଁ - କର୍ତ୍ତବ୍ୟ । ଅର୍ଥାତ୍ ଆମେ ସମସ୍ତେ କାମ କରିବାକୁ ଏକାଠି ହୋଇଚେ । ଏହି କର୍ତ୍ତବ୍ୟକୁ ସମସ୍ତେ ଠିକ୍ ଠିକ୍ ପାଳନ କଲେ ଆଉ କିଛି ଅସୁବିଧା ହେବନି । ଏହି କର୍ତ୍ତବ୍ୟକୁ ମୂଳକରି ନିଜ ଭିତରେ ସହଯୋଗଟିଏ ଗଢି ଉଠିଲେ ନେତାମାନେ ନିଶ୍ଚୟ ଏ ଅସୁବିଧାର ସୁଯୋଗ ନେଇପାରିବେନି । ବ୍ୟକ୍ତିଗତ ଜୀବନରେ ପରସ୍ପରକୁ ସାହାଯ୍ୟ କରିବା ଓ ଜଣକୁ ମୁରବିମାନି ନିଜ କର୍ତ୍ତବ୍ୟକୁ ନିଷ୍ଠାପର ଭାବେ ପାଳନକରି ଏକ ସହଯୋଗର ବାତାବରଣ ସୃଷ୍ଟିକରିବା ପାଇଁ ସେଦିନ ସେହିଠି ସମସ୍ତେ ପ୍ରତିଜ୍ଞାବଦ୍ଧ ହୋଇପାରିବାରୁ ଆସନ୍ତା ଚାରିବର୍ଷପାଇଁ କାର୍ଯ୍ୟ କରିବାର ବାଟ ପରିଷ୍କାର ହୋଇଗଲା । ସେତେବେଳେ ଡେରାବିଶ ବ୍ଲକ୍‌ର କର୍ମଚାରୀ ସଂଖ୍ୟା ସତୁରିରୁ ଅଧିକ । ଚାରିଜଣ ଏ .ଇ .ଓ ଙ୍କ ସହ କୋଡିଏ ଜଣ ଗ୍ରାମ ସେବକ କୃଷି ବିଭାଗ ବ୍ଲକ୍ ମଧ୍ୟରେ ଥିଲା ।

ବ୍ଲକରେ ସବୁବେଳେ ଗାଡି ଓ ଶାଢୀ ବନ୍ଧୁ ଗଣ୍ଡଗୋଳର ମୂଳରେ ଥାଏ । ଏହା ଏକ ନିଛକ ସତ । କିନ୍ତୁ ଏହାକୁ ବହୁଲୋକ ଜାଣିମଧ୍ୟ ମାନନ୍ତିନି । ନିଜର ଅଧିକାର ସାବ୍ୟସ୍ତ କରିବାରେ ନ ଜାଣିଲା ପରି ବ୍ୟବହାର କରନ୍ତି । ତାର କୁଫଳ ମଧ୍ୟ ଭୋଗନ୍ତି । ଇଏ ବାଟଟିକୁ ବନ୍ଦ କରିବାକୁ ସେହିଦିନ ସ୍ଥିର ହେଲା ଯେ ପ୍ରତି ମାସରେ ବିଡିଓଙ୍କ ଗସ୍ତକ୍ରମ ଆଗୁଆ ବାହାରିବା ପରେ ସମସ୍ତେ ତାକୁ ଦେଖି ନିଜର ଗସ୍ତକ୍ରମ ସ୍ଥିର କରିବେ । ବିଶେଷ କାର୍ଯ୍ୟ ଥିଲେ ପରସ୍ପର ଆଲୋଚନା କରି ପରିବର୍ତ୍ତନ କରିବେ । ଗସ୍ତବେଳେ ଗୋଟିଏ ରାସ୍ତାରେ ଯାହାଯାହାଙ୍କର ଗସ୍ତଥିବ ସମସ୍ତେ ଏକାଠି ଗାଡିରେ ଯିବେ ଓ ଫେରିବେ । ସଭାପତି ଚାହିଁଲେ ମଧ୍ୟ ସାଥିରେ ଯିବେ । ମାତ୍ର ଏତେ ଲୋକଙ୍କ ସାଥିରେ ଯାଇ ସଭାପତି ତାଙ୍କ ରାଜନୀତି କରିବା ଅସମ୍ଭବ ଯୋଗୁଁ ମାସରେ ଥରେ ଦୁଇଥର ବ୍ୟତୀତ ସେ ପ୍ରାୟ ଯାନ୍ତିନି । ନାରୀକର୍ମୀମାନେ ମଧ୍ୟ କମ୍‌ଯାନ୍ତି । ହେଲେ ମଧ୍ୟ ତାଙ୍କର ସର୍ବନିମ୍ନ ଗସ୍ତ ଓ ତଦାରଖ କାର୍ଯ୍ୟ କରନ୍ତି । ତେଣୁ କିଏ ଗାଡି ନେଇ ବାବୁ ହେଲା, ନାରୀକର୍ମୀଙ୍କୁ ନେଇ ଫୁର୍ତ୍ତିକଲା ଏ ବିଷୟରେ ଆଉ ବିବାଦ ଶେଷଯାଏ ପ୍ରାୟ ନ ଥିଲା । ଅବଶ୍ୟ ବହୁତ ଲୋକଙ୍କ ସହ ମିଶି ଏତକ କରିବାରେ ବହୁତ

କଷ୍ଟ ଓ ଉପବାସ ଭୋଗ କରିବାକୁ ପଡିଥିଲା । ଠାକୁରେ କିନ୍ତୁ ତଦ୍‌ଜନିତ ବିବାଦ, ଲଜ୍ଜା, ଉପହାସ ଓ ସମାଲୋଚନାରୁ ଉଦ୍ଧାର କରିଥିଲେ; ମତେ ନୁହେଁ ସମସ୍ତଙ୍କୁ । ସହଯୋଗର ସୂତ୍ର ଏପରି ଘନିଷ୍ଠ ହୋଇଯାଇଥିଲା ଯେ ପରସ୍ପରକୁ ରାତି ଅଧରେ ସାହାଯ୍ୟ କରିବାକୁ ସମସ୍ତେ ଆଗେଇ ଆସୁଥିଲେ । ତା ଫଳରେ ସମ୍ପର୍କ ଆହୁରି ନିବିଡ ହେଉଥିଲା । ଗୋଟିଏ ପରିବାର ପରି ସମସ୍ତେ ମିଶି ଚଳୁଥିଲେ । କର୍ତ୍ତବ୍ୟ କର୍ମହିଁ ମୂଳ ବିଚାର ଓ ଲକ୍ଷ ହୋଇଯାଇଥିଲା । ଫଳରେ କର୍ମ ମୁଖର କର୍ମୀସମାଜ କଳହ ପାଇଁ ସୁଯୋଗ ଓ ସମୟ ମଧ୍ୟ ପାଉନଥିଲେ । ଈଶ୍ୱର ଏଠାରେ ସହଯୋଗର ସୂତ୍ରଧର ଭାବେ ପ୍ରତୀୟମାନ ହୋଇ ନିଜର ଯଶ ବିସ୍ତାର କରିଥିଲେ ।

## ୮୮. ନିୟମିତ ପରିଦର୍ଶନ ଓ ଯାଞ୍ଚ

ଗୋଟିଏ ବ୍ଲକ୍‌ରେ କେତେଗୁଡିଏ ପଞ୍ଚାୟତ, ସମବାୟ ସମିତି, ବହୁ ବିଦ୍ୟାଳୟ, ସ୍ୱେଚ୍ଛାସେବୀ ଅନୁଷ୍ଠାନ ଓ ନିଜ କାର୍ଯ୍ୟାଳୟର ବିଭିନ୍ନ ବିଭାଗ ଥାଏ । ନିୟମାନୁଯାୟୀ ପ୍ରତି ଛଅ ମାସ ବା ବର୍ଷରେ ଏ ଗୁଡିକ ପରିଦର୍ଶନ କରିବା କଥା । ସବୁବେଳେ ଏସବୁ ସହିତ ଦେହ ଘଷରା ହେବା ଯୋଗୁଁ ନିୟମିତ ପରିଦର୍ଶନ ଓ ଜିନିଷ ପତ୍ର ଭଣ୍ଡାରର ଯାଞ୍ଚ ପ୍ରାୟ କେହି କରନ୍ତିନି । ଯଦି ବା କରନ୍ତି ଦୁଇଧାଡି ଲେଖିଦବାକୁ କାହାକୁ କହନ୍ତି ଓ ସେଥିରେ ଦସ୍ତଖତଟାଏ ପକାଇଦେଇ ନିଜର କର୍ତ୍ତବ୍ୟ ଶେଷ କରନ୍ତି । ମାତ୍ର ଏସବୁ ଠିକ୍ ଠିକ୍ ନିଜେ ମନଦେଇ କଲେ ଓ ଦେଖିଲେ ଯେ ଅଶେଷ ଉପକାର ହୁଏ ଏକଥା ଜଣା ନଥାଏ ।

ପ୍ରତିଦିନ ହିସାବ ଲେଖାଯିବ । ପ୍ରଧାନ କିରାଣି ତାକୁ ଯାଞ୍ଚ କରିବେ । ତା ସତ୍ତ୍ୱେ ନିଜେ ଗୋଟି ଗୋଟି କରି ଆୟ ବ୍ୟୟ ବିବରଣୀ ମିଳାଇ ସେ ଉଭୟରେ ଦସ୍ତଖତ କରିବା ସହ ହିସାବ ବହି ଓ ଆନୁସଙ୍ଗିକ ବହିଗୁଡ଼ିକରେ ଦସ୍ତଖତ କରିବା ଦ୍ୱାରା ବାର୍ଷିକ ଅଡିଟ୍ ବେଳକୁ ଆଉ ପ୍ରାୟ ଭୁଲ ନ ଥାଏ । ସେହିପରି ପ୍ରତି ମାସରେ ବଳକା ଟଙ୍କା ଗଣି ରଖି ପ୍ରମାଣ ପତ୍ର ଦେବାଦ୍ୱାରା ଟଙ୍କାରେ କିଛି ଗଣ୍ଡଗୋଳ ମଧ୍ୟ ବାହାରେ ନି । ନିଜେ ଅନ୍ୟ ଜଣେ କିରାଣି ବା କୋଷାଧକ୍ଷଙ୍କ ସହ ଦୁଇଟି ତାଲାରେ ଟଙ୍କା ରଖୁଥିବାରୁ ପୁଣି ମାସକରେ ଥରେ କ'ଣ ଗଣିଲେଖିବା ଦରକାର ବୋଲି କେତେକ ଯୁକ୍ତି କରନ୍ତି ଓ ଟଙ୍କା ନ ଗଣି ଦସ୍ତଖତ କରିଦିଅନ୍ତି । ଏ ଅବସ୍ଥା କେବେ ହେବାକୁ ଦେଇ ନ ଥିବାରୁ ତଦ୍‌ଜନିତ ଅସୁବିଧା କେବେ ଭୋଗିବାକୁ ପଡିନି ।

ସେହିପରି ନିଜ କାର୍ଯ୍ୟାଳୟ ବର୍ଷକୁ ଦୁଇଥର ନିଜେ ପ୍ରତି ବିଭାଗକୁ ପରିଦର୍ଶନ କରି ରିପୋର୍ଟ ତିଆରି କରିବା ସହ ତ୍ରୁଟି ସଂଶୋଧନ କରିବା ଫଳରେ ସବୁ ବିଭାଗ ନିର୍ଭୁଲ ଭାବରେ ଓ ତ୍ରୁଟିହୀନ ଭାବେ ତତ୍ପରତାର ସହ କାର୍ଯ୍ୟ କରେ । ପୁରୁଣା ନଥିପତ୍ର ଓ ହିସାବଖାତା ଇତ୍ୟାଦି ସ୍ୱତନ୍ତ୍ର ଭାବେ ସାଇତି ଯତ୍ନରେ ରଖିବାଦ୍ୱାରା ପରବର୍ତ୍ତୀ ସମୟରେ ବହୁତ ଉପକାରରେ ଆସେ । କ୍ଷେତ୍ରରେ ଥିବା ପଞ୍ଚାୟତ ଓ ସମବାୟ ସମିତି ନିୟମିତ

ପରିଦର୍ଶନ କରିବା ଫଳରେ ତାଙ୍କର ଦୋଷ ତ୍ରୁଟି ନଜରକୁ ଆସେ ଏବଂ ସେମାନଙ୍କର ଗୋଟେ ଭୟ ମଧ୍ୟ ରହେ । ଏ କାର୍ଯ୍ୟ ନିଜେ ନ କରି ଆଉ କାହାଦ୍ୱାରା ହାକିଚି ପକାଇଲାପରି କରାଇଦେଲେ ତାଙ୍କର ଅଭାବ ଅସୁବିଧା ଓ ଦୋଷତ୍ରୁଟି ବା ସମସ୍ୟା ଜାଣି ହୁଏ ନି । ତେଣୁ ସେମାନେ ଭୁଆଁ ବୁଲାନ୍ତି । ଏହିପରି ପରିଦର୍ଶନ ସମୟରେ ଗୋଟିଏ ପଞ୍ଚାୟତର ତୋଷରପାତ ଦୁଇଟି ସମବାୟ ସମିତିର ରାସାୟନିକ ସାର ବିକ୍ରୀଧନ ତୋଷରପାତ ଦୃଷ୍ଟିକୁ ଆସିଥିଲା । ଏସବୁ କ୍ଷେତ୍ରରେ ତାଙ୍କୁ ନିୟମାନୁଯାୟୀ ଦାୟୀ କରିବାରେ ସେମାନେ ଆମ ଗାଁକୁ ଯାଇ ଭଉନାଙ୍କୁ ପ୍ରବର୍ତ୍ତାଇ ଛାଡ ପାଇଁ କହିଥିଲେ ମଧ୍ୟ ସେ ବୁଝାଇ ଦେଇଥିଲେ ଯେ ସରକାରୀ ଟଙ୍କା ନ ଦେଇ ଦେଲେ ସେ କେବେ ଛାଡିବ ନି । ତାକୁ କହି ଲାଭ ନାହିଁ । ସେଠୁ ହତାଶ ହୋଇ ଫେରି ଆଇନଗତ ପନ୍ଥାର ଆଶ୍ରୟ ନେଇ ବିଳମ୍ବ ସୃଷ୍ଟିକରିବା ଓ କାର୍ଯ୍ୟ ଅଚଳ କରିବାକୁ ଏମାନେ ପଛାଇ ନ ଥିଲେ । ଫଳରେ ସାଧାରଣ ଲୋକେ ଅସୁବିଧାର ସମ୍ମୁଖୀନ ହୋଇଥିଲେ । ଏଥିପାଇଁ ଲୋକଙ୍କୁ ମଧ୍ୟ ବୁଝାଇବାକୁ ପଡିଥିଲା । ଲୋକେ ବୁଝିଲେ । ଆଂଶିକ ଟଙ୍କା ମଧ୍ୟ ଆଦାୟ ହୋଇଥିଲା ଓ ଅନ୍ୟ ବ୍ୟବସ୍ଥା କରାଯାଇ ଲୋକଙ୍କ ଅସୁବିଧା ଦୂର କରାଯାଇଥିଲା । ଥରେ ଏ କଠୋର କାର୍ଯ୍ୟାନୁଷ୍ଠାନରେ ବିରକ୍ତ ହୋଇ ସଂପୃକ୍ତ ବ୍ୟକ୍ତିଙ୍କର ଜଣେ ସମର୍ଥକ ଆମ ଗାଁ ହାଟରେ ଯାଇ ମୁଁ ଶୁଖୁଆ ଚୋରି କରି ନେଇ ଆସିଛି ବୋଲି ମିଥ୍ୟା ପ୍ରଚାର କରିବାରେ ଲୋକଙ୍କଠାରୁ ସଠିକ୍ ଜବାବ୍ ପାଇ ନିରାଶରେ ଫେରିଥିଲେ ।

ନିଜ କାର୍ଯ୍ୟାଳୟକୁ ଆସୁଥିବା ସବୁ ଚିଠିପତ୍ର ଓ ଯାଉଥିବା ସବୁ ଚିଠିପତ୍ର ନିଜେ ଦେଖିବା ଦ୍ୱାରା ସମୁଦାୟ କାର୍ଯ୍ୟାଳୟରେ କେଉଁଠି କ'ଣ ହେଉଛି ଓ କ'ଣ ହେବା ଦରକାର ସେ କଥା ସହଜରେ ନଖ ଦର୍ପଣରେ ଜାଣି ହୁଏ । ପୁରୁଣା ଅଡିଟ ରିପୋର୍ଟକୁ ସମସ୍ତେ ପ୍ରାୟ ଅବହେଳା କରନ୍ତି । ମଲାମଣିଷକୁ ପରୀକ୍ଷା କରିବା ସହ ଏହା ସମାନ ବୋଲି କହନ୍ତି । ମୁଁ କିନ୍ତୁ ସବୁବେଳେ ଏ କାମଟିକୁ ଅଗ୍ରାଧିକାର ଦେଇ କରେ । ଫଳରେ ସବୁ କଥା ଓ ଦୁର୍ବଳତାର କାରଣ ଜାଣିପାରେ ।  ତତ୍‌କ୍ଷଣାତ କାମ ପାଇଁ ବରାଦ କରିବାକୁ କିମ୍ବା କ୍ଷେତ୍ର ପରିଦର୍ଶନ ବେଳେ କିଛି ଲିଖିତ ଆଦେଶ ଦେବାକୁ ଗୋଟିଏ ବ୍ୟକ୍ତିଗତ ସ୍ମାରକ ବା ଚିଠି ବ୍ୟବସ୍ଥା କରି ଗୋଟିଏ ଖାତାରେ କାର୍ବନ ଓ ପେନ୍‌ସିଲ୍ ରଖି ଯେଉଁଠି ଯାହା ନିର୍ଦ୍ଦେଶ ଦେବାର କଥା କପି ରଖି ଲେଖି କ୍ରମିକସଂଖ୍ୟା ଓ ତାରିଖସହ ଦେବା ଦ୍ୱାରା ଅଫିସକୁ ଅପେକ୍ଷା କରି ଯେଉଁ ବିଳମ୍ବ ଘଟେ ତାକୁ ଏଡାଇ ଦେଉଥିଲି। ପୁଣି ପ୍ରତିମାସରେ ଜିଲ୍ଲାପାଳଙ୍କୁ ସବୁ ବିଷୟରେ ଗୋଟିଏ ଗୁପ୍ତ ବିବରଣୀ ପତ୍ର ପଠାଇବା ଦ୍ୱାରା ତାଙ୍କ ସହ ଗୁରୁତ୍ୱ ପୂର୍ଣ୍ଣ ବିଷୟରେ ସମ୍ପର୍କ ସ୍ଥାପନ ସହ ତଳିଆବାଲାଙ୍କର ଗୋଟିଏ ଭୟ ମଧ୍ୟ ରହୁଥିଲା । ମୋପରେ ଡେରାବିଶ୍ ବିଡିଓ ହୋଇଥିବା ଓ.ଏ.ଏସ୍. ଶ୍ରୀଯୁକ୍ତ ଅଲେଖ ପଢିଆରୀ ଥରେ ଦେଖାହେଲା ବେଳେ ଏ ଦୁଇଟି କାମର ତାରିଫ୍ କରି ସେ ମଧ୍ୟ ତାକୁ ଅନୁସରଣ କରୁଥିବାର ଜଣାଇବାରେ ଆନନ୍ଦ ଆସିଲା ।

ଏହିପରି ପରିସ୍ଥିତିରେ ଆମ ସଭାପତି ଅତିଷ୍ଠ ହୋଇଗଲେ । ଏସବୁ କରି ସମୟ ନଷ୍ଟ ହେଉଛି ବୋଲି ତାଙ୍କର ମତ । କାରଣ ଏସବୁଥିରୁ ତାଙ୍କର ଅତୀତ ଦୁର୍ବଳତା ମଧ୍ୟ ଜଣାପଡୁଥିଲା । ସେ ଥରେ ଯାଇ କେନ୍ଦ୍ରୀୟ ଡିଭିଜନର ରାଜସ୍ୱ କମିଶନରଙ୍କୁ ବ୍ଲକ୍ ପରିଦର୍ଶନ ପାଇଁ ଡାକି ଆଣିଲେ । ତାଙ୍କ କାର୍ଯ୍ୟାଳୟରୁ ଜଣେ ପୁରୁଣା କିରାଣି ତ୍ରିପାଠୀ ବାବୁ ଆଗୁଆ ଦଳରେ ଆଉ ଦୁଇଜଣଙ୍କୁ ଧରି ୪ ଦିନ ଆଗରୁ ଆସିଗଲେ । ତାଙ୍କର ରହିବାର ଓ ପ୍ରଥମ ରାତିରେ ପହଞ୍ଚିବା ସମୟରେ ଖାଇବାର ବନ୍ଦୋବସ୍ତ କରାଗଲା । ପାଖରେ ବଡ ଦୋକାନ ନ ଥାଏ । ଯେଉଁ ଦୋକାନ ଥିଲା ସେଠାରୁ ରୁଟି ତରକାରୀ ଓ ଦୁଇଟି ମିଠାଆଣି ଦେବାରେ ସେ କେବଳ ମିଠା ଖାଇଲେ ଓ ଆଉକିଛି ଖାଆନ୍ତିନି ବୋଲି କହିଲେ । ତାପରେ ଯିବାଯାଏ ସେ କ'ଣ ଖାଇଲେ ଆଉ ବୁଝିବାକୁ ଦରକାର ମନେ କଲିନାହିଁ । ତେଣୁ ସେ ଭଦ୍ରଲୋକ ସବୁବିଷୟ କଡାକଡି ତନଖିକରି ନୋଟ ପ୍ରସ୍ତୁତ କହିବାକୁ ଲାଗିଲେ । ମୋ ସହିତ ଆଲୋଚନା ସମୟରେ ସେସବୁ ତାଙ୍କୁ ବୁଝାଇ ଦେଲେ ମଧ୍ୟ ସେ କେତେ ଯାଗାରେ କାଟି ସଂଶୋଧନ କଲେ ଓ ଆଉ କେତେ ସେମିତି ଛାଡିଦେଇ ଟାଇପ କରାଇଦେଲେ ।

ଶେଷ ଦିନ କେନ୍ଦ୍ରୀୟ ରାଜସ୍ୱ କମିଶନର ଶ୍ରୀଯୁକ୍ତ ପି.କେ. ଚକ୍ରବର୍ତ୍ତୀ ଆସିଲେ । କମିଶନର ଥିଲେ ଜଣେ ବୁଢା ବଙ୍ଗାଳୀ । ସେ ଖୁବ୍ ଭଲ ଲୋକ । ପଙ୍ଖାତଳେ ବସି ଧୀରେ ଧୀରେ ସେ ସବୁ ନୋଟ ପଢିଲେ । ମତେ ଆଗରେ ବସାଇ ପଚାରିଲେ । ମୁଁ ମଧ୍ୟ ସବୁ ନିର୍ଭୟରେ ବୁଝାଇ ଦେବାରେ ସେ ପୁରା ରିପୋର୍ଟଟିକୁ ସଂଶୋଧନ କରିଥିଲେ । ଶେଷରେ ଦେଖିଲେ ଯେ ସବୁ ପୁରୁଣା ଅଡିଟ୍ ରିପୋର୍ଟ ସଂଶୋଧନ କରି ପଠାଯାଇଛି । ତଥାପି ତ୍ରିପାଠୀ ଲେଖିଛନ୍ତି କିଛି ରିପୋର୍ଟ ଗୃହୀତ ହୋଇନି । ଏତିକିରେ ସେ ଚିଡିଯାଇ ତାକୁ କାଟି ତାଙ୍କ ଷ୍ଟେନୋକୁ ପାରାଟି ସଂଶୋଧନ କରି ଲେଖିବାକୁ କହିଲେ ଯେ "ଏପରି ବ୍ଲକ୍ ସାରା ରାଜ୍ୟରେ ନାହିଁ । ଏଇ ଏକମାତ୍ର ବ୍ଲକ୍ ଯେଉଁଠିକି ସବୁ ପୁରୁଣା ଅଡିଟ୍ ରିପୋର୍ଟ ସଂଶୋଧିତ ହୋଇଛି । ସବୁ ପରିଦର୍ଶନ ରିପୋର୍ଟ ପ୍ରସ୍ତୁତ ଓ ସଂଶୋଧନ ହୋଇଛି । ଏହା ଏକ ପ୍ରଶଂସନୀୟ କଥା ।" ଏପରି ଅବସ୍ଥାରେ ନିୟମିତ ପରିଦର୍ଶନ କରି ବହୁ ସମୟ ନଷ୍ଟ କରୁଥିବାରୁ ମତେ ବଦ୍‌ନାମ କରିବାକୁ କମିଶନରଙ୍କ ନିକଟରେ ବସି ଡାକି ଆଣିଥିବା ଆମ ସଭାପତି ନିଜେ ଅପମାନିତ ହୋଇଥିଲେ । ଏପରି ହେଲା ଯେ ସେ ଆଉ ତାଙ୍କ ସହିତ ମଧ୍ୟାହ୍ନ ଭୋଜନ କରିବାକୁ ସାହସ କରି ଗଲେନି; କାରଣ ସେ ମଧ୍ୟାହ୍ନ ଭୋଜନକୁ ଯିବା ପୂର୍ବରୁ ତାଙ୍କୁ ଡାକି କହିଲେ, "ତୁମେ ଯେଉଁ ଧାରଣା ମତେ ଦେଇଥିଲ ମୁଁ ଠିକ୍‌ତା'ର ଓଲଟା ଦେଖୁଛି ।" ସମସ୍ତଙ୍କ ଆଗରେ ସେ ଏପରି କହିବେ ବୋଲି ସଭାପତି ଆଶାକରି ନ ଥିଲେ ।

ଯୋଗକୁ ସେଦିନ ମୋ ଅର୍ଦଳି ପିଅନ ନଡିଆ ରସ ଦେଇ ଦୁଇଟି ବଡ ଚୁଙ୍ଗୁଡି ଗୋଟା ତରକାରୀ ଖୁବ୍ ଯତ୍ନରେ ପ୍ରସ୍ତୁତ କରି ମଧ୍ୟାହ୍ନ ଭୋଜନ ଟେବୁଲ୍‌ଟି ସଜାଇ ରଖିଥିବାର ଦେଖି କମିଶନର ପୁରା ଖୁସି ହୋଇଗଲେ । ପ୍ରାୟ ଏକ ଘଣ୍ଟାକାଳ ଏକାବସି ଧୀରେଧୀରେ

ଭୋଜନ ଓ ତାପରେ ବିଶ୍ରାମ କରି ଆଉ ବ୍ଲକ୍‌କୁ ନ ଯାଇ ସିଧା କଟକ ଫେରିଲେ ଭୂରିଭୂରି ଧନ୍ୟବାଦ ଦେଇ । ଠାକୁରେ ବଡଲୋକ । ସଭାପତି ଓ ତ୍ରିପାଠୀ ସିନା ମୋ ପାଇଁ ଖାତ ଖୋଳିଥିଲେ; ହେଲେ ଠାକୁରେ ଦେଖନ୍ତି ଅନ୍ତରକୁ ଓ ପରିଶ୍ରମକୁ । ସେ ଦେଖିଲେ ଏତେ ଆନ୍ତରିକତା ସହ ଦିନରାତି ଖଟିଖଟି ଯଦି ଲୋକଟି ଦୁର୍ନାମ ହୁଏ, ତେବେ ଶ୍ରମ ଓ ନିଷ୍ଠାର ପରାଜୟ ହେବ । ତେଣୁ ସେ ରୋଗକୁ ଚାହିଁ ଔଷଧ ବ୍ୟବସ୍ଥା କରିଦେଲେ । ଫଳରେ ମୋର କର୍ମସ୍ପୃହା ବଢିଗଲା ଏବଂ ସବୁ କର୍ମଚାରୀଙ୍କର ମଧ୍ୟ ଖାତିର ବଢିଗଲା । ଶେଷରେ ସେହି କର୍ମଯୋଗର ପ୍ରବକ୍ତା ଯୋଗୀ ଶ୍ରେଷ୍ଠ ଶ୍ରୀକୃଷ୍ଣଙ୍କର ଜୈତ୍ର ପତାକା ଉଡିଲା ।

## ୮୯.କ୍ରୀଡା ପ୍ରତିଯୋଗୀତା

ପ୍ରାଥମିକ ବିଦ୍ୟାଳୟ ଗୁଡିକ ପଞ୍ଚାୟତ ସମିତିର ଶାସନାଧୀନ ହେବାରେ କେବଳ ଶିକ୍ଷକ ମାନଙ୍କୁ ଦରମା ଦବା ବ୍ୟତୀତ ଏସବୁ ଅନୁଷ୍ଠାନ ପ୍ରତି ସମିତିର ଆଉ କିଛି କର୍ତ୍ତବ୍ୟ ନାହିଁ ବୋଲି ସମସ୍ତଙ୍କର ଧାରଣା । ମାତ୍ର ଏସବୁ ଅନୁଷ୍ଠାନ ପାଇଁ ବହୁତ କିଛି କର୍ତ୍ତବ୍ୟ ରହିଛି । ସେ ସବୁ କର୍ତ୍ତବ୍ୟ ନ କଲେ ହଜାର ହଜାର ପିଲାଙ୍କ ପ୍ରତି ଓ ଶହ ଶହ ଶିକ୍ଷକଙ୍କ ପ୍ରତି ଅବହେଳା କରାଯାଉଛି ବୋଲି ବୁଝିବାକୁ ହେବ । ସବୁବେଳେ ସେ ବାବଦରେ ସରକାରୀ ଅନୁଦାନ ନଥିଲେ ସେପରି କାମରେ ବାବୁମାନେ ହାତ ଦିଅନ୍ତିନି । ମାତ୍ର କ୍ରୀଡା ପ୍ରତିଯୋଗୀତା ପରି ଏକ ବିରାଟ କାମ ପାଇଁ ଧନର ଅଭାବ ବଡକଥା ନୁହେଁ । ପ୍ରଥମେ ଶିକ୍ଷକମାନଙ୍କ କେନ୍ଦ୍ର ସଭାରେ ଓ ତା'ପରେ ପଞ୍ଚାୟତ ସମିତିରେ ଏ ବିଷୟ ଆଲୋଚନା କରିବାରେ ଏହା ଏକ ଭଲ କାମ ହେବ ବୋଲି ସମସ୍ତେ ଅକୁଣ୍ଠ ସମର୍ଥନ ଜଣାଇଲେ । ସେହି ସମର୍ଥନର ସୁଯୋଗ ନେଇ ପ୍ରତି ଶିକ୍ଷକ ଦଶଟଙ୍କା, ପ୍ରତି ସମିତି ସଭ୍ୟ ଓ ସରପଞ୍ଚ ଶହେଟଙ୍କା ଓ ପ୍ରତି କର୍ମଚାରୀ କୋଡିଏ ଟଙ୍କା ଚାନ୍ଦା ଦେବାକୁ ପ୍ରସ୍ତାବ ହେବାରେ ତା'ମଧ୍ୟ ଶୀଘ୍ର ଆଦାୟ ହୋଇଗଲା । ପରିଚାଳନା ପାଇଁ ଦୁଇ ଶିକ୍ଷା ପରିଦର୍ଶକ, ବିଡିଓ, ସଭାପତି ଓ ଦୁଇଜଣ କେନ୍ଦ୍ର ଶିକ୍ଷକ ଓ ଦୁଇଜଣ ସରପଞ୍ଚଙ୍କୁ ନେଇ ଏକ କମିଟି ଗଢାଗଲା । ବାସ୍ତବରେ ଏ କମିଟି ଅପେକ୍ଷା ଶିକ୍ଷକ ମାନେ ହିଁ ପୂରା ଦାୟିତ୍ୱ ନେଇ କାମଟି କରାଇଦେଲେ ।

ପ୍ରଥମେ ପ୍ରତି ସ୍କୁଲରେ ବିଭିନ୍ନ ଖେଳ କସରତ ହୋଇ ଭଲ ପିଲା ବଛାଗଲେ । ତା ପରେ କେନ୍ଦ୍ର ସ୍ତରରେ ବଛା ବଛି ହେଲା । ଶେଷରେ ବ୍ଲକ୍ ସ୍ତରକୁ ସବୁ ପଞ୍ଚାୟତର ବଛା ବଛା ପିଲା ଆସିଲେ । ସରପଞ୍ଚ ନିଜ ପଞ୍ଚାୟତର ପତାକାଧରି ଆଗରେ ଓ ତା ପଛକୁ ସ୍କୁଲ ଓ୍ୱାରି ପିଲା ଓ ଶିକ୍ଷକ ମିଶି ଯେତେବେଳେ ଡ୍ରମ ବାଜାର ତାଳେ ତାଳେ ଶୋଭାଯାତ୍ରାରେ ଯାଇ ନିଜ ନିଜର ଖେଳପତାକା ଉଡାଇଲେ ତାହା ସମସ୍ତଙ୍କୁ ସ୍ତବ୍ଧ ଓ ମୁଗ୍ଧ କରିଦେଲା । ଏଭଳି ଦୃଶ୍ୟ ବ୍ଲକ୍ ସ୍ତରରେ କେନ୍ଦ୍ରାପଡାରେ ଏକ ଅଭିନବ ଦୃଷ୍ଟାନ୍ତ ସୃଷ୍ଟି କଲା । ତାପରେ ଚାଲିଲା ପ୍ରତିଯୋଗୀତା । ଶିକ୍ଷକ ଓ ପିଲାମାନଙ୍କୁ ମଝିରେ ଖାଦ୍ୟ ଦିଆଗଲା ଓ ଖେଳ ବେଳେ ଫଳ, ବିସ୍କୁଟ ଓ ପାଣି ମଧ୍ୟ ଯୋଗାଯାଉଥିଲା । ଖେଳ ଶେଷ ହେଲା । ପିଲା ବଛା ଗଲେ କମିଟି ଦ୍ୱାରା । ଏଥିରେ କେଳୁବାବୁଙ୍କ ପଞ୍ଚାୟତ ଟିକେ ପଛରେ ପଡିଯିବାରେ ସେ ବିରକ୍ତ ହୋଇ

ଗଣ୍ଡଗୋଳ ଆରମ୍ଭ କରିଦେଲେ ଠିକ୍ ପୁରସ୍କାର ବିତରଣ ପୂର୍ବରୁ । ଗୋଟିଏ ହାତରେ ତାଳି ବାଜେନା । ସମସ୍ତେ ନ୍ୟାୟ ପାଇଥିବାରୁ ଜଣେ ବାଡେଇ ଛାଟି ହେଲେ କ'ଣ ହେବ । ଯା' ହେଉ ତାଙ୍କୁ ବୁଝାବୁଝି କରାଗଲା ଓ କିଛି ସାନ୍ତ୍ୱନା ତାଙ୍କୁ ଓ ତାଙ୍କ ପିଲାଙ୍କୁ ମିଳିଗଲା । ଶାନ୍ତି ସଦ୍‌ଭାବନାରେ ଆରମ୍ଭ ହୋଇଥିବା ଅନୁଷ୍ଠାନଟି ଶାନ୍ତିରେ ଶେଷ ହେଲା; ଶେଷନାଗ ଉପରେ ଶାନ୍ତିରେ ଶୋଇଥିବା ନାରାୟଣଙ୍କ ବିଶେଷ ଆଶିର୍ବାଦରୁ ।

ଏହାର ପ୍ରଭାବ ସେତେବେଳେ କେନ୍ଦ୍ରାପଡା ଉପଖଣ୍ଡ ଟପି ସାରା କଟକ ଜିଲାକୁ ବ୍ୟାପ୍ତ ହୋଇଗଲା । ଫଳରେ ଅନ୍ୟ ଅନେକ ବ୍ଲକ୍‌ରେ ଏହିପରି ସବୁ ପ୍ରାଥମିକ ବିଦ୍ୟାଳୟକୁ ନେଇ କ୍ରୀଡା ପ୍ରତିଯୋଗୀତା ଆରମ୍ଭ ହୋଇଗଲା । ଏହି ପ୍ରଶଂସନୀୟ କାର୍ଯ୍ୟପାଇଁ ସମସ୍ତଙ୍କର ସହଯୋଗ ଥିଲେହେଁ ଶିକ୍ଷକ ମାନଙ୍କ ଅବଦାନ ଅବିସ୍ମରଣୀୟ । ପୁଣି ସେଇମାନେ ହିଁ ସବୁଠାରୁ ଉପକୃତ ହୋଇଥିଲେ ଓ ଦୁଃଖ କଷ୍ଟମଧ ସହିଥିଲେ । ପିଲାଙ୍କୁ ସ୍କୁଲ ସ୍ତରରେ, କେନ୍ଦ୍ର ସ୍ଥଳରେ ବାଛି, ବ୍ଲକ୍‌କୁ ଆଣି ସେଠି ଖେଳେଇ, ବଛା ବଛି କରି ପୁଣି ଛୋଟ ପିଲାଙ୍କୁ ନେଇ ତାଙ୍କ ଅଭିଭାବକଙ୍କ ଜିମା କରିବା କିଛି କମ୍ ବା ଛୋଟ କାମଟିଏ ନୁହେଁ । ଏଥିରେ ଦାୟିତ୍ୱ ଯେତିକି, ଶ୍ରମ ସେତିକି ଓ ଆର୍ଥିକ ବ୍ୟୟ ମଧ ସେମିତି । ତା'ର ଫଳ ସ୍ୱରୂପ ଅଭିଭାବକ ମାନଙ୍କର ସାମୟିକ ପ୍ରଶଂସା ବ୍ୟତୀତ ଆଉ କ'ଣ ଥିଲା । ଶିକ୍ଷା ବିଭାଗ ତ ସ୍ଥାଣୁ ଓ ସଂପୂର୍ଣ୍ଣ ନୀରବ । ହେଲେ ବ୍ଲକ୍ ସ୍ତରରୁ ପ୍ରଶଂସା ପତ୍ର ଶିକ୍ଷକ ମାନଙ୍କୁ ମଧ ମିଳିଥିଲା । ଛୋଟ ପିଲାଙ୍କ ପାଇଁ ଉତ୍ସାହପ୍ରଦ ଓ ବିରାଟ କାମ କରିବାକୁ ସେହି ବାଳଗୋପାଳ ଉତ୍ସାହ, ବଳ ଓ ସହନଶୀଳତା ସହ ଦେଇଥିଲେ ଅଦମନୀୟ ପ୍ରେରଣା । ତାଙ୍କୁ ହିଁ ଏସବୁ କାର୍ଯ୍ୟ ପାଇଁ ସେହି ସ୍ଥଳରେ ସମସ୍ତେ ମିଳିତ ଭାବେ ପ୍ରାର୍ଥନା ଜଣାଇଥିଲେ ।

## ୯୦. ପ୍ରଦର୍ଶନୀ

ଅକ୍ଟୋବର ଦୁଇ ତାରିଖରେ ଛୋଟି ହାଇସ୍କୁଲ ହତାଠାରେ ଏକ ପ୍ରଦର୍ଶନୀର ଆୟୋଜନ କରାଗଲା । ମୁଖ୍ୟତଃ କୃଷି ଉତ୍ପାଦନ ସାମଗ୍ରୀ ଏଥିରେ ପ୍ରଦର୍ଶିତ ହୋଇଥିଲା । ଏହା ଏକ ସଘନ ଧାନ ଚାଷ ପାଇଁ ବଛା ହୋଇଥିବା ବ୍ଲକ୍ ଯୋଗୁଁ ଏଥିରେ ଚାରିଜଣ କୃଷି ସଂପ୍ରସାରଣ ଅଧିକାରୀଙ୍କ ସହିତ କୋଡିଏ ଜଣ ଗ୍ରାମ ସେବକ ଓ ଦଶଜଣ କ୍ଷେତ୍ର ପ୍ରଦର୍ଶକ କର୍ମୀ ଥିଲେ । ସମସ୍ତଙ୍କୁ ନିଜ ନିଜର ଅଞ୍ଚଳ ବାଣ୍ଟି ଦିଆଯାଇଥିଲା ଓ କାମ ମଧ ପୂରା ମାତ୍ରାରେ ଦିଆଯାଇଥିଲା । କୃଷି କର୍ମ ବ୍ୟତୀତ ସମବାୟ, ଗ୍ରା.ପ., ଶିକ୍ଷା, ସ୍ୱାସ୍ଥ୍ୟ, ଶିଶୁକଲ୍ୟାଣ ଇତ୍ୟାଦି କାମ ମଧ୍ୟ ଦେଖିବାର ଦାୟିତ୍ୱ ଦିଆଯାଇଥିଲା । ପ୍ରତି ସପ୍ତାହରେ ଏମାନେ ଏକ ସାମଗ୍ରିକ ରିପୋର୍ଟ ପଠାଉଥିଲେ । ଏମାନଙ୍କ ବ୍ୟତୀତ ପାଞ୍ଚଜଣ ଗ୍ରାମ ସେବିକା ମଧ ଶିଶୁ ଓ ନାରୀକଲ୍ୟାଣ କାର୍ଯ୍ୟ ଦେଖୁଥିଲେ । ଏମାନଙ୍କ କାର୍ଯ୍ୟ ନିୟମିତ ଭାବେ ପ୍ରତି ସପ୍ତାହରେ ଥରେ ସଂପୃକ୍ତ ସଂପ୍ରସାରଣ ଅଧିକାରୀ (ଜଣେ ମହିଳା) ଏବଂ ପ୍ରତି ମାସରେ ଅନ୍ତତଃ ଥରେ ବିଡିଓ ଦେଖୁଥିଲେ । ତେଣୁ ସଂପୂର୍ଣ୍ଣ ବ୍ଲକ୍‌ଟି କାର୍ଯ୍ୟରେ ଚଳଚଞ୍ଚଳ ହୋଇ ରହିଥିଲା । ନିଜକୃତିରେ

ପ୍ରଦର୍ଶନ ପାଇଁ ଆୟୋଜିତ ଏହି ପ୍ରଦର୍ଶନୀରେ କୋଡିଏ ଜଣ ଗ୍ରାମ ସେବକ ଓ ପାଞ୍ଚଜଣ ଗ୍ରାମ ସେବିକାଙ୍କ ପାଇଁ ପଚିଶଟି ପ୍ରଦର୍ଶନୀ ମଣ୍ଡପ ହୋଇଥିଲା ।

ଏବେ କୃଷି ପ୍ରଦର୍ଶନୀ ପ୍ରାୟ ହେଉନି । ଯେଉଁ ଆଞ୍ଚଳିକ ଓ ରାଜ୍ୟ ସ୍ତରୀୟ ପ୍ରଦର୍ଶନୀ ହେଉଛି ସେଥିରେ କୃଷି ଉତ୍ପାଦନ ଜିନିଷ ନ ରଖି ତତ୍ ସମ୍ବନ୍ଧୀୟ ଫଟୋ ଚିତ୍ର ଓ ଲେଖା ବେଶୀ ପ୍ରଦର୍ଶନ କରାଯାଉଛି । ମାତ୍ର ସେତେବେଳେ ଯେ ୨୫ ଟି ମଣ୍ଡପ ଜିନିଷରେ ଭରପୂର ହୋଇଯାଇଥିଲା । ବ୍ଲକ୍ ସ୍ତରରେ ଏତେବଡ ସଫଳ ପ୍ରଦର୍ଶନୀର ଆୟୋଜନ ସେ ଅଞ୍ଚଳରେ ଏକ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ଏବଂ ଜିଲ୍ଲାର ଅନ୍ୟ ବ୍ଲକ୍‌ରେ ତା'ପରେ ପରେ ତଦୃଶ ପ୍ରଦର୍ଶନୀ ଆୟୋଜିତ ହୋଇଥିଲା । ବହୁ ସ୍ଥଳରେ ଜିଲ୍ଲାପାଳ ଓ ଜିଲ୍ଲାକୃଷି ଅଧିକାରୀ ଏହାର ଉଦାହରଣ ଅନ୍ୟମାନଙ୍କୁ ଦେଉଥିଲେ କେତେ ଦିନଯାଏ । ଗ୍ରାମ ସେବକ ଓ ଗ୍ରାମ ପଞ୍ଚାୟତର ସରପଞ୍ଚ ମିଳିତ ହୋଇ ପ୍ରସ୍ତୁତ କରିଥିବା ମଣ୍ଡପ ପରସ୍ପର ମଧରେ ପ୍ରତିଯୋଗୀତା ମୂଳକ ଭାବେ ପ୍ରସ୍ତୁତ ହୋଇଥିବାରୁ ଖୁବ୍ ଚିତ୍ତାକର୍ଷକ ହୋଇ ପାରିଥିଲା । ଏଥିରେ ସଂପ୍ରସାରଣ ଅଧିକାରୀ ମାନଙ୍କ ପ୍ରଚେଷ୍ଟାରେ ବହୁ ଶିକ୍ଷଣୀୟ ଫଟୋ ଓ ଲେଖା ମଧ ପ୍ରଦର୍ଶିତ ଓ ପ୍ରଚାରିତ ହୋଇଥିଲା ।

ପ୍ରଦର୍ଶନୀର ମୁଖ୍ୟ ଅତିଥି ଥିଲେ ମା' ରମାଦେବୀ । ସଭାପତି ତାଙ୍କୁ ଯାଇ ଆମ ଗାଡିରେ କଟକରୁ ନେଇ ଆସିଥିଲେ । ମୁଁ ପହଞ୍ଚିଲା ବେଳକୁ ସେ ପ୍ରଦର୍ଶନୀ ବାହାରେ ଏକ ବେଦୀ ଉପରେ ତଳେ ବସି ଆୟୋଜନ ଦେଖୁଥିଲେ । ମୁଁ ତାଙ୍କୁ ପ୍ରଣାମ ଜଣାଇ ପାଛୋଟି ନେଇ ରହିବା ଓ ଖାଇବାର ବନ୍ଦୋବସ୍ତ କରାଇଦେଲି । ଆମ ଗାଁ ପଲ୍ଲୀମଙ୍ଗଳ ସମିତି ପରେ ଏଠାରେ ତାଙ୍କର ମୋର ଦ୍ୱୀତୀୟ ସାକ୍ଷାତ୍ । ସେ ଖୁବ୍ ମନେରଖି ପାରନ୍ତି । ପିଲାଦିନର ସେ କଥା ମନେ ପକାଇ ଦେବାରୁ ତୁମେ ସ୍ୱେଚ୍ଛା ସେବକ ଥିଲ କହି ମୋ ମୁଣ୍ଡ ଆଉଁସି ଆଶିର୍ବାଦ ଜଣାଇଥିଲେ ।

ସଂଧାରେ ସଭା ଖୁବ୍ ଆଡମ୍ବରରେ ବହୁଲୋକଙ୍କ ଉପସ୍ଥିତିରେ କରାଗଲା । ସମସ୍ତେ ଧନ୍ୟଧନ୍ୟ କହିଲେ । ତା'ପରେ ଆରମ୍ଭ ହେଲା ପ୍ରକୃତ ଅଧାୟ । ପୁରସ୍କାର ପାଇଁ ଶ୍ରେଷ୍ଠ ନିର୍ବାଚନ ଗୋଟିଏ କମିଟିକୁ ନେଇ କରାଯାଇଥିଲା । ପୂର୍ବପରି କେଳୁବାବୁ କମ୍ ପୁରସ୍କାର ପାଇ ପାଟିତୁଣ୍ଡ ଆରମ୍ଭ କରିଦେଲେ । ସେ ତାଙ୍କ ପ୍ରକୃତି । ଏତେ ସଫଳତା ପରେ ଏ କାଣ୍ଡ ଲଜ୍ଜାରେ ମୁଣ୍ଡ ନଇଁ ଦେଲା । ଅବଶ୍ୟ ସେ ତାଙ୍କ ଅଞ୍ଚଳରେ ହେଉଥିବା ଯେ ପ୍ରଦର୍ଶନୀ ପାଇଁ ଛୋଟି ସରପଞ୍ଚ ରାମବାବୁଙ୍କ ସହ ମିଶି ବହୁତ ଖଟିଥିଲେ ଓ ଦାନ ସଂଗ୍ରହ କରି ପରିଚାଳନାରେ ମୁଖ୍ୟ ଅଂଶଗ୍ରହଣ କରିଥିଲେ । ମାତ୍ର କମିଟି ତାଙ୍କର ମଣ୍ଡପରୁ ପୁରସ୍କାର ପାଇଁ କମ୍ ସଂଖ୍ୟକ ଜିନିଷ ପୁରସ୍କାର ପାଇଁ ବାଛିବାରେ ସେ ବ୍ୟତିବ୍ୟସ୍ତ ହୋଇ ଗଣ୍ଡଗୋଳ ଆରମ୍ଭ କରିଦେଲେ । ମୁଁ ଆକୁଳରେ କାନ୍ଦି ପକାଇ ଠାକୁରଙ୍କୁ ଜଣାଇଲି ; ହେ ଠାକୁରେ ଏଇ କ'ଣ ଏତେ ଶ୍ରମ ଓ ନିଷ୍ଠାର ଫଳ । ଠାକୁରେ ଡାକ ଶୁଣିଲେ ଏବଂ ତତ୍‌କ୍ଷଣାତ୍ ତା'ର

ପ୍ରତିକାର ମଧ୍ୟ କରିଦେଲେ । ସେ ପରା ବିରାଟ କୁରୁ ସଭା ତଳେ ନୀରିହା ଦ୍ରୌପଦୀର ମାନ ରଖିଥିଲେ । ନିସ୍ୱାର୍ଥପର ଭାବେ ନିଷ୍ଠାର ସହ କରାଯାଇଥିବା କାମର ସଫଳତାକୁ ଜଣେ କିପରି ଭଣ୍ଡୁର କରିପାରିବ ? ଏ ଅବସ୍ଥା ଦେଖି ବହୁ କର୍ମଚାରୀ ଓ ଜନସାଧାରଣ ତାଙ୍କୁ ଖୋଲାଖୋଲି ସ୍ୱାର୍ଥପର କହି ଘୋର ନିନ୍ଦା କରିବାରେ ସେ ଦବିଗଲେ ଏବଂ ପୁରସ୍କାର କମିଟି ତାଙ୍କ ମଣ୍ଡପକୁ କେତୋଟି ସାନ୍ତ୍ୱନା ପୁରସ୍କାର ଦେଲେ । ଏପରି ଲୋକ ଦେଖାଣିଆ କାମ ଆଉ ନ କରିବାକୁ ମନରେ ଗୋଟିଏ ଭାବ ଠାକୁରଙ୍କ ପ୍ରେରଣାରୁ ଏଇଠୁ ସୃଷ୍ଟି ହେଲା । ଏହାପୂର୍ବରୁ ପାଲଲହଡାର ବିଡିଓ ଥିବାବେଳେ ଏହିପରି ଗୋଟିଏ ପ୍ରକାଣ୍ଡ କୃଷି ପ୍ରଦର୍ଶନୀ କରାଯାଇଥିଲା ଓ ତାର କଟୁତୀକ୍ତ ଅନୁଭୂତି ଥିଲେ ମଧ୍ୟ ଆଗ୍ରହ ଓ ଉତ୍ସାହ ପାଖରେ ସେ ଅନୁଭୂତି ପଛରେ ପଡିଯାଇଥିଲା ।

## ୯୧ . ଖା'କୁନ୍ଦା

ଚାକିରୀ ଆରମ୍ଭରୁ ହିସାବ ରକ୍ଷା ଓ ଅଡିଟି ସମ୍ବନ୍ଧରେ ସରକାରୀ ସ୍କୁଲରେ ପଢି ୧ମ ଶ୍ରେଣୀ ପ୍ରମାଣପତ୍ର ପାଇଥିବାରୁ ସବୁବେଳେ ଅଡିଟ୍ ରିପୋର୍ଟ ନେଇ ତଦ୍ରୂପ ଭୁଲ ନ ହେବାପାଇଁ ଦୃଷ୍ଟିଦିଏ । ସେତିକି ନୁହେଁ ପୁରୁଣା ଅଡିଟ୍ ରିପୋର୍ଟର ତୃଟି ସଂଶୋଧନ ମଧ୍ୟ ଯଥା ସମୟରେ କରିଦିଏ । ଯା ମୂଳରେ ଗୋଟିଏ ଭୟ ମଧ୍ୟ ଥାଏ । ସବୁ ବିଭାଗରେ ଅଡିଟ୍ ହୋଇ ତୃଟି ଦର୍ଶାଯାଏ । ମାତ୍ର ବ୍ଲକ୍ ଅଡିଟ୍‌ରେ ଆଇନର ବିଚିତ୍ର ବ୍ୟବସ୍ଥା ଅନୁଯାୟୀ ତୃଟି ବାବଦ ଅର୍ଥ ବିଡିଓ ବା ସଂପୃକ୍ତ ବ୍ୟକ୍ତିଙ୍କଠାରୁ ଆଦାୟ କରିବାର ବ୍ୟବସ୍ଥା ଥାଏ । ଏହା ଏକ ଅତ୍ୟନ୍ତ ଅନ୍ୟାୟ ଓ ଅବାସ୍ତବ ବ୍ୟବସ୍ଥା । ହେଲେ ମଧ୍ୟ ଏଥିଯୋଗୁଁ ବିଶେଷ ସାବଧାନ ହୋଇ କାର୍ଯ୍ୟ କରିବାକୁ ପଡେ ।

ଯେତେବେଳେ ଅଡିଟ୍ ପାର୍ଟି ଆସନ୍ତି ତାଙ୍କୁ ରହିବାକୁ ଘର, ଲଣ୍ଠନ, ଦରି, ରୋଷେଇ ପାଇଁ ବାଲ୍ଟି ଓ ହାଣ୍ଡି ଇତ୍ୟାଦି ଯୋଗାଇ ଦେବା ସହ ଆସିବା ଦିନ ଚା ଓ ଯିବାବେଳକୁ ସବୁ କର୍ମଚାରୀ ମିଶି ଭୋଜି କରି ଓଳିଏ ଖାଇବାକୁ ମଧ୍ୟ ଦେବାର ବ୍ୟବସ୍ଥା କରିଦେଉଁ । ବାକି ସବୁଦିନ ସେ ତାଙ୍କ ହାତରୁ ଖାଇ କାମ କରନ୍ତି । ହେଲେ ମଧ୍ୟ ତାଙ୍କ ସହ ସଂପୂର୍ଣ୍ଣ ସହଯୋଗ କରୁଁ ଏବଂ ଭଲ ବ୍ୟବହାର ମଧ୍ୟ କରୁଁ । ମାତ୍ର କେନ୍ଦ୍ରାପଡାରେ ଥିବା ଶେଷ ବର୍ଷର ଅଡିଟର ଦଳ ଆଉ କିଛି ଅଧିକ ଆଶା କରୁଥିଲେ ବୋଧହୁଏ । ଥଟ୍ଟା ମଜାରେ ଆମ ହେଡ କ୍ଲର୍କଙ୍କୁ ବୁଝାଇ ଦେଇଥିଲେ ଯେ ଅଡିଟବାଲା ଖାଇବେ ଏବଂ କୁନ୍ଦିବେ । ତାଙ୍କୁ ଟିକେ ଜଗିରଖି ଚଳିବା ଦରକାର । ତୁମ ବିଡିଓଙ୍କୁ କହିଦିଅ । ଆମେ କ'ଣ ଅଡିଟ କରିବାକୁ ଆସି ଏଠି ହାତରୁ ନିଜେ ଖାଇବୁ । ତୁଣ୍ଡଖୋଲି ଏକଥା ମୋତେ କହି ନ ପାରି ପ୍ରଥମରୁ ଗୋଟିଏ ଗଣ୍ଡଗୋଳ ଆରମ୍ଭ କରିଦେଲେ । ଗତ ମାର୍ଚ୍ଚ ତା ୩୧ ରିଖରେ ଅତିରିକ୍ତ ଜିଲ୍ଲାପାଳ ଉମାଚରଣ ପାତ୍ରୀ ବ୍ଲକ୍ ପରିଦର୍ଶନ କରିଥିଲେ । ସେଦିନ ରାତିଯାଏ ଟଙ୍କା ଟ୍ରେଜେରୀରୁ ଆସୁଥିଲା । ତେଣୁ ତାଙ୍କ

ପରିଦର୍ଶନ ସମୟପାଏ କ୍ୟାସ୍‌ବହି ଲେଖି ତାଙ୍କୁ ଟଙ୍କା ଗଣତିପାଇଁ ଦିଆଯାଇଥିଲା । ତା'ପରେ ଆସିଥିବା ଟଙ୍କା ବାସ୍ତବରେ ରାତି ୧୨ଟା ପରେ ପହିଲା ତାରିଖରେ ଆସିଥିଲେ ମଧ୍ୟ ପରିଦର୍ଶକ ନ ଥିଲେ ସେହିଦିନ (ମାର୍ଚ୍ଚ ୩୧) ଲେଖାଯାଇଥାନ୍ତା । ମାତ୍ର ପରିଦର୍ଶନ ସରିଯାଇ ଟଙ୍କା ଗଣାଯାଇଥିବାରୁ ପରବର୍ତ୍ତୀ ତାରିଖରେ ଅର୍ଥାତ୍ ଅପ୍ରେଲ ପହିଲାରେ ଲେଖାଯାଇଥିଲା । ଏଇ ସାମାନ୍ୟ କଥାକୁ ଆଳକରି ଅଡିଟର ମୋତେ ଲୁଚାଇ ଆମ କ୍ୟାସ୍ ବହି ନେଇ ଅର୍ଥ ତୋଷରପାତ ହୋଇଛି ବୋଲି ଦର୍ଶାଇ ତାହାଲେଖି ସଭାପତିଙ୍କର ଦସ୍ତଖତ କରିଆଣିବା ପରେ ଗୋଟିଏ ଚିଠି ଜରିଆରେ ମୋତେ ଜଣାଇବାରେ ମୁଁ ଆଶ୍ଚର୍ଯ୍ୟ ହୋଇ ବହି ମଗାଇ ଦେଖିଲି ଯେ ତାହା ଆଦୌ ତୋଷରପାତ ନୁହେଁ । ତାଙ୍କୁ ବୁଝାଇବାରେ ସେ ବୁଝିବାକୁ ନାରାଜ ହେଲେ । ମୁଁ ବିରକ୍ତ ହୋଇ କହିଲି ଯେ ସେ ରାତି ଟଙ୍କା ତୋଷରପାତ କରି ହାତରେ ରଖି ମଳିମଳି ତୁମ ଗାଲରେ ଲଗାଇ ଦିଆଯାଇଥିଲା । ତୁମକୁ କିଏ କ୍ଷମତା ଦେଲା ଯେ ମୋ ବିନାନୁମତିରେ ହିସାବ ବହି ନେଇ ସଭାପତିଙ୍କୁ ତୋଷରପାତ୍ ଲେଖାଇ ଦସ୍ତଖତ କରାଇଲ ?

ଏଥିରେ ଉତ୍ୟକ୍ତ ଓ ଅପମାନିତ ହୋଇ ସେ ମୂର୍ଖ ଅଡିଟର ଉପ ଜିଲାପାଳଙ୍କ ପାଖକୁ ତତ୍‌କ୍ଷଣାତ୍ ଧାଇଁଯାଇ ତାଙ୍କୁ ଧରି ଆଣିଲେ । ତୋଷରପାତ କଥା ଶୁଣି ସେ ନଖାଇ ନପିଇ ଦିନ ୨ଟାରେ ଆସି ପହଞ୍ଚିଲେ । ସେତେବେଳେ ମୁଁ ଖାଉଥାଏ । ଖାଇସାରି ଯାଇ ତାଙ୍କୁ ସବୁକଥା ବୁଝାଇ ଦେବାରୁ ସେ ଓଲଟି ଅଡିଟରଙ୍କୁ ଭର୍ତ୍ସନା କରି କହିଲେ ତୁମେ ଏଇକଥାକୁ ଏତେବଡ କରୁଛ କାହିଁକି ଓ ସଭାପତିକୁ ଦେଖାଇ କାହିଁକି ଦସ୍ତଖତ କଲ ? ମୋତେ କହିଲେ ତାଙ୍କ ଖବର କ'ଣ ବୁଝୁନାହାନ୍ତି ? ତାଙ୍କୁ ନେଇ ଦେଖାଇ ଦେଲି ଘର, ଦରି, ବାସନ, ଆଲୁଅ, ପାଣି ସବୁ ବନ୍ଦୋବସ୍ତ କରାଯାଇଛି । ଆଉ ଅଧିକ ଆଶା ବୃଥା । ସେ ହସିହସି ଖାଇବାକୁ ଚାଲିଗଲେ । ଅଡିଟର ବିଚରା ଅପଦସ୍ତ ହୋଇ ଲୁଚିକରି ରାତା ରାତି ଧାଇଁଲେ କଟକ ଓ ଧରି ଆଣିଲେ ତାଙ୍କ ଅଫିସରଙ୍କୁ । ଯୋଗକୁ ସେ ମୋର ବଂଧୁ । ଆମେ ଦୁହେଁ ଏକାଠି ଲେଖାକାର ତାଲିମ୍ ନେଉଥିଲୁ । ସେ ମଧ୍ୟ ଏସବୁ କାଗଜଦେଖି କିଛି ନାହିଁ ବୋଲି କହି ଆଉ କେତୋଟି ଅକଥନୀୟ ମିଥ୍ୟା ଆରୋପ ବିଷୟ ଉଠାଇବାରୁ ମୁଁ ହସିହସି କହିଲି ତୁମ ଅଡିଟରଙ୍କର ସେପରି ଅଭ୍ୟାସ ଅଛି ।

ତାପରେ ଅନନ୍ୟୋପାୟ ହୋଇ ଅଡିଟର ଛାଡି ପଳାଇଲେ ଏବଂ ଘରେ ବସି ଗୋଟିଏ ବହୁ ଆପତ୍ତି ସମ୍ବଳିତ ରିପୋର୍ଟ ପଠାଇଦେଲେ । ସେଥିରୁ ସବୁ ତ୍ରୁଟି ସଂଶୋଧନ କରି ଓ ଆଉ କେତେକ ମିଥ୍ୟା ତଥା କପୋଳ କଳ୍ପିତ ବୋଲି ଲେଖି ଜବାବ ରିପୋର୍ଟ ପଠାଇ ଦିଆଗଲା । କଟା ଘା'ରେ ଚୂନପରି ସେ କଥାଟା ଅଡିଟର ଅନୁଭବ କଲେ ଏବଂ ଅନ୍ତତଃ ଗୋଟିଏ ବଡ ଆପତ୍ତି ଝୁଲାଇ ରଖିବାର ପ୍ରବଳ ଚେଷ୍ଟାକରି ସଫଳ ହେଲେ ।

ସେ ହେଲା; ନୋଳପାଟରେ ପାଣି ଜମିରହେ । ଧାନ ଫସଲ ହୁଏନି । ଖରାଦିନେ ନାଳକାଟି ପାଣିଛାଡି ନଳିତା ବୁଣିଦେଲେ ଗୋଟିଏ ବଡ ଫସଲ ମିଳିଯିବ ବୋଲି ଏକ ଆଲୋଚନା ସଭାରେ ସେଚବିଭାଗ, କୃଷିବିଭାଗ, ସଭାପତି, ଉପଜିଲାପାଳ ଓ ବିଡିଓ ଥାଇ ନିଷ୍ପତ୍ତି ହୋଇଥିଲା ।

ତଦନୁଯାୟୀ ପାଣି ମିଳିଲେ ଏତେ ପରିମାଣ ମଞ୍ଜି ଦରକାର ହୋଇପାରେ ବୋଲି ଜଣାଇ ଦିଆଯାଇଥିଲା । ତାକୁହିଁ ଭିତ୍ତିକରି ଜିଲାକୃଷି ଅଧିକାରୀ ବହୁତ ମଞ୍ଜି ପଠାଇ ଦେଇଥିଲେ । ପାଣି ମିଳୁନି ଏବଂ ବିନା ଆବଶ୍ୟକତାରେ ଏତେ ମଞ୍ଜି ଦରକାର ନାହିଁ, ତୁରନ୍ତ ଫେରସ୍ତ ନିଆଯାଉ ବୋଲି ସେହି ଦିନହିଁ ଲେଖାଯିବାରେ ସେ କିଛି ଫେରାଇ ନେଇଥିଲେ ଓ ଆଉକିଛି ପଡିରହିଥିଲା; ବାରମ୍ବାର ଚିଠି ସତ୍ତ୍ୱେ । ଅଡିଟରଙ୍କୁ ଏଇଟା ବଡ ଖୋରାକ୍ ହୋଇଗଲା ଓ ସମୁଦାୟ ମଞ୍ଜିର ମୂଲ୍ୟ ମୋ ଦରମାରୁ କାଟି ଆଦାୟ କରିବାକୁ ନିର୍ଦ୍ଦେଶ ଆସିଥିଲା । ମୁଁ ସବୁ ବିଷୟ ବୁଝାଇ ଉତ୍ତର ଦେଲେ ମଧ୍ୟ ସେ ଆପତ୍ତିଟି ଶେଷରେ ସରଚାର୍ଜ ହେବାକୁ ଆଦେଶ ଆସିବାରେ ତାହା ଯମିତି ପାଣ୍ଠି ଅନ୍ତର୍ଭୁକ୍ତ ନୁହେଁ କି ମୁଁ ସେ ପାଇଁ ଦାୟୀ ନୁହେଁ ତଥା ଅଡିଟରଙ୍କ ଆପତ୍ତିର ଅନ୍ତର୍ଗତ ନୁହେଁ ବୋଲି ଜଣାଇବାରେ ତାହା ବନ୍ଦ ହୋଇଗଲା ।

ଏପରି ଏଠାରେ ଅଡିଟର ତାଙ୍କ ଚର୍ଚ୍ଚା ଠିକ୍ ଭାବେ ନ ହେବାରୁ ଉତ୍ୟକ୍ତ ହୋଇ ମିଥ୍ୟା ଆରୋପ ଆଣିଥିଲେ ମଧ୍ୟ ମୁଖ୍ୟ ଲେଖାକାରଙ୍କ କାର୍ଯ୍ୟାଳୟରୁ ଯାଇଥିବା ଉଚ୍ଚସ୍ତରୀୟ ଅଡିଟ୍ ଦଳ ଓ ତାଙ୍କ ଅଧିକାରୀ ଆମର ବ୍ୟବହାରରେ ସନ୍ତୁଷ୍ଟ ହୋଇ ଆମକୁ ଏକ ବଡ ଭୋଜିରେ ଆପ୍ୟାୟିତ କରିଥିଲେ । ଯେଉଁ ଠାକୁରେ ଏ ଦୁଷ୍ଟ ଅଡିଟରଙ୍କ ଦ୍ୱାରା ବୃଥା ସନ୍ତାପିତ କରିଥିଲେ ସେହିଠାକୁରେ ଉଚ୍ଚସ୍ତରୀୟ ଅଡିଟର ଓ ତାଙ୍କ ଅଫିସରଙ୍କ ଦ୍ୱାରା ଆପ୍ୟାୟିତ ଓ ପ୍ରଶଂସିତ କରାଇ ସେ ଦୁଃଖକୁ ଲାଘବ କରାଇଦେଇ ପ୍ରମାଣ କରିଦେଲେ ଯେ ସାଧୁତା ଓ ନିଷ୍ଠା ନିଷ୍ଫଳ ଯାଏନି ।

## ୯୨ . ସିଦ୍ଧ ବଳଦେବଜୀଉଙ୍କର ପରୀକ୍ଷା

ବଡପୁଅ ଟୁକୁର ପାଲଲହଡାଠାରେ ଥିବାବେଳେ ପିଲାଦିନୁ ତାର ଥିବା କଷ୍ଟା ଲାହଟିର ଅପରେସନ୍ ହୋଇଥିଲା । ତା'ପରଠାରୁ ତାର ତରଳ ଝାଡା ବରାବର ହୁଏ । ଔଷଧ ଦେଲେ ଟିକେ କମିଯାଇ ପୁଣି ହୁଏ । ବିଭିନ୍ନ ରଙ୍ଗର ତରଳ ଝାଡା ହୁଏ । ସେଥିପାଇଁ ସେ ସବୁବେଳେ ଦୁର୍ବଳ ଥାଏ । ଦୀର୍ଘଦିନ ଧରି ଲାଗି ରହିବାରୁ ତା ପାଇଁ ମନ ବଡବ୍ୟସ୍ତ । କେନ୍ଦ୍ରାପଡାର ଦୁଇଜଣ ଡାକ୍ତର ଓ ହୋମିଓ ଚିକିତ୍ସା ସହ ବହୁ ଚୁଣି ମୁଣିକା କରି ମଧ୍ୟ ଉପକାର ମିଳିନଥାଏ ।

ଦିନକର ଘଟଣା । ଡା: ସରୋଜ କାନୁନ୍‌ଗୋ ଯେ କିଁ କେବେ ଆସନ୍ତିନି, କେଜାଣି କାହିଁକି ଦିନେ ସକାଳୁ ସକାଳୁ ଆମଘରଠିକି ଆସିଥିଲେ । ତାଙ୍କୁ ଏକଥା କହିଲି ଏବଂ ସେ ତାର ଝାଡା ମଧ୍ୟ ଦେଖିଲେ । ପେଟରେ ଟିକେ ହାତମାରି ଦେଖିଲେ ମଧ୍ୟ । ତା'ପରେ ଯାଇ ଅଳ୍ପ ପଇସାର ଗୋଟେ କ'ଣ ପୁରୁଣା ଔଷଧ ଦେଇ କହିଲେ ବହୁବଡ ଡାକ୍ତର ଦେଖାଇ ଦାମିକା ନୂଆ ଔଷଧତ ଦେଲେଣି, ଯାକୁ ଟିକେ ଖୁଆଇ ଦେଖନ୍ତୁ । ସେତେବେଳକୁ ଆମେ ନୟାଚ

ହୋଇ ଯାଇଥିଲୁ, ସେ ଝାଡାକୁ ଦେଖି। ଔଷଧ ଖୋଇଦେଲୁ ଓ ପୁଅକୁ ବସାଇ ବଳଦେବଜୀଉଙ୍କ ନାମଧରି ପାଣି ବୁଲାଇ ଦେଇ କହିଲି "ତୁମଛଡା ଆଉକିଛି ଭରସା ନାହିଁ। ଦୁଇବର୍ଷ ହେଲା ଝାଡାଚାଲିଛି। ତୁମେ ଯାହା କରିବ।"

ସିଦ୍ଧବଳଦେବଜୀଉ ଡାକ ଶୁଣିଲେ। ସରୋଜବାବୁଙ୍କ ପୁରୁଣା ଶସ୍ତା ଔଷଧ କାମକଲା। ଝାଡା କମିଗଲା। ପାଖ ଗାଁରେ ଭଉଣୀ ଭିଣୋଇ ଥାନ୍ତି। ତାଙ୍କୁ କହି ବଳଦେବଜୀଉଙ୍କ ପାଖରେ ଭୋଗରାନ୍ଧିବାର ବନ୍ଦୋବସ୍ତ କରାଗଲା। ସେତେବେଳକୁ ଗଜେନ୍ଦ୍ର ଭାଇନା ବରାବର ସବୁ ପର୍ବପର୍ବାଣିରେ ଠାକୁରଙ୍କ ତୁଳସୀ ଆଣି ଦେଉଥାନ୍ତି ଓ ଦୁଇ ତିନିଥର ଠାକୁରଙ୍କ ଦର୍ଶନ ମଧ ହୋଇଥାଏ। ସେ ସବୁ ଭୋଗ ରାନ୍ଧିବାର ବନ୍ଦୋବସ୍ତ କରାଇ ଦେଇଥିଲେ। ଶେଷରେ ଯେଉଁଦିନ ଭୋଗହେବ ସେ ଦିନ ପୁଅକୁ ଧରି ଗାଡିରେ ଗଲାବେଳେ ସେହି ଡା: ସରୋଜ ବାବୁଙ୍କ ପେଟ୍ରୋଲ ପମ୍ପ ପାଖରେ ପେଟ୍ରୋଲ ପକାଇବା ସମୟରେ ପୁଣି ପୁଅର ଗୋଟେ ବଡ ଝାଡା ହୋଇଗଲା। ତାକୁଦେଖି ସମସ୍ତେ ହତାଶ ହୋଇଗଲା ବେଳେ ମୁଁ କହିଲି ତାଙ୍କ ନାଁରେ ପୁଅକୁ ପାଣି ବୁଲା ସରିଛି। ତେଣୁ ସେ ଯାହା କରିବେ। ଆମର ଆଉ କ'ଣ ଉପାୟ ଅଛିଯେ। ତାଙ୍କର ପିଲାକୁ ସେ ନିଶ୍ଚେ ରଖିବେ। ଏହି ଦମ୍ଭରେ ଯାଇ ଭୋଗ ରାନ୍ଧି ଖାଇ ପିଇ ଫେରିଲୁ। ପିଲାକୁ ଠାକୁରଙ୍କ ଆଗରେ ଗଡାଇ ଦେଲୁ। ତୁଳସୀ ଖୁଆଇଦେଲୁ।

ବାସ୍ ସେହିଦିନଠାରୁ ତା'ର ଆଉ ତରଳ ଝାଡା ହୋଇନି। ରୋଗଟି ଭଲ ହୋଇଗଲା। ଠାକୁରଙ୍କ ପରୀକ୍ଷାରେ ପାଶ୍ ହୋଇଗଲା। ତାଙ୍କରି ଉପରେ ନିର୍ଭର କରି ଦୁଇବର୍ଷର ଦୁରାରୋଗ୍ୟ ବ୍ୟାଧିରୁ ମୁକ୍ତିମିଳିଲା। ସେହିଦିନଠାରୁ ବହୁକାଳଯାଏ ଅଫିସ୍ ଯାଇ କିଛି ଲେଖାପଢା ଆରମ୍ଭ କରିବା ପୂର୍ବରୁ ସେହି ସିଦ୍ଧ ବଳଦେବଜୀଉଙ୍କୁ ସ୍ମରଣ କରି ତାଙ୍କ ନାମ କାଗଜରେ ପ୍ରଥମେ ଲେଖିବାପରେ ଅନ୍ୟ ଯାହାକିଛି ଲେଖେ ଓ କାମ ଆରମ୍ଭ କରେ। ଗଜେନ୍ଦ୍ର ନନାର ଆନନ୍ଦ କହିଲେ ନ ସରେ। ସେ ବିଚାରା ମାସରେ ଥରେ ଦୁଇଥର ସମୟ ପାଇବା କ୍ଷଣି ରସାବଳି ଭୋଗ ଓ ଠାକୁରଙ୍କ ତୁଳସୀ ଆଣି ଦେଇଯାଏ। ଆମ ଗାଁର ପଣ୍ଡା ନିକପତ୍ରୀଙ୍କୁ ଆମେ ଗଜେନ୍ଦ୍ର ନନା ଯୋଗୁଁ ଭୁଲିଗଲୁ। ସେ ମଧ ବୁଢା ହୋଇ ଯାଇଥିଲେ। ହେଲେ ମନ୍ଦୀରକୁ ଗଲେ ତାଙ୍କୁ କିଛି ଦକ୍ଷିଣା କୁଳ ପୁରୋହିତ ଭାବେ ଦିଆଯାଏ।

ବହୁବର୍ଷପରେ ଚାକିରୀର ଶେଷ ପର୍ଯ୍ୟାୟରେ ପୁଣିଥରେ ସେହି ଭିଣୋଇ ଭଉଣୀଙ୍କ ସହାୟତାରେ ସିଦ୍ଧ ବଳଦେବଜୀଉଙ୍କ ପାଖରେ ଭୋଗ ରାନ୍ଧିବାର ଇଚ୍ଛା ହେଲା। ଆମେ ଦୁହେଁ ଗଲୁ। ଭୋଗ ହେଲା। ନିକପତ୍ରୀ ସେତେବେଳକୁ ଚାଲିଗଲେଣି। ତାଙ୍କ ପୁଅ ପୂଜା ଉପାସନା କଲେ। କିନ୍ତୁ ଗଜେନ୍ଦ୍ର ପତ୍ରୀ କି ଛାଡନ୍ତି। ସେ ରସାବଳୀ ଓ ତୁଳସୀ ଦେଇ ଆଶୀର୍ବାଦ କଲେ ଓ ପୂର୍ବପରି ତାଙ୍କର ଦକ୍ଷିଣା ପାଇଲେ। ପ୍ରକୃତରେ ବଳଦେବଜୀଉ ହେଉଛନ୍ତି ସିଦ୍ଧ, ସତ୍ୟ, ଶିବ ଓ ସୁନ୍ଦର। ତାଙ୍କୁ ଆଶ୍ରା କଲେ, ନିଷ୍ଠା କଲେ, ନିର୍ଭର କଲେ ସେ ସବୁକିଛି କରିପାରନ୍ତି। ଏଇଟା ଅଙ୍ଗେନିଭାଇବା ଅଭିଜ୍ଞତା।

# ୯୩. ମାତୃ ହରା

କେନ୍ଦ୍ରାପଡାରେ ଚାକିରୀ ସମୟରେ ମୋ ସ୍ତ୍ରୀ ଓ ପିଲା ବେଶୀ ଦିନ ଗାଁରେ ଓ ଅଳ୍ପଦିନ ମୋ ପାଖରେ ରହୁଥିଲେ । ପ୍ରକୃତରେ ବେଶୀଦିନ ଗାଁରେ କଟୁଥିଲା । ବୋଉ ମରିଗଲାପରେ ନୂଆବୋଉ ମା'ପରି ଆମକୁ ଦେଖୁଥିଲେ । ସ୍ନେହ କରୁଥିଲେ । ତାଙ୍କୁ ଯେତେ ଯାହା କହିଲେ ସହୁଥିଲେ । ଦିନେ କିଛି କହନ୍ତିନି । ବରଂ ହସି ଦେଇ ସବୁ ଉଡାଇ ଦିଅନ୍ତି । ବୋଉ ପରେ ସେ ବୋଉ ହୋଇଯାଇଥିଲେ । ପର୍ବପର୍ବାଣିରେ ପିଠାପଣା ଦିନ ଘରକୁ ନ ଗଲେ ମନ କଷ୍ଟ କରୁଥିଲେ । କଖାରୁ ଡଙ୍କ ତରକାରୀ ଭଲଲାଗେ ବୋଲି ମୋ ଯିବାଯାଏ କେଉଁଠି ଡଙ୍କଟିଏ ଥିଲେ ତାକୁ ସାଇତି ରଖୁଥିଲେ । ବୋଉପରି ସେ ମଧ୍ୟ ଅଳ୍ପରେ ସନ୍ତୁଷ୍ଟ । କେବେ କିଛି ମାଗନ୍ତିନି । ରାତିରେ ଡେରିଯାଏ ଗାଁରେ ବୁଲିବୁଲି ଫେରିବାଯାଏ ଖାଇବାକୁ ରଖି ବସିଥାନ୍ତି ।

ଦିନେ ଭୋର ସକାଳୁ ଆମ ପଡିଶା ନରି ରଥ (ତଦାନିନ୍ତନ ଆମ ଗାଁର ବଡମାଷ୍ଟ୍ରେ) ସାଇକେଲରେ କେନ୍ଦ୍ରାପଡା ଆସି ମତେ ଉଠାଇ ଖବର ଦେଲେ ଯେ ନୂଆବୋଉ ବିଷଖାଇ ମରିଯାଇଛନ୍ତି । କାଳ ବିଳମ୍ବ ନ କରି ଏଇଓ ରାଓ ବାବୁଙ୍କୁ ଧରି ଗାଡି ନେଇ ଗାଁକୁ ହଠାତ୍ ଚାଲିଲି । ବାଟରେ ମନେ ପଡିଲା ଅପମୃତ୍ୟୁ କେଶ୍‌ରେ ପୋଲିସ୍‌କୁ ଖବର ଦେବା ଦରକାର । ତେଣୁ ଘରକୁ ନ ଯାଇ ସିଧା ସାଲେପୁର ଯାଇ ଜଣେ ପୋଲିସ୍ ଅଫିସରଙ୍କୁ ସାଙ୍ଗରେ ନେଇ ଘରେ ଯାଇ ଦେଖିଲି ଯେ ସେ ସଜପରି ଶୋଇଛନ୍ତି । ପାଟିରୁ ଫେଣ ବାହାରିଛି । ଶୁଣିଲି ଅଳ୍ପକେତେ ପଇସା ଭାଇନାଙ୍କ ପକେଟ୍‌ରୁ ନେଇ କ'ଣ କିଣିଥିବାରୁ ସେ ବିରକ୍ତ ହୋଇଥିଲେ । ଅଖିଆ ରହି ରାଗରେ ଆମ ଭାଗଚାଷୀ ଚନ୍ଦରା ମଲିକ ଠାରୁ ପୋକମରା ଔଷଧ ଆଣି ଖାଇ ଶୋଇଯାଇଛନ୍ତି । ମୋ ମୁଣ୍ଡ ପାଗଳ ହୋଇଗଲା । ମୁଁ ସେ ଦିନରୁ ସତରେ ମାତୃହରା ହୋଇଗଲି । ଘର ପ୍ରତି ସ୍ନେହ ଶ୍ରଦ୍ଧା ସବୁ ତୁଟିଗଲା । ପାଗଳ ପରି ୩ ଦିନ ନ ଖାଇ ନ ପିଇ ନ ଗାଧୋଇ ଏଣେ ତେଣେ ବୁଲି ବୁଲି ଶେଷରେ ନିରାଶ ହୋଇଗଲି । ଚାରିଆଡ ଅନ୍ଧାର ଦିଶିଲା । ସେହିଦିନ ଠାରୁ ଆଉ ମାତୃ ସ୍ନେହ ଓ ଶ୍ରଦ୍ଧା ମିଳିନି । ଏ ଜନ୍ମରେ ମଧ୍ୟ ଆଉ ମିଳିବାର ନାହିଁ । କାରଣ ବୋଉତ ଆଗରୁ ମରିଯାଇଥିଲା ।

ଶେଷରେ ମୋ ବଡଝିଅ ଓ ବଡ ପୁତୁରାକୁ ମୋ ପାଖକୁ କେନ୍ଦ୍ରାପଡା ନେଇଗଲି । ମୋ ସ୍ତ୍ରୀ ତାଙ୍କର ୩ଟି ଓ ଆମର ୪ଟି ପିଲାଙ୍କୁ ସମ୍ଭାଳିବା କଷ୍ଟକର ଥିଲା । ମୋ ପାଖରେ ପିଲା ଦୁହେଁ ରହିଲେ, ପଢିଲେ ଓ ବହୁତ ଶୃଙ୍ଖଳା ତଥା ସଗୁଣ ଶିଖିଲେ । ରାତିରେ ଶୋଇବା ବେଳେ ବହୁତ ଭଲ ଗପ ପ୍ରତିଦିନ ଗୋଟେ ଗୋଟେ କହେ । ମାନସାଙ୍କ ଓ ସାଧାରଣଜ୍ଞାନ ପଚାରେ ଓ ବୁଝାଏ । ଏହିପରି ଦୁହିଁଙ୍କର ଆଦର୍ଶ ଜୀବନ ଗଢିବାକୁ ଅନ୍ତତଃ ପୁରା । ବର୍ଷେ ଖୁବ୍ ଚେଷ୍ଟିତ ଥିଲି । ତାଙ୍କର ମଧ୍ୟ ବୌଦ୍ଧିକ ଓ ଶାରୀରିକ ବହୁ ଉନ୍ନତି ହୋଇଥିଲା । ସେ ମଧ୍ୟ

ତା'ର ମା'ର ଅଭାବ ଭୁଲିଯାଇଥିଲା । ମୋ ସ୍ତ୍ରୀ ଗାଁରେ ରହି ଅନ୍ୟ ୫ଟି ପିଲା ଓ ଭାଇନାଙ୍କ କାମ କରେ । ଝିଅାଟିଟି ତାକୁ ଆଦରିଥାଏ । କହେ ଖୁଡୀ ମୋର ତ ବୋଉ ନାହିଁ ତୁମେ ମତେ ପାଖ ଛାଡ କରିବନି । ସତକୁ ସତ ସେ ତାକୁ ପାଖେପାଖେ ରଖିଥାଏ । ଏହିପରି ଠାକୁରେ ଦୁଇଟି ପରିବାରର ବୋଝ ଲଦି ଦେଇ ପରୀକ୍ଷା କରିଚାଲିଲେ । ଆନନ୍ଦରେ ତାକୁ ତୁଲାଇ ଆମେ ସୁଖରେ ଥିଲୁ । ମୋର ଅର୍ଦ୍ଦଳୀ ପିଅନ ଥିଲା । ସେ'ତ ରାନ୍ଧିଦିଏ । ଆଉ ବିହାରୀ ସବୁବେଳେ ପିଲାଙ୍କ ଦେଖାରଖା ଓ ଯତ୍ନନିଏ । ବିପିନ୍ ଓ ସୂତାର ପିଲାଙ୍କୁ ଟିଉସନ ମଧ୍ୟ କରୁଥିଲେ ।

ମାତ୍ର ଠାକୁରଙ୍କ ବିଚାର ଅନ୍ୟ ପ୍ରକାର । ପ୍ରଥମେ ଭାଇନାଙ୍କୁ ଦ୍ୱିତୀୟ ବିବାହ କଥା ପଚାରିବାରେ ସେ ମନା କରିଦେଇଥିଲେ । ମାତ୍ର ପରେ ମନର ପରିବର୍ତ୍ତନ କରି ନିଜେ ନିଜର ଜଣେ ସାଙ୍ଗ ସାହାଯ୍ୟରେ ୨ୟ ପତ୍ନୀ ଠିକ୍ କରିଥିଲେ । ଏ କଥାଟି ଶୁଣିବା ପରେ ତାଙ୍କ ଉପରେ ଥିବା ମୋର ଭରସା ତୁଟିଗଲା । ପିଲା ତିନିଟିଙ୍କ ଭବିଷ୍ୟତ ନେଇ ମୁଁ ବୃଥାରେ ବଡ ଚିନ୍ତିତ ହୋଇ ଉଠିଥିଲି । ସେ ଚିନ୍ତାରୁ ଠାକୁରେ ମୁକ୍ତି ଦେଲେ । ଏ ପର୍ଯ୍ୟନ୍ତ ନିଜର ବୋଲି କିଛି କରିନଥିଲି । ସମସ୍ତ ଆୟ ଗାଁରେ ଘର, ଜମି ଓ ଘର କରଣା ଜିନିଷ କରିବାରେ ଖଟାଇ ସଂପୂର୍ଣ୍ଣ ନିଃସ୍ୱ ଥିଲି । ନୂଆ ବୋଉଙ୍କୁ ହରାଇ ମାତୃପ୍ରତିମ ସ୍ନେହ ଶ୍ରଦ୍ଧାର କାଙ୍ଗାଳ ମଧ ହୋଇଯାଇଥିଲି । ଏପ୍ରକାର ବିବାହ ସମ୍ବାଦ ଆହୁରି ପାଗଳ କରିଦେଲା । ହେଲେ ମଧ ଆମେ ଥିଲୁ ପିତୃମାତୃହୀନ । ମୁଁ ତ ନିଜେଯାଇ କନ୍ୟାଦେଖି ବଡ ଭାଇଙ୍କର ୧ମ ବିବାହ ସ୍ଥିର କରିଥିଲି । ତେଣୁ ତାଙ୍କର ଇଚ୍ଛାକୁ ଆଉ କାହା ହାତକୁ ବଢାଇ ଦେବାର ନଥିଲା । ତାଙ୍କର ଇଚ୍ଛା ପୂରଣ ସହ ଈଶ୍ୱର ମୋ ମୁଣ୍ଡରେ ମୁଦ୍‌ଗର ପ୍ରହାର କରି ମୋର ମୋହ ଭଙ୍ଗ କରିଦେଲେ । ସତରେ ସେ କେତେ ଦୟାଳୁ । ତାଙ୍କପରି ଆପଣାର ଆଉ କିଏ ଅଛି ? ସବୁବେଳେ ଘର ଜମି, ମୋର ମୋର ବୋଲି ଯେଉଁ ଲୋଭ ମୋହ ଥିଲା ଠାକୁରେ ତାକୁ ତୁଟାଇ ଦେବାର ବନ୍ଦୋବସ୍ତ କରିଦେଲେ ସହଜରେ ଏବଂ ଭାଇନାଙ୍କର ଏହି ନଷ୍ଟଭି କରାୟାରେ । ତାଙ୍କଠାରେ ଏ ଜୀବନ ଚିର ଋଣୀ ।

## ୯୪. ସାତତିଅଣ ତେରଭଜା

ପ୍ରଶାନ୍ତବାବୁ ସେଠାରେ ବିଡିଓ ଥିବାବେଳେ ଦୁଃଖୀକୁ କାର୍ଯ୍ୟଚ୍ୟୁତ କରିଥିଲେ । ସେହି ରାଗରେ ସେ ତାଙ୍କ ନାମରେ ତିନିଚାରିଟି ଫୌଜଦାରୀ ମକଦ୍ଦମା ଦାଏର କରିଥାଏ । ସେ ମକଦ୍ଦମାରେ ହାଜର ହେଉଥାନ୍ତି । ତା ସାଙ୍ଗକୁ ତାର କାର୍ଯ୍ୟଚ୍ୟୁତି ସଂପର୍କରେ ମଧ ଏକ ମକଦ୍ଦମା କରାଯାଇଥିଲା । ଏହି ମକଦ୍ଦମାରେ ଆଦେଶ ଆସିଥାଏ ଯେ କର୍ମଚ୍ୟୁତି ସମ୍ପର୍କୀୟ

ବିବରଣୀରେ କିଛି ତ୍ରୁଟି ଥିବାରୁ ତାହା ରଦ୍ଦକରି ଦରକାର ହେଲେ ପୁନରାୟ ବିଚାର ବିବରଣୀ ଆରମ୍ଭ କରାଯାଉ । ଏହି ଅବସ୍ଥାରେ ଦୁଃଖୀ ଦୁଃଖରେ ପଡିଥାଏ । ଭାଗବତ ବାବୁ ସେ ସମୟରେ ୪ର୍ଥ ଶ୍ରେଣୀ କର୍ମଚାରୀ ସଂଘ ପାଇଁ ଲଢୁଥାନ୍ତି । ଦିନେ ସେ ଦୁଃଖୀ ଖବର ବୁଝିବାକୁ କହିବାରୁ ପ୍ରଶାନ୍ତବାବୁଙ୍କ ନାମରେ କରାଯାଇଥିବା ଫୌଜଦାରୀ ମକଦ୍ଦମା ଉଠାଇ ନେବାକୁ କହିବାରେ ସେ ରାଜି ହୋଇଗଲେ ଓ ହସିଲେ ।

ଦୁଃଖୀ ସେହି ଦିନୁ ଆସି କାର୍ଯ୍ୟରେ ଯୋଗଦେଇ ରୋଷେଇ ବାସର ଦାୟିତ୍ୱ ନେଇଥିଲା । ସେ ଏ କାମଟିର ପୂରା ଦାୟିତ୍ୱ ନେବାରେ "ଅନ୍ନଚିନ୍ତା ଚମତକାରୀ" ତୁଟିଗଲା ଓ ସରକାରୀ କାମ କରିବାକୁ ଯଥେଷ୍ଟ ସମୟ ମିଳିଗଲା । ସକାଳେ ନିତ୍ୟକର୍ମ ଓ ଠାକୁର ପୂଜାକାମ ୭ଟା ମଧ୍ୟରେ ଶେଷ ହୋଇଗଲେ ପୁଣି ରାତି ୧୦ଟାଯାଏ ଆଉ ଘର ଚିନ୍ତା ନଥାଏ । ମଝିରେ ଖାଇବା ବେଳେ ଖାଲି ଆସି ଖାଇଦେଇ ଯିବାକୁ ହୁଏ । ପିଲାଦୁଇଟି (ଝିଅ ଓ ପୁତୁରା)ଙ୍କର ମଧ୍ୟ ସୁବିଧା ହୋଇଗଲା । ସେମାନଙ୍କ ଖାଇବା ଚିନ୍ତା ଆଉ ମୋର ରହିଲାନି । ସେମାନେ ସ୍କୁଲକୁ ଯିବା ସମୟ ବାହାରେ ଟିଉସନ୍ ହେଉଥିଲେ, ଗୀତ ଶିଖୁଥିଲେ ଓ ପୁରାସମୟ କାର୍ଯ୍ୟରତ ଥିଲେ । ବିହାରି ବୋଲି ଜଣେ ରାତ୍ରି ଜଗୁଆଳ ଯାହାର କି ଦିନରେ କିଛି କାମ ନ ଥିଲା ସେ ତାଙ୍କ ଉପରେ ଦିନସାରା ନିଘା ରଖୁଥାଏ । ସେ ହାରମୋନିୟମ ବଜାଇ ଗୀତ ବୋଲେ । ତେଣୁ ତା ବିଦ୍ୟା ସମୟେ ସମୟେ ପିଲାଙ୍କୁ ମଧ୍ୟ ଶିଖାଏ । ଦୁଃଖୀ ଯେ ଖାଇବାକୁ ରୋଷେଇ କରେ ତାହା ନିତ୍ୟ ନୈମିତିକ କାମପରି ହାଜିର ନୁହେଁ । ତାକୁ ଠାକୁରେ ଗୋଟିଏ କଳା ଦେଇଛନ୍ତି । ରୋଷେଇରେ ସେ ସାତ ମାଇପିଙ୍କୁ ହଟାଇ ଦେବ । ଯେଉଁପରି ସଫା ସୁତୁରା ସେହିପରି ପାଟିସୁଆଦ ରାନ୍ଧଣା ତାକୁ ଜଣା । ପୁଣି ପ୍ରତି ଭୋଜନରେ ସିଏ ଠାଏ ଦୁଇଠା ରାନ୍ଧି ପରଷେ ନାହିଁ । ସବୁଥର ସାତ ତିଅଣ ତେର ଭଜା । ବହୁତ ପ୍ରକାରର ଖାଦ୍ୟ ପ୍ରସ୍ତୁତ ଓ ପରିବେଷଣ କରେ । ପୁଣି ଯାହା କରେ ଖୁବ୍ ଭଲ ଭାବରେ ପ୍ରସ୍ତୁତ କରେ । ତା' ରନ୍ଧଣା ଖାଇଲେ ପାଟିରୁ ଛାଡେନି । ସେ ମଧ୍ୟ ଏମିତି ଗୋଟେ ଗୋଟେ ବାଗ ଜାଣିଛି ଯେ ସାଧାରଣ ଜିନଷକୁ ସ୍ୱତନ୍ତ୍ର ଭାବେ ପ୍ରସ୍ତୁତ କରିଦେଇପାରେ । ଆମେ ସମସ୍ତେ ସାଧାରଣତଃ ବାଇଗଣ ପୋଡି, ଭରତା କରିଖାଉ । ସେଥିରେ ରାଗ ଲୁଣ ଓ ତେଲ, ପିଆଜ ଦେଉଁ । ସେ ସେଥିରେ ଟିକେ ଦୁଧସର ଚକଟି ଦେଇ ତାର ସ୍ୱାଦକୁ ଦ୍ୱିଗୁଣ କରିଦିଏ । ଏମିତି ଟିକି ଟିକି ବାଗ ତାକୁ ଜଣା । ରୋଷେଇରେ ମଧ୍ୟ ଅଧିକ ତେଲ ମସଲା ଖର୍ଚ୍ଚ କରେନି । ସାଧାରଣ ଶାଗ ଓ ପନିପରିବାରୁ ବିଭିନ୍ନ ପ୍ରକାର ଖାଦ୍ୟ ସେ ପ୍ରସ୍ତୁତ କରିପାରେ । ଠିକ୍ ସମୟକୁ ମଧ୍ୟ ସେ ରାନ୍ଧିବାଢି ଥୋଇଦେଇଥାଏ ।

ଖାଇବା ସୁବିଧା ହୋଇଯିବା ପରେ କାମରେ ଅଧିକ ସମୟ ତ ନୁହେଁ ଅତ୍ୟଧିକ ସମୟ ଦେଇ ଦେବା ଦ୍ୱାରା ଦେହ ଉପରେ ବହୁତ ଚାପ ପଡିଲା । ବାରମ୍ବାର ଶର୍ଦ୍ଦି ଜ୍ୱର ଲାଗିରହେ । ଦେହ ବିନ୍ଧା ଛିଟିକା କରେ । କାଳନ୍ଦୀ ଏମିତି ବାଗରେ ମୋଡି ଜାଣେ ଯେ ଏକା ମୋଡାକେ ବିନ୍ଧା ଛିଟିକା କମିଯାଏ । ଟିକିଏ ଗିଲେଇବା ଦେଖିଲେ କାଳନ୍ଦୀ ଧାଇଁଆସେ । ସେ କହେ ସୁସ୍ଥ ରହିଲେ ଲୋକଙ୍କ କାମ ଭଲ ହେବ । ତା ଦେଖାଦେଖି ଶାମ, ଫକୀର, ବାଇଧର ମଧ ଯେ ଯାହା ବେଳେ ମୋଡାମୋଡି କରନ୍ତି । ଖୁସିରେ ଘରେ ଶୋଇ ଭୋଗ ବିଳାସରେ ମୋଡା ଘଷା ଖାଇବା' ତ ଭାଗ୍ୟରେ ଯୁଟିନଥିଲା । ଖଟିଖଟି ବାରମ୍ବାର ଅସୁସ୍ଥ ହୋଇ ସେଠି ଖୁବ୍ ଘଷାମୋଡା ଖାଇଛି । ଜୀବନରେ ଆଉ ଏମିତି ମିଳିବନି । ଗ୍ରାମସେବକ ବିପିନ୍ ତାର ବଳକା ମସୟରେ ପିଲା ଦୁଇଟିଙ୍କୁ ପଢାଏ । ଯେତେବେଳେ ସ୍ତ୍ରୀ ପାଖରେ ଥାଏ ତା ପକ୍ଷେ ପ୍ରତିଦିନ ଏକୁଟିଆ ରାତି ଦଶଟାଯାଏ ବସିରହିବା କଷ୍ଟ । ତାକୁ ମଧ ଗପ କରିବାକୁ ଜଣେ ଗ୍ରାମସେବିକା (ନଳିନୀ) ସାଥୀ ମିଳିଯାଏ ।

ସବୁଠାରୁ ଅଧିକ ଖଟିଥାଏ ବୁଦ୍ଧୁ ଡ୍ରାଇଭର । ସକାଳ ୭ଟାରୁ ୧୦ଟା ବା ୧୧ଟା ଯାଏ ଗୋଟାଏ ଆଡୁ ବୁଲି ଆସିବା ପରେ ଦିନସାରା ଅଫିସ୍‌କାମ ଦେଖି ପୁଣି ସଂଧାରେ ୫ଘଣ୍ଟା ଗସ୍ତ ହୁଏ । ତେଣୁ ଅଫିସ୍ ସମୟରେ ଅଫିସ୍ ଓ ଅନ୍ୟ ସମୟରେ କ୍ଷେତ୍ର କାର୍ଯ୍ୟ ପୁରା ଦେଖାହୁଏ । ଦ୍ୱିପ୍ରହରରେ ସଭାପତି ବା ଅନ୍ୟ କେହି ସଂପ୍ରସାରଣ ଅଧିକାରୀଙ୍କର ବିଶେଷ କାମ ଥିଲେ ସେ ମଧ ଗାଡି ନେଇଥାନ୍ତି । ଦିନେ ଦିନେ ଗାଡି ନମିଳିଲେ ସାଇକେଲ୍‌ରେ ଯାଇ କାମ ଦେଖାହୁଏ । ତେଣୁ ବୁଦ୍ଧୁର କାମ ସକାଳ ୭ଟାରୁ ରାତି ୧୧ଟା ଯାଏ । ସେ କେବେ ବିରକ୍ତ ହୁଏନି । ତାକୁ ନେଇଗଲେ ବାଟରେ ଗାଡି କେବେ ଅଟକିବନି । ସେ ଯେପରି ସଚ୍ଚୋଟ ସେହିପରି କର୍ତ୍ତବ୍ୟନିଷ୍ଠ ଓ ତାର ସମୟ ଜ୍ଞାନ ଖୁବ୍ ବେଶୀ । ବଡ ପରିବାର ଯୋଗୁଁ ସବୁବେଳେ ଖଟିଲେ ମଧ ପେଟ ପୂରେନି । ସେଥିରେ ପୁଣି ତା'ର ମଦ ଅଭ୍ୟାସ । ସବୁକାମ ଶେଷରେ ରାତିରେ ମଦପିଇ ଘରେ ଶୁଏ । ତା ଝିଅ ବାହାଘରକୁ କିଛି ଆର୍ଥିକ ସାହାଯ୍ୟ କରିବା ସହ ଗୋଟିଏ ଦୋକାନରୁ ବାକିରେ ଜନିଷପତ୍ର ମଧ ବନ୍ଦୋବସ୍ତ କରାଇ ଦିଆଯାଇଥିଲା । ଏସବୁ ତା କର୍ତ୍ତବ୍ୟନିଷ୍ଠା ପାଖରେ ସଂପୂର୍ଣ୍ଣ ତୁଚ୍ଛ । ଦିନକର କଥା । ସକାଳ ୭ଟାରୁ ବୁଦ୍ଧୁକୁ ନେଇ ବାହାରି ତାପର ଦିନ ଭୋର ୪ଟାରେ ଫେରିଲୁ । ବାଟରେ ଗୋଟିଏ ଜାଗାରେ ତେଲ ସରିବାରେ କିରୋସିନିରେ ଗାଡି ଚାଳିଥିଲା । ପୁଣି ପଙ୍ଖାର ବେଲ୍ଟ ଛିଡିବାରେ ଝୋଟ ଦଉଡିରେ କାମଚଳା ଯାଇଥିଲା । ଗାଡି ଅଟକିନି । ଅଟକିଥିଲେ ସେଦିନର କାମ ହୋଇ ପାରିନଥାନ୍ତା ଏବଂ ସାରାଜୀବନ ପାଇଁ କାମଟି ବାକିପଡି ଯାଇଥାନ୍ତା । ଏହିପରି ଅକୁଣ୍ଠ ସାହାଯ୍ୟ ଓ କର୍ମନିଷ୍ଠା ମୁଁ ଗଲାପରେ ତା'ର କାଳହେଲା । ତାକୁ ଦୂରକୁ ବଦଳି କରାଗଲା । ସେ ବେମାର ହେଲା ଓ ମଲା । ଏ ମୃତ୍ୟୁ ମୋତେ ଯନ୍ତ୍ରଣା ଦେଲା । ତା ସ୍ତ୍ରୀ ପାଖକୁ ଶୁଦ୍ଧିଘର ପାଇଁ ଟଙ୍କା ପଠାଇ ମଧ ଆତ୍ମତୃପ୍ତି ମିଳିନି । ଏ କ'ଣ କର୍ମନିଷ୍ଠାର ଫଳ ?

# ୯୫. ଫକୀର ସ୍ମୃତି

ଫକୀର ହେଉଛି ଅଫିସ୍‌ର ରାତ୍ରି ଜଗୁଆଳ ଓ ସଫେଇ କର୍ମଚାରୀ । ଅଫିସ୍ ଘର ତ ନଥାଏ । ଦୁଇ ତିନିଟି କ୍ୱାର୍ଟରରେ ଅଫିସ୍ ହୁଏ । ସେ ତାକୁ ବସିବସି ଖୁବ୍ ଯତ୍ନରେ ସଫାକରେ । ରାତିରେ ଟଙ୍କା ରହୁଥିବା ଘରେ ଜଗିଶୁଏ । ତା କାମଟି ସେ ଠିକ୍‌ଠିକ୍ କରେ । ତା ଛଡା ଦିନ ସମୟରେ ବସାଘର ସଫାକରିବା, ଦୋକାନ ବଜାର କରିଦେବା, ଅସୁସ୍ଥ ସମୟରେ ମୋଡିଦେବା, ପଥ୍ୟ ଯୋଗାଇବା ତା'ର କାମ । କଲୋନିରେ ରହୁଥିବା ସବୁ ବାବୁଙ୍କୁ ସେ ସାହାଯ୍ୟ କରେ । ସମସ୍ତେ ୧୫ ଘଣ୍ଟିଆ କାର୍ଯ୍ୟକ୍ରମରେ ଏତେ ବ୍ୟସ୍ତ ଥାନ୍ତି ଯେ ଘର ଖବର, ଦୋକାନ ବଜାର ବୁଝିବାକୁ ପ୍ରାୟ ବେଳ ନଥାଏ । ଛୁଟି ଦିନପାଇଁ ନିଶ୍ଚୟ କିଛି ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଆଗରୁ ନିଆଯାଇଥାଏ । ରାତିରେ ଯେତେବେଳେ ଆଉ କେହି ପିଅନ ନଥାନ୍ତି ଫକୀର ହିଁ ସମସ୍ତଙ୍କର ସବୁ ବୋଲହାକ କରେ । ନିର୍ବିକାର ଚିତ୍ତରେ ଓ ଖୁବ୍ ଆଗ୍ରହରେ ସେ ତା'ର କାମ କରିଥାଏ । ତାକୁ ଆଉ ଖାଇବାକୁ ଘରକୁ ଯିବାକୁ ପଡେନି । ଯା ଘରେ ତା ଘରେ ଖାଇବାକୁ ବରଂ ତାକୁ ବେଳ ନଥାଏ । ଫକୀର ପ୍ରକୃତ ଫକୀର । ତା'ର ବାପ ମା ନଥାନ୍ତି । ସେ ଥାଏ ଅଭିଆଡା । ଚେହେରାଟି ବିକୃତ, ଗେଡା, ଟେରା ଓ ଗ୍ରହଣ ଖଣ୍ଡିଆ ପାଟି । କଥା ପୁରା ଉଚ୍ଚାରଣ କରିପାରେନି । ପାଠ ବିଶେଷ କିଛି ନାହିଁ । ମନଟି କିନ୍ତୁ ଖୁବ୍ ନିର୍ମଳ । ଘରେ ତା'ର ଭାଇ ଭାଉଜ । ଦରମାରୁ ଯାହା ରୋଜଗାର କରେ ସବୁନେଇ ଭାଇକୁ ଦେଇଦେଇ ସେ ଆର୍ଥିକ ବୋଝରୁ ରକ୍ଷାପାଏ । ବାବୁମାନଙ୍କ ଦୟାରୁ ତାର ଜାମା ପେଣ୍ଟ ଓ ଲୁଙ୍ଗି ଗାମୁଛା ପାଇଁ ପଇସାର ଅଭାବ ହୁଏନା । ବ୍ଲକ ବରଂ ତା'ର ଘର । ଘର ବୋଲି ସେ କିଛି ଜାଣେନା ।

ଏଇ ଅବସ୍ଥାରେ ତା'ର ବିଭାଘର ହେଲା । ବାବୁ ମାନଙ୍କୁ ଡାକିନେଇ ଘରେ ଭୋଜି ଦେଇଥିଲା । ବିବାହ ପରେ ମଝିରେ ମଝିରେ ଘରକୁ ଯାଉଥିଲା । ଘର ପ୍ରତି ଲୋଭ ଲାଗି ଆସିଥିଲା । ହେଲେ ବ୍ଲକ୍‌ରେ ତା'କାମ ଟିକେ ତଳେ ପଡେନି । ପୂର୍ବପରି ସେ ତା'ର ସବୁକାମ କରୁଥିଲା । ଠାକୁରେ ତାକୁ ସଂସାର ସୁଖ ଓ ଘର ସୁଖରୁ କାଢିନେଲେ । ଦିନେ ରବିବାର ଦିନ ୪ଟା ପାଖାପାଖି ଖବର ଆସିଲା ଫକୀର ଆତ୍ମହତ୍ୟା କରିଛି ତା'ଘର ମଧ୍ୟରେ । ସବୁ କର୍ମଚାରୀ ଦୌଡିଲେ ତା ଗାଁକୁ, ଦେଖିଲେ, ବ୍ୟସ୍ତ ହେଲେ, ଫେରିଲେ । ସେ ଏପରି ଭାବରେ ସମସ୍ତଙ୍କୁ କର୍ମ ମୁଗ୍ଧ କରିଦେଇଥିଲା ଯେ ତା ପାଇଁ ବହୁତ ଲୋକ କାନ୍ଦିଲେ । ସର୍ବ ସମ୍ମତିରେ ସ୍ଥିର ହେଲା ଯେ ତା ପାଇଁ ଏକ ସ୍ମୃତି ମଣ୍ଡପ ନିର୍ମାଣ ହେବ । ବ୍ଲକ୍ କଲୋନି ଆଗରୁ ଥିଲା ରାଧାଗୋବିନ୍ଦଙ୍କ ବସନ୍ତ ବଗିଚା । ଏ ବଗିଚାର ଗୋଟେ କୋଣରେ କିଆବାଡ କତରେ ଥିଲେ ଗୋଟିଏ ଠାକୁରାଣୀ । ବଡ ଦୟନୀୟ ଅବସ୍ଥାରେ ସେଥିଲେ । ପୂଜା କରିବାକୁ ମଧ ତାଙ୍କ ପାଖକୁ ଯିବାର ସୁବିଧା ନଥିଲା । ନିତ୍ୟପୂଜା ପ୍ରାୟ ନଥିଲା ।

ଏହି ଅବସରରେ ସବୁ କର୍ମଚାରୀ ନିଜ ଦରମାରୁ ଚାନ୍ଦାଦେଇ ଯେଉଁ ଫକୀର ସ୍ମୃତି ମଣ୍ଡପ ତିଆରି ହେଲା ତା'ଉପରକୁ ଗୋଟିଏ ପଟକୁ ସେ ଠାକୁରାଣୀଙ୍କୁ ଆଣି ବୈଦିକ ରୀତିରେ ସ୍ଥାପନା କରାଗଲା । ସେ ଗ୍ରାମର ସେ ଥିଲେ ଗ୍ରାମଦେବତୀ । ତେଣୁ ଗ୍ରାମର ମୁଖ୍ୟ ଜଣେ ଖଦୀକର୍ମୀ ତାଙ୍କ ସମିତିରୁ ପ୍ରତିଷ୍ଠାଦିନ ମୋ ପାଇଁ ଯୋଡେ ଭଲ ଲୁଗା ବୁଣି ଆଣିଦେଇଥିଲେ । ତାକୁ ପିନ୍ଧି ପୂଜା ଓ ପ୍ରତିଷ୍ଠା କର୍ମ କରାଗଲା । ସେହି ମଣ୍ଡପରେ କର୍ମନିଷ୍ଠ ଫକୀର ଅମର ହୋଇ ରହିଗଲା । ହେଲେ ତା'ର ଅପମୃତ୍ୟୁ ମୋ ପାଇଁ ଏବେ ମଧ୍ୟ ଏକ ରହସ୍ୟ । କାରଣ ସେ ଏତେ ପାଖରେ ନିଜଲୋକ ପରି ଚଳି ମଧ୍ୟ କେବେ କିଛି ଅସୁବିଧା କଥା କହିନଥିଲା । ତା ମନକଥା ସେ ହିଁ କେବଳ ଜାଣିଥିଲା । ସେ ପରୀକ୍ଷାରେ ପାଶ୍ କରିଗଲା । ଆମ ମନ ଜାଣି ସେବା ଦେଇ ଆମ ମନକୁ କିଣି ନେଇଥିବା ବେଳେ ଆମେ ତାର ମନକଥା ଆଦୌଜାଣି ନ ପାରି ଫେଲ୍ ହୋଇଗଲୁ । ତା'ପରି ସେବକ ସମସ୍ତଙ୍କୁ ମିଳୁ । ଆମପରି ପ୍ରଭୁ ପଣକୁ ଧିକ୍ । ଠାକୁରେ ଆମ ପାଇଁ ଯେ ଏକ ପରୀକ୍ଷା କରାଇ ଆମକୁ ପରମନ ଚିହ୍ନିବାକୁ ହେବ ବୋଲି ଚେତାଇ ଦେଲେ । "ଚିହ୍ନି ନ ପାରଇ ଯେହୁଁ ପରମନ ସେକି ହେବ ପ୍ରଭୁ ପଣକୁ ଭାଜନ" । ଭଗବାନ୍ ସବୁ ପ୍ରଭୁ ବା ମାଲିକ ମାନଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ, ସତପଥରେ ଚଳାନ୍ତୁ ଓ ପରମନ ଚିହ୍ନିବାକୁ ଶକ୍ତି ଓ ସାମର୍ଥ୍ୟ ଦିଅନ୍ତୁ । ତାଙ୍କ ଛଡା ଆଉ କିଏ ଏ ସ୍ୱର୍ଗୀୟ ଗୁଣ ଦାନ କରିପାରେ ?

## ୯୬. କଲିକଟି ଡାଇରି

ଆସିଲା ପଂଚାୟତ ନିର୍ବାଚନ । ନିର୍ମଳ ଶାସନ ଆରମ୍ଭରେ ନିର୍ମଳ ପଞ୍ଚାୟତ ନିର୍ବାଚନ କରାଇ ଅଭିଜ୍ଞତା ତ' ଥିଲା । ତାକୁ ଆହୁରି ମାର୍ଜିତ କରି ଠିକ୍ ଠିକ୍ ନିୟମାନୁଯାୟୀ ନିର୍ବାଚନ କରାଗଲା । ନିୟମରୁ ଦାଢେ ଛଡା ଗଲାନି । ଫଳରେ ବହୁତ ପ୍ରାର୍ଥୀ ଟଳିପଡିଲେ । ଜ୍ଞାତ ସାରରେ କାହାକୁ ନିର୍ଦ୍ଦିଷ୍ଟ ଭାବେ କ୍ଷତ କରାଯାଇନଥିଲେ ମଧ୍ୟ ସଭାପତି ଟିକିଏ ବିଚଳିତ ହୋଇଯାଇ ଦିନେ ଘରେ ଯାଇ କହିଲେ କ'ଣ ଆମଲୋକ ସବୁ ନିର୍ମୂଳ ହୋଇଯିବେ । ଠିକ୍ ତା' ପରେ ପରେ ନନ୍ଦଙ୍କର ପ୍ରାର୍ଥୀପତ୍ର ଯାଞ୍ଚଥାଏ । କେଳୁବାବୁ ଜଣାଇଲେ ଯେ ତାଙ୍କ ପ୍ରତିଦ୍ୱନ୍ଦୀ ବଳରାମବାବୁ ଚାକିରୀ କରିଛନ୍ତି । ତେଣୁ ତାଙ୍କ ପ୍ରାର୍ଥୀପତ୍ର ନାକଚ କରାଯାଉ । ସେ ଚାକିରୀ ତ୍ୟାଗ କରିଥିବାର ତାଙ୍କୁ ପ୍ରମାଣ କରିବାକୁ କୁହାଗଲା । ଏପରି ବାଦ ବିବାଦରେ ସନ୍ଧ୍ୟା ହୋଇଗଲା । ପଡିଆ ମଝିରେ ଯାଞ୍ଚକାର୍ଯ୍ୟ ହେଉଥିଲା । ସେତେବେଳକୁ ପଡିଆଟି ଲୋକାରଣ୍ୟ । ଦୁଇଦଳ ଲୋକେ ମଧ୍ୟ ଉତ୍ୟକ୍ତ ହୋଇଉଠିଥିଲେ । ଦୁଇଜଣ ଗ୍ରାମରକ୍ଷୀଙ୍କ ସାଙ୍ଗକୁ ଆମ ଡ୍ରାଇଭର, ମୁଁ, ପଞ୍ଚାୟତ ସଂପ୍ରସାରଣ ଅଧିକାରୀ ଓ ଜଣେ ପିଅନ ଥାଉ । ଆଉ ଅଧିକ ବିଳମ୍ବ ନକରି କାଲିକୁ ନିଷ୍ପତ୍ତି ଦିଆଯିବ ବୋଲି ଘୋଷଣା କରି ସେଠୁ ଚାଲିଆସିଲୁ ।

ତା'ପର ଦିନ ଅଫିସ୍ ସମୟରେ ଓକିଲ୍ ପୋଷାକରେ ବେଦୁବାବୁ କେଲୁବାବୁଙ୍କୁ ସାଙ୍ଗରେ ଧରି ଆସିଲେ । ବଳରାମବାବୁ ମଧ ତାଙ୍କର ଇସ୍ତଫା ଗୃହୀତ ହୋଇଥିବା କାଗଜ ଦର୍ଶାଇଲେ । ତେଣୁ ଦୁହିଁଙ୍କର ପ୍ରାର୍ଥୀପତ୍ର କାଏମ୍ ରହିଲା ବୋଲି ଯଥାଶୀଘ୍ର ଘୋଷଣା କରିଦେବାରେ ହାଇକୋର୍ଟରେ ଗୋଟିଏ ମକଦ୍ଦମା ଏ ଘୋଷଣା ବିରୁଦ୍ଧରେ ଦାୟର ହେଲା । ମାତ୍ର କେଲୁବାବୁ ନିର୍ବାଚନ ତଥା ମକଦ୍ଦମା ଉଭୟରେ ହାରିଗଲେ । ଏ ଦୁଃଖକୁ ଆମ ସଭାପତି ପୁରସ୍ତମବାବୁ ସହିପାରିଲେନି । ସେତେବେଳକୁ ସେ ଦାନପୁର ଝୋଟ ସମବାୟ ସମିତିର ସଭାପତି ହୋଇଥାନ୍ତି । ତେଣୁ ତାଙ୍କ ପତ୍ନୀ, ଆମ ଗାଁର ଝିଅ ଧୀରାମଣି ପଞ୍ଚାୟତ ସମିତିର ସଭାନେତ୍ରୀ ହେଲେ । ସେ ଉଭୟେ ନିଷ୍ପତ୍ତି କଲେ ଯେ ୪ ବର୍ଷ ଖୁବ୍ ସହିଗଲୁ । ଆଉ ସହିହେବନି । ନିର୍ମଳ ଶାସନକୁ ଆଉ ବରଦାସ୍ତ କଲେ ନିଜେ ନିର୍ମୂଳ ହୋଇଯିବାକୁ ପଡିବ । ତେଣୁ ତାଙ୍କଘରୁ ମୋ ନାମରେ ଜିଲ୍ଲାପାଳଙ୍କୁ ଦିଆଗଲା ଗୋଟେ ଦରଖାସ୍ତ । ଜିଲ୍ଲାପାଳ ଥାନ୍ତି ସୋମନାଥ ସୋମ । ସେ ଯେପରି ଭଦ୍ର ସେପରି ସାଧୁ, ସଚ୍ଚୋଟ କର୍ମତତ୍ପର ।

ସେତେବେଳକୁ ସମଗ୍ର ଅବିଭାଜିତ କଟକ ଜିଲ୍ଲାରେ ସବୁକାମରେ ଆମ ବ୍ଲକ୍ ଆଗୁଆଥାଏ । ସବୁକାମ ଓ ସଚ୍ଚୋଟ ପଣିଆ ପାଇଁ ଖୁବ୍ ନାମ ହୋଇଯାଇଥାଏ । ଏପରିକି ଦୃଷ୍ଟାନ୍ତ ଭାବେ ବହୁସ୍ଥଳରେ ଏ ବ୍ଲକ୍‌ର ଉଦାହରଣ ବିଭିନ୍ନ ସଭାରେ ଦିଆଯାଏ । ଜିଲ୍ଲାପାଳ ସେ ଦରଖାସ୍ତ ଉପରେ ଉପଜିଲ୍ଲାପାଳଙ୍କ ଜରୀୟାରେ ମୋ ଅଜ୍ଞାତରେ ଅନୁସନ୍ଧାନ କରାଇ ରିପୋର୍ଟ ପାଇଲେ ଏବଂ ତା ଉପରେ କିଛି କରାଯାଇନପାରେ ବୋଲି ନିଷ୍ପତ୍ତି ନେଲେ । ଏଥିରେ ବିଚଳିତ ହୋଇ ପ୍ରାକ୍ତନ ସଭାପତି ଜିଲ୍ଲାପାଳଙ୍କୁ ଦେଖାକରିବାକୁ ଗଲେ । ଜାନୁୟାରୀ ମାସ । ଝୋଟ ସମବାୟ ସମିତିର ସଭାପତି ଭାବେ କଲିକତାରୁ ପାଇଥିବା ଏକ ମୂଲ୍ୟବାନ୍ ଡାଇରି ନେଇ ଜିଲ୍ଲାପାଳଙ୍କୁ ଭେଟିଦେଲେ । ସେ କହିଲେ ମୋତେ ଗୋଟେ ସରକାରୀ ଡାଇରୀ ମିଳିଛି । ମୋର ଆଉ କ'ଣ ହେବ ? ଆପଣ ନେଇଯାନ୍ତୁ । ମୁଁ କଲିକତାରୁ ଆପଣଙ୍କ ପାଇଁ ସ୍ୱତନ୍ତ୍ରଭାବେ ଏହାକୁ ଆଣିଛି ଓ ଆପଣ ରଖନ୍ତୁ କହି ପ୍ରାକ୍ତନ ସଭାପତି କଲିକତି ଡାଇରୀ ଛାଡି ଆସିବାରୁ ଜିଲ୍ଲାପାଳ ନିଜ ଆସନରୁ ଉଠିଆସି ତାଙ୍କୁ ତାହା ଓ୍ୱାପସ୍ କରିଦେଲେ ।

ଏବେ ନିଶ୍ଚିତ ହୋଇଗଲା ଯେ, ବଡିଓଙ୍କ ବଦଳୀ ଏ ଜିଲ୍ଲାପାଳଙ୍କ ଅମଳରେ ହୋଇପାରିବନି । ତେଣୁ ଜିଲ୍ଲାପାଳଙ୍କ ବଦଳିପରେ ଛଅମାସ ଉତାରେ ପୁଣି ସରକାରଙ୍କୁ ଆଉଗୋଟେ ଦରଖାସ୍ତ ଦେଇ ରାଜନୀତିକ ଚାପ ପ୍ରୟୋଗ କରି ବିନା ଅନୁସନ୍ଧାନରେ ୪ ବର୍ଷ ରହିଥିବା ଆଳରେ ବଦଳୀ କରାଗଲା । ବଦଳୀହେଲା ଜିଲ୍ଲାପାରି । ଏ ପର୍ଯ୍ୟନ୍ତ ଚାକିରୀ କାଳରେ ବଦଳୀପାଇଁ କେବେକାହାକୁ କିଛି କହିନଥିବା ପରିପ୍ରେକ୍ଷୀରେ ମୁଣ୍ଡପାତି ଦେଇ ସେ ଆଦେଶକୁ ମାନିନେବାକୁ ସ୍ଥିର କଲି । ଅବଶ୍ୟ ମୋପରି ଯେଉଁ ସହକର୍ମୀମାନେ କର୍ମନିଷ୍ଠ ଓ ସଚ୍ଚୋଟ ଥିଲେ ସେମାନେ ବ୍ୟଥିତ ହୋଇପଡିଲେ । କେତୋଟି ମୂଷା ଏ ଚକ୍ରିଯାଉଥିବା

ଡଙ୍ଗାରୁ ଡେଇଁପଡି ଶେଷ ମୂହୁର୍ତ୍ତରେ ସଭାପତିଙ୍କ ଅବୁଡା ଅଭଙ୍ଗା ରାଜନୈତିକ ଡଙ୍ଗାକୁ ଡେଇଁ ପଡିଲେ । ଠାକୁରେ ଯାହା କରନ୍ତି ମଙ୍ଗଳପାଇଁ । ହୁଏତ ଆଉ ବେଶିଦିନ ସେଠି ରହିଥିଲେ ସବୁ କଥାରେ ସଂପୃକ୍ତ ହୋଇ ପଡିବାପରି ଲାଗିଥାନ୍ତା । ପୁଣି ଜିତିବା ଭୂଇଁରେ ରହିବାକଥାନୁହେଁ । ଚାକିରୀ ହେଉଛି ତାଳଗଛ ମୂଳ ଛାଇ । ଏହି ନିୟମଟିକୁ ମନେ ନ ରଖିଲେ ଗୋଟିଏ ଜାଗାରେ କାମୁଡିଧରି ପଡିରହିବାକୁ ମନହୁଏ । ସେଥିରୁ ମିଳେ ହିନସ୍ତା । ଠାକୁରେ ଏହି ହିନସ୍ତାରୁ ରକ୍ଷା ପାଇବାର ବ୍ୟବସ୍ଥା କରିଦେଲେ ବଦଳି ମାଧ୍ୟମରେ । ସେଥିପାଇଁ ଏବେଯାଏ ସେଠିକାର ଲୋକେ ଝୁରିହେଉଛନ୍ତି । ଧନ୍ୟଧନ୍ୟ କହୁଛନ୍ତି, ଏ କ'ଣ ଠାକୁରଙ୍କ ଅବଦାନ ନୁହେଁ, ନିଜର କରାମତି ? ଏତେ ସମସ୍ୟା ଘେରରେ ଏତେ କୃତକାର୍ଯ୍ୟତା କେବଳ ତାଙ୍କରି ଅବଦାନ ଛଡା ଆଉ କଣ ହୋଇପାରେ !

# ୯୭. ବ୍ରାହ୍ମଣୀ ଇଲିସି ଗୋବରୀ ଚିଙ୍ଗୁଡି

ସେତେବେଳକୁ ଇଞ୍ଜିନିୟରମାନଙ୍କୁ ଚାକିରି ମିଳୁନଥିଲା । ଉଭୟ ଡିପ୍ଲୋମା ଓ ଡିଗ୍ରୀ ଇଞ୍ଜିନିୟର ବେକାର ରହିଥାନ୍ତି । ଏହିପରି ଜଣେ ଭଦ୍ରଲୋକ ବ୍ଲକରେ ଠିକାଦାରୀ କରିବାକୁ ଇଚ୍ଛା ପ୍ରକାଶ କରୁଥିଲେ । ତାଙ୍କୁ କାମ ଦେବାକୁ ସରକାରୀ ନର୍ଦ୍ଦେଶଥିଲା । କିନ୍ତୁ ଶୁଣୁଛି କିଏ ? ସମସ୍ତଙ୍କର ଧାରଣା ଏମାନେ କାମ କରିବେନି । ପୁଣି ତାଙ୍କଠାରୁ ପଣି ମିଳିବନି । ହଇରାଣ କରିବେ, ଶିକ୍ଷିତ ଲୋକକିନା ତାଙ୍କୁ ସବୁ ଆଇନି ଜଣା ।

ପରୀକ୍ଷାମୂଳକଭାବେ ସମସ୍ତଙ୍କ ଇଚ୍ଛା ବିରୁଦ୍ଧରେ ତାଙ୍କୁ ଗୋଟିଏ ଛୋଟିଆ କାମ ଦେବାରେ ସେ ଭଲଭାବେ ଶୀଘ୍ର କାମଟି କରିଦେଲେ । ତାଙ୍କରି ଭାଇମାନଙ୍କୁ ପଣିଦେଇ ବିଲ୍ କରାଇନେଲେ । ମୋତେ ଟଙ୍କା ଯାଚିବାକୁ ତାଙ୍କର ସାହସ ନ ଥିଲା । ସେ ଦିନେ ସକାଳେ ବ୍ରାହ୍ମଣୀ ନଦୀର ମାଇ ଇଲିସିଟିଏ ଧରି ପହଞ୍ଚିଲେ । ତାଙ୍କୁ ନିଷ୍ଠୁରଭାବେ ଗାଳିଦେଇ ଫେରାଇ ଦେବାରେ ସେ କାନ୍ଦିପକାଇଲେ । ଖୁବ୍ ଭଦ୍ର ପଲାଟିଏ, ଏ ଦୃଶ୍ୟ ସହି ନପାରି ତାର ମୂଲ୍ୟ ଦେଇ ସେଇଟିକୁ ରଖିବାରେ ସେ ଆଉ ଅନ୍ତଃତ ଦୁଇତିନିଥର ସେହି ସର୍ତ୍ତରେ ଇଲିସି ଆଣି ଦେଇଥିଲେ । ପ୍ରତିଥର ତାଙ୍କୁ ଟଙ୍କା ଦେଇଦିଏ । ଏକଥାକୁ କେହି ବିଶ୍ୱାସ କରନ୍ତିନି । ଦିନେ ଆଉ ଜଣେ ଇଞ୍ଜିନିୟର କାମ କରିବାକୁ ହକ ହକ ହେଉଥିଲେ । ସେ ତାଙ୍କୁ ସବୁକଥା ପଚାରି ବୁଝି କହିଲେ ତୁମକୁ ଟଙ୍କା ଆଣିବାକୁ ଲାଜ ଲାଗୁନି । ତୁମେ ମିଛ କହୁଛ । ଏ କଥାକହି ଦିନେ ଜଗିରହିଲେ । ଏ ବିଷୟରେ ଆମେ ଜାଣୁନା । ସତକୁ ସତ ସେ ଇଲିସିଦେଇ ଟଙ୍କା ନେଉଛନ୍ତି ଦେଖି ତାଙ୍କର ମଧ୍ୟ କାମ କରିବାକୁ ସାହସ ହେଲା । ସେ ମଧ୍ୟ ଦରଖାସ୍ତକରି କାମପାଇଲା । ତାଙ୍କ ଘର ତ ବ୍ରାହ୍ମଣୀ କୂଳରେ ନୁହେଁ । ସେ ଇଲିସି କାହୁଁପାଇବେ । ତେଣୁ ଗୋବରୀର ବଡ ଚିଙ୍ଗୁଡିଧରି ଆସିଲେ । ତାଙ୍କୁ ମଧ୍ୟ ମୂଲ୍ୟ ବୁଝି ପଇସା ଦେବାରେ ସେ ନ ନେବାରୁ ତାଙ୍କୁ ଫିଙ୍ଗିଦେବାରେ ସେ ତାଙ୍କୁ ଆଣିପୁଣି ଦେଇ ପଇସା ନେଇଗଲେ ।

ଉଭୟେ ଅନେକ ଗୁଡିଏ କାମ କରିଥିଲେ । ସବୁକାମ ଭଲ ହେଉଥିଲା । ତଥାପି ଆମ ଯନ୍ତ୍ରୀ ଓ ପଞ୍ଚାୟତ ସମିତି କର୍ମକର୍ତ୍ତା କେଜାଣି କାହିଁକି ତାଙ୍କୁ କାମ ଦେବାକୁ ରାଜି ହୁଅନ୍ତିନି । ସରକାରୀ ଆଦେଶନାମା ତାଙ୍କୁ ବୁଝାଇଲେ ମଧ୍ୟ ସେ ତାକୁ ବୁଝିବାକୁ ନାରାଜ । ତାଙ୍କୁ ସେକଥା ବୁଝାଇବାକୁ ଯେ ବ୍ରାହ୍ମଣୀ ଇଲିସି ଓ ଗୋବରୀ ଚୁଙ୍ଗୁଡି ବନ୍ଦ କରିବାକୁ ପଡିଥିଲା । ତଥାପି ସେ ଠିକ୍ ଭାବେ ବୁଝିନଥିଲେ ।  ଯା ହେଉ, ଠାକୁରଙ୍କ ଦୟାରୁ ଅବସ୍ଥା ବଦଳିଲା । ସେ ଦୁହେଁ ଚାକିରୀପାଇ ଚାଲିଗଲେ । ବହୁ ବର୍ଷପରେ ଜଣେ ଦେଖା ହୋଇ ବହୁ କୃତଜ୍ଞତା ପ୍ରକାଶ କରିବାରେ ତାଙ୍କୁ କହିଥିଲି ତୁମେ ମଧ୍ୟ ନିଜେ ପାଇଥିବା ସାହାଯ୍ୟ ପରି ଲୋକଙ୍କୁ ସାହାଯ୍ୟ କରିବ । ଠାକୁରେ ତୁମକୁ ନିଶ୍ଚୟ ସାହାଯ୍ୟ କରିବେ । ସେ ସତରେ ହେଉକି ମିଛରେ ହେଉ କହିଲେ ଯେ "ଇଞ୍ଜିନିୟର ହେଲେ ମଧ୍ୟ ମୁଁ ଆପଣଙ୍କ ଆଦର୍ଶକୁ ଅନୁସରଣ କରୁଛି । କାହାଠାରୁ ପଇସାଟିଏ ନେଉନି । ଚାକିରୀ ଜୀବନରେ ଏହି ଆଦର୍ଶକୁ ରକ୍ଷା କରିବି ବୋଲି ଭାବିଛି । ଟିକିଏ ଅଭାବ ଅସୁବିଧା ହେଲେ ମଧ୍ୟ ତାକୁ ସମ୍ମୁଖୀନ ହେବାକୁ ସ୍ଥିର କରିଛି ।"

ୟେତ ଠାକୁରଙ୍କର ସାକ୍ଷାତ୍ ବରଦାନ ପରି । ଏକେ ଶୁଣି ବହୁତ କୃତକୃତ୍ୟ ହୋଇଗଲି । ଆଜିଯାଏ ଏ କଥାଟି ମନରେ ରହିଛି । ତା ସହିତ ରହିଛି ସେ ପ୍ରଥମ ଇଲିସି ଓ ଚୁଙ୍ଗୁଡି, ଦେବାର ଦୃଶ୍ୟ । ପାଞ୍ଚ ଦଶଥର ସେ ଇଲିସି ଆଉ ଚୁଙ୍ଗୁଡି ଯଦି ମାଗଣା ଖୁଆଯାଇଥାନ୍ତା ହୁଏତ; ତାର ମୂଲ୍ୟ ପଚାଶ କି ଶହେ ଟଙ୍କା; ହେଲେମାଗଣା ଖାଇଥିଲେ; ଏପରି ଖାଣ୍ଟି ମଣିଷଟିଏ ଗଢିବାର ସୁଯୋଗ ମିଳିଥାନ୍ତା କି ? ପରବର୍ତ୍ତୀ ସାକ୍ଷାତ୍‌ରେ ସେମାନେ ଚୋରବୋଲି ଚିହ୍ନିଥାନ୍ତେ ସିନା ? ସେ ଯେଉଁ କୃତଜ୍ଞତା ଜ୍ଞାପନ କଲେ ତା' କଣ ମିଳିଥାନ୍ତା !

ଏଇତ ଠାକୁରଙ୍କର ପ୍ରତ୍ୟକ୍ଷ ଆଶିର୍ବାଦ । ଯାକୁ ଯେ ଅନୁଭବ କରିନପାରେ ସେ କାଠ ପରି । ତା'ର ଅନୁଭବ କିଛି ନାହିଁ ଓ ଆଦର୍ଶବୋଲି କିଛି ନାହିଁ ବୋଲି କହିବାକୁ ହେବ । ଆଦର୍ଶ ଥିଲେ ଧନ, ମାନ ଓ କୀର୍ତ୍ତି ମିଳେ । ଆଦର୍ଶ ନ ଥିଲେ କେବଳ ଧନ ମିଳିପାରେ । ଅନ୍ୟ ଦୁଇଟି ବିରଳ ହୋଇଯାଏ । ଏହି ଭଗବତ୍ ବାକ୍ୟ ହୃଦୟଙ୍ଗମ କରିବା ପ୍ରତ୍ୟେକଙ୍କର ଧେୟ ହେଉ । ଠାକୁରଙ୍କ ସୃଷ୍ଟି । ସେ ଏପରି ଚିନ୍ତାଧାରା ନଦେଲେ ଆଉ କିଏ ଦେବ ? ସେ ହିଁ ସକଳ ଧନ୍ୟବାଦ ଓ କୃତଜ୍ଞତାର ପ୍ରଚ୍ଛନ୍ନ ଦାତା ।

## ୯୮. ସର୍ବହରା

ବୋଉର ଶ୍ରାଦ୍ଧ ଦିନରେ ହରିହାଟ ବା ଅନନ୍ତମୁଖୀ କରାଯାଏ । ସକାଳ ଭୋର ସମୟରୁ ଉଠି ଗାଧୋଇ ଚଉଁରା ମଣ୍ଡପ ବା ଚଉତରା ସଫାକରି ଧୋଇ ସବୁ ପାଠକଙ୍କ ପାଇଁ ଆସନ ଓ ପ୍ରତିପାଠକଙ୍କ ପାଇଁ କଳସ ଓ ମଣ୍ଡଳ ସଜାଡିବାକୁ ହୁଏ । ଆମ ପୁରୋହିତଙ୍କ ସାହାଯ୍ୟରେ ସକାଳ ୬ଟା ପୂର୍ବରୁ ମଣ୍ଡଳ ଗୁଡିକର ପୂଜାଶେଷ କରି ସଂକଳ୍ପ କରି ଗୁଆ ପ୍ରସ୍ତୁତ ରଖାଯାଏ । ୭ଟା ଭିତରେ ବ୍ରାହ୍ମଣ ମାନେ ଆସି ଜଳଖିଆ ଖାଇସାରି ଗୁଆ ନେଇ

ପାଠାରମ୍ଭ କରିଦିଅନ୍ତି । ଭାଗବତ ପାଇଁ ୧୩ ଜଣ, ଗୀତା, ବିଷ୍ଣୁ ସହସ୍ର ନାମ ଓ ଚଣ୍ଡୀପାଇଁ ୩ ଜଣ ଏପରି ୧୬ ଜଣ ବ୍ରାହ୍ମଣ ବରଣ ହୁଅନ୍ତି । ଦ୍ୱିପ୍ରହରରେ ଶ୍ରାଦ୍ଧହୁଏ । ଆମର ଭାଇଆମାନେ, ଆମ ପରିବାର ଓ ଯେ ଷୋହଳଜଣ ବ୍ରାହ୍ମଣ ଭୋଜନ କରନ୍ତି । ସନ୍ଧ୍ୟାରେ ଗୀତବଢେ । ଗାଁ ସାରା ଲୋକ ଖାନ୍ତି । କୀର୍ତ୍ତନ ହୁଏ । ଆନନ୍ଦର ହରିହାଟ ବସିଯାଏ । ବାସ୍ତବରେ ସେ ଏକ ହରିହାଟ । ନ ଦେଖିଲେ ଅନୁଭବ କରିହେବନି ।

ଏଥିପାଇଁ କଟକରୁ ଚାଉଳ, ଡାଲି, ପରିବା ଇତ୍ୟାଦି ସବୁଜିନିଷ ଧରି ପୂର୍ବଦିନ ପହଞ୍ଚିଗଲେ ହୋଇଯାଏ । ଦିନଟି ଧାର୍ଯ୍ୟଥାଏ । ତେଣୁ ସଂପୃକ୍ତ ବ୍ରାହ୍ମଣମାନେ ମଧ୍ୟ ଜାଣିଥାନ୍ତି । ତାଙ୍କର ମୋ ପ୍ରତି ଓ କାମପ୍ରତି ଖୁବ୍ ଶ୍ରଦ୍ଧାଥାଏ । ତେଣୁ ପୂର୍ବଦିନ ରାତିସୁଦ୍ଧା ଖବର ପାଇଲେ ସେମାନେ ଆସିଯାନ୍ତି । ପୁରୋହିତ ଓ ରୋଷେଇ ପାଇଁ ଲୋକ, ବାସନ କୁସନ ଇତ୍ୟାଦି ନିର୍ଦ୍ଦିଷ୍ଟ ଥାଏ । ତେଣୁ କିଛି ଅସୁବିଧା ହୁଏନି । ଦି ଦିନରେ ଏତେ ବଡ କାମଟି ସଫଳଭାବେ ହୋଇଯାଏ । ଭାଗବତ କାମ ଭାଗବତ ଗୋସେଇଁ ନିଜେ କରାଇ ନିଅନ୍ତି । ବର୍ଷକର କଥା ! ପୂର୍ବ ଦିନରେ ସବୁକାମ ସାରି ଭୋରରୁ ଗାଧୋଉଥାଉ ମଣ୍ଡଳ ପୂଜାପାଇଁ । ଟେଲିଗ୍ରାମଟିଏ ପହଞ୍ଚିଲା । ନିର୍ଦ୍ଦେଶକ ଆସୁଛନ୍ତି । ଶୀଘ୍ର ଆସନ୍ତୁ । ଶ୍ରାଦ୍ଧ ସେଇଠି ରହିଲା । ଅବଶିଷ୍ଟ ଦାୟିତ୍ୱ ଭାଇନାଙ୍କୁ ଦେଇ ଆମକୁ ଚାଲିଯିବାକୁ ପଡିଲା । ସେଇହେଲା ଶେଷବର୍ଷ ହରିହାଟ । କଷ୍ଟକରି ଏକାମ କରିବାକୁ ସେ ନାରାଜ । ଦୂରରେ ରହିଥିବାରୁ ମୁଁ ମଧ୍ୟ ଆସି କରିବା ଅସମ୍ଭବ ହୋଇଗଲା । ୟା ପଛରେ ଠାକୁରଙ୍କର ପ୍ରଛନ୍ନ ହାତଥିଲା । ଠାକୁରେ ସେଥିପାଇଁ ଆଗରୁ ବାଟ କାଟି ଦେଇଥିଲେ ।

ଏହାର କିଛିଦିନ ପରରକଥା । ଗାଁରେ ରହିଲେ ସଂଧ୍ୟାରେ ଘରଘର ସାଇସାଇ ବୁଲିବାରେ ବହୁତ ସମୟ କଟାଏ । ବାବୁ ସାଇରୁ ଆମ ସାଇ, କାଳିଆ ବୁଦାରୁ ହନୁପୁର ଯେଉଁଠିକୁ ଗଲେ ଆଦର, ଗପସପ, ଦୁଃଖ ସୁଖ । ରାତିଯାକେ ବୁଲାବୁଲି ଚାଲେ । ଘରକୁ ବିଳମ୍ବ ରାତିରେ ଫେରିଲା ବେଳକୁ ସମସ୍ତେ ଖାଇପିଇ ସାରିଥାନ୍ତି । ରୁଟିଖିର ଓ ତରକାରୀ ଅଲଗା କରି ରଖିଦେଇଥାନ୍ତି, ଖାଇ ଶୋଇଯାଏ । ରାତିରେ ଶୋଇବାଠାରୁ ମଧ୍ୟ ଦିନେ ଦିନେ ଉଠି ନାଳବନ୍ଧ ଆଡେ ଏକା ଏକା ବୁଲି ଆସିବାକୁ ଭଲ ଲାଗେ । ଏମିତି ଦିନେ ରାତି ବୁଲାରୁ ଫେରିଘରେ କିଏ କାନ୍ଦୁଥିବାର ଶୁଣାଗଲା । କାନପାରି ଶୁଣିବାରେ ନୂଆବୋଉ (ଭାଇନାଙ୍କ ପଛ ସ୍ତ୍ରୀ) କାନ୍ଦୁଥିବାର ଜଣାଗଲା । ପୁଣି ରାତି ୩ଟାରେ ଶୁଣିଲା ବେଳକୁ ସେମିତି ଗୁଣୁଗୁଣୁ କାନ୍ଦଣା ଚାଲିଛି । ଉଠାଇ ଡାକି କାରଣ ପଚାରିବାରେ କିଛି ଉତ୍ତର ମିଳିଲାନି । କ'ଣ କଲେ ଭଲହେବ ପଚାରିବାରେ ମଧ୍ୟ କିଛି ପ୍ରସ୍ତାବ ନାହିଁ । କିଛିନାହିଁ ଯଦି ଏତେ କାନ୍ଦଣା କଣ ପାଇଁ ? ତେବେ କଣ ଆମେ ଘରଛାଡି ଚାଲିଗଲେ ସୁଖରେ ରହିବ ବୋଲି ପ୍ରସ୍ତାବ ଦେବାରେ ହଁ ବୋଲି କହିଲେ । ଭାଇନା ମଧ୍ୟ ସେଥିରେ ସମ୍ମତି ଦେଲେ । ରୋଗଟି ବୁଝିଯିବାରୁ ମନ ଦିଖଣ୍ଡ ହୋଇଗଲା । ଏତେ ଦୁଃଖ କଷ୍ଟରେ ପାଞ୍ଚଟି ଭାଇ ଭଉଣୀ ଏକାଠି ବଢିଥିଲୁ ।

ପେଟକୁ ଭଲନଖାଇ, ଗାଣ୍ଡିକୁ ଭଲ ନପିନ୍ଧି, ଦିନରାତି ଖଟଣି ଖଟି, ଘରକରି, ଜମିବାଡି କରି ନିଜେ ରୋଜଗାର କରି ତିନିଭାଇଙ୍କ ନାମରେ ଜମିକିଣି, ପୁତୁରା ଝିଆରିଙ୍କୁ ନିଜର ପିଲାପରି ଗଢି ଶେଷକୁ ଏଇ ଫଳ ମିଳିଲା । ତା ପରଠାରୁ କେବେ ଗଲେ ବାରଣ୍ଡାରେ ନ ହେଲେ ପଡିଶାଘରେ ଶୋଇବାକୁ ମନହୁଏ ଓ ଥାନ ମିଳେ ମଧ୍ୟ ।

କେବଳ ଶୋଇବା ସେଜ ଓ ପିନ୍ଧିବା ଲୁଗାଧରି ପରଦିନ ଭୋର ସକାଳୁ କାହାକୁ କିଛି ନ କହି ଏତେ କଷ୍ଟରେ ନିଜ ହାତରେ ଗଢିଥିବା ଘର ଓ ସଂସାରର ମାୟାଛାଡି ନିଜର ସ୍ତ୍ରୀ ପିଲାଙ୍କୁ ଧରି ବାହାରି ପଡିବାକୁ ହେଲା ତାଳ ଗଛ ଛାଇପରି ଚାକିରୀ କ୍ଷେତ୍ରକୁ । ସବୁଥାଇ ସର୍ବହରା ହେବାକୁ ହେଲା । ଭାଇ ମଧ୍ୟ ପଛରୁ ଡାକିଲେନି । ଝିଆରି ପୁତୁରାତ ସାନ ସାନ । ଭିଟାମାଟିର କ'ଣ ପାଟି ଫିଟୁଛି ନା ହାତଗୋଡ ଅଛି ? ତାକୁ ଯିଏ ଆପଣାର କରେ ସେ ତା'ର ହୁଏ । ଯିଏ ଛାଡିଯାଏ ସେ ତାକୁ ଛାଡି ରହେ ।

ଠାକୁରେ ମୁଦ୍‌ଗର ଧରି ମୋହଟିକୁ ଭାଙ୍ଗିଦେଲେ । ଜଣାଇ ଦେଲେ ରେ ସର୍ବହରା ତୁ ତ ଶୂନ୍ୟ ହସ୍ତରେ ଜନ୍ମ ହୋଇଥିଲୁ । ଖାଇବାକୁ ମାତୃବକ୍ଷ ମଧ୍ୟ ଶୁଷ୍କ ହୋଇଯାଇଥିଲା ବୈଶାଖୀର ଖରାରେ ଓ ଦାରିଦ୍ର୍ୟର କଷଟିରେ । ବାପା, ଜେଜେବାପା, ଜେଜେମା, ବଡଭଉଣୀ, ଦୁଇ କକେଇ ସମସ୍ତେ ଛାଡିଯାଇଥିଲେ । ଶେଷରେ ଗୃହହରା ହୋଇ ଦିନକାଟି ଥିଲୁ । ଯେ ସବୁ ଦୁଃଖ ମୁଁ ଦେଇଥିଲି । କଷଟିରେ କଷି ଦେଇଥିଲି । ତା' ପରେ ପୁଣି ମୋରି ଦୟାରୁ ଭାଇ, ଭଉଣୀ ବାହାସା ହେଲେ, ଘରହେଲା, ଜମିହେଲା, ନିଜର ପୁଅଝିଅ ହେଲା । ତୁ କ'ଣ ଏଇଥିରେ ମାତି ରହିଥିବୁ ? ତୋ ଦ୍ୱାରା ବଡକାମ ହେବାର ଅଛି । ତୋତେ ଏ ମୋହ ସୁହାଏନି । ତୁ ଚିର ଦିନ ସର୍ବହରା; ତେଣୁ ସର୍ବହରା ପରି ଦାଣ୍ଡକୁ ଚାଲିଆ । ଠାକୁରି ଡାକରାରେ ଦାଣ୍ଡକୁ ଆସି ପୁଣି ସର୍ବହରା ହେବାରେ ଏକା ସେ ସୁଖୀ ହେଲେ । ବଦଳରେ ଦେଲେ ଦେହରେ ଅସୀମ ବଳ, ମନରେ ଅସୀମ ସାହସ, ତା ସହିତ ଆତ୍ମନିଷ୍ଠା । ତେଣୁ ତାଙ୍କୁ କିଏ କହେ ସେ ନିଷ୍ଠୁର ! ବରଂ ସେ ପରମ କାରୁଣିକ ।

ଭାଙ୍ଗିବାକୁ ଓ ଗଢିବାକୁ ତାଙ୍କୁ ଭଲଲାଗେ । ସେ ଏମିତି ଦିନରାତି ସମୟର ନଦୀତଟରେ ବାଲୁକା ପ୍ରାନ୍ତରେ ବସି ଲକ୍ଷ ଲକ୍ଷ ଖେଳଘର ଗଢୁଛନ୍ତି ଓ ଭାଙ୍ଗୁଛନ୍ତି ନିଜ ହାତରେ । ଭାଙ୍ଗିବା ପାଇଁ ଦୁଃଖ ନାହିଁ, ଗଢିବା ପାଇଁ ଆଗ୍ରହ ନାହିଁ କି ଗଢିଥିବା ଖେଳଘର ପାଇଁ ମୋହନାହିଁ । ଯେ ପରି ଗୀତାର "ଦୁଃଖେଷୁ ନୁଦ୍‌ବିଗ୍ନମନା-ସୁଖେଷୁ ବିଗତସ୍ପୃହ" । ଧନ୍ୟପ୍ରଭୁ ତୁମର ମହିମାକୁ, ଧନ୍ୟ ତୁମର ଚିନ୍ତାକୁ ଓ ପରିକଳ୍ପନାକୁ । ତୁମେ ପରା ସୁଦାମା ପାଇଁ ବିନା ଯାଚଞ୍ଚାରେ ଗଢିଦେଇଥିଲ ଅତୁଳ ରାଜ ସଂପଦ! ତୁମେପରା ବଳୀର ରାଜସଂପଦକୁ ପାଦରେ ଦଳି ଦେଇଥିଲ ! କାହିଁକି ଏ ଲୀଳା ? ଏସବୁ ତୁମର ଖେଳ ନୁହେଁତ ଆଉ କ'ଣ ? ଏ ଖେଳକୁ ଯେ ନ ବୁଝେ ସେ ଦୁଃଖରେ ମୁଣ୍ଡ ପିଟି ମରେ । ଆଉ ସୁଖରେ

ପାଗଳ ହୋଇଯାଏ । ସେ ଖେଳକୁ ନ ବୁଝିଲେ ଏମିତି ହବାକୁ ହୁଏ । ତାଙ୍କୁ ଓ ତାଙ୍କର ଖେଳକୁ ବୁଝିଲେ ଏକାନ୍ତରେ ବସି ବିଚାର କଲେ ଶେଷରେ ଆସେ ଟିକିଏ ହସ । ଲୀଳାମୟଙ୍କର ଏ ଲୀଳାରେ ଦୁଃଖର ପ୍ରଶ୍ନ ନାହିଁ । ମନକୁ ମନ ଖାଲି ହସ, ହସ ଆଉ ହସ ।

## ୯୯. ନାକ କାନ୍ଦଣା

ବୁଦୁ ତା ଗାଡିରେ ଟ୍ରଲିଟିଏ ବାନ୍ଧି ଆମକୁ ଛାଡିବାକୁ ନେଇଗଲା । ବେଶୀ କିଛି ଜନିଷ ନଥିଲା । ଖଟ ଦି' ଖଣ୍ଡ ଓ ବାକ୍ସ ଦି' ଟା ସହ ଶୋଇବା ଶେଜ ଓ ପିନ୍ଧିବା ଲୁଗାପଟା । ତା ସାଙ୍ଗକୁ ରୋଷେଇ ପାଇଁ ସିଲଭର ବାସନ ଓ ଖାଇବାକୁ ଷ୍ଟିଲବାସନ । ଏତକ ଟ୍ରଲିରେ ଲଦି, ପିଲାଙ୍କୁ ପାଖରେ ବସାଇ ଯେତେବେଳେ ଯାଇ ଆନନ୍ଦପୁର ପାଖରେ ବୈତରଣୀ ପାରିହେଲୁ ସେତେବେଳକୁ ସହ ଧର୍ମିଣୀଙ୍କର ନିଶ୍ଚୟ ଭୟଜାତ ହୋଇଥିବ । କାରଣ ୨ଟି ଡଙ୍ଗା ଯୋଡି ତା' ଉପରେ ଜିପ୍ ଓ ଟ୍ରଲିକୁ ଲଦି ନଈପାରି ହେଲା । ସେତିକି ବେଳୁ ମୁହଁ ଫୁଲାଇ ଗରଗର ହୋଇ କଥାବାର୍ତ୍ତା ବନ୍ଦ ହୋଇଗଲା । ତାପରେ ପରେ ଆରମ୍ଭହେଲା ସାତକୋଶିଆ ଘାଟି । ଠାକୁର ମୁଣ୍ଡାକୁ ଯିବାକୁ ଯେଉଁ ଛୋଟବଡ ପାଞ୍ଚଟି ଘାଟି ଉଠିବାକୁ ଓ ଗଡିବାକୁ ହୁଏ ଯେ ହେଉଛି ତା ଭିତରେ ପ୍ରଥମ ଓ ବଡଘାଟି ।

ଆମ ଗାଡିଟି ଘାଟି ଉଠିଲାବେଳକୁ ଆଗକୁ ଜଙ୍ଗଲ ଓ ଆଉରି ଉଚ୍ଚ ପାହାଡ ଦିଶୁଥାଏ । ସେତେବେଳକୁ ସେ ରାସ୍ତାରେ ଛୋଟ ନାଳ ଗୁଡ଼ିକରେ ପୋଲ ନ ଥାଏ କି ରାସ୍ତାମଧ ପିଚୁ ହୋଇନଥାଏ । ପାହାଡ କାଟି କେବଳ ମେଟାଲ ମୋରମର ରାସ୍ତାଥାଏ । ସେଥିରେ ଗାଡି ଘଁ ଘଁ ହୋଇ ଉଠିଲାବେଳେ ପିଲାମାନେ ଆଶ୍ଚର୍ଯ୍ୟ ଚକିତ ହୋଇ ଆଗକୁ ଦୂର ଉଚ୍ଚପାହାଡ ଓ ଜଙ୍ଗଲକୁ ଚାହିଁ ରହିଥାନ୍ତି ବଲବଲ ହୋଇ । ସହଧର୍ମିଣୀଙ୍କର ଆରମ୍ଭ ହୋଇଗଲା ନାକକାନ୍ଦଣା । ଗରଗର ହୋଇ କହିଲେ ସମସ୍ତେ ରହିବେ ସହର ବଜାରରେ । ବାବୁଙ୍କର ବଦଳିହେଲେ କେଉଁଠିକି ଯିବେନି କି କାହାକୁ କହିବେନି । ଏବେ ଏ ବଣ ପାହାଡରେ କିପରି କେଉଁଠି ରହିବେ, କି ଚାକିରୀ କରିବେ କରନ୍ତୁ ।

ଆମେ ମଣିଷ ମାନଙ୍କର କାମ କରିବାକୁ ବି.ଡି.ଓ ଚାକିରୀ କରୁଛୁ । ତେଣୁ ବଣ ଜଙ୍ଗଲ ସାଥିରେ ଆମର କି କାମ । ଯାପରେ ଗାଁ ଗଣ୍ଡା ପଡିବ ବ୍ୟସ୍ତ ହୁଅନି । ଏ ସବୁ କହିବାର କିଛି ମାନେ ନ ଥାଏ । ଗୋଟିଏ ପରେ ଗୋଟିଏ ଘାଟି ଉଠିପଡି ଗାଡି ଚାଲିଥାଏ । ରାସ୍ତାକଡରେ ଗୋଟିଏ ହେଲେ ଗାଁ ନଥାଏ । କଦବା କେଉଁଠି ଛୋଟ ଚଟିଘର ଚାଳିଆଟିଏ ଥାଏ । ଏସବୁ ଦେଖି ମୋର ବି ହଂସା ଉଡିଗଲା । ହେଲେ ମନରେ ଦମ୍ଭଥାଏ । ପିଲାଭିତରୁ କିଏ ଶୋଷ ହବାରୁ ପାଣି ମାଗିଲା । ଘର କାହିଁ ? କୂଅ କାହିଁ ? ଛୋଟ ପାହାଡି ଓ ଜଙ୍ଗଲି ନାଳରୁ ପାଣି ପିଇବାକୁ ମନହେଲାନି । ତାକୁ ମଧ ବୁଝାଇ ଶୁଝାଇ ତୁନି କରିବାକୁ ପଡିଲା । ସାନ ପିଲାଟିକୁ ଭୋକ ହେବାରୁ ସେ ଖାଇବାକୁ ମାଗିଲା । ବିସ୍କୁଟ ଥାଏ । ଖାଇଲେ ସେ ପୁଣି

ପାଣି ମାଗିବ । ହେଇଟି ବାଟ ପାଖେଇ ଆସିଲାଣି । ଘରେ ଖାଇବା କହି ତାକୁ ମଧ ବୁଝେଇଗଲି । ବୁଦ୍ଦୁ ଘାଟି ରାସ୍ତାରେ ମନଦେଇ ଗାଡି ଚଳାଉଥିବା ବେଳେ ଏସବୁ ଶୁଣି ମୁରୁକି ମୁରୁକି ହସୁଥାଏ । ଶେଷକୁ ସମ୍ଭାଳି ନପାରି କହିଲା ଯାହା ହେଉ କାହିଁ କେନ୍ଦ୍ରାପଡା କାହିଁ ଠାକୁର ମୁଣ୍ଡା । ପିଲାଙ୍କୁ ନ ଆଣିଥିଲେ ଭଲ ହୋଇଥାନ୍ତା । ଆପଣ ଅଳ୍ପଦିନ ରହି କୁହାକୋହିକରି ପୁଣି ବଦଳି ହୋଇଯାଇଥାନ୍ତେ । ଏମିତି କଥା ହେଉ ହେଉ ଠାକୁର ମୁଣ୍ଡା ବ୍ଲକ୍ ପାଖରେ ଗାଡି ପହଞ୍ଚିଲା । ସେଠି ମଧ ଦୁଇକଡରେ ଘଞ୍ଚଜଙ୍ଗଲ । ତେବେ ପଚାରି ବୁଝିବାରେ ଜଣାଗଲା ସେଠାକୁ ହିଂସ୍ରଜନ୍ତୁ ଆସନ୍ତିନି । ଆମକୁ ଛାଡି ଦେଇ ବୁଦ୍ଦୁ ମନଦୁଃଖରେ ଗାଡିନେଇ ଫେରିଗଲା ଠିକ୍ ଯେପରି ସୀତାଙ୍କୁ ଜଙ୍ଗଲରେ ଛାଡି ଲକ୍ଷ୍ମଣ ଫେରିଥିଲେ ଭାରାକ୍ରାନ୍ତ ମନରେ ।

ଠାକୁରେ ସର୍ବହରା କରାଇ ଶାନ୍ତିପାଇଲେନି । ପାଣ୍ଡବଙ୍କର ସବୁ ସମ୍ପତ୍ତି ଜୁଆ ଖେଳରେ ଗଲାପରେ ତାଙ୍କୁ ମିଳିଥିଲା ବନବାସ ୧୨ବର୍ଷ । ଠିକ୍ ସେହିପରି ସେହିଠାକୁରଙ୍କ ଆଶୀର୍ବାଦରୁ ସେହିଦିନୁ ଆରମ୍ଭ ହେଲା ବାରବର୍ଷ ବନବାସ ଯୋଗ ୧୯୭୦ ରୁ ୧୯୮୧ ଯାଏ । ଯେଉଁ ଠାକୁରେ ବନବାସରେ ପାଣ୍ଡବଙ୍କୁ ଚକ୍ର ଉତାଳ କରିଥିଲେ ସେହିଠାକୁରେ ଯେ ବାରବର୍ଷ ମଧ ଚକ୍ର ଉତାଳ କରି ରକ୍ଷା କରିଥିଲେ । ସେଥିପାଇଁ ଦିନେ ମଧ ପାଦରେ କଣ୍ଟାଟିଏ ବାଜି ନ ଥିଲା ।

## ୧୦୦. ଶାନ୍ତି ପ୍ରତିଷ୍ଠା

ଏପରି ଗୋଟିଏ ଗୋଟିଏ ସମୟରେ ଗୋଟିଏ ଗୋଟିଏ କାମ ହୋଇଥାଏ ଯେ ସେଥିନେଇ କାଳକାଳକୁ କଳିକଜିଆ ଲଗିରହିଥାଏ ବା ତାହା କାଳକାଳକୁ ଯଶ କୀର୍ତ୍ତିର ବାହକ ହୋଇଯାଏ । ମଣିଷ ଏସବୁର କର୍ତ୍ତା ଓ କାରଣ ହୋଇଥିଲେ ମଧ ସେ ସମୟ ଓ ଘଟଣାକୁ ନିନ୍ଦା କରେ । ନିଜ କର୍ମକୁ ଭୁଲିଯାଏ । ଗୋଟିଏ ସରୁମୁହାଁ ମାଠିଆରେ ଟଙ୍କା ସୁନା ଭରିଥିଲା । ଲୋଭରେ ସେଥିରୁ କିଛି ନେଇଯିବାପାଇଁ ଜଣେ ତା ଭିତରେ ହାତ ପୁରାଇ ମୁଠାଏ ଟଙ୍କା ସୁନା ଧରି କାଢିଲା ବେଳକୁ ଆଉ ହାତ କାଢି ନ ହୁଏ । ସେଥିପାଇଁ ସେ କେତେବେଳେ ଧନକୁ ତ କେତେବେଳେ ମାଠିଆକୁ ଦୋଷ ଦେଉଥାଏ । ଏଣେ ଧନକୁ ଛାଡୁନଥାଏ କି ତା ହାତ ମାଠିଆରୁ ବାହାରିପାରୁ ନଥାଏ । ଧନକୁ ଛାଡିଦେଲେ ହାତ ମାଠିଆରୁ ବାହାରି ଆସିବ ଯେ ସାମାନ୍ୟ କଥା ତା ମୁଣ୍ଡରେ ପୁରୁନେ ।

ଠାକୁର ମୁଣ୍ଡାରେ କୋଉକାଳେ ବ୍ଲକ୍ ଅଫିସ୍ ଘର ତିଆରି ହୋଇଥିଲା । ତାହା ଛାତପକା ଘର । ସେ ଘର ତିଆରି ଦିନୁ ଛାତରୁ ପାଣି ଗଳେ । ସେଥିନେଇ ଘର ତିଆରି କରିଥିବା ଠିକାଦାରର ବିଲ୍‌ରୁ କିଛି ପଇସା କାଟି ରଖାଯାଇଥାଏ । ସେ ଠିକାଦାର ଯେଉଁ ବି.ଡି.ଓ ଆସନ୍ତି ତାଙ୍କ ପାଖରେ ତା'ର ପ୍ରାପ୍ୟ ମାଗିବସେ । ସେ ତାକୁ ଟଙ୍କା ନଦେବାରେ ଆସୁ ଆସୁ ଦୁଇ ମାସ ମଧରେ କଳି ଲାଗିଯାଏ । ସେ କଳି ବଢିବଢି ସାଂଘାତିକ୍ ହୁଏ । ଶେଷରେ

ବ୍ଲକ୍‌ର କର୍ମଚାରୀମାନେ ଓ ବେସରକାରୀ ସଭ୍ୟ ଓ ସରପଞ୍ଚମାନେ ଦୁଇଭାଗରେ ବିଭକ୍ତ ହୁଅନ୍ତି ନିଜ ନିଜର ସ୍ୱାର୍ଥ ସିଦ୍ଧି ଓ ଅସିଦ୍ଧିକୁ ଆଳକରି । ଠିକାଦାର ଗୋଟିଏ ଗୋଡିପରି କଳା ଗେଡା ବାଲେଶ୍ୱରୀ ଲୋକ । ସେଠିଯାଇ ଘରକରିରହି ଠିକାଦାରି କରି ଏପରି ହାରିଯାଇ ସର୍ବସ୍ୱାନ୍ତହୋଇ ବସିରହିବାରେ କଳିପାଇଁ ସର୍ବସ୍ୱ ଦାନ କରିଦେଇଥାନ୍ତି । ସକାଳୁ ନିତ୍ୟ କର୍ମସାରି ପଖାଳ ଦିଟା ଖାଇ ଚିତାଟୋପାଏ ମାରିଦେଇ ଛକରେ ଆସି ବସିପଡି କୋଉଲୋକ ବ୍ଲକ୍‌କୁ ଗଲା, ବ୍ଲକ୍ ଗାଡି କୁଆଡେ ଗଲା, କିଏ କିଏ ସେଥିରେ ଗଲେ, କିଏ କ'ଣ କହୁଛି, କିଏ କ'ଣ କରୁଛି ସବୁର ଟିକିନିଖି ବିବରଣୀ ସଂଗ୍ରହ କରି ଦୈନିକ ବିଭିନ୍ନ ବିଭାଗକୁ, ମନ୍ତ୍ରୀଙ୍କୁ ଓ ଖବରକାଗଜକୁ ଦୁଇ ତିନି ଖଣ୍ଡ ଲେଖା ନିଜ ନାମରେ ଓ ଯା' ତା' ନାମରେ ପଠାଇବାରେ ତାଙ୍କର ସମୟ ବ୍ୟୟକରି ବିଳମ୍ବିତ ରାତିରେ ଘରକୁ ଫେରନ୍ତି । ଦିନସାରା କେବଳ ବିଡିଓଙ୍କ ବିରୁଦ୍ଧରେ ଚିନ୍ତା, କାର୍ଯ୍ୟ ଓ ଗପ ହେଲା ସାର । ଏସବୁଥିରୁ ଆଉକିଛି ଫଳ ମିଳୁ ନ ମିଳୁ ଯିଏ ନୂଆ ବିଡିଓ ଗଲେ ଦୁଇ ତିନି ମାସ ମଧ୍ୟରେ ତାଙ୍କ ବିରୁଦ୍ଧରେ ଗୋଟିଏ ତଦନ୍ତ ଅନ୍ତତଃ ଆରମ୍ଭ ହୋଇଯାଏ । ସେଇ ଆଳରେ କର୍ମଚାରୀ ଓ ବେସରକାରୀ ସଭ୍ୟ ଓ ସରପଞ୍ଚମାନେ ଦୁଇଦଳରେ ବିଭକ୍ତ ହୋଇ ଶେଷରେ ବଦଳୀଟିଏ ହୁଏ ବିଡିଓଙ୍କର ହୁଏତ ତାଙ୍କ ଇଚ୍ଛାରେ ବା ତାଙ୍କ ଇଚ୍ଛା ବିରୁଦ୍ଧରେ ।

୧୯୭୦ରେ ଠାକୁର ମୁଣ୍ଡାରେ ଯୋଗଦେବାପରେ କର୍ମଚାରୀମାନଙ୍କ ମଧ୍ୟରେ ଆଲୋଚନା କରି ସମସ୍ତେ ମନଦେଇ କାମ କରିବାକୁ ଓ ଆଇନ ମାନି ଚଳିବାକୁ ସ୍ଥିର କଲୁଁ; ଯେପରି କର୍ମଜନିତ ବୁଝାମଣାରେ ସମସ୍ତେ କର୍ତ୍ତବ୍ୟ ସ୍ଥଳରେ ପରସ୍ପର ପ୍ରତି ବାନ୍ଧିହୋଇ ରହିପାରିବେ । ସେହି ଆଲୋଚନା ଅବସରରେ ପୁରାତନ କନିଷ୍ଠଯନ୍ତ୍ରୀ ଆଲ୍ଲାଉଦ୍ଦିନ କହିଲେ ଯେ ଏଠି ନୂଆକିଛି ଗଣ୍ଡଗୋଳ ହେବାର ଆଶା କମ୍ । ସେଇ ପୁରୁଣା ବ୍ଲକ୍ ଅଫିସ୍ ନିର୍ମାଣ ଜନିତ ତ୍ରୁଟି ଓ ସେହି ଗୋବିନ୍ଦଙ୍କର ଠିକାଦାର ଗଣ୍ଡଗୋଳ ସୃଷ୍ଟିନକଲେ ପ୍ରାୟସବୁ ଭଲ ଚାଲିବ । ଅତୀତରେ ଯେତେ ଗଣ୍ଡଗୋଳ ଘଟିଛି ସବୁ ମୂଳରେ ସେହି । ତା ସହିତ ପରେ ଅନ୍ୟାନ୍ୟ ଗଣ୍ଡଗୋଳ ଯୋଡି ହୋଇ ବଡ ହୁଏ । ତାଙ୍କ କଥା ସତ ହେଲା । ଯୋଗଦେବାର ଆଠଦିନ ଭିତରେ ଗୋବିନ୍ଦବାବୁ ଆସି ନିଜର ପ୍ରାପ୍ୟପାଇଁ ଦାବି ଉପସ୍ଥାପନ କଲେ ଓ ଗୋଛାଏ କାଗଜ ଦେଖାଇ କହିଲେ ଯେ ପ୍ରାପ୍ୟ ନ ମିଳିଲେ ମୁଁ ଯାହାପାରିବି କରିବି । ଯେପରି କରୁଛି ସେହିପରି କରିବି । ତାଙ୍କୁ ଯେତେ ବୁଝାଇଲେ ମଧ୍ୟ ସେ ବୁଝିଲେନି । ଆଲ୍ଲାଉଦ୍ଦିନ୍ ବାବୁଙ୍କୁ ଡକାଇ ସମସ୍ତ ଘଟଣା ବୁଝି ତ୍ରିପକ୍ଷୀୟ ନିଷ୍ପତ୍ତି ହେଲାଯେ କଂକ୍ରିଟ ଛାତରୁ ପାଣି ଗଳିବା ସ୍ୱାଭାବିକ କି ନା ତାହା ନିର୍ବାହୀ ଯନ୍ତ୍ରୀଙ୍କୁ ପଚାରାଯିବ । ସେ ଯାହାମତ ଦେବେ ତାକୁ ସମସ୍ତେ ମାନି ନେବେ । ସେହିଦିନ ଚିଠିଗଲା । ଗୋବିନ୍ଦବାବୁ ଚିଠି ପଛେ ପଛେ ଚାଲିଲେ । କେତେଦିନପରେ ଆମେ ମଧ୍ୟ ଯାଇ ସବୁକଥା ନିର୍ବାହୀ ଯନ୍ତ୍ରୀଙ୍କୁ ବୁଝାଇବାରେ ସେ ଲେଖିଦେଲେ ଯେ ବିନା ଟେରାସ୍‌ରେ କଂକ୍ରିଟ ଛାତରୁ ପାଣି ଗଳିବାଅସ୍ୱାଭାବିକ ନୁହେଁ । ସେ କଥା ସେ ଲେଖିଦେବା

ସହ ଟେରୋସିଂ କରିବାକୁ ପରାମର୍ଶ ମଧ ଦେଲେ । ତା'ପରେ ଲାଗିଲା ଆଲ୍ଲାଉଦ୍ଦିନ ବାବୁଙ୍କ କାମ । ସେ ଲଗାତାର ଚାରିମାସ ଲାଗି ପୁରୁଣା ଦର, ନୂଆଦର ଓ ଅଟକଳ ସହ ପ୍ରକୃତ କାମର ତାଲିକା ପ୍ରସ୍ତୁତ କଲେ । ତାକୁହିଁ ଭିତ୍ତିକରି ସଂଶୋଧିତ ବିଲ ପ୍ରସ୍ତୁତ କରାଗଲା ଓ ନିର୍ବାହୀ ଯନ୍ତ୍ରୀଙ୍କୁ ପଠାଗଲା । ସେ ତାହା ମଞ୍ଜୁର କରିଦେବାରେ ଜିଲ୍ଲାପାଳଙ୍କ ଅନୁମତି ନେଇ ଠିକାଦାରଙ୍କୁ ତାଙ୍କ ପ୍ରାପ୍ୟ ଦେଇଦିଆଗଲା ।

ଯେତେବେଳେ ଠିକାଦାର କମ୍ ହେଲେ ମଧ ତାଙ୍କର ପ୍ରାପ୍ୟ ପାଇଲେ ସେତେବେଳକୁ ଖରାଦିନ । ସେ ବର୍ଷ ମଗୁଡି ପଡିଥାଏ । ଲୋକେ ଖାଇବାକୁ ପାଉନଥାନ୍ତି । ଠିକାଦାର ସେତିକି ବେଳକୁ ମୁଖ୍ୟ ରାସ୍ତାରେ କାମ ଖଣ୍ଡିଟିଏ ଧରିଥାନ୍ତି । ପଇସା ଅଭାବରୁ କାମ ଆରମ୍ଭ କରିପାରୁନଥାନ୍ତି । ଥରେ ଜୋଗିମାନାଦେଇ ସମୟ ବଢାଇଥାନ୍ତି । ତାଳ ପାଚିବାକୁ କୁଆ ବସିବାକୁ । ଏହି କାକତାଳି ନ୍ୟାୟରେ ପ୍ରାପ୍ୟ ଟଙ୍କା ବେଶୀ କମ୍ ନ ବିଚାରି ପ୍ରାଣ ବିକଳରେ ଠିକାଦାର ଶୀଘ୍ର ଉଠାଇ ନେଇ ରାସ୍ତାକାମରେ ଲଗାଇ ଦେଲେ । ଆଠଣା ପଇସା ସାଙ୍ଗକୁ କେବଳ ଗୋଟିଏ ପତ୍ର ଠୋଲାରେ ଠୋଲାଏ କନ୍ଦମୂଳ ସିଝା ମିଳିଗଲେ ଦିନଟିଏ କର ଶ୍ରମ ମିଳିଯାଉଥାଏ । ତେଣୁ ଠିକାଦାର ପାଇଥିବା ପ୍ରାପ୍ୟ ମାତ୍ର ଛଅ ହଜାର ଟଙ୍କାରେ ଅଧ ଲକ୍ଷ ଟଙ୍କାର କାମ କରାଇ ନେଇ ଦୁଇମାସରେ ବିଲ୍ ପାଇ ରାତାରାତି ବଡ ଲୋକ ହୋଇଗଲେ । ତାଙ୍କର ଦାରିଦ୍ର୍ୟ ଅବସ୍ଥା ବଦଳିଗଲା । ଭାଗ୍ୟର ପରିବର୍ତ୍ତନ ହୋଇଗଲା । ମନର ମଧ ଘୋର ପରିବର୍ତ୍ତନ ହୋଇଗଲା । ପଖାଳ ଖାଇ ଛକରେ ବସି କେବଳ ବ୍ଲକ୍ ବିଷୟରେ ଚର୍ଚ୍ଚା କରୁଥିବା ବ୍ୟକ୍ତି ନୂଆଠିକା କାମ ସାଙ୍ଗକୁ ନିଜର ଚାଷବାସ ଓ ଘରଦ୍ୱାର କାମରେ ଲାଗିପଡିଲେ ମନ ମୁନଦେଇ ।

ବଂଧୁ ଭାବରେ କେବେ ବ୍ଲକ୍‌କୁ ଆସିଲେ ସେ ତାଙ୍କର ସମୟର ଅଭାବ ଦର୍ଶାଉଥିଲେ । ପ୍ରାପ୍ୟ ପାଇଯାଇଥିବାରୁ କୃତଜ୍ଞତା ଜଣାଉଥିଲେ । ଶେଷରେ କିଛି ଉପଢୌକନ ଦେଇ ନିଜର ଋଣ ପରିଶୋଧ କରିବାକୁ ବାରମ୍ବାର ଇଚ୍ଛା ପ୍ରକଟ କରିଥିଲେ । ଯାହାହେଉ ଆମର ସୋଫାସେଟ ନଥିବାରୁ ସୋଫା ବନାଇବାକୁ ପରିଶେଷରେ ତାଙ୍କ ଘରେ ବହୁଦିନୁ ସଙ୍ଗାରେ ପଡିଥିବା ତାଙ୍କ ବାଡିର ଶୁଖିଲା ଗମ୍ଭାରୀ କାଠ କିଛି ଜବରଦସ୍ତକରି ଆଣି ଦେଲେ ଓ ଋଣମୁକ୍ତ ହେଲେ ବୋଲି ଜଣାଇଲେ ।

ସେ' ଡଥିଲେ ଯନ୍ତ୍ରୀ । ତାଙ୍କ ଇଙ୍ଗିତରେ ଯନ୍ତ୍ର ଚଳୁଥିଲା । ସେ ଶାନ୍ତି ଭଜିବାରୁ ତାଙ୍କ ପ୍ରରୋଚନାରେ କର୍ମଚାରୀମାନଙ୍କ ମଧରେ ସବୁବେଳେ ଲାଗିରହୁଥିବା କଳି ଆଉ ଦେଖା ଦେଲାନି । ଉଭୟେ କାର୍ଯ୍ୟାଳୟ ଓ କାର୍ଯ୍ୟକ୍ଷେତ୍ରରେ ଶାନ୍ତି ୪ ବର୍ଷଧରି ରହିଥିଲା ଓ ବହୁ ଉନ୍ନୟନ କାର୍ଯ୍ୟ କରିବାରେ ଏହା ସାହାଯ୍ୟ କରିଥିଲା । ଯେଉଁ ଶକ୍ତି କଳି କଜିଆ ଓ ପରଶ୍ରୀକାତରତାରେ ବ୍ୟୟିତ ହେଉଥିଲା ସେହି ସମୟ ଓ ଶକ୍ତି ଲୋକଙ୍କ ହିତରେ ବ୍ୟୟିତ ହୋଇପାରିଲା ।

ଶାନ୍ତିପ୍ରତିଷ୍ଠା ପାଇଁ ଆରମ୍ଭରୁ କର୍ମଚାରୀ ଓ ସହକର୍ମୀମାନଙ୍କ ସହ ଯେଉଁ ପ୍ରାରମ୍ଭିକ କଥାବାର୍ତ୍ତା ହୋଇଥିଲା ଏବଂ ଯେଉଁଠାରୁକି ଗୋବିନ୍ଦବାବୁ ଠିକାଦାରଙ୍କ ରହସ୍ୟ ପ୍ରକଟିତ ହେଲା; ସେ ଥିଲା ଠାକୁରଙ୍କର ପରମ କରୁଣାର ଫଳ । ତାର ଫଳ ହଜାର ହଜାର ନିରୀହ ଜନତା ପରବର୍ତ୍ତୀ ସମୟରେ ସିଧା ସଳଖ ପାଇ ପାରିଥିଲେ । ଦିରଦ୍ର ନାରାୟଣଙ୍କ ସେବା ପାଇଁ ସେହି ନାରାୟଣହିଁ ଆଗରୁ ପଥ ପରିଷ୍କାର କରାଇଥିଲେ । ଏତକ ହୋଇ ନ ଥିଲେ ନିଜ ଭିତରେ କଳି ଲାଗି ରହିଥିଲେ ଓ ପରସ୍ପର ଘନିଷ୍ଠ ସହଯୋଗ ସହିତ କଠୀନ ପରିଶ୍ରମ ପାଇଁ ସଂକଳ୍ପ ନ ଥିଲେ ମରୁଡିର ପରବର୍ଷ ଧାନ ପୋକ ମରା ସାଙ୍ଗକୁ ପୁଣି ମରୁଡି ଓ ବାତ୍ୟାରେ ଲୋକେ ପୋକମାଛି ପରି ମରିଥାନ୍ତେ । ଆମେ ସବୁ ନିଜ ନିଜ ମଧ୍ୟରେ ଛୋଟ ଛୋଟ କଥା ଓ ଛୋଟଛୋଟ ସ୍ୱାର୍ଥକୁ ନେଇ ପରର ପ୍ରବର୍ତ୍ତନାରେ ନିଜ ନିଜ ମଧ୍ୟରେ କଳିକରି ବଡପଣିଆ ଓ କ୍ଷମତା ଦେଖେଇ ହୋଇ କେବଳ ଦୁଃଖଭାଗୀ ହୋଇ ଦର୍ଶକ ସାଜିଥାନ୍ତୁ । । କାରଣ ଜିଲ୍ଲାର ସବୁଠାରୁ ଦୂରରେ ଅବସ୍ଥିତ ଏହି ବ୍ଲକ୍‌ର ଗରିବ ଆଦିବାସୀଙ୍କ ଖବର ଉପରବାଲାଙ୍କ ପାଖରେ ପହଞ୍ଚେନି କି ସେମାନଙ୍କ ମୁଣ୍ଡ ମଧ୍ୟ ଯାଙ୍କ ପାଇଁ କେବେ ବିନ୍ଧେନି ।

## ୧୦୧. ବାତ୍ୟା ଓ ମରୁଡିର କରାଳଛାୟା

ନିଜ ଭିତରେ ଓ କାର୍ଯ୍ୟକ୍ଷେତ୍ରରେ ଶାନ୍ତି ପ୍ରତିଷ୍ଠା କରି ବର୍ଷଟିଏ କିଛି କାମ କରାଯାଇଛିକି ନାହିଁ ପୁଣି ମାଡି ଆସିଲା ମରୁଡି । ତା ସାଙ୍ଗକୁ ସେଠାକାର ଏକମାତ୍ର ଧାନ ଫସଲରେ ଖଡିକାମରା ରୋଗ । ସରକାରଙ୍କୁ ଲେଖିଲେଖି ଥେୟା । କିଛି ସାର୍ବଜନୀନ ପ୍ରତିକାର ପୋକଙ୍କ ପାଇଁ ହୋଇପାରିଲାନି । ପ୍ରତିଦିନ ଅନ୍ତତଃ ଲୋକଙ୍କୁ ସାନ୍ତ୍ୱନା ଦେବାକୁ ଦଶପନ୍ଦରଟି ଗାଁକୁ ଯିବାକୁ ପଡୁଥାଏ । ଆଶ୍ଚର୍ଯ୍ୟର କଥା ଫସଲର ଅବସ୍ଥା ଦେଖି ଆଖିକୁ ଲୁହ ଆସିଯାଉଥାଏ । ଲୁହ ଆସିବା କ୍ଷଣି ଠାକୁରଙ୍କୁ ସ୍ମରଣ କରି ସାହାଯ୍ୟ ଭୀକ୍ଷା କରିବାଛଡା ଅନ୍ୟବାଟ ନଥାଏ । ଠିକ୍ ସେତିକି ବେଳକୁ ଟିକିଏ ମେଘ ଝିପିଝିପି ପାଣି ଛିଞ୍ଚିଦିଏ । ଏକଥା ଚାରିଆଡେ ରାଷ୍ଟ୍ର ହୋଇଗଲା । ସବୁ ଗାଁ ଲୋକ ଡାକିଆସିଲେ ଫସଲ ଅବସ୍ଥା ଦେଖିବାକୁ; କିନ୍ତୁ ଠାକୁରଙ୍କର ଇଚ୍ଛା ଠାକୁର ମୁଣ୍ଡା ଉପରେ ବିପତ୍ତି ଲଦିଦେବା । ଏ ଶୃଙ୍ଖଳା ଆଖିର ବୁନ୍ଦାଏ ଲୁହ ତାଙ୍କ ଆସନକୁ ଟଳାଇ ପାରିଲାନି ।

ଏଠି କୌଣସି ଶିଳ୍ପନାହିଁ, ବ୍ୟବସାୟ ନାହିଁ, ଚାକିରୀ ବାକିରି କ'ଣ ଏ ଲୋକ ଜାଣନ୍ତିନି । କେନାଲ କ'ଣ ଦେଖିନାହାନ୍ତି । ଉଠାଜଳସେଚନ ଏଠି ସ୍ୱପ୍ନ । ଜମିଗୁଡିକ ପ୍ରାୟ ଉଚ୍ଚ । କେଉଁଠି କେମିତି ବଡ ଲୋକମାନଙ୍କର ଖଣ୍ଡେ ଅଧେ ବେରଣା (ଖାଲ) ଜମିଥାଏ । ତେଣୁ ବର୍ଷରେ ଗୋଟିଏ ମକା, ସୁଆଁ ବା ଧାନ ଫସଲ ତାଙ୍କର ବଞ୍ଚିବାର ଏକମାତ୍ର ସମ୍ବଳ । ସେଇଥିରୁ ଖଜଣା, ଓଷାବାର, ଲୁଗାପଟା, ନ୍ୟାୟ ନିମିତ୍ୟ ଓ ପରିବାର ପୋଷଣ । ଧାନ ଫସଲ ଉଜୁଡି ଗଲା ଅର୍ଥ ତାଙ୍କର ସମସ୍ତ ଆଶା ଭରସା ଉଜୁଡିଗଲା । ଏଇ ଅବସ୍ଥାରେ

ଲୋକେ ଆତଙ୍କିତ ଥିବା ବେଳେ ନଭେମ୍ବର ମାସରେ ଅଚାନକ ଗୋଟିଏ ବାତ୍ୟା ହୋଇଗଲା । ସେଥିରେ ଅଧେ କୁଡିଆଘର ଉଡିଗଲା । କେତେ ପୋଢ ଓ ଗାଈଗୋରୁ ମରିଗଲେ । ଲୋକଙ୍କ ମନରେ କୋକୁଆ ଭୟ ଖେଳିଗଲା । ବାତ୍ୟାଦିନ ଆମ ବ୍ଲକ ପରିଦର୍ଶକ ଗୋଟେ ସ୍କୁଲର ଟେବୁଲ ତଳେ ପଶି ପ୍ରାଣ ରକ୍ଷା କରିଥିଲେ । ଆମେ ସବୁ ବ୍ୟସ୍ତହେଲୁ ଆଉ କେଉଁଠି କିଛି ନ ଥିବ ଭାବି ।

ଯାହାହେଉ ଭଗବାନ ସୁବୁଦ୍ଧି ଦେଲେ । ଆମେ ସାଙ୍ଗେ ସାଙ୍ଗେ ସବୁ ସହକର୍ମୀ ଗୋଟିଏ ବୈଠକରେ ମିଳିତ ହୋଇ ସମଗ୍ର ବିଷୟଟି ଆଲୋଚନା କରିଲୁ । ନିଷ୍ପତ୍ତି ନେଲୁ ଯେ କ୍ଷୟକ୍ଷତିର ଆକଳନ କରିନେବୁ । ଆମେତ କିଛି ସାହାଯ୍ୟ ବିନା ସରକାରୀ ମଞ୍ଜୁରୀରେ ଦେଇପାରିବୁନି । ତେବେ ଆମ ହାତରେ ଥିବା ସ୍କୁଲ କେୟାର ଖାଦ୍ୟ ନିହାତି ଅଭାବି ଲୋକଙ୍କୁ ଦେବାକୁ ସ୍ଥିର କଲୁ; ଯେପରି ଲୋକ ଅନ୍ତତଃ ମରିଦେନି । ସେହି ନିଷ୍ପତ୍ତି ଅନୁଯାୟୀ ତା'ପର ଦିନଠାରୁ ଗାଁ ସବୁ ବାଣ୍ଟିନେଇ ସବୁଗ୍ରାମ ସେବକ ଓ ସଂପ୍ରସାରଣ ଅଧିକାରୀ ସର୍ଭେ କରିବାକୁ ବାହାରି ପଡିଲେ । ସେଥିପାଇଁ ନିଜେ ନିଜେ ଫର୍ମ ପ୍ରସ୍ତୁତ କରି କାଗଜ କାର୍ବନ ନେଇ ଚାଲିଗଲେ । ଗାଁ ଗାଁ ଓ ଘର ଘର ବୁଲି କାହାର କ'ଣ କ୍ଷତି ହୋଇଛି ତାର ବିସ୍ତୃତ ତାଲିକା ପ୍ରସ୍ତୁତ କରି ୮ ଦିନ ମଧ୍ୟରେ ଦେଇଦେଲେ । ତାକୁ ଏକତ୍ରିତ କରି ଗୋଟିଏ ନକଲ ଉପଜିଲ୍ଲାପାଳ, ଗୋଟିଏ ଜିଲ୍ଲାପାଳ ଓ ଅନ୍ୟ ଗୋଟିଏ ସରକାରଙ୍କୁ ପଠାଇ ଦିଆଗଲା । ବାତ୍ୟା ବାସିଦିନ ଉପଜିଲ୍ଲାପାଳଙ୍କୁ ପ୍ରାଥମିକ ରିପୋର୍ଟଟିଏ ପଠାଇଦିଆଯାଇଥିଲା । ତାଙ୍କର ରୋଜା ମାସ ଚାଲିଥାଏ । ସେ ତହସିଲଦାରଙ୍କୁ କହିଲେ । ତାଙ୍କ ଗାଡି ମଧ୍ୟ ଆସିବାକୁ ବାଟ ନଥାଏ । ସେ ପଠାଇଲେ ତାଙ୍କ ରାଜସ୍ୱ ସୁପରଭାଇଜରଙ୍କୁ । ସେ ଠାକୁର ମୁଣ୍ଡାରେ ରାତ୍ରି ଯାପନ କରି ଫେରିଯାଇ ୬ଟି ଘର ଭାଙ୍ଗିଯାଇଥିବାର ଖବର ଦେବାରେ ତହସିଲଦାର ଓ ଉପଜିଲ୍ଲାପାଳ ସେଥିରେ ସନ୍ତୁଷ୍ଟ ହୋଇଚୁପ୍ ରହିଗଲେ । ଶେଷରେ ସରକାର ନିଷ୍ପତ୍ତି ନେଇ ଜଣାଇ ଦେଲେ ଯେ ବନ୍ୟା, ମରୁଡି ଓ ବାତ୍ୟାରେ ତହସିଲ୍‌ଦାରଙ୍କ ରିପୋର୍ଟ ହିଁ ସର୍ବଶେଷ ରିପୋର୍ଟ ଭାବେ ଗୃହିତ ହେବ ।

ଏହି ନିଷ୍ପତ୍ତି ଫଳରେ ତହସିଲଦାରଙ୍କ ରିପୋର୍ଟ ଅନୁଯାୟୀ ଠାକୁର ମୁଣ୍ଡାରେ ମରୁଡି ନଥିଲା, ପୋକମରା ଯୋଗୁଁ ଫସଲକ୍ଷୟ ନଥିଲା କି ବାତ୍ୟାଯୋଗୁଁ ବିଶେଷକ୍ଷୟ କ୍ଷତି ଘଟିନଥିଲା । ତେଣୁ ସରକାର ନାହିରେ ତେଲ ଦେଇ ଶୋଇଗଲେ । ଜିଲ୍ଲାପାଳ ଥାନ୍ତି ପ୍ରଖ୍ୟାତ କବି ସୀତାକାନ୍ତ ମହାପାତ୍ର । ବ୍ଲକ୍‌ର ଲମ୍ବା ରିପୋର୍ଟ ଦେଖାଇ ଉପଜିଲ୍ଲାପାଳଙ୍କୁ ଥଟ୍ଟାରେ କହିଲେ "ତୁମର ଓ ବିଡିଓଙ୍କର କ'ଣ" କଳି ଲାଗିଛି ? ବ୍ଲକ୍ ରିପୋର୍ଟରେ ୬୦୦ଘର ସଂପୂର୍ଣ୍ଣ ଓ ୧୫୦୦ରୁ ଅଧିକ ଘର ଆଂଶିକ ଭାଙ୍ଗିଥିବା ବେଳେ ଓ ଶହେଭାଗ ଫସଲ ନଷ୍ଟ ଦର୍ଶାଯାଇଥିବା ବେଳେ ତହସିଲଦାରଙ୍କ ରିପୋର୍ଟକୁ ଭିତ୍ତିକରି ଉପଜିଲ୍ଲାପାଳ ପଠାଇଥିବା ରିପୋର୍ଟରେ ଚାଷବାସ ଓ ଅମଳ ଠିକ୍‌ଥିଲା । ଘର ଭାଙ୍ଗିଥିଲା ମାତ୍ର ଛଅଟି ।

ଆମକୁ ସେଥିରୁ କ'ଣ ମିଳିବ ? ଆମର ବା କ'ଣ କ୍ଷମତା ଅଛି । କେବଳ ଈଶ୍ୱରଙ୍କ ନିର୍ଦ୍ଦେଶରେ ସର୍ବୋକାମ ଓ ଅତି ଅସୁବିଧା ସ୍ଥଳେ କେୟାର ଖାଦ୍ୟ ଦେଇ ବଞ୍ଚାଇରଖିବାର ବ୍ୟବସ୍ଥା କରିଦେଇ ଉଦ୍‌ବେଗର ଶେଷ ସୀମାରେ ମୁଣ୍ଡ ଆଉଁସି ରହିବାକୁ ପଡିଲା ସରକାରୀ ନିୟମମାନି।

## ୧୦୨. ମାଥ୍ୟୁସ୍ କୋକୁଆ

ଜାଗଜ ଚାଷକାମ ସରିଗଲା । ତା ସାଙ୍ଗରେ ସରିଯାଇଥାଏ ସମଗ୍ର ଫସଲ ଓ ଭାଙ୍ଗିଯାଇଥାଏ ଘର ଦ୍ୱାର ସବୁ । ଗାଁ କୁ ଗାଁ ଖାଦ୍ୟାଭାବରେ ଗାଈଗୋରୁ ଓ ଲୋକେ ମରିବାକୁ ଲାଗିଲେ ପୋକମାଛିପରି । ଲୋକଙ୍କ ହାତରେ ପଇସା ନଥିଲା । ବଜାରରେ ସୁଲଭ ଖାଦ୍ୟ ଦ୍ରବ୍ୟ ମଧ ନଥିଲା । ଜଙ୍ଗଲରୁ କନ୍ଦାମୂଳ ତାଡିକରିଖାଇବାରେ ଶେଷ ହୋଇଯାଇଥାଏ । କୂଅ ସବୁପ୍ରାୟ ଶୁଖିଯାଇଥାଏ । ଚୁଆ ଓ ନଈର ମଇଳା ପାଣି ଓ ଗଛର ପତ୍ର ହୋଇଥାଏ ଖାଦ୍ୟ ଓ ପାନୀୟ । ଲୋକେ କଙ୍କାଳ ସାର ହୋଇଯାଇଥାନ୍ତି । ନିହାତି ଦରକାର ହେଲେ ସ୍କୁଲ କେୟାର ଖାଦ୍ୟ ଦେଇ ଭୋକିଲାଙ୍କୁ ବଞ୍ଚାଇ ରଖିବାକୁ ମୌଖିକ କହିଥିଲେ ମଧ ସବୁଠି ଏହାକାମ ଦେଉନଥିଲା । କିଛି ଖାଦ୍ୟ ବଳିଲେ ପରିବେଷକ ନିଜେ ନ ନେଇ କାହାକୁ ଦେବେ ? ତାଙ୍କ ଅବସ୍ଥାତ ଡିଲା । ଏମିତି ଅବସ୍ଥାରେ ଲୋକେ ହସ୍ତସନ୍ତ ହେଉଥିବାବେଳେ ଠାକୁରଙ୍କୁ ଡାକି ଦୁଃଖ ସହିବା ବ୍ୟତୀତ ତାଙ୍କର ଅନ୍ୟକିଛି ଉପାୟ ନ ଥିଲା । ଠାକୁରେ ଶେଷକୁ ତାଙ୍କ ଡାକ ଶୁଣିଲେ । ଭୁବନେଶ୍ୱର ସରକାର କେଉଁଠୁ ଅବଗତ ହେଲେ ଯେ ଠାକୁର ମୁଣ୍ଡାରେ ଲୋକଙ୍କର ଅବସ୍ଥା ସାଂଘାତିକ । ତେଣୁ ସେତେବେଳେ ରିଲିଫ୍ କମିଶନରଥିବା ମାଥ୍ୟୁସ୍‌ଙ୍କୁ ଅବସ୍ଥା ଦେଖିବାକୁ ପଠାଗଲା ।

ହଠାତ୍ ଦିନେ ସକାଳ ୮ଟାରେ ଘରୁବାହାରି ଅଫିସ ଆଡକୁ ଯାଉଥିବାବେଳେ ଦେଖାଗଲେ ଜିଲ୍ଲାପାଳ । ସେ ପାଖକୁ ଚାଲି ଆସିକାନ୍ଧରେ ହାତପକାଇ ଦେଇ କହିଲେ ମାଥ୍ୟୁସ୍ ଆନନ୍ଦପୁର ପଟୁ ଆସୁଛନ୍ତି । ପଛରେ କରଞ୍ଜିଆରୁ ଉପଜିଲ୍ଲାପାଳ ଆସୁଛନ୍ତି । ଆମେ ଚାଲ ଆଗରେ ଯିବା ମାଥ୍ୟୁସ୍‌ଙ୍କ ବାଟକୁ । ଗଲାବେଳେ ଜିଲ୍ଲାପାଳଙ୍କ ନିର୍ଦ୍ଦେଶରେ ପଛରୁ ଡାକି ଆମ ପ୍ରଧାନ କିରାଣିଙ୍କୁ କହିଲି ଶୁଖିଲା ରୁଟି, ଚିକେନ୍ ଆଉ ସାଲାଡ୍ କରିଥିବେ । ମାଥ୍ୟୁସ୍ ଖାଇବେ । ଏତିକି କହି ଆମେ ଚାଲିଗଲୁ । ପଛରେ ଉପଜିଲ୍ଲାପାଳ ଆସି ଆମକୁ ବାଟରେ ପାଇଲେ । ଆନନ୍ଦପୁର ପାଖାପାଖି ପ୍ରାୟ ୧୦ଟା ବେଳକୁ ଆସି ପହଞ୍ଚିଲେ ମାଥ୍ୟୁସ୍ ସାହାବ । ସେଠୁ ସାଙ୍ଗହୋଇ ଶାତକୋଶିଆ ପଞ୍ଚାୟତଠାରୁ ପରିଦର୍ଶନ ଆରମ୍ଭ ହେଲା । ଗୋଲାରେ ଧାନ ନାହିଁ । ବିକ୍ରୀପାଇଁ ଚାଉଳ ନାହିଁ । ଲୋକଙ୍କୁ ଚାହିଁ ହେଉନି । କଙ୍କାଳସାର । ମୂଲପାଇଁ ହାତରେ କାମନାହିଁ । ସେଇଠୁ ଦଶଜାଗା ଦେଖିଦେଖି ଶେଷରେ ଠାକୁର ମୁଣ୍ଡାରେ ପହଞ୍ଚିଲା ବେଳକୁ ଦିନ ଦୁଇଟା । ସାଙ୍ଗରେ ଡାକ୍ତର ଥାନ୍ତି । ଖାଦ୍ୟପାଇଁ ବ୍ୟବହୃତ ଶାଗ, ମୂଳ ପରୀକ୍ଷା କରି ଓ ଲୋକଙ୍କ ସ୍ୱାସ୍ଥ୍ୟ ଦେଖି ସେ ବିବ୍ରତ । ମାଥ୍ୟୁସ୍ ରାଗରେ ଜର୍ଜରିତ । ଜିଲ୍ଲାପାଳ

ମଧ୍ୟ ଏ ଅବସ୍ଥା ଦେଖି ଖାଲି ଉପଜିଲ୍ଲାପାଳଙ୍କୁ କହୁଥାନ୍ତି ଭୁଲ୍ ହୋଇଗଲା । ଡେରି ହୋଇଗଲା । ପ୍ରକୃତ ଅବସ୍ଥା ଜାଣିହେଲାନି ।

ଠାକୁର ମୁଣ୍ଡାରେ ପହଞ୍ଚିଲା ବେଳକୁ ପ୍ରାୟ ଦୁଇହଜାର ଲୋକ ଡାକବଙ୍ଗଳାରେ ବିନା ଡାକରାରେ ଏକତ୍ରିତ ହୋଇଥାନ୍ତି । ମାଥ୍ୟୁସ୍ ଇଂରାଜୀରେ ବକ୍ତୃତା ଆରମ୍ଭ କଲେ । ଜିଲ୍ଲାପାଳ ଓଡିଆରେ ବୁଝାଇଲେ । ଲୋକଙ୍କୁ କିଛି ଆଶ୍ୱାସନା ମିଳିଲା । ମାଥ୍ୟୁସ୍ କହିଲେ ସ୍ଥାନୀୟ ଶାସନ କର୍ତ୍ତୃପକ୍ଷ ଠିକ୍ ଭାବେ ଅବସ୍ଥା ଅନୁଧ୍ୟାନ କରି ନାହାଁନ୍ତି । ଜିଲ୍ଲାପାଳ ବୁଝାଇଲେ ସରକାରୀ କର୍ମଚାରୀମାନେ ଗାଁ କୁ ଗାଁ ଯାଇ ଅବସ୍ଥା ଦେଖିବେ । ମାଥ୍ୟୁସ୍ କହିଲେ ଯାହା ହୋଇଛି, ଆଉ ଗୋଟିଏ ଲୋକକୁ ମରିବାକୁ ଦିଆଯିବନି । ଜିଲ୍ଲାପାଳ ବୁଝାଇଲେ କିଣିବାକୁ ଗୋଲାରେ ଚାଉଳ ମିଳିବ । ଲୋକେ କିଣି ଖାଇ ପାରିବେ । ଏହିପରି କିଛି ସମୟ ବକ୍ତୃତା ଚାଲିଲାପରେ ଲୋକେ ଭାଙ୍ଗିଗଲେ । ମାଥ୍ୟୁସ୍ ଖାଇବାକୁ ବସିଲେ । ଗୋଟେ ହାତରେ ଖଣ୍ଡେ ଶୁଖା ରୁଟି ଓ ଆର ହାତରେ ଖଣ୍ଡେ ଚିକେନ୍ ଧରି ସେତିକିରେ ଖାଇବା ଶେଷ କଲେ । ଏଥିରେ ଜିଲ୍ଲାପାଳ, ଉପଜିଲ୍ଲାପାଳ ଓ ବିଡିଓଙ୍କର କି ଖିଆ ହେବ । ଏତିକିରେ ସଂଧ୍ୟା ହେଲା ।

ସଂଧ୍ୟାରେ ଯେଉଁ ବାଟେ ଆସିଥିଲେ ସେହି ବାଟେ ମାଥ୍ୟୁସ୍ ଫେରିଲେ । ସାଙ୍ଗରେ ଆମେ ସମସ୍ତେଗଲୁ । ଅନ୍ଧାରରେ ରାସ୍ତାକଡ ଗୋଟେ ପଥର ଉପରେ ମାଥ୍ୟୁସ୍ ବସି ଟର୍ଚ୍ଚ ପକାଇ ତାଙ୍କ ରିପୋର୍ଟ ଡାକିଲେ । ତାଙ୍କ ଷ୍ଟେନୋ ଲେଖିଲେ । ଆମେ ସବୁ ଶୁଣୁଥାଉ । ମୋଟ ଉପରେ ଶାସନର ଅବହେଳାରୁ ଲୋକଙ୍କ ଦୁର୍ଦ୍ଦଶାର ଅନ୍ତନାହିଁ । ଯୁଦ୍ଧକାଳୀନ ଭିତ୍ତିରେ ସମସ୍ୟାକୁ ସମ୍ଭାଳିବାକୁ ହେବ । ଜିଲ୍ଲାପାଳ, ଉପଜିଲ୍ଲାପାଳ ଓ ତହସିଲଦାର ବଦଳି ହେବେ ।

ଲେଖାଲେଖି ପରେ ମାଥ୍ୟୁସ୍ ବିଦା ନେଲେ । ଆମେ ଫେରି ଆସି ଠାକୁର ମୁଣ୍ଡା ବଙ୍ଗଳାରେ ବସିଲୁ । ଜିଲ୍ଲାପାଳ କହିଲେ; ଭୁଲ ହୋଇଗଲା । ବିଳମ୍ବ ହୋଇଗଲା । ଏବେ କେମିତି ଅବସ୍ଥା ସମ୍ଭାଳିବା ନିଜେ ସ୍ଥିର କରିବା । ମାଥ୍ୟୁସ୍‌ଙ୍କ କଥା ଭୁଲିଯାଅ । ସେ କ'ଣ ସରକାର ! ତୁମର କ'ଣ ଦରକାର ବୋଲି ପଚାରିବାରୁ ଆଉ ୧୦ଜଣ ଗ୍ରାମସେବକ, ଆଉ ଗୋଟେ ଗାଡି, ପ୍ରଚୁର ମାଗଣା ଖାଦ୍ୟ ଓ କାମପାଇଁ ଟଙ୍କା ଦରକାର ବୋଲି ଜଣାଇବାରେ ତାପରଦିନ, ଗାଡି, ଲୋକ ଓ ଖାଦ୍ୟ ପହଞ୍ଚିଗଲା । ପ୍ରତି ପଂଚାୟତରେ କେନ୍ଦ୍ରଖୋଲି ଜଣେ ଗ୍ରାମ ସେବକ ଦାୟିତ୍ୱରେ ରଖାଗଲା । ପ୍ରତି ଦୁଇଟି ପଞ୍ଚାୟତକୁ ଜଣେ ସଂପ୍ରସାରଣ ଅଧିକାରୀଙ୍କୁ କାମ ଦେଖିବାକୁ ବଣ୍ଟାଗଲା । ବ୍ଲକ୍ ଅଫିସରେ ତିନି ଦଳ ହୋଇ ୨୪ ଘଣ୍ଟା କାର୍ଯ୍ୟ ବଣ୍ଟା ।ଗଲା । ଦିନରାତି ଖାଦ୍ୟ ଟ୍ରକ୍ ଆସି ପହଞ୍ଚିବା ସାଙ୍ଗକୁ ୨ଟି ଜିପ୍‌ରେ ପ୍ରତି ପଞ୍ଚାୟତକୁ ବୁହାଚାଲିଲା । ପଞ୍ଚାୟତରେ ମଧ୍ୟ ଦୁଇ ଓଳି ଖାଦ୍ୟ ବଣ୍ଟନ କରାଗଲା । ଗୋଲାରେ ବିକ୍ରୀପାଇଁ ଚାଉଳ ଓ ଗହମ ମହଜୁଦ୍ ରହିଲା । ସବୁ ପଞ୍ଚାୟତରେ ବହୁ ସଂଖ୍ୟକ କାମ ମଧ୍ୟ ଖୋଲାଗଲା । ଦିନ ସାତଟାରେ ଅବସ୍ଥା ପୁରା ଆୟତ୍ତ ହୋଇଗଲା । ଏତେବେଳକୁ ତହସିଲ୍‌ଦାର, ଉପଜିଲ୍ଲାପାଳ ଓ ଜିଲ୍ଲାପାଳ ବଦଳି ହୋଇଯାଇଥାନ୍ତି।

ମାଥ୍ୟୁସ୍ ୬୮ ପୃଷ୍ଠାର ଯେଉଁ ଗୁପ୍ତ ରିପୋର୍ଟ ସରକାରଙ୍କୁ ଦେଲେ ତାହା ବିଧାନ ସଭାରେ ଚାଞ୍ଚଲ୍ୟ ସୃଷ୍ଟି କଲା । ସରକାରୀ ଆଲୋଚନା ସାଙ୍ଗକୁ ଖବର କାଗଜ ସବୁ ଅବସ୍ଥାକୁ ଆହୁରି ଉଷୁମ କରିଦେଲା । ହେଲେ କାର୍ଯ୍ୟକ୍ଷେତ୍ରରେ ଆମେ ପ୍ରଥମ ରିପୋର୍ଟ ପଠାଇଥିବା ଲୋକମାନେ ଛଅମାସ କାଳ ଦିନରାତି ଚବିଶି ଘଣ୍ଟିଆ କାମକରି ନୟାନ୍ତ ହୋଇ ରୋଗ ବେମାରରେ ପଡି ଗଲୁ । ଗ୍ରା:ପ: ସଂପ୍ରସାରଣ ଅଧିକାରୀ ଆନ୍ତ୍ରିକ ଜ୍ୱରରେ ପଡିଗଲେ । ତାଙ୍କୁ ଭଦ୍ରକ ପଠାଇ ଚିକିତ୍ସା କରାଇଲୁ । ସହକର୍ମୀମାନେ ତାଙ୍କୁ ଆସି ପାଳିକରି ଜଗି ଭଲକରି ୧୫ ଦିନ ପରେ ଘରକୁ ନେଲେ । ଅନ୍ୟ କେତେଜଣଙ୍କର ସ୍ଥାନୀୟ ଚିକିତ୍ସାରେ ସ୍ୱାସ୍ଥ୍ୟ ସୁଧୁରି ଗଲା ।

ଜନତା ଜନାର୍ଦ୍ଦନ ଓ ଦରିଦ୍ର ନାରାୟଣଙ୍କ ସେବାପାଇଁ ଯେଉଁମାନେ ଜୀବନ ଉତ୍ସର୍ଗ କରି ଦିନରାତି କାମ କରିଥିଲେ ତାଙ୍କୁ ସେହି ଠାକୁରେ ଘଣ୍ଟ ଘୋଡାଇ ରକ୍ଷାକଲେ । ହଜାର ହଜାର ମୂକ, ମୂର୍ଖ, ନୀରିହ ଦରିଦ୍ର ଆଦିବାସୀଙ୍କର ଅନୁକ୍ତ ଆଶିର୍ବାଦ ସମସ୍ତ ସହକର୍ମୀଙ୍କୁ ସ୍ୱାସ୍ଥ୍ୟ, ସୁଖ, ସମୃଦ୍ଧି ଦେବା ସହ ପରସ୍ପରଙ୍କୁ ସହଯୋଗର ସୂତ୍ରରେ ପରିବାର ପରି ଦୃଢଭାବେ ବାନ୍ଧିଦେଲା ।

## ୧୦୩. ଶିଶୁଖାଦ୍ୟ ଓ ଶିଶୁଶିକ୍ଷା

ଲୋକମାନଙ୍କର ଅସୁବିଧାରୁ ବହୁତ ଲୋକ ଫାଇଦା ଉଠାନ୍ତି । ଘରପୋଡି ବେଳେ ଚୋରି କରିନେବା, ବଢି ଓ ମରୁଡି ବେଳେ ଲୋକଙ୍କ ପାଇଁ ଆସୁଥିବା ସାହାଯ୍ୟ ବାଟ ମାରଣା କରିବା ଅଧର୍ମ କାମ ହୋଇଥିଲେ ମଧ୍ୟ ତାକୁ ଭୃକ୍ଷେପ ନକରି ତତ୍‌କାଳୀନ ଫାଇଦା ଉଠାଇବାକୁ ସେମାନେ ପଛାନ୍ତିନି । ଅଳ୍ପଟିକେ ପ୍ରାକୃତିକ ବିପତ୍ତି ଦେଖାଦେଲେ ତାକୁ ଖୁବ୍ ବଡକରି ଚିତ୍ରଣ କରି ବହୁଳ ସରକାରୀ ସାହାଯ୍ୟ ଆଣି ସେଥିରେ ବିଭିନ୍ନ କାମ ଧନ୍ଦା ଖୋଲିଲେ ଠିକାଦାରି କରି ସେଥିରୁ ଫାଇଦା ଉଠାଇବା ଆଜିର ଗୋଟିଏ ସୁପରିଚିତ ରାଜନୀତି । କେଉଁଠି ନାଳବନ୍ଧ ମରାମତି ହେବ, କେଉଁଠି ରାସ୍ତା ତିଆରି ବା ମରାମତି ହେବ ସାଧାରଣ ଲୋକ ବା ସରକାରୀ କର୍ମଚାରୀଙ୍କଠାରୁ ଠିକାଦାରମାନେ ବେଶୀ ଜାଣନ୍ତି । ଖାଲି ଜାଣନ୍ତିନି; ପଇସା ଖର୍ଚ୍ଚକରି ସାମ୍ବାଦିକଙ୍କୁ ଧରି ଉତ୍ତେଜନା ସୃଷ୍ଟି କରାଇ ସରକାରୀ କଳକୁ ଜାଗରିତ କରି ଟଙ୍କା ମଞ୍ଜୁର କରାଇ ନିଜେ ଠିକା ଧରି କାମକରି ଭଲ ଦି ପଇସା ପାଆନ୍ତି । ଏପରିକି ସଂପୃକ୍ତ ପ୍ରତିନିଧି ବା ମନ୍ତ୍ରୀଙ୍କୁ ବାଁ ଡାହାଣ ଦସ୍ତଖତ ପକାଇ ଦରଖାସ୍ତ ଦେଇ ଟଙ୍କା ମଞ୍ଜୁର କରାଇ ସେ କାମର ଠିକାଦାରୀ ନେଇ ଦି ପଇସା ରୋଜଗାର କରନ୍ତି ଓ ଆବଶ୍ୟକ ସ୍ଥଳେ ଚାନ୍ଦା ଭେଦା ମଧ୍ୟ ଦିଅନ୍ତି । ଏହା ଏକ ସାମାଜିକ ବ୍ୟାଧି ହୋଇଗଲାଣି । ଆଗେ ଏଇଟା କମ୍ ଥିଲା । ଏବେ ଏ ବ୍ୟାଧି ବଢିଗଲାଣି । ଏହାଫଳରେ ଯୋଜନାବଦ୍ଧ ଅତ୍ୟାବଶ୍ୟକ ଉନ୍ନୟନ କାମ ପାଇଁ ସମ୍ବଳର ଅଭାବ ପଡେ ଓ ଦେଶର ବାସ୍ତବ ପ୍ରଗତି ମଧ୍ୟ ବାଧାପ୍ରାପ୍ତ

ହୁଏ । ପୁଣି କେଉଁଠି କେତେବେଳେ ମିଛୁଆ ରାଧୁଆ ପରି ଠିକଣା ବିପତ୍ତିବେଳେ ଯେତେ ପାଟିକଲେ ମଧ୍ୟ ସମ୍ବଳ ଅଭାବରୁ ଆବଶ୍ୟକୀୟ ସାହାଯ୍ୟ ମିଳିପାରେନା ।

ଠାକୁର ମୁଣ୍ଡାରେ ମରୁଡ଼ି ଓ ବାତ୍ୟା ସାଙ୍ଗକୁ ପୋକ ଲାଗି ଫସଲ ନଷ୍ଟ ହେବା ପରିସ୍ଥିତି ସରକାର ଅବଗତ ହୋଇ ବହୁତ ମାଗଣା ଖାଦ୍ୟ ଓ କାମର ବନ୍ଦୋବସ୍ତ କରିଥିଲେ । ସ୍କୁଲ ଓ ମହିଳା ସମିତି ମାନେ ମାଗଣା ଖାଦ୍ୟ ବିତରଣର ମାଧ୍ୟମ ଥିଲେ । ଏହାରି ସୁଯୋଗ ନେଇ କେତେକ ସ୍କୁଲରେ ଖାଦ୍ୟ ବାଟମାରଣା ଆରମ୍ଭ ହୋଇଯାଇଥିଲା । ସେତିକି ନୁହେଁ ଶିକ୍ଷା ଦାନରେ ମଧ୍ୟ ଘୋର ଅବହେଳା ପରିଦୃଷ୍ଟ ହୋଇଥିଲା । ଫଳରେ ସେ ବର୍ଷଟିରେ ପ୍ରାଥମିକ ଶିକ୍ଷାକ୍ଷେତ୍ରରେ ଘୋର ଅବନତି ଘଟିଥିଲା । ପ୍ରତିମାସରେ ଗସ୍ତକ୍ରମ ବାହିରିବା ବେଳେ ୩ ଦିନ ଅଜ୍ଞାତ ଗସ୍ତର ବ୍ୟବସ୍ଥା ରଖି ଅଚାନକ ସ୍କୁଲ ପରିଦର୍ଶନ କରିବାରେ କେତେକ ସ୍କୁଲ ବନ୍ଦଥିବାର, କେତେକ ସ୍ଥାନରେ ଖାଦ୍ୟ ବାଟମାରଣା ହୋଇଥିବାର ଦୃଷ୍ଟିକୁ ଆସିଥିଲା ।

ସବୁକ୍ଷେତ୍ରରେ ସରକାରୀ ନିୟମକୁ ଧରି କୈଫିୟତ୍ ମାଗି, ଦୋଷଧାର୍ଯ୍ୟ କରି, ତଦନ୍ତ କରି, ଦଣ୍ଡବିଧାନ କରି ଜେଲ୍ ଜୋରିମାନା ବା ଚାକିରୀରୁ ବାହାର କରିବା ପ୍ରଥା ସମୟ ସାପେକ୍ଷ ଓ କଠୀନ ମନେକରି କ୍ଷେତ୍ର ଉପରେ ତାଙ୍କ ପରିଦର୍ଶନ ଖାତାରେ ଲେଖିଦେଇ ଅନୁପସ୍ଥିତ ଦିନର ଦରମା କାଟିଦେବା ଓ ନିଅଁଟ ଖାଦ୍ୟର ମୂଲ୍ୟ ଆଦାୟ କରିଦେବା ଦ୍ୱାରା ଅବସ୍ଥା ବହୁତ ସୁଧୁରି ଯାଇଥିଲା । ମାତ୍ର ଏଥିରେ ଅସନ୍ତୁଷ୍ଟ ହୋଇ ଥରେ ଶିକ୍ଷକମାନେ ମେଳି ଆରମ୍ଭ କରିଦେଲେ ଓ ଆମ ସଭାପତି ତାଙ୍କୁ ଭିତିରିଆ ସାହାଯ୍ୟ ସହାନୁଭୂତି ଜଣାଇଥିଲେ । ପ୍ରଥମେ ଉପଜିଲା ପାଳଙ୍କଠାରୁ ଖବର ମିଳିଲା ଯେ ଶିକ୍ଷକମାନେ ଘେରାଉ କରିବେ । ନିୟମିତ ନୋଟିସ୍ ଦେଇ ନ ଥିବାରୁ ଗସ୍ତକ୍ରମ ମୁତାବକ ସକାଳୁ ଗସ୍ତରେ ଯାଇ ୨ଟାରେ ଫେରି ଖାଇସାରି ଅଫିସ୍‌କୁ ଆସିବାରେ ଇତଃସ୍ତତ ଭାବେ ଜମାହୋଇଥିବା ଶିକ୍ଷକମାନେ ଘେରାଉ ଆରମ୍ଭ କରି ବାହାରକୁ ଆସି ତାଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଡାକିଲେ । ତାଙ୍କୁ ବସିବା ପାଇଁ ଦରି ବନ୍ଦୋବସ୍ତ କରି ଅଫିସ୍‌କୁ ଆସି ଆଲୋଚନା କରିବାକୁ କହିବାରେ ସେମାନେ ନାମଙ୍ଗ ହେଲେ । ଶେଷରେ ବ୍ଲକ୍ ବାରଣ୍ଡାରେ ସଭାହେଲା ।

ଯେଉଁ ଯେଉଁଠାରେ ଅନୁପସ୍ଥିତି ଯୋଗୁଁ ଦରମା କଟାଯାଇଥିଲା ଓ ନିଅଁଟ ଖାଦ୍ୟର ମୂଲ୍ୟ ଆଦାୟ କରାଯାଇଥିଲା  ତାହା ବୁଝାଇଦେଇ ତାହା ଓ୍ୱାପସ୍ କରିଦେଇ ନିୟମାନୁଯାୟୀ କାର୍ଯ୍ୟାନୁଷ୍ଠାନ କରିବାକୁ ପ୍ରସ୍ତାବ ଦେବାରେ ସେମାନେ ରାଜି ହେଲେନି । ତେଣୁ ଶେଷରେ ସ୍ଥିର ହେଲାଯେ ଏଣିକି ସେହିପରି ନିୟମାନୁଯାୟୀ କାର୍ଯ୍ୟାନୁଷ୍ଠାନ ହେବ । ଶିକ୍ଷକ ପ୍ରତିନିଧି ନିଜେ ସେତେବେଳେ ଏଥିରେ ରାଜି ନ ହୋଇ ନିଜେ ବାଟମାରଣା କରିଥିବା ଖାଦ୍ୟର ମୂଲ୍ୟ ଦେଇ ଦେବାକୁ କହିଥିଲେ । ତେଣୁ ଅନ୍ୟମାନେ ମଧ୍ୟ ସେଇଆ କରିବାକୁ କହିଥିଲେ । ଶେଷରେ ଯେପରି ଚାଲିଥିଲା ସେପରି ହେବ ବୋଲି ପୁଣି ସ୍ଥିର ହେଲା । ହେଲେ ଆଉ ଗୋଟିଏ ବି ଏପରି ଘଟଣା ଘଟିନଥିଲା । ସେହିଦିନୁ ଠିକ୍ ଭାବେ ଖାଦ୍ୟନେବା, ଖାଇବାକୁ

ଦେବା ଓ ହିସାବ ରଖିବା କାମ ଠିକ୍ ଠିକ୍ ଚାଲିଲା । ସେତିକି ନୁହେଁ ବିନା ଦରଖାସ୍ତରେ ସ୍କୁଲ ବନ୍ଦ ପ୍ରାୟ ଦେଖାଯାଇ ନ ଥିଲା । ସେହି ଶିକ୍ଷକବନ୍ଧୁ ମାନଙ୍କ ଅକୁଣ୍ଠ ସହଯୋଗରେ ଗୋଟିଏ ପତ୍ରିକା ମଧ୍ୟ ପ୍ରକାଶିତ ହେଲା । ଏହାଫଳରେ ଆଉ ଶିକ୍ଷକ ମେଳି କେବେ, ଦେଖାଯାଇନଥିଲା । ତା'ର ସୁଯୋଗ ନେଇ ନିଜେ ପ୍ରତିମାସରେ ଦରମା ବଣ୍ଟନ ଦିନ ଶିକ୍ଷକମାନଙ୍କର ସଭା କରାଇ ସେଥିରେ ସ୍କୁଲମାନଙ୍କର ସମସ୍ୟା, ଶିକ୍ଷା ଉନ୍ନତି ଓ ସରକାରୀ ନିର୍ଦ୍ଦେଶାବଳୀର ଆଲୋଚନା ନିୟମିତ କରାଗଲା । ଠିକ୍ ତା' ପରବର୍ଷ ନାମଲେଖା ସମୟରେ ଘରେଘରେ ବୁଲି ପିଲାଡାକି ନାମଲେଖା କରାଗଲା । ଫଳରେ ସ୍କୁଲମାନଙ୍କରେ ଶିକ୍ଷକ ଉପସ୍ଥାନ ସାଙ୍ଗକୁ ଛାତ୍ର ଉପସ୍ଥାନ ଦେଢଗୁଣ ବଢିଗଲା ।

ଏପରି ହେଲାଯେ ଆସୁଥିବା ଶିଶୁଖାଦ୍ୟ ନିଅଣ୍ଟ ହେଲା । ତେଣୁ ଉପର ସ୍ତରରେ ଆଲୋଚନା କରି ଅଧିକ ଶିଶୁଖାଦ୍ୟର ବ୍ୟବସ୍ଥା କରାଗଲା । ହାଣ୍ଡି, ଥାଳିଆ, ବାଲ୍ଟି ଇତ୍ୟାଦି ସ୍କୁଲ ଓ ମହିଳା ସମିତି ମାନଙ୍କୁ ଯୋଗାଇ ଦିଆଗଲା । ପିଲାମାନେ ଓ ସାଧାରଣ ଲୋକେ ଏତଦ୍ୱାରା ବିଶେଷ ଭାବେ ଉପକୃତ ହେଲେ । ଶିକ୍ଷକମାନେ ମଧ୍ୟ ଲୋକପ୍ରିୟ ହୋଇଗଲେ । ଯେଉଁଠି ଗାଁ ଲୋକେ ଖାଦ୍ୟ ବାଟମାରଣା ହେଉଛି ଓ ସ୍କୁଲ ବନ୍ଦ ରହୁଛି, ପାଠପଢା ହେଉନି ବୋଲି ପାଟି କରୁଥିଲେ; ସେଠାରେ ଗାଁ ଲୋକେ ଏବେ ଶିକ୍ଷକ ମାନଙ୍କର ଆପଣାର ହୋଇଗଲେ ଓ ତାଙ୍କର ତାରିଫ୍ କଲେ ।

ଶିଶୁଖାଦ୍ୟ ଶିଶୁଶିକ୍ଷାର ପ୍ରତିବନ୍ଧକ ନୁହେଁ । ଏବେ ସରକାରଙ୍କର ଏ ଯୋଜନା ପାଇଁ ରୋଷେଇଆ, ଜାଳ ଓ ହାଣ୍ଡି ମିଳିଲେ ମଧ୍ୟ ଖାଦ୍ୟ ବିକ୍ରୀର ସୀମା ନାହିଁ । ଧରପଗଡ କଲେ ମେଳି ହେଉଛି । ଚୋରି ଉପରେ ସୀମା ଯୋରୀ । ଜିଲ୍ଲାପାଳ କହୁଛନ୍ତି ଆଉ ଧରପଗଡ ହେବନି । ପିଲାଙ୍କ ଖାଦ୍ୟ ଯୋଜନା ଚାଲୁକରି ଥିବା ଥିଲା ବାଲା ଲୋକେ ନ ଥିଲା ବାଲାଙ୍କ ଅବସ୍ଥା ବୁଝିବା ବାସ୍ତବରେ କଠୀନ । ହାଣ୍ଡି ମାଙ୍କଡ ଚିତ୍ ମାରୁଥିବା ଘରର ମାତା ପିଲାଟିକୁ କିପରି ଓପାସରେ ସ୍କୁଲ ପଠାଇବ ? ପୁଣି ତଳେ ସାନ ପିଲା ଥିଲେ ତାକୁ କିଏ ଧରା ଧରିକରି ପାଳିବ ? ବାପ କାମଧନ୍ଦାକୁ ଓ ମା କାଠପତ୍ର ପାଇଁ ବଣକୁ ଗଲେ ଘରେ କିଏ ? ସ୍କୁଲ ଖାଦ୍ୟ ଯୋଗାଣ ଏ ସବୁ ସମସ୍ୟାର କିଛି ସମାଧାନ ଯୋଗାଏ । ଏ ସବୁ କଥା କିଛି ନବୁଝି ଖବର କାଗଜ ମାନେ ଏକ ସ୍ୱରରେ କହୁଛନ୍ତି ଶିଶୁଖାଦ୍ୟ ଯୋଗୁଁ ପାଠପଢା ବାଧାପ୍ରାପ୍ତ ହେଉଛି । ନାଁ ଖବର କାଗଜ ନାଁ ପ୍ରଶାସନ ଗରିବ ଶିଶୁମାନଙ୍କ ସମସ୍ୟା ବୁଝନ୍ତି । ଶିକ୍ଷକମାନେ ସଂଘ ଗଢି ଯାହା କହିଲେ ତାହା ସତ୍ୟ ।

ଆମ ପ୍ରଶାସନର ନୈତିକ ସ୍ତର କେଉଁଠି ପହଞ୍ଚିଲାଣି । ପାଠକମାନେ ତାର ବିଚାର କରିବେ । ଈଶ୍ୱର ଏମାନଙ୍କୁ ସଦବୁଦ୍ଧି ଦିଅନ୍ତୁ ଓ ନୈତିକ ବଳରେ ବଳିଆନ କରନ୍ତୁ ଯେପରି ଦରିଦ୍ର ନାରାୟଣଙ୍କ କାମ ଠିକ୍ ଠିକ୍ ଚାଲେ ।

# ୧୦୪. ସ୍ୱାଧୀନତାର ରଜତ ଜୟନ୍ତୀ

୧୯୭୨ ମସିହାରେ ସ୍ୱାଧୀନତାର ରୌପ୍ୟଜୟନ୍ତୀ ପାଳନ କରାଗଲା । ଏହାକୁ ପାଳନ କରିବାପାଇଁ ସରକାରୀ ନିର୍ଦ୍ଦେଶ ଆସିଥିଲା । ତାର ଆଉ ଦି ପାଦ ଆଗକୁ ଯାଇ ଆମେ ସବୁ ସରକାରୀ କର୍ମୀ ଓ ବେସରକାରୀ ସଭ୍ୟ ଏକତ୍ରିତ ହୋଇ ଭୋଜିକରି ଖାଇଲୁ । ରାତି ୧୨ଟାରେ ୨୫ଟି ତୋପଧ୍ୱନି କଲୁ । ଆନନ୍ଦ ଉଲ୍ଲାସରେ ଲୋକ ମଙ୍ଗଳ କାମରେ ସମ୍ପୂର୍ଣ୍ଣ ଭାବେ ବ୍ରତୀ ହେବାକୁ ସଂକଳ୍ପ କଲୁ । ବ୍ଲକ ଅଫିସ୍ ଆଗରେ ସହିଦ ସ୍ମୃତି ସ୍ତମ୍ଭ ରୋପିଲୁ । ସେହିଦିନ ୩ଟି ତାଲିକା ପ୍ରସ୍ତୁତ ହେଲା । ୧ମଟି ପାନୀୟ ଜଳ ଯୋଗାଣ ପାଇଁ ଯେଉଁ ଗାଁରେ କୂଅଟିଏ ନାହିଁ ପଞ୍ଚାୟତ ୱାରୀ ସେଭଳି ଗାଁର ତାଲିକା । ୨ୟଟି ହେଲା ତଳପକ୍କା ଓ ଉପର ଅଗ୍ନି ନିରୋଧକ ଛାତ ଥାଇ ପ୍ରାଥମିକ ସ୍କୁଲଘର ନିର୍ମାଣ ପାଇଁ ତାଲିକା । ୩ୟ ତାଲିକାଟି ହେଉଛି ପ୍ରତିଗ୍ରାମକୁ ମାଟି ରାସ୍ତାଟିଏ ତିଆରି । ଏହି ଯୋଜନା ସରକାରଙ୍କୁ ପଠାଗଲା । ଦୁଇମାସ ମଧ୍ୟରେ ୧୧୦ କୂଅ ନଥିବା ଗାଁ ପାଇଁ ୧୧୦ଟି କୂଅ ମଞ୍ଜୁର ଆସିଗଲା । ତା ସହିତ ଗୋଟିଏ କନିଷ୍ଠଯନ୍ତ୍ରୀ ଓ ଗୋଟିଏ କାମ ଦେଖିବା ପାଇଁ ପଦବୀର ମଧ୍ୟ ମଞ୍ଜୁର ମିଳିଗଲା । ଦୁଇବର୍ଷ ମଧ୍ୟରେ ୧୯୭୪ ମଧ୍ୟରେ ଏ ସବୁ କାମ ଶେଷ ହୋଇଥିଲା । ୨ୟ ପ୍ରସ୍ତାବଟି ବ୍ୟୟ ବହୁଳ ଥିଲା । ତେଣୁ ଆଦିବାସୀ ମଙ୍ଗଳ ବିଭାଗର ୩୬ଟି ବିଦ୍ୟାଳୟରେ ପ୍ରଥମେ ତଳପକ୍କା ଓ ଉପର ଅଗ୍ନି ନିରୋଧକ ଛାତର ବ୍ୟବସ୍ଥା ମଧ୍ୟ ଦୁଇବର୍ଷ ମଧ୍ୟରେ କରାଗଲା । ୩ୟ ପ୍ରସ୍ତାବଟି ବ୍ୟୟବହୁଳ ହେଲେ ମଧ୍ୟ ଟେଷ୍ଟ ରିଲିଫ କାମପାଇଁ ଆସୁଥିବା ବହୁଳ ଟଙ୍କାରୁ ପ୍ରତି ଗାଁକୁ ମାଟିରାସ୍ତା ତିଆରି ହେଲା । ଯେଉଁଠି ଛୋଟ ନାଳ ଥିଲା ସେଠି ଜଙ୍ଗଲର ବାଜେ କାଠ କାଟି ପକାଇ ତା ଉପରେ ମାଟି ଦେଇ କଚା ପୋଲ ମଧ୍ୟ କରାଗଲା । ଆଉ ସବୁ ପଞ୍ଚାୟତକୁ ଥିବା ରାସ୍ତାରେ ମୋରମ ବିଛାଇ ତାକୁ ଯେତେଦୂର ସମ୍ଭବ ସବୁ ଦିନିଆ ରାସ୍ତା କରାଗଲା । ଆଗରୁ ଯେଉଁ ଗାଁରେ ପୋଖରୀ ଥିଲା ବା ବନ୍ଧଥିଲା ତାକୁ ଉଖାଳି ଓ ତାର ବନ୍ଧକୁ ମଜ୍‌ବୁତ କରାଗଲା । ଏଥିସହ କେତେକ ସ୍ଥାନରେ ଛୋଟ ଆଡିବନ୍ଧ ମଧ୍ୟ କରାଗଲା । ଏସବୁ କାମ ୩ଜଣ କନିଷ୍ଠ ଯନ୍ତ୍ରୀ ଓ ଦୁଇଜଣ ମୃତ୍ତିକା ସଂରକ୍ଷଣ କର୍ମୀ ଦିନରାତି ଲାଗି ତଦାରଖ କରୁଥାନ୍ତି । ଏସବୁ କାମ ତଦାରଖ କରିବାକୁ ଉପଜିଲ୍ଲାପାଳ ଓ ଜିଲ୍ଲାସ୍ତରୀୟ କର୍ମକର୍ତ୍ତାମାନେ ଧାଡି ଦେଉଥାନ୍ତି । ସଂପୃକ୍ତ ବ୍ଲକସ୍ତରୀୟ କର୍ମଚାରୀମାନେ ତାଙ୍କର ଚର୍ଚ୍ଚା କରୁଥିଲେ ଓ ତାଙ୍କଠାରୁ ସର୍ବୋତ୍ତମ ସାହାଯ୍ୟ ସହଯୋଗ ମିଳୁଥିଲା ମଧ୍ୟ । ସବୁ ପଞ୍ଚାୟତରେ ଗୋଟିଏ ଦୁଇଟି କାମ ଗ୍ରାମସେବକ ଜରିଆରେ ଚାଲୁରହିଥିଲା । ସେଠାରେ ହାତରେ ଖାଦ୍ୟ ନ ଥିବା ବା କାମ ନ ଥିବା ଲୋକ ଯେ ଯେଉଁଦିନ ପାରିବେ ଆସି କାମକଲେ ତାଙ୍କୁ କିଛି ଖାଦ୍ୟ ଓ କିଛି ଟଙ୍କା ମିଳିବାର ବ୍ୟବସ୍ଥା କରାଯାଇଥିଲା ।

ଈଶ୍ୱର ତାଙ୍କର ସୃଷ୍ଟିକୁ ବିନାଶ କରିବାକୁ ଚାହାନ୍ତିନି । ସେ ଉପର ସ୍ତରରୁ ଟଙ୍କାର ବ୍ୟବସ୍ଥା ଯେପରି କରାଇଲେ ତଳ ସ୍ତରରେ ସବୁ ଲୋକଙ୍କୁ ବା କର୍ମୀଙ୍କୁ ଏପରି କର୍ମମୁଖର କରିଦେଲେ ଯେ ତାହା ଦେଖି ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ଠାକୁରଙ୍କର ଆଶିର୍ବାଦ ନଥିଲେ ଏପରି ପରିସ୍ଥିତି ସୃଷ୍ଟିହେବା ଅସମ୍ଭବ । ଏହି କଠିନ କାମପାଇଁ ଠାକୁର ମଧ୍ୟ ଆଶିର୍ବାଦ ବର୍ଷଣ କରିଥିଲେ । କର୍ତ୍ତବ୍ୟ କର୍ମରୁ ଆନନ୍ଦ ଓ ସହଯୋଗ କିପରି ଜାତହୋଇ ସମସ୍ତଙ୍କୁ ସୁଖୀ କରେ; ଏହା ତାର ଏକ ଜ୍ୱଳନ୍ତ ଉଦାହରଣ ।

## ୧୦୫. ଭୀମକୁଣ୍ଡ

ଯେ ଅଞ୍ଚଳରେ ମକର ହେଉଛି ଉଭୟ ଆଦିବାସୀ ଏବଂ ଅଣଆଦିବାସୀ ମାନଙ୍କର ବଡପର୍ବ । ମେଳା କହିଲେ ମଧ୍ୟ ଗୋଟିଏ ବୋଲି ଏ ଅଞ୍ଚଳର ମିଳିତ ମେଳା । ଭୀମ କୁଣ୍ଡରେ ମକର ମେଳା । କେଉଁଝର ଜିଲ୍ଲାର ଗୋନାସିକାଠାରୁ ପ୍ରବାହିତ ପୂତ ବୈତରଣୀ ଭୀମକୁଣ୍ଡଠାରେ ଏପରି ନୈସର୍ଗିକ ରୂପଧାରଣ କରିଛି ଯେ ନ ଦେଖିଲା ଲୋକ ଏଠି ଘଡିଏ ଠିଆ ହୋଇ ସେ ଶୋଭା ଅବଶ୍ୟ ଦେଖିବ । ମନରେ ଯେତେ ଯାହା ଚିନ୍ତା ବା ଶୋକ ଥାଉ ଏଠି ଘଡିଏ ବସିପଡିଲେ ନିଶ୍ଚୟ ସବୁଭୁଲି ହୋଇଯାଏ । ନଈର ଉଭୟ କୂଳରେ କେଉଁଝର ଓ ମୟୁରଭଞ୍ଜ ଜିଲ୍ଲାବାସୀ ମକରମେଳା ପାଳନ କରନ୍ତି ମକର ସଂକ୍ରାନ୍ତି ଦିନ ।

ପୂର୍ବ ଦିନ ରାତିରୁ ଦୋକାନୀମାନେ ଓ ବହୁଲୋକ ଯାଇ ତାଳ ପଲାବାନ୍ଧି ରହିଯାନ୍ତି । ଭୋର ସକାଳୁ ବୈତରଣୀରେ ବୁଡ ପକାନ୍ତି । ଭୀମେଶ୍ୱରଙ୍କର ଦର୍ଶନ କରନ୍ତି । ଦୋକାନ ବଜାର କିଣା ବିକା ଲାଗିଯାଏ । ପ୍ରଫୁଲ୍ଲ ବେହେରା ପ୍ରଥମେ ଏ ଖବର ଦେଇ ମେଳାକୁ ଯିବାକୁ କହିଲେ । ତାଙ୍କ ଗୋସିଁବାପା ସେ ମନ୍ଦିର କରାଇଥିଲେ । ସେଠାରେ ମଧ୍ୟ ଗୋଟିଏ ଏକବଖୁରିଆ ରାଜସ୍ୱ ବିଭାଗର ଘରଅଛି ।

ଏକାଧାରରେ ଧର୍ମ, ଅର୍ଥ, କାମ ଓ ମୋକ୍ଷ ମିଳିବ । ପ୍ରାକୃତିକ ଶୋଭା ଦର୍ଶନ ହେବ । ବୈତରଣୀରେ ବୁଡ ଓ ମକର ସକାଳୁ ମହାଦେବ ଦର୍ଶନ ହେବ, ଲୋକମାନଙ୍କ ସହ ଦେଖା ସାକ୍ଷାତ୍ ହେବ, ଗସ୍ତ କାର୍ଯ୍ୟକ୍ରମ ମଧ୍ୟ ରାତ୍ରି ରହଣି ସହ କରିହେବ । ଏ ସୁଯୋଗ କିଏ ଛାଡେ ? ପିଲାଛୁଆଙ୍କୁ ଧରି ପ୍ରସ୍ତୁତ ଖାଦ୍ୟ, ଲୁଗାପଟା ଓ ଲଣ୍ଠନଟିଏ ଧରି ଯାଇ ସେଠି ରାତ୍ରିଯାପନ କଲୁ । ସକାଳେ ଭୋରରୁ ବୁଡପକାଇ ମହାଦେବ ଦର୍ଶନ ଓ ପୂଜାର୍ଚ୍ଚନା ହେଲା । ଶୀତରେ ଦେହ ଥରିଯାଉଥାଏ । ପାଣିରେ ହାତ ବୁଡାଇବା କ୍ଷଣି ଆଙ୍ଗୁଠି ବିନ୍ଧି ଉଠୁଥାଏ । ତଥାପି ମନର ଆବେଗରେ ବୈତରଣୀରେ ବୁଡ ଆମେ ସମସ୍ତେ ପକାଇଲୁ । ଶୁଖିଲା ଲୁଗା ପାଲଟି ସୂର୍ଯ୍ୟୋଦୟ ପୂର୍ବରୁ ଭୀମେଶ୍ୱରଙ୍କ ପାଖରେ ପୂଜାର୍ଚ୍ଚନା କଲୁ । ମନରେ ଖୁବ୍ ତୃପ୍ତି ଆସିଲା ।

ପାଖରେ ଥିବା ଖାଦ୍ୟ ଖାଇଦେଇ ନଈ କୂଳରେ ବସି ପଥର କାଟି, ପଥର ଚପି, ଶୁଶୁ ଶବ୍ଦକରି ବୈତରଣୀର ପ୍ରବାହ ଦେଖିବା ସହ ଶୀତ ଦିନରେ ଖରାପୋଇଁବାର ଯେଉଁ ଆନନ୍ଦ ଓ ସୁଆଦ ତାହା ଅବର୍ଣ୍ଣନୀୟ । କେବଳ ଅନୁଭବୀ ଛଡା ଏସୁଖ ଉପଭୋଗର ବର୍ଣ୍ଣନା କିଏ କରିପାରିବା ଅସମ୍ଭବ । ତା ସାଙ୍ଗକୁ ଦୁଇକୂଳରୁ ହରିବୋଲ ହୁଳହୁଳି ଶବ୍ଦ ଭାସି ଆସୁଥାଏ । ରଙ୍ଗ ବେରଙ୍ଗର ପୋଷାକ ପିନ୍ଧି ଆଦିବାସୀ ଓ ଅଣଆଦିବାସୀ ଆବାଳ ବୃଦ୍ଧ ବନିତା ବୁଡ ପକାଇବାକୁ ଯିବା ଓ ଶୀତ ସକାଳର ମିଳିତ ଗୀତସହ ସଦ୍ୟସ୍ନାତ ଫେରିବାର ଦୃଶ୍ୟ ଆହୁରି ମନୋରମ । ତାଠୁଁ ବଳି ମନୋରମ ଆବାଳ ବୃଦ୍ଧ ବନିତାଙ୍କ ରଙ୍ଗ, ବେରଙ୍ଗ ନବ ବସ୍ତ୍ର ପରିଧାନ ।

ନିଜେ ଦେଖି ଅନ୍ୟକୁ ନ ଦେଖାଇଲେ, ନିଜେଚାଖି ଅନ୍ୟକୁ ନ ଚଖାଇଲେ ଆନନ୍ଦ ମିଳେନା । ଦୁଃଖକୁ ଅନ୍ୟ ଆଗରେ ପ୍ରକାଶ କରିଦେଇ ମିଳିମିଶି ତାକୁ ସହିଲେ ତାହା ଲାଘବ ହୋଇଯାଏ । ସେହିପରି ସବାନ୍ଧବ ସୁଖ ଉପଭୋଗ କଲେ ତାହା ବହୁଗୁଣିତ ହୋଇଯାଏ । ଗାଡିପଠାଇ ଅନ୍ୟ ଯେଉଁମାନେ ଆଗ୍ରହୀ ତାଙ୍କୁ ମଧ୍ୟ ଡକାଇ ଅଣାଗଲା । ଖୁବ୍ ଆଗ୍ରହରେ ଏପରି ଦର୍ଶନ ଚାଲିଥିଲା ବେଳେ ବାଟରେ ଏକ ନାଳି ପାଖରେ ଜଣେ ଶିକ୍ଷୟିତ୍ରୀ ଗଳିପଡିଲେ । ମାତ୍ର ଠାକୁରେ ଚକ୍ରଧରି ତାଙ୍କୁ ରକ୍ଷାକଲେ । ତାଙ୍କର ବିଶେଷ କିଛି କ୍ଷତି ହୋଇ ନଥିଲା । କିନ୍ତୁ ସେହିଥରରୁ ଆଉ ଅଧିକ କେହି ଆସିବାକୁ ଆଗ୍ରହ କଲେନି । ନିୟମିତ ଭାବେ ୩ ବର୍ଷ ପୂତ ବୈତରଣୀର ଭୀମ କୁଣ୍ଡରେ ମକର ସଂକ୍ରାନ୍ତୀ ତିଥିରେ ପ୍ରାତଃସ୍ନାନ ଓ ଭୀମେଶ୍ୱର ଉପାସନା ସହ ନୈସର୍ଗିକ ଶୋଭା ଦର୍ଶନ ଏବଂ ଆଦିବାସୀ ମେଳାରେ ପ୍ରତ୍ୟକ୍ଷ ଭାଗ ନେବା ଯୋଗୁଁ ଲୋକମାନେ ବିଶେଷ ଆନନ୍ଦିତ ହୋଇଥିଲେ ଓ ଆପଣାର ଲୋକ ବୋଲି ପରସ୍ପର ମଧ୍ୟରେ ସ୍ନେହ ଶ୍ରଦ୍ଧା ଜଣାଇଥିଲେ । ଈଶ୍ୱର ଆଉ କେଉଁଠି ନାହାନ୍ତି; ଏଇ ସରଳ ଲୋକମାନଙ୍କ ତରଳ ସ୍ନେହ ଶ୍ରଦ୍ଧା ମଧ୍ୟରେ ସେ ବିରାଜମାନ । ତେଣୁ ତାଙ୍କର ଦୟା ପ୍ରତ୍ୟକ୍ଷ ଭାବେ ମିଳିଲା ।

## ୧୦୬. ମନ୍ତ୍ରୀଙ୍କ ତୋଫାନି ଗସ୍ତ

ନୈମିତ୍ତିକ କାମଗୁଡ଼ିକୁ ସମୟର ଅଭାବ ଦର୍ଶାଇ ସାଧାରଣତଃ ବେଖାତିରକରି ଆମେ ଅବହେଳା କରି କରୁ ବା କରୁନା । ତତ୍କାଳୀନ ବଡ଼ବଡ଼ କାମରେ ଲାଗିପଡ଼ି ଖଇବାଣ ପରି କିଛି ଭେଳିକି ଦେଖାଇଦେଲେ ଉପରିସ୍ଥଙ୍କୁ ତୁଷ୍ଟକରିବା ସହଜ ହୁଏ । ତଥାକଥିତ ଉପରିସ୍ଥ ବୋଲି ଯାହାକୁ କୁହାଯାଉଛି ସେ ମଧ୍ୟ ତଦ୍ରୂପ । ଫଳରେ ବହୁତ ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ଅବହେଳିତ ହୋଇପଡ଼ିଯାଏ ବା ଦୃଷ୍ଟି ପଥକୁ ଆସେନା । ଥରେ ଏଭଳି ପରିସ୍ଥିତି ସୃଷ୍ଟି ହେଲେ ଏବଂ ସବୁକାମ ଉପରଠାଉରିଆ ଭାବେ ହେଉଛି ବୋଲି ଥରେ ଧାରଣା ସୃଷ୍ଟି ହୋଇଗଲେ ତାକୁ ବଦଳାଇବାକୁ କଠୀନ ପରିଶ୍ରମ କରିବାକୁ ପଡ଼େ ।

ବର୍ଷରେ ଦୁଇଥର ନିଜ କାର୍ଯ୍ୟାଳୟ, ସବୁ ପଞ୍ଚାୟତ, ସମବାୟ ସମିତି ଓ ଗ୍ରାମସେବକ କାର୍ଯ୍ୟାଳୟ ସହ ଶିକ୍ଷାନୁଷ୍ଠାନ ଏବଂ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗୁଡ଼ିକ ନିୟମିତ ପରିଦର୍ଶନ କରିବା, ରିପୋର୍ଟ ପ୍ରସ୍ତୁତ କରିବା ଓ ପୂର୍ବ ରିପୋର୍ଟରେ ଦର୍ଶାଯାଇଥିବା ତ୍ରୁଟି ସଂଶୋଧନ କରିବା ଦ୍ୱାରା ବହୁତ କିଛି କାମ ହୋଇଯାଏ । ସବୁ ସ୍ତରରେ ହେଉଥିବା କାମ ଗୁଡ଼ିକ ଓ ତାର ପ୍ରଗତି ବିଷୟରେ ସମ୍ୟକ୍ ଧାରଣା ହୁଏ । ସେମାନଙ୍କର ମଧ୍ୟ ଭୟ ରହେ ଓ ସେମାନେ ନିଜ କର୍ତ୍ତବ୍ୟ ପ୍ରତି ସଜାଗ ହୁଅନ୍ତି । ବିଡ଼ିଓ ଚାକିରୀରେ ଥିବା ଦିନଗୁଡ଼ିକ ନିୟମିତ ଭାବେ ଉପରୋକ୍ତ ନୈମିତ୍ତିକ ସାମୟିକ ପରିଦର୍ଶନ କରିବା ଗୋଟିଏ ଅଭ୍ୟାସ ଥିଲା ।

ଥରେ ଏହିପରି ପରିଦର୍ଶନ ସମୟରେ ହାତୀଗୋଡ଼ା ଗ୍ରାମପଞ୍ଚାୟତରେ ପ୍ରାୟ ୫ଦିସ୍ତା କାଗଜରେ ଟିପଚିହ୍ନ ସହ ଦୈନିକ ହାଜିରା ଦେଖିବାକୁ ମିଳିଲା । ସେଥିରେ କେଉଁଠି ତାରିଖ ନାହିଁତ କେଉଁଠି କାମର ନାମ ନାହିଁ । ପୁଣି କେଉଁଠି ଲୋକର ନାମ ନାହିଁତ କେତେ ଯାଗାରେ ଟଙ୍କା ଲେଖା ନାହିଁ ବା ଟିପ ମଧ ନାହିଁ । କୌଣସି ଟିପର ଚିହ୍ନଟ ହୋଇନି । ଏସବୁ କ'ଣ ବୋଲି ପ୍ରଶ୍ନ କରିବାରେ ଗୋଟିଏ ବନ୍ଧକାମର ମଷ୍ଟର ରୋଲ ବୋଲି ସଂପାଦକ ମାର୍କଣ୍ଡ ଉତ୍ତର ଦେଲେ । ଟିପସବୁ ସହିକରି ଦେବାକୁ, ଖାଲିସ୍ଥାନ ପୂରଣ କରିଦେବାକୁ ବରାଦ୍ କରି ପରିଦର୍ଶନରେ ଲାଗିଥାଏ । ପ୍ରାୟ ଛଅଘଣ୍ଟା ପରେ ସବୁ ହୋଇଗଲା ବୋଲି ମାର୍କଣ୍ଡ ଦେଖାଇବାରେ ଜମାଖର୍ଚ୍ଚ ଖାତାରେ କେଉଁଠି ଖର୍ଚ୍ଚ ହୋଇଛି ଓ ମାପ ବହିରେ କେଉଁଠି କାମ ମାପ ହୋଇଛି ବୋଲି ଦେଖାଇ ବାକୁ ମାଗିବାରେ ଛଅହଜାର ଟଙ୍କା ଥରେ ଖର୍ଚ୍ଚ ପଡ଼ିଥିବାର ଦେଖାଇ ମାପବହି ସରପଞ୍ଚଙ୍କ ପାଖରେ ଅଛି ପରେ ଦେଖାଇବି ବୋଲି କହିଲେ । ଏଥିପାଇଁ ଧାର୍ଯ୍ୟ ସମୟରେ ନଦେଖାଇବାରୁ ସନ୍ଦେହ ହେଲା ଓ କାମ ଦେଖିବାକୁ କହିବାରୁ ବହୁତ ଦୂର ଯାଇ ହେବନି ବୋଲି କହି ଦୁଇଥର ଫେରାଇଦେଲେ । ଏଥିରୁ ସନ୍ଦେହ ଆହୁରି ଦୃଢ଼ୀଭୂତ ହେଲା । ତେଣୁ ସେ କାଗଜ ଗୁଡ଼ିକୁ ସାଙ୍ଗରେ ନେଇ ଆସି ଦିନେ ଏକା ଏକା କାମ ପାଖକୁ ଯିବାରେ ଆଦୌ କିଛି କାମ ହୋଇ ନଥିବାର ଦେଖାଗଲା ।

ତା'ପରେ ଦିନେ ସଂପାଦକ ମାର୍କଣ୍ଡ ଓ ସରପଞ୍ଚ ରସାନନ୍ଦ ହୋ ଆସି ସେସବୁ କାଗଜ ଫେରାଇ ଦେବାକୁ ଧମକ ଦେଲେ । ଫଳରେ କାଗଜ ଓ ଜମାଖର୍ଚ୍ଚ ଖାତା ନଦେଇ ସେସବୁ ଯବତ୍ ହେଲା ବୋଲି ରସିଦ୍ ଦେଇଦେବାରେ ସେମାନେ କ୍ଷୁବ୍ଧ ହୋଇ ସମିତି ବୈଠକରେ କଥାଟି ଉଠାଇଲେ । ସେଠାରେ ଅବସ୍ଥା ବୁଝାଇ ଦେଇ ଆଇନଗତ କାର୍ଯ୍ୟାନୁଷ୍ଠାନ ପାଇଁ ଗ୍ରାମପଞ୍ଚାୟତ ସଂପ୍ରସାରଣ ଅଧିକାରୀଙ୍କୁ ନେଇ ପୁଣିଥରେ କାମ ଯାଞ୍ଚକରି ଉପରକୁ ରିପୋର୍ଟ ପଠାଇ ଦିଆଗଲା । ଶେଷ ଦଫା କାମ ଯାଞ୍ଚ ବେଳକୁ ମାର୍କଣ୍ଡ ଯେଉଁ ମାନଙ୍କର ଟିପ ନେଇଥିଲେ ବା ଯେଉଁମାନଙ୍କ ନାମରେ ଟିପ ଥିଲା ସେ ସମସ୍ତଙ୍କୁ ଗ୍ରେନ୍‌ରୋଲରୁ ଧାନକରଜ ଦେଇଦେଇ ତାଙ୍କୁ ଟଙ୍କାନେଇ ଟିପ ଦେଇଛନ୍ତି ବୋଲି କହିବାକୁ ବୁଝାଇ

ଦେଇଥାଏ । ଲୋକଙ୍କଠାରୁ ପ୍ରକୃତ ସତ୍ୟ ବୁଝିବା ପାଇଁ ତାଙ୍କରି 'ହୋ' ଭାଷାରେ ତାଙ୍କୁ ହସିହସି ପଚାରିବାରେ ସେମାନେ ଖୁବ୍ ଖୁସି ହୋଇଗଲେ ଓ ଏକେ ଏକେ କରି ସମସ୍ତେ ମାନିଯାଇ କହିଲେ ଯେ ଆମକୁ ଧାନ କରଜ ଦେଇଛି । ତାକୁ ଏଥର ଛାଡ଼ିଦେ । ଆଦିବାସୀମାନଙ୍କ ଭାଷା ସ୍ୱଳ୍ପ ହେଲେ ମଧ୍ୟ ତାକୁ ଶିଖି ତାଙ୍କ ସହ ମିଶି ତାଙ୍କ କାମ କଲେ ସେ ତୁମକୁ ନିଶ୍ଚୟ ସାହାଯ୍ୟ କରିବେ । ମିଛ ସେମାନେ ପ୍ରାୟ କହନ୍ତିନି ।

ଯେତେବେଳେ କାଗଜସବୁ ଉପରକୁ ଚାଲିଗଲା ଓ ସରପଞ୍ଚ ନିଲମ୍ବିତ ହୋଇଗଲେ ସେତେବେଳେ ଆଉ ବାଟ ନଥିଲା । ସେତେବେଳକାର ଝାଡ଼ଖଣ୍ଡୀ ମନ୍ତ୍ରୀ ସିଦ୍ଧିଲାଲ ମୁର୍ମୁ ଦିନେ ତୋଫାନି ଗସ୍ତରେ ଆସି ଠାକୁରମୁଣ୍ଡା ବଙ୍ଗଳାରେ ରହି ଡ଼କାଇଲେ । ବହୁତ ଲୋକ ଗୁଣ୍ଡ ହୋଇଥିଲେ । କ'ଣ ହୋଇଛି ବୋଲି ସେ ବାରମ୍ବାର ପଚାରିଲେ । ହାଟ ମଧ୍ୟରେ ବ୍ରହ୍ମଜ୍ଞାନ ପରି ଜଣେ ସରପଞ୍ଚଙ୍କ ଅର୍ଥତୋଷରପାତ୍ ବିଷୟ ଏଠାରେ ଆଲୋଚନା ନ କରିବାକୁ ବୁଝାଇଲେ ମଧ୍ୟ ସେ ବୁଝିଲେନି । ତେଣୁ କଥାଟି କହିବାକୁ ବାଧ୍ୟ ହୁଅନ୍ତେ ଉଭୟ ସରପଞ୍ଚ ଓ ସଂପାଦକ ଠିଆହୋଇ ପାଲାଗାୟକ କରି ବହୁତ ପ୍ରତ୍ୟଭିଯୋଗ ବାଢ଼ିଲେ ଓ ପାଟିତୁଣ୍ଡ କଲେ । ସେତିକି ବେଳେ ମନ୍ତ୍ରୀଙ୍କ ସାଙ୍ଗରେ ଯାଇଥିବା ତାଙ୍କ ଚାମଚା ଓ ତାଙ୍କ ଦଳର ନେତା ରଘୁନାଥ ହେମ୍ବ୍ରମ୍ କେଉଁ ଅଧିକାର ବଳରେ କାଗଜ ଜବତ୍ କରିଛନ୍ତି ବୋଲି ପ୍ରଶ୍ନ କରିବାରେ ତୁମେ କେଉଁ ଅଧିକାରରେ ପ୍ରଶ୍ନ କରୁଛ ବୋଲି କହିବାରେ ସେ ଅଗ୍ନିଶର୍ମା ପାଲଟିଗଲେ । ମୋ ସରକାର; ମୋ ଦଳର ମୁଁ କାର୍ଯ୍ୟଦୋର ହୋଇ ଯଦି ଏପରି ଉତ୍ତର ବିଡ଼ିଓ ମୋତେ ଦେବେ ସେ ଲୋକଙ୍କର କ'ଣ କାମ କରିବେ ? ଲୋକଙ୍କର କ'ଣ କାମ ହୋଇଛି, ହେଉଛି ଏବଂ ହେବ ଲୋକେ ସେ କଥା ଭଲଭାବେ ଜାଣନ୍ତି ବୋଲି ଶୁଣିବାପରେ ଗୋଟିଏ ଜିପ୍‌ରେ ମନ୍ତ୍ରୀ, ସବୁ ନେତା ଓ ସରପଞ୍ଚ ସଂପାଦକ ଠେଲାପେଲା ହୋଇ ପଶି ଉପରେ ଦେଖିନେବୁ କହି ପଳାଇଲେ ଓ ସଭା ଭଙ୍ଗ ହେଲା । ବାରିପଦାରେ ୩ ଦିନ ପରେ ମନ୍ତ୍ରୀ ଜିଲ୍ଲାପାଳଙ୍କୁ ଏକଥା କହିବାରେ ସେ ମଧ କହିଲେ ଯେ ସମସ୍ତଙ୍କ ମଧରେ ଏକଥା ନପଚାରି ମୋତେ ବା ଏକା ବିଡିଓଙ୍କୁ ପଚାରିଥିଲେ ଏପରି ପରିସ୍ଥିତି ହୋଇ ନଥାନ୍ତା । ଜିଲ୍ଲାପାଳ ମଧ୍ୟ ଏହି ମର୍ମରେ ସରକାରଙ୍କୁ ଗୋଟିଏ ଚିଠି ପଠାଇଦେଲେ । ବୈକୁଣ୍ଠବାବୁ କୃଷି ସମ୍ପ୍ରସାରଣ ଅଧିକାରୀଙ୍କ ଜରୀୟାରେ ଭୁବନେଶ୍ୱର ଖବର ମିଳିଲା ଯେ ବଦଳୀ ପାଇଁ ଦୁଇଥର ପ୍ରୟାସ ବ୍ୟର୍ଥ ହୋଇଛି । ଦୁଇମାସ ପରେ ସେ ମଧ ମନ୍ତ୍ରୀରୁ ଗଲେ । ଯାହାକୁ ରଖିବେ ଅନନ୍ତ କି କରି ପାରେ ବଳବନ୍ତ । ନିଜର ସତ୍‌କର୍ମ ଓ ନିଷ୍ଠା, ନିଜର କବଚ ।

## ୧୦୭. ଅଚାନକ ଗସ୍ତ

କିଛିକାମ ନକରି ମିଛସତ ରିପୋର୍ଟ ଲେଖି ନିଜ ସୁଖ ସୁବିଧା ଦେଖିବା ସହ ଯେ ଉପରବାଲାଙ୍କ ସୁଖସୁବିଧା ବୁଝିପାରିଲା ସେ ବେଶ୍ ସୁଖରେ ଚାକିରୀ କଟାଇ ପାରିବ । ଯେ କାମ କଲା ସେ ମଲା । କାମ କଲେ ସମସ୍ତଙ୍କ ଆଖି ତୁମ ଉପରେ ପଡ଼ିବ । ଯାହାଙ୍କ ଆଖି ପଡ଼ିବ ତାଙ୍କର ସେବା ଶୁଶ୍ରୂଷା ନହେଲେ ସେ ଅଶୁଭଦୃଷ୍ଟି ପକାଇବେ । ତୁମପାଇଁ ସବୁବେଳେ ଅଶୁଭ ଚିନ୍ତା କରିବେ । ତୁମେ ନିଜେ ଖାଇ ତାଙ୍କୁ ଖୁଆଇ ସୁଖରେରଖି ପାରିଲେ ସୁନାପିଲା ।

ଦୁଇବର୍ଷ ଲଗାତର ମରୁଡ଼ି ସାଙ୍ଗକୁ ଫସଲରେ ପୋକ ଓ ବାତ୍ୟାଯୋଗୁଁ ଲୋକଙ୍କ ଅବସ୍ଥା ଖୁବ୍ ଖରାପ୍ ଥିବାର କମିଶନର ନିଜେ ଦେଖିଯାଇ ପର୍ଯ୍ୟାପ୍ତ ଅର୍ଥ ବ୍ୟବସ୍ଥା କରିବାରେ ବହୁତ କାମ ଚାଲିଥାଏ । ଥରେ ଉପଜିଲ୍ଲାପାଳ ନରେଶଦତ୍ତ କାହାକୁ ନକହି ବା ସାଙ୍ଗରେ ନ ନେଇ ଦୁଇତିନିଟି କାମ ନିଜେ ନିଜେ ଯାଇଁ ଯାଞ୍ଚ କରିସାରି ବ୍ଲକ ଅଫିସରେ ପହଞ୍ଚ ସମଗ୍ର କାମର ସମୀକ୍ଷା କଲେ । କେଉଁଠି କିଛି ଦୋଷ ତ୍ରୁଟି ନ ଦେଖି ବେଶୀ କାମ କେଉଁଠି କେମିତି ଟିକେ ଟିକେ ହୋଇଥିବାର କହିଲେ । ଶେଷରେ କହିଲେ ବହୁତ ପରିଦର୍ଶକ ଆସୁଛନ୍ତି । ବହୁତ ଟଙ୍କା ଖର୍ଚ୍ଚ ହେଉଛି । ଷ୍ଟେନୋବାବୁ ସେ ବିଷୟ ବୁଝୁଛନ୍ତି । ତାଙ୍କ ସହିତିକେ ଆଲୋଚନା କରିବେ । ଏଥିରୁ ଉଦ୍ଦେଶ୍ୟ ସ୍ପଷ୍ଟ ହୋଇଗଲା । ଜଣେ ଠିକାଦାରଙ୍କୁ ମାଗି ଶହେଟଙ୍କା ନେଇ ଷ୍ଟେନୋବାବୁଙ୍କୁ ଦେବାରେ ସ୍ୱଚ୍ଛତା ଦୃଷ୍ଟିରୁ ଉପଜିଲ୍ଲାପାଳ ଏକବାର ଖପା ହୋଇଗଲେ । ଆମ ସଭାପତି ତାଙ୍କୁ ଇନ୍ଧନ ଯୋଗାଉଥାନ୍ତି । ଆମେ ସିନା ଦିନରାତି ଖଟି ମରୁଛୁ, ସେମାନଙ୍କରତ କାମ ନାହିଁ । ଖାଲି ଅନ୍ୟର ତ୍ରୁଟିଦର୍ଶାଇବା ଓ ଗଛ ହଲାଇ କୋଳି ଝଡ଼ାଇବା ହେଉଛି କାମ ।

ଏପରି ପରିସ୍ଥିତିରେ ଗାଁରେ କିଏ ବେମାର ପଡ଼ିଥିବାର ଖବର ପାଇ ଟଙ୍କା ଜମାଦେଇ ଓ ଅନୁମତି ପାଇଁ ଲେଖିଗାଡ଼ି ନେଇ ୩ଦିନ ପାଇଁ ଗାଁକୁ ଯାଇ ଯେଉଁଦିନ ଫେରିଛି ତା ବାସି ଦିନ ଜିଲ୍ଲାପାଳ ବୀର କିଶୋର କର ହଠାତ୍ ଅଚାନକ ଗସ୍ତରେ ଆସିପହଞ୍ଚିଲେ । ସାଙ୍ଗରେ ଥିଲେ ଉପଜିଲ୍ଲାପାଳ । ଠାକୁର ମୁଣ୍ଡା ବଙ୍ଗଳାକୁ ମୋତେ ଡ଼କାଇ ପ୍ରଥମ ପ୍ରଶ୍ନହେଲା କାମଦାମ ହେଉନି, ଲୋକେ ମରୁଛନ୍ତି, ତୁମେ ଗାଡ଼ିଧରି ଫୁର୍ତ୍ତି କରିବାକୁ ଚାଲିଯାଉଛ । କାମ ସବୁଯାକ ଚାଲିଛି । ଶାଳମଞ୍ଜି ସଂଗ୍ରହ ଯୋଗୁଁ କାମ କରିବାକୁ କମ୍ ଲୋକ ଆସିବାରୁ ଖର୍ଚ୍ଚ କମିଯାଉଛି । ଜଣେ ବେମାର ଲୋକଙ୍କୁ ଦେଖିବାକୁ ଟଙ୍କା ଦାଖଲ କରି ଅନୁମତି ମାଗି, ଛୁଟିନେଇ ଛମାସ ମଧ୍ୟରେ ମାତ୍ର ୩ଦିନ ଯାଇଥିଲି କହିବାରେ ସେ ରାଗି ଯାଇ ସୋଫାଟେବୁଲ ଟାକୁ ଟେକି କଚାଡ଼ିଦେଇ କହିଲେ ମୁଁ ନିଜେ ଯାଇ କାମ ଦେଖିବି । ଆପଣ ଯାଇ ଦେଖନ୍ତୁ । ମୁଁ ଯାଉନି । ଯଦି ଦେଖିବେ ଯେ କାମ ହେଉନି, ଲୋକେ କାମ ପାଉନାହାନ୍ତି, ଉପାସରେ ମରୁଛନ୍ତି ତେବେ ମୋତେ ଦଣ୍ଡ ଦିଅନ୍ତୁ ।

ସେଇଆ ହେଲା । ସେ ଓ ଉପଜିଲ୍ଲାପାଳ ଗଲେ । ବୁଲି ବୁଲି ଫେରିଲେ । ସବୁଠିକାମ ଚାଲିଥାଏ । ଶାଳମଞ୍ଜି ସଂଗ୍ରହ ଯୋଗୁଁ କମ୍ ଲୋକ ଲାଗିଥିବାର ଏବଂ କେଉଁଠି ହେଲେ କେହି ଭୋକ ଉପାସରେ ନଥିବାର ଦେଖି ଫେରିଲେ । ସେଠାରେ ପହଞ୍ଚି ନପହଞ୍ଚୁଣୁ ଖାଇବା ପୂର୍ବରୁ ଉପଜିଲ୍ଲାପାଳ ବାହାଧରି ମନାକରିବା ସତ୍ତ୍ୱେ ଜିଲ୍ଲାପାଳଙ୍କୁ ବିନମ୍ର ହୋଇ ଓଲଟା ପ୍ରଶ୍ନ ହେଲା କ'ଣ ଦେଖିଲେ ? ଯଦି ଲୋକ ମରୁଥିବାର ଦେଖିଲେ ସେ କଥା କହନ୍ତୁ । ତେବେ ସେଥିପାଇଁ ଦାୟୀ ବ୍ୟକ୍ତି ଚାକିରୀରୁ ଇସ୍ତଫା ଦେଇ ଚାଲିଯିବନା ନାହିଁ କାମ ଚାଲିଛି । ତେବେ କମ୍ ଲୋକ କାମ କରୁଛନ୍ତି । ମହୁଲ ଡ଼ିହାରେ ଜଣେ ଲୋକ ଜରରେ ଘରେ ଶୋଇଥିବାର ଦେଖିଲୁ ।

ଏତକ ଶୁଣି ଆଶ୍ୱସ୍ତ ହୋଇ ଖାଇବାକୁ ଡ଼ାକିବାରେ ଜିଲ୍ଲାପାଳ ଖାଇଲେ ଓ ଫେରିଲେ । ତା'ପରେ ସବୁ ବେଳେ ସେ ଉପଜିଲ୍ଲାପାଳଙ୍କୁ ଖୁଣ୍ଟାଦେଲେ କାହିଁକି ଠାକୁରମୁଣ୍ଡା ବିଡ଼ିଓଙ୍କ ବିରୁଦ୍ଧରେ ଆଉତ କିଛି କହୁନ । ସେ କ'ଣ ତୁମକୁ ପକେଟରେ ପକାଇଦେଲେ ? ନା ତୁମେ ଭୁଲ ରିପୋର୍ଟ ଦେଇ ଅପଦସ୍ତ ହେଲ ।

ପରବର୍ତ୍ତୀ ଅବସ୍ଥାରେ ଫଟୋସହ ଏବଂ ସମିତି ପ୍ରସ୍ତାବ ସହ ଗୋଟିଏ ବିସ୍ତୃତ ରିପୋର୍ଟ ଜିଲ୍ଲାପାଳଙ୍କୁ ପଠାଇ ଦିଆଗଲା ଯେ ପ୍ରଚୁର ଶାଳମଞ୍ଜି ସହଜରେ ମିଳୁଥିବାରୁ ଏବଂ ବିକ୍ରିରୁ ଭଲ ପଇସା ମିଳୁଥିବାରୁ ସରକାରୀ କାମ ଧିମେଇ ଯାଇଛି ଏବଂ ୨ ମାସ ପରେ ପୁଣି ଚାଲିବ ଓ ଖର୍ଚ୍ଚ ବଢ଼ିବ । ରାଜ୍ୟସ୍ତରରୁ ଜିଲ୍ଲାର ଖର୍ଚ୍ଚ କମୁଥିବା ଦର୍ଶାଇ ଯେତେବେଳେ ଜିଲ୍ଲାପାଳଙ୍କୁ କୈଫିୟତ୍ ମଗାଗଲା ସେ ଏହି ରିପୋର୍ଟକୁ ଭିତ୍ତିକରି ତାଙ୍କ ଜରୁରୀ କାଳୀନ ଅଧିକାରୀଙ୍କୁ ପଠାଇ ଶାଳମଞ୍ଜି କାରଖାନାରୁ ପ୍ରକୃତ ତଥ୍ୟ ସଂଗ୍ରହ କରେଇ ସରକାରଙ୍କୁ ଜଣାଇଲେ । ସେଇଥିରେ ତାଙ୍କର ଓ ଜିଲ୍ଲାର ଇଜ୍ଜତ ରକ୍ଷା ହୋଇଗଲା ।

ଇତିମଧ୍ୟରେ ଉପଜିଲ୍ଲାପାଳଙ୍କ ପ୍ରଥମ ରିପୋର୍ଟ ଉପରେ ଗାଡ଼ିର ଅସଦ୍‌ବ୍ୟବହାର କରିଥିବା ଦର୍ଶାଇ କୈଫିୟତ୍ ମଗାଇ ତଦନ୍ତ କରିବା ବେଳକୁ ଗାଡ଼ିର ଭଡ଼ା ଦାଖଲ'ତ ଆଗରୁ ସରିଥିଲା; ଜିଲ୍ଲାପାଳଙ୍କ ଅଫିସରୁ ଅନୁମତି ମଧ୍ୟ ଆସିସାରିଥିଲା । ଏଥିରେ ଉପଜିଲ୍ଲାପାଳ ଅଧିକ ଇଜତ ହରାଇଥିଲେ । ସେହିଦିନଠାରୁ ସେ ବନ୍ଧୁଭାବେ ବ୍ୟବହାର କରିଥିଲେ ସେଠାରେ ଓ ସେଠାରୁ ଆସିବା ପରେ ଏବଂ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ।

ଲୋକଙ୍କ ସହ ମିଶିଲେ, ଲୋକଙ୍କ କାମକଲେ, ନିଜେ ଖାଇଯିବାର ମନୋବୃତ୍ତି ନରଖି ନିଃସ୍ୱାର୍ଥପର ଭାବେ କର୍ତ୍ତବ୍ୟ କଲେ ସେହି କର୍ତ୍ତବ୍ୟହିଁ ନିଜର ରକ୍ଷା କବଚ ହୁଏ । ସେହି ଲୋକମାନଙ୍କର ସନ୍ତୋଷରୁ ଜାତ ଆସ୍ୱସ୍ତିକର ନିଃଶ୍ୱାସ ପବନରେ ସବୁ ଝଡ଼ଝଞ୍ଜା ଉଡିଯାଏ । ଠାକୁରଙ୍କ ଆଶିର୍ବାଦ ମିଳେ । ଠାକୁରଙ୍କ ଉପରେ ନିର୍ଭରତା ଓ ତାଙ୍କ ଆଶିର୍ବାଦ ଥିଲେ ନିଜର ସ୍ୱାଭିମାନ ସେ ହିଁ ରଖନ୍ତି । ସେ ଦ୍ରୌପଦୀର ମାନ ରଖିଥିଲେ ; ଯେତେବେଳେ ତାଙ୍କ ପଞ୍ଚବୀର ସ୍ୱାମୀ ମାନ ରକ୍ଷା କରିବାକୁ ଅସମର୍ଥ ହୋଇଥିଲେ କୁଟନୀତିର ବନ୍ଧନରେ ପଡ଼ି । ତେଣୁ ସେହିଠାକୁରେ ସବୁକୁଟକପଟ ଭେଦକରି ନିଷ୍ପାପର ସେବା ଓ ଶ୍ରମର ପ୍ରତିଦାନ ସ୍ୱରୂପ ମାନରକ୍ଷା କଲେ ।

## ୧୦୮. ନନ୍ ସେନ୍ସ

ତିନିଶ୍ରେଣୀର ଲୋକମାନଙ୍କ ମଧ୍ୟରୁ କେତେକ ବିପଦ ଆସିବା ଆଗରୁ ସାବଧାନ ହୋଇଯାଇଥାନ୍ତି । କେତେକ ବିପଦ ଆସିବାକ୍ଷଣି ତାକୁ ସମ୍ମୁଖୀନ ହେବାକୁ ଯତ୍ନ ଆରମ୍ଭ କରିଦିଅନ୍ତି । ଆଉ କେତେକେ ଥାନ୍ତି ଯେକି ଚିଡ଼ିସାରିଲା ପରେ ଘର ଛାଇଁବା ପାଇଁ ଯୋଜନା ପ୍ରସ୍ତୁତ କରନ୍ତି । ଆମ ଶାସନରେ ମଧ୍ୟ ଏଇଭଳି ଲୋକ ରହିଛନ୍ତି । ଶାସନତ ଆଉ ଦୁନିଆ

ବାହାରର କଥା ନୁହେଁ । ଏହି ତିନି ଶ୍ରେଣୀର ଲୋକମାନେ ଏ ଶାସନକୁ ଚଳାନ୍ତି । ତେଣୁ ଶାସନରେ ଏହି ତିନିପ୍ରକାର ଗୁଣର ପରିପ୍ରକାଶ ହେବା ସ୍ୱଭାବିକ ।

ବାରିପଦାରେ ଏକ ବୈଠକରେ ଯୋଗଦେବାପରେ ଉପଜିଲ୍ଲାପାଳ ଓ ଅତିରିକ୍ତ ଜିଲ୍ଲାପାଳ ସେହିଠାରୁ ସିଧା ଠାକୁରମୁଣ୍ଡା ଆସି ମରୁଡ଼ି ପରିସ୍ଥିତି ଅନୁଧ୍ୟାନ କରିବାକୁ ସନ୍ଦେଶ ଦେଲେ । ସାଙ୍ଗହୋଇ ଆସିଥିଲୁ । ରାତିରେ ପହଞ୍ଚି ଲଣ୍ଡୁନଜାଳି ଡ଼ାକ ବଙ୍ଗଳାରେ ରହଣିହେଲା । ରାତିରେ ଆଉ ବ୍ୟସ୍ତ ନହୋଇ ପ୍ରସ୍ତୁତ ଖାଦ୍ୟ ପଠାଇ ଦେବାକୁ ବରାଦ୍ ହେଲା । ପରଦିନ ସକାଳୁ ଉପଜିଲ୍ଲାପାଳ ଓ ଅତିରିକ୍ତ ଜିଲ୍ଲାପାଳଙ୍କ ସହ ପରିସ୍ଥିତି ଅନୁଧାନପାଇଁ ଯାତ୍ରାରମ୍ଭହେଲା ବ୍ଲକ୍ ଜିପରେ । ଆଗରେ ଡ୍ରାଇଭର, ଉପଜିଲ୍ଲାପାଳ ଓ ଅତିରିକ୍ତ ଜିଲ୍ଲାପାଳ । ପଛରେ ବିଡ଼ିଓଙ୍କ ସହ, କୃଷି ସଂପ୍ରସାରଣ ଅଧିକାରୀ ଥାନ୍ତି । କିଛିବାଟ ଗଲାପରେ ଫକୀରବାବୁ ଅତିରିକ୍ତ ଜିଲ୍ଲାପାଳ କହିଲେ ମନରେ କିଛି ନରଖି ସମସ୍ତେ ମତାମତ ଦେବ । ଆଚ୍ଛା ଏ ଅବସ୍ଥାରେ ମାଗଣା ଖାଦ୍ୟ ବା ଜରୁରୀ ସାହାଯ୍ୟ ଦେବା ଦରକାର କି ନା ? ଏଥିରେ ଉପଜିଲ୍ଲାପାଳ ଚୁନି ରହିଲେ ଓ ପ୍ରଶ୍ନଟି ପଛକୁ ଆସିବାରେ ନିହାତି ଜରୁରୀ ଦରକାର ବୋଲି କହିବାରେ ବିରକ୍ତିରେ କି ପ୍ରକାର ନନ୍‌ସେନ୍ସ କଥା କହୁଛ ବୋଲି ବଡ଼ ଆଦବ କାଇଦାରେ ଅତିରିକ୍ତ ଜିଲ୍ଲାପାଳ କହିଲେ । ମନକୁ ବଡ଼ ବାଧିଲା । କର୍ମ ଆଦରି ଚୁନିହୋଇ ବସିଥାଏ । ପୁଣି ପ୍ରଶ୍ନପରେ ପ୍ରଶ୍ନ ଏପରି ତିନିଚାରିଟି ପ୍ରଶ୍ନ ସେ ପଚାରିବାରେ ଏବଂ ତାର ଉତ୍ତର ନପାଇବାରେ ପଛକୁ ଚାହିଁ କାହିଁକି ଉତ୍ତର ଦେଉନ ବୋଲି କହିଲେ । ନନ୍‌ସେନ୍ସଠାରୁ କି ଉତ୍ତର ଆଶା କରୁଛନ୍ତି ବୋଲି ଉତ୍ତର ପାଇଲେ । ସେଇଠି ନିଆଁରେ ପାଣି ପଡ଼ିଗଲା । ଉପଜିଲ୍ଲାପାଳ ବୁଝାଇ ସୁଝାଇ କଥାଟାକୁ ଚଳାଇ ନେବାକୁ ଚେଷ୍ଟା କରିବାରୁ ତାଙ୍କୁ ମଧ୍ୟ ଉତ୍ତର ମିଳିଲା ଯେ ତାଙ୍କର ଆଗକୁ ପଦୋନ୍ନତି ଅଛି । ତେଣୁ ଖୋସାମତି କରିବାରେ ବରଂ ଲାଭ ଅଛି । ନନ୍‌ସେନ୍ସ କାହିଁକି ଆଉକିଛି କହିବ । ତାର ତ ତଳକୁ ଖସିବାର ଆଶଙ୍କା ନାହିଁ କି ଉପରକୁ ଉଠିବାର ଆଶା ନାହିଁ । ସେ ସହି ଯିବାରେ ଲାଭ ଅଛି । ଅତିରିକ୍ତ ଜିଲ୍ଲାପାଳ ନିଜର ଭୁଲ ବୁଝିଲେ । ନିଜେ ନିର୍ଲିପ୍ତ ଓ ନିର୍ଭିକ ଉତ୍ତର ଦେବାକୁ କହି ପୁଣି ଏପରି ଅଶ୍ଳୀଳ ମନ୍ତବ୍ୟ ଦେବା ଠିକ ହୋଇନାହିଁ ବୋଲି ସ୍ୱିକାର କଲେ ।

ତାପରେ ହସଖୁସିରେ ପୁଣି ପରିଦର୍ଶନ ଚାଲିଲା ଏବଂ ନିର୍ଦ୍ଦିଷ୍ଟ କେତେକ ସ୍ଥାନରେ ସେହି ଦିନଠୁଁ ପୂର୍ବପ୍ରସ୍ତାବ ଅନୁଯାୟୀ ଜରୁରୀ କାଳୀନ ଖାଦ୍ୟ ସାହାଯ୍ୟ ଦିଆଗଲା ।

ପୂର୍ବର ଅଶ୍ଳୀଳ ମନ୍ତବ୍ୟରେ କାଳେ ଆଉକିଛି ମନରେ ଗ୍ଲାନିଥିବ ତାହା ଦୂରକରିବାକୁ ପରିହାସରେ ନିଜପ୍ରତି ମଧ୍ୟ ଏକ ଅଶ୍ଳୀଳ କଥା କହି ହସାଇଥିଲେ । ଅନ୍ତର କଥା ଅନ୍ତର୍ଯ୍ୟାମୀ ଜାଣନ୍ତି । ତାଙ୍କ ଅନ୍ତର କିପରିଥିଲା ମୁଁ ଜାଣେନା । ବାହାରେ ସେ ଥିଲେ ବେଶ୍ ମେଳାପି ।

ଶାସନ ଗାଦିର ହାମବଡ଼ା ମଧ୍ୟ କିଛିଥିଲା ଯାହାକି ତାଙ୍କୁ ବେଳେବେଳେ ପଥଭ୍ରଷ୍ଟ କରୁଥିଲା । ତାଙ୍କର ମେଳାପି ଗୁଣରେ ଆବଶ୍ୟକ ସ୍ଥଳେ ସେ ତାଙ୍କୁ ସଜାଡ଼ି ନେଉଥିଲେ । ଠାକୁରେ ଏ ଯେଉଁ ଅପମାନରୁ ରକ୍ଷାକରି ସ୍ୱାଭିମାନ ପ୍ରତିଷ୍ଠିତ କଲେ ତା କେବଳ ତାଙ୍କରି ପ୍ରେରଣାରୁ ସମ୍ଭବ ହେଲା ।

## ୧୦୯. ମହାପ୍ରସାଦ

ସାଧାରଣତଃ ଭଲକାମ କଲେ ଓ ସୁନାମ ମିଳିଲେ ପାଖଲୋକ ଖୁସିହେବାକଥା ଏବଂ ଉତ୍ସାହିତ କରିବା କଥା । ମାତ୍ର ଈର୍ଷାପରାୟଣ ଲୋକେ ଏଥିରେ ଉତ୍ସାହିତ କରିବା ଦୂରେଥାଉ ତଳୁ ଗୋଡ଼ ଟାଣି ତଳକୁ ପକାଇ ଦେବାର ଚେଷ୍ଟା କରନ୍ତି । ସବୁ ଯଶକୀର୍ତ୍ତି ଓ ନିନ୍ଦା ଅପମାନ ଠାକୁରେ ଦିଅନ୍ତି । ମଣିଷ ସେଥିରେ ପ୍ରତିବନ୍ଧକ ହୋଇ କେବଳ ଲୋକହସିତ ହୁଅନ୍ତି । ଶୁଖିଲାପତ୍ରଟି ବାତ୍ୟାବର୍ତ୍ତର କୋପରୁ ଉପରକୁ ଉଠିଯାଇ ଯଦି କହେ ହେଇଟି ମୁଁ ଉପରକୁ ଉଠିଗଲି ତେବେ ତାକୁ ଲୋକେ ହସିବେ ସିନା !

ଆଗରୁ ଶ୍ରୀଭାଗବତ ତ୍ରିପାଠୀ ଅଧକ୍ଷ ଥିଲେ । ବିଦ୍ୟାଧର ତ୍ରିପାଠୀ ଥିଲେ ଉପାଧକ୍ଷ । ଉଭୟେ ଭଲକାମ କରିବାରେ ସଂପୂର୍ଣ୍ଣ ସହଯୋଗ ଦେଉଥିଲେ । ଲୋକଙ୍କ ବିପତ୍ତି ବେଳେ ଅଣ୍ଟାଭିଡ଼ି ଦିନରାତି କାମ କରି ତାଙ୍କୁ ସାହାଯ୍ୟକରି ସୁନାମ ଅର୍ଜନ କରିବାଟାକୁ ସୁତ୍ରାଗୁ ବାବୁ ଆମ ସଭାପତି ପସନ୍ଦ କରିପାରିଲେନି । ସେ କଟକ ଅଞ୍ଚଳର ଶୁଣ୍ଢିଲୋକ । ତାଙ୍କ ବାପାଙ୍କ ଅମଳରୁ ସେଠି ନିଶା ବ୍ୟବସାୟ କରି ପ୍ରତିଷ୍ଠିତ ହୋଇଥିଲେ । ସରଳ ଆଦିବାସୀ ଅଞ୍ଚଳରେ ସେ ଏରଣ୍ଡୋପି ଦ୍ରୁମାୟତେ ପରି ପଂଚାୟତ ସମିତି ସଭାପତି ହୋଇ ପାରିଥିଲେ । ଅଳ୍ପ କିଛି ପାଠଥିଲା, ଚେହେରା ଥିଲା ଓ କଥା କହିବାରେ କିଛି ଶୈଳୀ ମଧ୍ୟ ଥିଲା । ତାଙ୍କ ଲୋକଙ୍କର, ତାଙ୍କ ଅଞ୍ଚଳର ପ୍ରଭୂତ ଉନ୍ନୟନରେ ସେ ସୁଖୀ ନହୋଇ ଦୁଃଖୀ ହେଲେ, ଈର୍ଷୁକ ହେଲେ ଏବଂ ଶେଷରେ ନିନ୍ଦୁକରେ ପରିଣତ ହୋଇ ଥରେ ଗସ୍ତ ଖର୍ଚ୍ଚ ବିଲଟିକୁ ବନ୍ଦ କରିଦେବାରେ ତାଙ୍କର ପ୍ରାପ୍ୟ ମାସିକ ମାନ ଧନ(ଅନରାରିୟମ) ଟଙ୍କା ମଧ୍ୟ ବନ୍ଦକରିଦେବାକୁ ପଡ଼ିଲା । ସେଥିରେ ସେ ଆହୁରି ଭୀଷଣ ହୋଇ ଉଠିଲେ । ଏପରି ଏକ ଅବସ୍ଥା ସୃଷ୍ଟିକଲେ ଯେ କାମ କରିବା ସ୍ପୃହା ସବୁକର୍ମଚାରୀ ହରାଇ ବସିଲେ । ଲୋକଙ୍କ ବିପତ୍ତିବେଳେ ଏହା ଅସହ୍ୟଥିଲା ।

ଦିନେ ସବୁ ସଂପ୍ରସାରଣ ଅଧିକାରୀ, କନିଷ୍ଠ ଯନ୍ତ୍ରୀ ଓ ଠିକାଦାର ମାନଙ୍କୁ ଡ଼ାକି ଏହାର ପ୍ରତିକାର ଚିନ୍ତା କରାଗଲା । ସମସ୍ତେ ବ୍ୟତିବ୍ୟସ୍ତ ହୋଇଯାଇ ଓଲଟା କ'ଣ କରିବା ବୋଲି ପ୍ରଶ୍ନ କଲେ ? ଏତିକିବେଳେ ଭଗବାନ ଏକ ସଦ୍‌ବୁଦ୍ଧିଦେଲେ । "ମୂଳୁମାଇଲେ ଯିବ ସରି – ଦେବଙ୍କ ସଙ୍ଗେ କିମ୍ପା କଳି ।"

ଠିକାଦାରମାନେ ପ୍ରତି କାମର ଅଟକଳକୁ ଚାହିଁ ଗତ ତିନିବର୍ଷଧରି ପଣିଦେବାକୁ ବ୍ୟଗ୍ରଥାନ୍ତି । ନୀତିଦୃଷ୍ଟିରୁ ତାହା କେବେ ଗ୍ରହଣ ନକରି ସେମାନଙ୍କ ନିକଟରେ ଖୁବ୍ ଉଚ୍ଚ ସମ୍ମାନର ଅଧିକାରୀ ହୋଇପାରିଥାଏ । ଏ ବାବଦରେ କେତେ ଟଙ୍କା ପ୍ରାପ୍ୟ ହେଲାଣି ବୋଲି ଗୋଟିଏ ମୋଟା ମୋଟି ଅଙ୍କ କଷିବାରେ ପ୍ରାୟ କୋଡ଼ିଏ ହଜାର ହେବ ବୋଲି ହିସାବ କରାଗଲା । ସେହି ଟଙ୍କାରୁ ଅଳ୍ପକିଛି ଖର୍ଚ୍ଚକରି ଗାଡ଼ି ଭଡ଼ାନେଇ, ସବୁ ସରପଞ୍ଚଙ୍କୁ ବସାଇ ପୁରୀନେଇ ଯିବାକୁ ସ୍ଥିର ହେଲା । ସେମାନେ ତତ୍‌କ୍ଷଣାତ୍ ଏଥିରେ ରାଜି ହୋଇଗଲେ ।

ତାପରଦିନ ଦୁଇଟି ଜିପ୍‌ରେ କେତେଜଣ ଠିକାଦାର ଓ ସବୁ ସରପଞ୍ଚ ପୁରୀ ଆସି ତୀର୍ଥକରି ମହାପ୍ରସାଦ ଖାଇ ନିଷ୍ପତ୍ତିକଲେ ଯେ ଯେହେତୁ ସଭାପତି ଭଲକାମ କରେଇ ଦେଉ ନାହାନ୍ତି ତାଙ୍କୁ ଅବିଶ୍ୱାସ ପ୍ରସ୍ତାବକରି ତଡ଼ିଦେବେ । ସମସ୍ତେ ଏକମନ ଓ ଏକପ୍ରାଣ ହୋଇଗଲେ । ଖଦଡ଼ ପୋଷାକ ପିନ୍ଧି ମନମେଳ କରି ମହପ୍ରସାଦ ହସ୍ତରେ ପ୍ରତିଜ୍ଞାକରି ଫେରିଲେ ଓ ଅବିଶ୍ୱାସ ପ୍ରସ୍ତାବ ଗୃହିତ କରେଇ ସଭାପତିଙ୍କୁ ବିତାଡ଼ିତ କରିଦେଲେ । ଅବଶ୍ୟ ନିୟମ ବହିର୍ଭୂତ ଭାବେ ଅଶ୍ରୁଳ ନୟନରେ ସେ ତାଙ୍କୁ ଜିତାଇବାକୁ ସବୁ ସଭ୍ୟଙ୍କୁ ହାତଯୋଡ଼ି ବିନମ୍ର ନିବେଦନ ସଭା ପୂର୍ବରୁ କରିଥିଲେ । ସେତେବେଳକୁ ମହାପ୍ରସାଦର କରାମତି ଆଉ ପଛକୁ ଫେରିବାର ବାଟ ଛାଡ଼ିଲାନି । ତେଣୁ ସୁଚାରୁ ରୂପେ ସୁଚାରୁ ବାବୁ ବିଦାୟନେଲେ ।

ସେ ବିଦାୟ ନେଲେନି ଯେ ଲୋକ ମଙ୍ଗଳ କାମ କରିବାକୁ ସବୁ ସରପଞ୍ଚ, ସବୁ କର୍ମଚାରୀ ଓ ସାଧାରଣ ଲୋକେ ସଂକଳ୍ପବଦ୍ଧ ହୋଇ ଲାଗିପଡ଼ିଲେ । ଫଳରେ ଚତୁର୍ଥ ବର୍ଷ ସୁଦ୍ଧା ପ୍ରତିଗ୍ରାମରେ ପାନୀୟଜଳ ବ୍ୟବସ୍ଥା, ପ୍ରତିଗ୍ରାମକୁ ମାଟିରାସ୍ତା, ସବୁ ଆଦିବାସୀ ବିଦ୍ୟାଳୟ ପାଇଁ ତଳପକା ଓ ଅଗ୍ନିନିରୋଧକ ଛାତ ସାଙ୍ଗକୁ ସବୁ ସ୍କୁଲରେ ଖାଦ୍ୟ ବ୍ୟବସ୍ଥା ହୋଇ ପାରିବା ଫଳରେ ସବୁ ଦିଗରୁ ପ୍ରଭୁତ ଉନ୍ନତି ହେବାସହ ପ୍ରାଥମିକ ଶିକ୍ଷାର ଖୁବ୍ ଉନ୍ନତି ସମ୍ଭବ ହୋଇ ପାରିଥିଲା ।

ସବୁବେଳେ କାମ କାମ କାମ । ଏଇଥିରେ ଲାଗିଲାଗି ନିଜର ଦଶଟି ବ୍ୟକ୍ତିଗତ ଦାବୀକଥା ଭୁଲି ଯିବା ବିଚିତ୍ର ନୁହେଁ । ସବୁକାମ ଥାକରେ ପହଞ୍ଚିବା ପରେ ଏକଦୁଇକରି ପ୍ରତି ଦାବୀପାଇଁ ପଚିଶି ତିରିଶଟିକରି ଚିଠି ଲେଖିବାପରେ ଦିନେ ଭୁବନେଶ୍ୱର ବିଭାଗୀୟ ନିର୍ଦ୍ଦେଶକଙ୍କୁ ସାକ୍ଷାତ କରିବାରୁ ସେ କହିଲେ କ'ଣ ଲୋକଙ୍କ କାମ ହେଉଛି ନା କେବଳ ନିଜକାମ ହେଉଛି ? ଲୋକଙ୍କ ପାଇଁ କ'ଣ କାମ ହୋଇଛି ଥରେ ଦେଖିବାକୁ ସାହାସର ସହ ଡ଼ାକିବାରେ ଦୁର୍ଦ୍ଧାନ୍ତ ଭାଗେ ଗୋବର୍ଦ୍ଧନ ସାହେବ ପିଠିରେ ହାତବାଡ଼େଇ କହିଲେ ଖୁବ୍ ଭଲକାମ ହୋଇଥିବା ସେ ଜାଣନ୍ତି । ଏତିକିରେ ବ୍ୟକ୍ତିଗତ କାମ ସବୁ ମଧ୍ୟ ହୋଇଗଲା ।

ଯେ ପର ପାଇଁ କାମ କରେ ଠାକୁରେ ତା'କାମ କରିଦିଅନ୍ତି । ଏପରିକି ନିଜେ ଠାକୁରେ ଅବତରି ଆସି ସାଧାରଣ ମନୁଷ୍ୟପରି କାମ କରିବାର ଦୃଷ୍ଟାନ୍ତ ଆମ ପୁରାଣରେ ଅଛି । ସେ ତେଣୁ ଏକାଥରକେ ସବୁ ବାକିଆ ବ୍ୟକ୍ତିଗତ କାମ କରେଇ ଦେଇଥିଲେ ।

## ୧୧୦. ଢୋଲ ଭିତରେ ମୂଷା

ଯେ ନିୟତ କରେ ଠାକୁରେ ତା'ର ନିୟତ ରକ୍ଷା କରିନ୍ତି । ବ୍ୟବସାୟୀର ବ୍ୟବସାୟ ବୁଡ଼ିଯାଇପାରେ । ବୋଇତ ବାଣିଜ୍ୟର ବୋଇତ ବୁଡିଯାଇପାରେ, ଦେଢ଼ି ମହାଜନି ବୁଡ଼ି ଯାଇପାରେ ମାତ୍ର ମୂଲିଆର ମୂଲ କେବେ ବୁଡ଼େନା । ଯେ ତା'ର ମୂଲ ବୁଡ଼ାଏ ସେ ପର ଜନ୍ମରେ ଲଙ୍କାମରିଚ ଗଛ ହୋଇ ତା'ର ମୂଲ ସୁଝେ । ଦେହର ଯେ ରକ୍ତ ଝାଳହୋଇ ମୂଲିଆ ଦେହରୁ ବୋହିଯାଏ ତାହା ତା ଦେହରେ ସୃଷ୍ଟିକରେ ବଳ ଓ ତା ପାଇଁ ବୋହି ଆଣେ ଖାଦ୍ୟ । ତା' ମୂଲ ବନ୍ଦ କରିବା ମାନେ ତା ମୁହଁରେ ଧୂଳିଦେବା । ମୂଲିଆ ମୁହଁରେ ଧୂଳିଦେବାମାନେ ତା ଖାଇବା ମୁହଁରେ ଧୂଳିଦେବା । ତା'ର ତ ଆଉକିଛି ଆୟର ଉପାୟ ନଥାଏ । କେହିଦୁଷ୍ଟ ମଣିଷ ଯଦି ଏପରିକରେ ଠାକୁରେ ସେ ମୂଲିଆକୁ ଉପାସ ରଖନ୍ତିନି । ତାକୁ କେଉଁବାଟେ ହେଲେ ଶାଗପଖାଳ ଗୂପକ ଦାନାଦେଇ ବଞ୍ଚାନ୍ତି । ତେଣୁ କୁହାଯାଏ ମୂଲିଆର ମୂଲ ବୁଡ଼େନି । କେଉଁବାଟେ ହେଲେ ମିଳେ ।

ଛ'ମାସକୁ ଥରେ ନିଜକାର୍ଯ୍ୟାଳୟ ପରିଦର୍ଶନ ବେଳେ ଲାଗଲାଗ ତିନିଥର ଦର୍ଶାଯାଇଥିଲା ଯେ ଅଫିସ୍ ବାରଣ୍ଡାରେ ଜମାହୋଇ ଇତସ୍ତତଃ ପଡ଼ିଥିବା ପୁରୁଣା ଫାଇଲଗୁଡ଼ିକ ଗୋଟିଏ ରେକର୍ଡ଼ରୁମ କରି ସଜାଇ ତାଲିକା କରି ରଖାଯାଉ । ଏହା କାର୍ଯ୍ୟକାରୀ ନହେବାରୁ ଗୋଟିଏ ନିର୍ଦ୍ଦିଷ୍ଟ ଲିଖିତ ଆଦେଶ ଦେବାସହ ନିଜେ ଆଦର୍ଶ ଦେଖାଇ ବିଷୟଓ୍ୱାରୀ ଫାଇଲ ଗୁଡ଼ିକ ବାଛି ଦିଆଗଲା ପରେ ପ୍ରଧାନକିରାନୀଙ୍କ ତତ୍ତ୍ୱାବଧନରେ ସୁଧାକର ସେଗୁଡ଼ିକ ତାଲିକା କରି ଗୋଟିଏ ଘରେ ବଡ଼ବଡ଼ ଥାକରେ ସଜାଡ଼ି ରଖିବାକୁ ଦୁଇମାସ ଲାଗିଥିଲା । ସେହି ଆଦେଶ ଅନୁଯାୟୀ ଆଠଦିନରେ ଥରେ ପ୍ରଧାନ କିରାଣିଙ୍କ ଉପସ୍ଥିତିରେ ଇନ୍ଦ୍ର ସେ ଘରଟି ସଫାକରି ଦେବାକଥା । ଏହାପରେ ଦୁଇ ବର୍ଷ ବିତିଗଲା । ସମସ୍ତେ ସୁବିଧାରେ ପୁରୁଣା କାଗଜ କାମ ବେଳେ ଖୁବ୍ ସହଜରେ ପାଇ କାମ କରିପାରୁଥାନ୍ତି । ବାରଣ୍ଡାଟି ସଫା ହୋଇ ଯିବାରୁ ଚଳାଚଳରେ ସୁବିଧା ମଧ୍ୟ ହେଲା । ପୁରୁଣା ରେକର୍ଡ଼ ଯଥା ସ୍ଥାନରେ ରହିଲା ।

ଦିନେ ଡ଼ାକ ଖୋଲିଲାବେଳେ ଆଦିବାସୀଗ୍ରାମମଙ୍ଗଳ ବିଭାଗରୁ ଗୋଟିଏ ଚିଠି ମିଳିଲା । ସେଥିରେ ଲେଖାଅଛିଯେ ଗତ ଦୁଇବର୍ଷଧରି ଚିଠି ଆସୁଛି ଅଥଚ ଉତ୍ତର ଯାଉନି । ସେ ଚିଠିକୁ ଧରି ବିଭାଗୀୟ ସଂପ୍ରସାରଣ ଅଧିକାରୀ ଜେନାବାବୁଙ୍କୁ କଡ଼ାକଡ଼ା ଦୁଇପଦ ଶୁଣାଇବାରେ ସେ କିଛି ସମୟପରେ ଆସି କହିଲେ ଯେ ଉତ୍ତର ଯାଇଛି । ତାଙ୍କୁ ଉତ୍ତରର ନକଲ ଦେଖାଇବାକୁ କହିବାରେ ସେ ଖୋଜି ପାଇଲେନି । ରେକର୍ଡ଼ରୁମର ଚାବିନେଇ ଖୋଜିମଧ୍ୟ ପାଇଲେନି । ତା'ପରେ ଯେଉଁ ସୁଧାକର ସେଘର ଥାକରେ ତାଲିକା କରି

ରଖିଥିଲେ ସେ ଯାଇଁ ଖୋଜି ନିରାଶ ହୋଇ ପ୍ରଧାନ କିରାନୀଙ୍କ ସହ ଆସି କହିଲେ ସେ ପଟର କିଛି ପୁରୁଣା ଫାଇଲ୍ ନାହିଁ । କଥାଟା ବୁଝା ପଡ଼ିଗଲା । ଅଳ୍ପଟିକେ ବିରକ୍ତ ହୋଇ ତୁନି ପଡ଼ିରହିବାକୁ ହେଲା ।

ଦିନ ପ୍ରାୟ ଦୁଇଟା ହେବ, ଆମର କନିଷ୍ଠ ଯନ୍ତ୍ରୀ ଦାଶ ବାବୁ ଗୋଟିଏ ଠୁଙ୍ଗା ଆଣି ଦେଖାଇ କହିଲେ ଇଏତ ଆମ ଅଫିସ୍ କାଗଜ । ଏତିକିରେ ପୂର୍ବାନୁମାନ ଦୃଢ଼ିଭୂତ ହୋଇଗଲା । ମୁଖ୍ୟ ରାସ୍ତାଛାଡ଼ି, କାହାକୁ କିଛିନକହି ଗୋଟିଏ ବୁଲା ରାସ୍ତାରେ ଗାଡ଼ିନେଇ ଏ ବିଷୟ ଉପଜିଲ୍ଲାପାଳଙ୍କୁ କହିବାରେ ସେ ଗୋଟିଏ ଖାନତଲାସି ଆଦେଶ ଦେଇ ଜଣେ ମାଜିଷ୍ଟ୍ରେଟ ଓ ଫୋର୍ସ ପରଦିନ ପଠାଇଲେ । ଯେଉଁଦିନ ସେମାନେ ଆସିଲେ ସେଦିନ ସଦର ପଞ୍ଚାୟତର ଗୋଟିଏ ଓ୍ୱାର୍ଡ଼ପାଇଁ ଉପନିର୍ବାଚନ ଥିଲା ଯେଉଁଥିରେ ଆମେ ସବୁ ବ୍ୟସ୍ତ ଥାଉଁ । ମାଜିଷ୍ଟ୍ରେଟ ସନ୍ଦେହରେ ପ୍ରଥମେ ଯେଉଁ ଘର ଖାନତଲାସ କଲେ ସେଠାରୁ ବସ୍ତାଏ ଫାଇଲ ମିଳିଗଲା ।

ସପ୍ତାହରେ ଥରେ ଘରଖୋଲି ସଫାକରୁଥିବା ଇନ୍ଦ୍ର ସେସବୁ ଫାଇଲ ଗୋଟେ ଝରକା ପାଖରେ ରଖିଦେଇ ପରେତାକୁ ନେଇ ବିକି ଅଫିମ ଖାଏ । କିଣିଲା ଓ ବିକିଲାବାଲା ଉଭୟେ ଧରାହେଲେ । ମକଦ୍ଦମା ଲାଗିଲା । ସେ ସବୁକାଗଜ ମାଜିଷ୍ଟ୍ରେଟ ସ୍ଥାନୀୟ ଥାନା ଅଧିକାରୀଙ୍କ ଜିମା ଦେଇଥିଲେ ଓ ସେ ହିଁ ସେ ମକଦ୍ଦମା ତତ୍‌ପିରି କରୁଥିଲେ । ସଭାପତିଙ୍କ ସହ ତାଙ୍କର ଅବୈଧ କାରବାର ସଂପର୍କଥିଲା । ସେ ତାଙ୍କ ଗୁପ୍ତ କେଶଡ଼ାଇରିରେ ଲେଖିଲେ ଯେ ବିଡ଼ିଓଙ୍କ ଜ୍ଞାତ ସାରରେ ପ୍ରଧାନ କିରାନୀ ଇନ୍ଦ୍ର ଜରୀୟାରେ ବିକ୍ରୀକରି ଟଙ୍କା ବାଣ୍ଟି ନେଉଥିଲେ । ଏକଥା ଆମକୁ ଜଣାଯିବ କିପରି ?

କେତେ ମାସ ପରେ ଯେତେବେଳେ ଏ ମକଦ୍ଦମାରେ ସରକାରୀ ସାକ୍ଷୀ ହିସାବରେ ଡ଼କାଗଲା ଓକିଲ ଜେରାର ସମ୍ମୁଖୀନ ହେବାକୁ ପଡ଼ିଲା । ସେଠାରେ ଅନୁରୂପ ପ୍ରଶ୍ନ ଶୁଣି ଅବାକ୍ ହେବାକୁ ପଡ଼ିଲା । ଠାକୁରଙ୍କ ପ୍ରେରଣାରେ ଯେଉଁ ଐତିହାସିକ ଉତ୍ତର ଦିଆଗଲା ତାହା ସେ ଓକିଲଙ୍କୁ ତୁନି କରାଇଦେଇଥିଲା ଓ ବିଚାରକଙ୍କୁ ମୁଗ୍ଧ କରିଥିଲା । ଫଳରେ ଉଭୟ ବିକାଳୀ ଓ କିଣାଳି ଦଣ୍ଡିତ ହୋଇଥିଲେ ।

ନିଶ୍ଚିତ ନହେଲେ ମଧ୍ୟ ଦୃଢ଼ତାର ସହ ଦାବି କରାଯାଇପାରେ ଯେ ଆଜିଯାଏ ମଧ୍ୟ କୌଣସି ବ୍ଲକ୍ ଅଫିସ୍‌ରେ ସେପରି ରେକର୍ଡ଼ ରୁମଟିଏ ଶୃଙ୍ଖଳିତ ଅବସ୍ଥାରେ ନଥିବ । ବର୍ଷବର୍ଷଧରି ବାରଣ୍ଡାରେ ଉଇଖାଇ ଧୂଳିପଡ଼ି ଜମାହୋଇଥିବା ଫାଇଲଗୁଡ଼ିକ ସଜାଡ଼ି ତାଲିକାକରି ଘରେ ଥାକରେ ଯତ୍ନ କରି ରଖିବାର ଯେଉଁ ଶ୍ରମଦାନ କରାଯାଇଥିଲା ତାର ଫଳ କ'ଣ କିଛି ନାହିଁ ? ପୋଲିସର ମିଥ୍ୟା କେଶ୍ ଡ଼ାଇରୀ କ'ଣ ସେ ଶ୍ରମକୁ ବୃଥା କରିଦେବ ? ଠାକୁରେ ସବୁବେଳେ ଘଣ୍ଟ ଘୋଡ଼ାଇ ରଖିବାଲୋକ ଓ ମୂଲିଆର ମୂଲ ଦେବା ଲୋକ । ସେ ଦେଲେ ।

# ୧୧୧. ବେଲୁଡ଼୍ ବିରୁଦ୍ଧରେ ବିଦ୍ରୋହ

ଠାକୁର ରାମକୃଷ୍ଣ ପରମହଂସଦେବ ଯେତେବେଳେ ଦକ୍ଷିଣେଶ୍ୱରରେ ସିଦ୍ଧିଲାଭକଲେ ସେ ପ୍ରତ୍ୟହ କୋଠାଉପରକୁ ଉଠି ଡ଼ାକ ମାରନ୍ତି । କେଉଁଠି କିଏ ଅଛ ଆସ । ଚାଲିଆସ । ତାଙ୍କର ଡ଼ାକରା କେବଳ ଯେ ବାଜିଥିଲା ନରେନ୍ ପ୍ରଭୃତି ୧୬ଜଣ ଅନ୍ତରଙ୍ଗ ଭକ୍ତଙ୍କ କାନରେ ତା ନୁହେଁ ; ସେ ଡ଼ାକରାରେ ହଜାର ହଜାର ଧର୍ମ ପିପାସୁ ତାଙ୍କ ପାଦ ପଦ୍ମକୁ ଧାଇଁ ଯାଇଥିଲେ । ତାଙ୍କରି ଆଦର୍ଶରେ ଜୀବନଯାପନ କରିଥିଲେ । ନିଜର ଜୀବନକୁ ଧନ୍ୟ କରିଦେଇଥିଲେ ।

ଥରେ ନରେନ୍ ତାଙ୍କ ସେଜ ତଳେ ସୁକିଟିଏ ଗୁପ୍ତରେ ଗୁଞ୍ଜିଦେଇ ପରୀକ୍ଷା କରିଥିଲେ । ସେ ସେଜରେ ପ୍ରଭୁ ରାମକୃଷ୍ଣ ଶୋଇପାରି ନଥିଲେ । ତାଙ୍କୁ ବିଛା କାମୁଡ଼ିଲା ପାରି ଲାଗୁଥିଲା । ନରେନ ଏକଥା ପ୍ରକାଶ କଲାପରେ ଠାକୁରେ କହିଥିଲେ "ବଜାଇକରିନିଅ" ଅର୍ଥାତ ପରୀକ୍ଷା କରି ଗ୍ରହଣ କର । ଅନ୍ଧବିଶ୍ୱାସରେ କୌଣସି ଗୁରୁଙ୍କର କୌଣସି ଉପଦେଶକୁ ଗ୍ରହଣ କରିବା ଉଚିତ୍ ନୁହେଁ ।

ସେହି ରାମକୃଷ୍ଣଙ୍କର ପ୍ରେରଣାରୁ ତାଙ୍କରି ଦୀକ୍ଷା ନେବାକୁ ଥରେ ମନରେ ଖୁବ୍ ଆଗ୍ରହ ଆସିଲା । ତାକୁ ଆଉ ଚପିରଖି ହେଲାନି । ସ୍ତ୍ରୀଙ୍କୁ ମଧ୍ୟ ପଚାରିବାରେ ସେ ସେହି ଆଗ୍ରହକୁ ଦ୍ୱିଗୁଣିତ କରିଦେଇ ନିଜେ ମଧ୍ୟ ଦିକ୍ଷୀତ ହେବାକୁ ଇଚ୍ଛା ପ୍ରକାଶ କଲେ । ତେଣୁ ପିତୃସମ ବିଦ୍ୟାଧର ତ୍ରିପାଠୀଙ୍କ ଠାରୁ ଅନୁମତି ନେଇ ଚାଲିଲୁ ବେଲୁଡ଼ । ସେଠିକାର ଅବସ୍ଥା ଦେଖି ମନର ସବୁ ଆଗ୍ରହ ପାଣିଫୋଟକା ପରି ମିଳେଇ ଗଲା । ଓଲଟି ମନରେ ଉଠିଲା ବିଦ୍ରୋହର ବହ୍ନି । ବେଲୁଡ଼ର ଫାଟକ ବନ୍ଦ ଥିଲା । ଦୁଇଥର ଦୌଡ଼ି ଦୌଡ଼ି ଅନୁମତିନେଇ ଭିତରକୁ ଯିବାରେ ସେ ମୂର୍ତ୍ତୀ ଓ ସେ କୋଠାସବୁ ଦେଖାଗଲା ସିନା ସେଠି ଦୀକ୍ଷା ନେବାର ଆଶା ମୌଳିଗଲା । ଭଲରେ ଦୁଇମିନିଟ କାହାସହିତ କଥା କହିବାର ମଧ୍ୟ ସୁବିଧା ମିଳିଲାନି । ଅବଶ୍ୟ ସ୍ୱଳ୍ପସଂଖ୍ୟକ କାରରେ ଆସୁଥିବା ଧୋବ ଧାଉଳିଆଙ୍କୁ ସନ୍ୟାସୀମାନେ ପାଛୋଟି ନେଉଥିଲେ । ସେମାନେ ବହୁଧନ ଦାନକରନ୍ତି । ତା ବଦଳରେ ବୋହି ନିଅନ୍ତି ପୁଣ୍ୟ ଓ ଭକ୍ତି । ଆମର ସବୁ ଗୁରୁ, ଦିଅଁ, ମନ୍ଦିର, ଧର୍ମସଭାର ଅବସ୍ଥା ଅଳ୍ପ ବହୁତେ ଏଇଆ । ଠାକୁର ଶ୍ରୀ ରାମକୃଷ୍ଣଙ୍କ ବେଲୁଡ ମଠ ଏଥିରୁ ବାଦ୍ ପଡିଥିବ ବୋଲି ଯେ ଧାରଣା ଥିଲା ତାହା ମିଥ୍ୟା ପ୍ରମାଣିତ ହେଲା ।

ରାମକୃଷ୍ଣ ସିନା କୋଠା ଉପରେ ଚଢ଼ି ଭକ୍ତମାନଙ୍କୁ ଆସିବାକୁ ଡ଼ାକୁଥିଲେ । ଆଧୁନିକ ରାମକୃଷ୍ଣ ମଠର ମହନ୍ତ ଓ ତାଙ୍କର ଅନୁଗାମୀ ମାନେ ବଡ଼ ଲୁହାଦରଜାରେ ବଡ଼ ତାଲାଝୁଲାଇ ଦ୍ୱିପ୍ରହରର ଅଗୁଆପରେ ରହୁଥିଲେ ନିର୍ବିକଳ୍ପ ସମାଧିରେ ୪ଟା ଯାଏ । ରାମକୃଷ୍ଣଙ୍କ ସେଜ ତଳେ ନରେନ୍ ଲୁଚାଇ ଗୁଞ୍ଜିଦେଇଥିବା ସୁକିଟିପାଇଁ ସିନା ଠାକୁରେ

ବିଛାକାମୁଡ଼ାର ଜ୍ୱାଳା ପାଇ ଶୋଇ ପାରୁନଥିଲେ; ହେଲେ ତାଙ୍କର ଆଧୁନିକ ଦାୟଦଗଣ ବିନା ମୋଟା ଦର୍ଶନୀ ବା ପ୍ରଣାମିରେ ସନ୍ତୁଷ୍ଟ ହେଉନଥିଲେ । କେଉଁ ମହନ୍ତ କେତେ ସ୍ଥାୟୀ ଜମାଟଙ୍କା ରଖିଲେ ତାକୁ ଦେଖି ତାଙ୍କୁ ଭଲ ମଠରେ ମହନ୍ତ ପଦ ଓ ନ୍ୟାସୀ ମଣ୍ଡଳୀର ସଭ୍ୟ ପଦ ମିଳୁଛି ।

କର୍ପୁର ଚାଲିଯାଇଛି । ଅଛି ଖାଲି କନା । ସେହି ପୁରୁଣା ଛିଣ୍ଡା କନାରେ ଆଧୁନିକ କର୍ପୁରର ବାସନା । ଶ୍ରୀ ରାମକୃଷ୍ଣଙ୍କର ସେଇ ଅମୃତବୋଳା କଥା କେଇ ପଦକୁ ଆଜି ବିକି ଖାଉଛନ୍ତି ତାଙ୍କ ଦାୟାଦ । ଏହିପରି ବିଦ୍ରୋହରେ ମନ ବିଷାକ୍ତ ହୋଇଗଲା । ଏହିପରି ୧୮ ବର୍ଷ ଚାଲିଗଲା ।

## ୧୧୨. ନିର୍ଦ୍ଦୟ ପୋଲିସ୍

ଦୁର୍ବଳାନାଂ ବଳଂ ରାଜା - ବାଳାନାଂ ରୋଦନଂ ବଳଂ । ଯୁଗେ ଯୁଗେ ଦୁର୍ବଳ ଲୋକମାନଙ୍କର ବଳ ହେଉଛନ୍ତି ରାଜା । ଆଗେ "ବଳ ଯାର ମୁଲକ ତାର" ଯୁଗ ଥିଲା । ଜଣେ ଆଉଜଣକୁ ମାରି ଖାଉଥିଲା । ତାର ଧନଜୀବନ ଓ ଯୌବନକୁ ହରଣଚାଳ କରୁଥିଲା । ଏ ଥିଲା ଆଦିମାନବର ଯୁଗ, ପଶୁ ଯୁଗ । ସଭ୍ୟତାର ଉନ୍ମେଷ ସାଙ୍ଗେସାଙ୍ଗେ ଉଭୟ ରାଜତନ୍ତ୍ର ଓ ଗଣତନ୍ତ୍ରରେ ସମାଜର ଦୁର୍ବଳ ଲୋକମାନଙ୍କୁ ରାଜ ରକ୍ଷା ମିଳିଲା । ଏହି ରାଜରକ୍ଷା ଅତୀତ ସମୟରୁ ଭାରତରେ ପୋଲିସ୍ ବା ଆରକ୍ଷୀ ନାମରେ ଦୁର୍ବଳଙ୍କୁ ରକ୍ଷାପ୍ରଦାନ ପାଇଁ ସୃଷ୍ଟି ହୋଇ ଏବେ ଯାଏ ସ୍ୱାଧୀନ ଭାରତରେ ମଧ୍ୟ ଚାଲୁରହିଛି ଠିକ୍ ପୂର୍ବପରି । ସେଇଥିପାଇଁ ମୋଟାମୋଟି ଭାବେ ସମାଜରେ କିଛି ଶାନ୍ତି ଓ ଶୃଙ୍ଖଳା ରହିଆସିଥିବା ଯୋଗୁଁ ବହୁତ ସାମାଜିକ ଉନ୍ନତି ମଧ୍ୟ ସାଧିତ ହୋଇପାରିଛି । ଏକଥା ସମସ୍ତେ ଜାଣନ୍ତି ଓ ମାନନ୍ତି ମଧ୍ୟ ।

ହେଲେ ଏକଥାମଧ୍ୟ ସମସ୍ତଙ୍କୁ ଜଣାଯେ ସେହି ପୋଲିସ ମଧ୍ୟରେ ଅମଣିଷ ପଣିଆ ମଧ୍ୟ ରହିଛି । ଯେଉଁଠି ବିବେକ କାମ କରେନା ସେଠି ସରକାରୀ ଓ ସାମାଜିକ ଶୃଙ୍ଖଳା କିପରି କାମ କରିବ । ସେଠି ପୋଲିସ୍ ଆଦିମାନବ ଯୁଗର "ବଳ ଯାର - ମୁଲକ ତାର" ଅବସ୍ଥାକୁ ଖସିଆସେ । ଏଥିପାଇଁ କେଉଁଠି ଅଶିକ୍ଷା, କେଉଁଠି ଅବିବେକିତା, କେଉଁଠି ଅନିୟମିତତା ଏବଂ ଆଉ କେଉଁଠି ନିଶାର ବଶବର୍ତ୍ତୀତାକୁ ଦାୟୀ କରାଯାଏ । କେବଳ ପୋଲିସ୍ ମଧ୍ୟରେ ନୁହେଁ ସାଧାରଣ ସମାଜରେ ଓ ଅନ୍ୟାନ୍ୟ ଶୃଙ୍ଖଳାରେ ମଧ୍ୟ ଏପରି ବିଶୃଙ୍ଖଳା ଆଚରଣ ବେଳେ ବେଳେ ଦେଖାଦେଇଥାଏ । ମଣିଷର ଆଦିମ ପ୍ରକୃତି ଏଠି ମାଡି ଉଠେ । ସମାଧି ନିଏ ସମାଜିକ, ବିବେକାନୁମୋଦିତ, ଆଇନଗତ ଓ ମଣିଷପଣିଆର କରାମତି ବା ଶୃଙ୍ଖଳା ।

ଠାକୁର ମୁଣ୍ଡା ବ୍ଲକ ଅଫିସ୍ ବାରିପଦା ଜିଲ୍ଲା ସଦର ମହକୁମାଠାରୁ ସବୁଠାରୁ ଦୂରରେ ଅବସ୍ଥିତ । ପୁଣି ବର୍ଷାଦିନେ ତିନିଟି ନଈ ନାଳଦ୍ୱାରା ଏହା ସଦର ମହକୁମାରୁ ବିଛିନ୍ନ ହୋଇଯାଏ । ତେଣୁ ଜିପ୍‌ରେ, ଚାଲିଚାଲି, ଡ଼ଙ୍ଗାରେ ଓ ଶେଷରେ ବସ୍‌ରେ ସଦର ମହକୁମାକୁ

ଯିବାକୁ ପଡ଼େ । ଏମିତି ବର୍ଷାଦିନର ଗୋଟିଏ ଘଟଣା । ବାରିପଦାରେ ମିଟିଂ ସାରି ଜସିପୁରରେ ଆସି ବିଡ଼ିଓ ସୁବାଷବାବୁଙ୍କ ବସାରେ ରାତ୍ରି ଯାପନକରି ତା ପରଦିନ ଠାକୁର ମୁଣ୍ଡାରେ ବେଡ଼ିଂ ବିସ୍ତରା ଧରି ପହଞ୍ଚୁ ନ ପହଞ୍ଚୁଣୁ ଖବର ହେଲା ଯେ ବ୍ଲକ ପିଅନ ଦୟାନିଧି ଶବରକୁ ପୋଲିସ୍ ବାବୁ କାଲିଠାରୁ ଧରିନେଇ ବାଡ଼ାପିଟା କରି ଥାନାରେ ରଖିଛନ୍ତି । ଆପଣ ଗଲେ ଛାଡ଼ିଦେବେ । ଅଗାଧୁଆ, ମଇଳା ଜାମା ପିନ୍ଧି ଥାନାକୁ ଯିବାକୁ ଇଚ୍ଛା ହେଲାନି । ଯଦି ଭୟରେ ଛାଡ଼ି ଦେବା କଥା ତେବେ ତ ଫେରି ଆସିବା କଥା ଶୁଣି ଛାଡ଼ିଦେବେ । ଆଉ ଏତେ ତରବର ହୋଇଯିବା କ'ଣ ଦରକାର ?

ସତକୁ ସତ ଘରେ ଯାଇ ଗାଧୋଇ ଖାଇବସିଥିବା ସମୟରେ ଦୟାନିଧି ଓ ତା ସ୍ତ୍ରୀ ଆସି କାନ୍ଦି କାନ୍ଦି ଗଡ଼ିଗଲେ । ତା ପିଠି ଦେଖିଲେ କେହି ଧୈର୍ଯ୍ୟ ଧରିପାରିବନି । ଖାଇସାରି ଗୋଟିଏ ଚିଠି ଲେଖିତାକୁ ହିଁ ଉପଜିଲ୍ଲାପାଳଙ୍କ ପାଖକୁ ପଠାଇ ଦେଲି । ତା'ପରଦିନ ଏ.ଏସ.ପି. ଓ ଉପଜିଲ୍ଲାପାଳ ମିଳିତ ତଦନ୍ତ ପାଇଁ ପହଞ୍ଚିଲା ବେଳକୁ ସବୁ କର୍ମଚାରୀ ଏକତ୍ରିତ ହୋଇଯାଇ ପହଞ୍ଚିଲେ । ସେମାନେ ଏ ଅବସ୍ଥାଦେଖି ଡ଼ାକାଇପଠାଇଲେ ଓ ସବୁଶୁଣି କହିଲେ ଦୋଷୀଙ୍କୁ ନିଶ୍ଚୟ ଦଣ୍ଡ ଦିଆଯିବ । ତହିଁ ହେଲା ୨୪ଘଣ୍ଟା ମଧ୍ୟରେ ବାଡ଼େଇଥିବା ଦୁଇକନେଷ୍ଟବଳ ବଦଳୀ ହେଲେ ଓ ୧୫ଦିନ ମଧ୍ୟରେ ଥାନାବାବୁ ମଧ୍ୟ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ସହ ବଦଳିହେଲେ । ଅବସ୍ଥା ଶାନ୍ତ ପଡ଼ିଲା; ହେଲେ ଦୟାନିଧିକୁ ଦେଖିଲେ ମନରେ ଦୟାଆସିଯାଏ । ନିର୍ଦ୍ଦୋଷରେ ବିଚରା ଏତେ ମାଡ଼ ଖାଇଲା । ଠାକୁରେ ତା ଦୁଃଖ ଶୁଣିଲେ ଓ ଦୋଷୀ ଦଣ୍ଡିତ ହେଲେ । ଦୟାନିଧିର ପିଠିରୁ ବାହାରିଥିବା ଠେଙ୍ଗାମାଡ଼ର ରକ୍ତଧାର ମନ୍ତ୍ରବତ୍ କାମକଲା । ନିରୀହ ଲୋକଙ୍କର କଷ୍ଟଣଠାକୁରେ ସହିପାରନ୍ତିନି । ଦୟାନିଧିକୁ ସେ ଦୟାକଲେ । ସେତିକି ନୁହେଁ ଏହାରି ଫଳରେ କର୍ମଚାରୀମାନଙ୍କ ମଧ୍ୟରେ ଏକତା ଖୁବ୍ ବଢ଼ିଗଲା । ତେଣୁ ପରସ୍ପରକୁ ସାହାଯ୍ୟ କରି ସର୍ବସାଧାରଣଙ୍କର କାମ ଠାକୁରେ ସୁନ୍ଦରରୂପେ କରାଇନେଲେ ।

## ୧୧୩. ସର୍ବସ୍ୱାନ୍ତ ଫକୀର ମିଆଁ

ଅଜ୍ଞାତ କୁଳଶୀଳକୁ ପାଖରେ ଆଶ୍ରୟ ନଦେବାକୁ ଶାସ୍ତ୍ର ମନାକରିଛି । ଏକଥାଟି ମଧ୍ୟ ଅକ୍ଷରେ ଅକ୍ଷରେ ସତ । ଯେତେଜୋଗାରେ ଏକଥାକୁ ନମାନି ଯେ ଆଗେଇଛନ୍ତି ସେ ଅଳ୍ପହେଉ ବହୁତହେଉ ଠକାମିରେ ପଡ଼ିଛନ୍ତି । ତେଣୁ ଋଷିବାକ୍ୟ ଗୁଡ଼ିକ ସର୍ବଦା ବିଚାରକରି ମାନି ଚଳିଲେ ଭବିଷ୍ୟତରେ ବିପଦ ପଡ଼େନା । ଠାକୁରେ ଠିକ୍ ବେଳରେ କଥାଗୁଡ଼ିକ ମନେ ପକାଇ ଦିଅନ୍ତି ତାକୁ, ଯେ ତାଙ୍କୁ ସବୁକାମରେ ମନେ ରଖିଥାଏ ଓ ସବୁକାମରେ ତାଙ୍କ ଉପରେ ନିର୍ଭର କରେ ।

ଠାକୁରମୁଣ୍ଡା ଗୋଟିଏ ଖୁବ୍ ଛୋଟ ବଜାର । ବଜାର ସିନା ଛୋଟ । ବଜାରୀ ପଣରେ କେତେଜଣ ନିଜହାତରେ ଚଉଦପା । ଛୋଟ ଛୋଟ ଚୋରୀ ମଧ୍ୟ ହୁଏ । ଏ ବ୍ଲକର ବହୁଳ ଆଦିବାସୀମାନଙ୍କ ମଧରେ ମିଛ କହିବା, ଭାଷା କରିବା ଓ ଚୋରୀ କରିବାଟା

ନଥାଏ । ଯାହାଥାଏ ଆମେ ଯିଏ ସବୁ ବାହାରୁ ଆସି ପୁରୁଷପୁରୁଷ ଧରି ଏଠି ରହି ତଥାକଥିତ ଶିକ୍ଷିତ ବୋଲାଉଥାଉ ତାଙ୍କରି ଭିତରେ ।

ଦିନେ ଫକୀର ମିଆଁ ସାଙ୍ଗରେ ସ୍ଥାନୀୟ ଚାରିପାଞ୍ଚଜଣ ଦୋକାନୀଙ୍କୁ ଧରି ଆସିକହିଲେ ଯେ ବ୍ଲକ ଓ ଦୋକାନୀମାନେ ମିଶି ଦୁଇଜଣ ନେପାଳୀ ବାହାଦୂରଙ୍କୁ ରାତ୍ରିଜଗୁଆଳି ରଖିବା । ଅଜ୍ଞାତ କୁଳଶୀଳଙ୍କୁ ସ୍ଥାନ ଦେଲେ ବିପଦ ବୋଲି କହି ଯେତେ ବୁଝାଇଲେ ବି ସେମାନେ ବୁଝିଲେନି । ଫକୀର ମିଆଁର ବେଶୀ ଜିଗର । ତାର ଗୋଟେ ଲୁଗାଦୋକାନ ଥାଏ । ଭଲକାରବାର । ତେଣୁ ବେଶୀଭୟ । ଶେଷରେ ବାଧହୋଇ ତାଙ୍କ ପ୍ରସ୍ତାବରେ ରାଜି ହେଲେ ମଧ୍ୟ ତା ପଛରେ ନୈତିକ ସମର୍ଥନ ନାହିଁ ବୋଲି ସ୍ପଷ୍ଟ ଜଣାଇଦିଆଗଲା ।

ସେହି ଦିନ ଠାରୁ ଚାଲିଲା ରାତିରେ ହୁଇସିଲ୍ ମାରି ବାଡ଼ି ଠକ୍ ଠକ କରି ରାତ୍ରି ଜଗୁଆଳି କାମ । ତଥାପି ବ୍ଲକର ରାତ୍ରି ଜଗୁଆଳି କାମ ପୂର୍ବବତ୍ ଚାଲିଥାଏ । ସେ ସରକାରୀ ବ୍ୟବସ୍ଥା କାହିଁକି ବା ଉଠାନ୍ତା । ଇନ୍ଦ୍ର ତା'ର ଦୈନନ୍ଦିନ କାମସାରି ଆସି ବ୍ଲକ ବାରଣ୍ଡାରେ ଶୋଇଥାଏ ; ସକାଳ ଭୋର ଯାଏ; ମୁଣ୍ଡ ପାଖରେ ଠେଙ୍ଗାଟିଏ ରଖି ଓ ଲଣ୍ଠନଟିଏ ଜଳାଇ । କିଛିଦିନ ଖୁବ୍ ତତ୍ପରତାର ସହ ଜଗୁଆଳି କାମ ଚାଲିଲା ପରେ ଦିନେ ହଠାତ ଖବର ଆସିଲା ଯେ ବାହାଦୂର ଦ୍ୱୟ ଫେରାର୍ । ଫକୀର ମିଆଁର ଦୋକାନରେ ସିନ୍ଧି ହୋଇ ବହୁତ ଲୁଗା ଓ ଟଙ୍କା ଚୋରିଯାଇଛି । ସେ ବିଚରା ଆଗୁଆ ହୋଇ ଜଗୁଆଳି ବ୍ୟବସ୍ଥା କରି ଶେଷରେ ନିଜେ ହିଁ ସର୍ବସ୍ୱାନ୍ତ ହେଲା । ସେବେଠାରୁ ନିଜକାମ ନିଜେ କରିବାକୁ ଦୋକାନୀ ମାନେ ଶିକ୍ଷାକଲେ । ପୂର୍ବପରି ନିଜେ ବା ନିଜର ଲୋକ ନିଜ ଦୋକାନରେ ଜଗିଲେ ବା ଜଗି ଶୋଇଲେ । ସେ ଦିନୁ ଆଉ ଚୋରୀର ନାଁବି ଶୁଣା ଯାଇନି ।

ଠାକୁରେ ଦୟାକରି ଯେଉଁ ପଦୁଟିଏ ଉପଦେଶ କଣ୍ଠରେ ବସି କହି ଦେଇଥିଲେ ତାପାଇଁ ଯେଉଁ ପ୍ରଶଂସା ମିଳିଲା ସେ କେବଳ ତାଙ୍କରି ପ୍ରାପ୍ୟ । "ମୁଁ ଯାକୁ ହୁଅଇ ସଦୟ-ଜ୍ଞାନ ତା ହୃଦରୁ ଉଦୟ ।" ବାସ୍ତବିକ୍ ସେ ଦୟାନକଲେ ଯେତେ ବୁଧିଆ ବଳୁଆ, ଧନୀ ବା ଶିକ୍ଷିତ ଲୋକ ହୋଇ ଥାଉନା କାହିଁକି ଠିକ୍ କାମ ବେଳେ ବୁଦ୍ଧି ସୁଝିବ ନାହିଁ । ତାଙ୍କ ଉପରେ ନିର୍ଭରକଲେ ତାଙ୍କଠାରେ ସବୁ ସମର୍ପଣ କଲେ ସେ ତୁମ ପାଖେପାଖେ ରହି ସବୁବେଳେ ସବୁ କଥାରେ ତୁମକୁ ଛୋଟ ପିଲାପରି ବାଟ ଦେଖାଇବେ । ଏହା ଏକ ଧ୍ରୁବ ସତ୍ୟ ।

## ୧୧୪. ବିଭୁତି ଯୋଗ

ଯେ ଦୁଃଖୀ ତାର ଚାରିପଟ ଦୁଃଖରେ ଭରପୁର । ସେ ଯଦି ଦୁଃଖୀ ତାର ବନ୍ଧୁବାନ୍ଧବ ମଧ ତଦ୍ରୂପ । କେହି ସୁଖୀଥିଲେ ମଧ୍ୟ ସେ ଲାହି ଲୁଚନ୍ତି । ସମୁଦ୍ର ମଧରେ ସ୍ଥଳଭାଗ ଖୋଜି ପାଇବା କଷ୍ଟସାଧ୍ୟ । ମରୁଭୂମିରେ ପାଣି ମୁନ୍ଦାଏ ମିଳିବା କଷ୍ଟ । ଦୁଃଖର ସଂସାର ସେହିପରି ଦୁଃଖମୟ ।

ହାଇସ୍କୁଲରେ ପଢ଼ିବା ପାଇଁ ସାଲେପୁର ଆସିବା ଆଗରୁ ଟଳ ଭଉଣୀର ବିଭାଘର ପାଖ ଗାଁରେ ହୋଇଥିଲା । ସେ ଭିଣୋଇ ଉଠାଜଳସେଚନ ବିଭାଗରେ ସ୍ଥାୟୀ ଡ୍ରାଇଭର। ସେ ପଦୋନ୍ନତି ପାଇ ସୁପର ଭାଇଜର ହୋଇଥିଲେ । ସେ ଗସ୍ତରେ ଥିବା ବେଳେ କେଉଁଠି ପମ୍ପଟିଏ ଚୋରୀ ହୋଇଯିବାରେ ତାଙ୍କୁ ବିନାଦୋଷରେ ଚାକିରୀରୁ କାଢ଼ିଦିଆଯାଇଥାଏ । ଅଚାନକ ଭାବେ ଥରେ ଯାଇ ଦେଖିବାରେ ସେ ଯାଇ କେନ୍ଦୁପାଟଣାରେ ଗୋଟିଏ ଦୋକାନରେ ମଇଳା ଲୁଙ୍ଗିପିନ୍ଧି ବରା ଛାଣୁଥାନ୍ତି । ତାଙ୍କୁ ଡ଼ାକିଆଣି ସବୁ ବିଷୟ ବୁଝି ଆମ ଗାଁର ପୂର୍ଣ୍ଣ ମିଶ୍ରଙ୍କ ଜରିଆରେ ସରକାରଙ୍କୁ ଲେଖାଲେଖିକରିବାରେ ଅନ୍ୟାୟରେ ତାଙ୍କ ଚାକିରୀ ଯାଇଥିବାର ଉପଲବ୍ଧିକରି ସରକାର ତାଙ୍କୁ ଚାକିରୀ ଦେଲେ । ହେଲେ ସେ କେତେ ବର୍ଷପରେ କେଉଁ ଅଜ୍ଞାତ ରୋଗରେ ଆକ୍ରାନ୍ତ ହୋଇ ମୋ ଅଜ୍ଞାତରେ ଶେଷ ନିଶ୍ୱାସ ତ୍ୟାଗକଲେ; କଟକ ବଡ଼ ଡ଼ାକ୍ତର ଖାନାରେ । ପାଠପଢ଼ିଥିବା ଭଉଣୀ କିମ୍ବା ତାର ଆଠଟା ପିଲା କେହିହେଲେ କାର୍ଡ଼ଖଣ୍ଡେ ପକାଇ ତାଙ୍କ ସ୍ୱାସ୍ଥ୍ୟ ବିଷୟ ଜଣାଇ ନଥିଲେ; ତାଙ୍କପ୍ରତି ଏତେ ଅବଦାନ ଥିବାର ଜାଣିମଧ୍ୟ ।

ତାଙ୍କ ବଡ଼ପୁଅ ବିଭୁତି ନବମରୁ ପାଠପଢ଼ା ଛାଡ଼ି ବୁଲୁଥାଏ । ଦୁଇଥର ଚେଷ୍ଟାପରେ ତୃତୀୟଥର ଦେଖା ହେଲା । କଷ୍ଟରେ ଡ଼ାକି ଆଣି ଠାକୁରମୁଣ୍ଡାରେ ବନ୍ଧୁ ଗିରିଶ୍ ବାବୁଙ୍କ ସହାୟତାରେ ତାକୁ ପଢ଼ାଇବା ବନ୍ଦୋବସ୍ତ କରାଗଲା । ଟିଉସନ ହେଉଥାଏ । ଆଶାଥାଏ ମାଟ୍ରିକ୍ ଟି ପାଶ କରିଯିବ । ତାକୁ ପାଖେପାଖେ ଜଗି, ଖୁଆଇ, ପିଆଇ,ଶୁଆଇ ପଢ଼ାଇ ଥିଲି । ହେଲେ ମଧ୍ୟ ତା'ର ମନଥାଏ ଘରେ । ଥରେ ସାଇକେଲଟି ଭାଙ୍ଗିଦେଇ ପୁଣି ମରାମତି କରି ଥୋଇ ଦେଇଥିଲା । କେତେ ମାସପରେ ଦୃଷ୍ଟିକୁ ଆସିଲା । ଠାକୁର ଘରେ ପୂରାଇ ଅନୁତାପ କରି ପ୍ରାର୍ଥନା କରିବାକୁ କୁହାଯାଇଥିଲା । ପୁଣି ଥରେ ଗୋଟିଏ କାର୍ଡ଼ରେ ନିଜ ଅକ୍ଷରରେ ମୋ ପାଖକୁ ଗୋଟେ ଚିଠି ଲେଖି ଦେଇଥିଲା । ସେଥିରେ ତା'ଭଉଣୀ ଲେଖିଥିଲା ଯେ, "ମା' ଦେହ ଖରାପ୍ । ପାଣି ଗଳୁନି । ପାଟି ପଡ଼ିଗଲାଣି, ଧୀରେ ଧୀର କହୁଚି ବିଭିତିକୁ ଦେଖିବି ।" ଭଉଣୀ ଭିଣୋଇ ନଲେଖି ଭାଣିଜୀ କାହିଁକି ଲେଖିଲା ବୋଲି ମନରେ ସନ୍ଦେହ ହେଲା । ପୁଣି ପରୀକ୍ଷା ବେଳ । ଥରେ ଖସିଗଲେ ଆଉ ଫେରିବାର ଆଶା ନାହିଁ । ତେଣୁ ଚିଠିଲେଖି ଫୋନକରି ବୁଝିଲା ପରେ ଯିବ ବୋଲି ତାକୁ କୁହାଯିବାରେ ତାର ମିଛ କାନ୍ଦଣା ବନ୍ଦ ହେଲା । ୨ମାସପରେ କି ଚିଠି ? କିଏ ଲେଖିଛି ? କାହାକୁ କଣ ବୋଲି ଭିଣୋଇ ଉତ୍ତର ଦେବାରୁ ତାକୁ ସେ ଚିଠି ଦେଖାଇ ପୁଣି ଥରେ ଠାକୁରଙ୍କ ପାଖରେ ଦୋଷ ସ୍ୱିକାର କରି ପଶ୍ଚାତାପ କରିବାକୁ କୁହାଯାଇଥିଲା ।

ତଥାପି ସେ ମୋ ମନ ଚାହିଁଲା ପରି ମଣିଷ ହେଲାନି । ଯା ହେଉ ଏକାଥରକେ ମାଟ୍ରିକ ପାଶ କରିଗଲା । କଲେଜରେ ନାମ ଲେଖାଇ ଦେଇ ନେତା ହେବାକୁ ନିର୍ବାଚନ ଲଢ଼ିଲା । ହୋଟେଲ କଲା । ବସ୍ କିଣିବାକୁ କହି ପାଞ୍ଚହଜାର ଟଙ୍କା ଆଣି ପର ଘରେ

ପୁରାଇ ସେଠି ରହିଗଲା । ବନ୍ଧୁକଷ୍ଟରେ କିଛି ଟଙ୍କା ଆଦାୟ ହେଲା । ବିଲେଇ କପାଳକୁ ଶିକା ଛିଡ଼ିବା ପରି ବାପାଙ୍କର ମୃତ୍ୟୁପରେ ସରକାରୀ ଅନୁକମ୍ପାରୁ ଚାକିରୀ ଖଣ୍ଡିକ ପାଇବାରୁ ଏବଂ ମା କିଛି ପେନସନ ପାଇବାରୁ ତାଙ୍କର ଅବସ୍ଥା ଟିକେ ସୁଧୁରିଲା । ବଡ଼ଲୋକ ହେବାର ଏ ଜୀବନରେ ନାହିଁ । ଅନ୍ତତଃ ଠାକୁରେ ପେଟ କଷ୍ଟରୁ ରକ୍ଷା କରିଦେଲେ । ତାଙ୍କର କରୁଣାର ଅନ୍ତ ନାହିଁ । ସେ ବିଳମ୍ବରେ ହେଲେ ମଧ ଘର ମୁହାଁ ହେଲା ଓ ଭଉଣୀ ମାନଙ୍କୁ ବିଭାସାହା କରାଇ ନିଜେ ବାହାସା ହୋଇ ରହିଛି । "ଚକ୍ରବତ୍ ପରିବର୍ତ୍ତନ୍ତି ସୁଖାନି ଚ ଦୁଃଖାନି ଚ ।" ଠାକୁରେ ନିରାଶ୍ରୟଙ୍କର ଅବସ୍ଥା ବଦଳାଇଲେ । ତା ସାନଭାଇକୁ ମଧ୍ୟ ଯାଇତାଇ ଖଣ୍ଡେ ଚାକିରୀ ବ୍ୟବସ୍ଥା କରିଦିଆ ଯାଇଥିଲା । ଭଉଣୀମାନେ ବିଭାହୋଇ ଯାଇଛନ୍ତି । ଆଉ ଗୋଟିଏ ସାନଭାଇ କୂଳରେ ଲାଗିଗଲେ ତାଙ୍କ ସିଙ୍ଘରେ ସେ ମାଟି ଖୋଳି ଚଳିବେ । ପ୍ରତିଷ୍ଠିତ ହେବାକୁ ଦରକାର ଠାକୁରଙ୍କ ଆଶିର୍ବାଦ । ୟେ ହେଉଛି ବିଭୁତି ଯୋଗ ।

## ୧୧୫. ଠାକୁରେ ଦେଲାବେଳେ ଛପର ଫାଡ଼ିକି ଦିଅନ୍ତି

ମଣିଷ ଠାକୁରଙ୍କର ଦୟାକ'ଣ ବୁଝିବ ? ସେକାହାକୁ କେଉଁବାଟରେ କେତେବେଳେ ସାହାଯ୍ୟ କରିବେ ବା କରନ୍ତି ମନୁଷ୍ୟ ନିଜର ସୀମିତ ବୁଦ୍ଧିରେ ତାକୁ ଆଗରୁ ଜାଣି ପାରେନି କି ବୁଝି ପାରେନି । ସାହାଯ୍ୟ ପାଇଲେ ଓଲଟି ତାକୁ ନିଜର କରାମତି ବୋଲି ଭାବେ । ନିର୍ବୋଧ ମଣିଷ । ସେ କାହୁଁ ବୁଝିବ ସର୍ବଶକ୍ତିମାନଙ୍କର ଶକ୍ତି ଓ ତାର କରାମତି । ଏତିକି ଯେ ବୁଝିପାରେ ଜାଣିପାରେ ଓ ଉପଲବ୍ଧି କରିପାରେ ସେହିଁଏ ଅତିମାନୁଷ ।

କେନ୍ଦ୍ରାପଡ଼ାରେ ଥିବାବେଳେ ସାନଭିଣୋଇ ଦାମବାବୁ ଆଠନଅ ବର୍ଷର ଏଣ୍ଡୁଳିଆ ପେଟ ବିଶିଷ୍ଟ ରୁଗ୍ଣ ଗେଡ଼ା ବ୍ରାହ୍ମଣ ପିଲାଟିଏ ଆଣି ପହଞ୍ଚାଇଲେ । କହିଲେ ସେ ବୋଲହାକ କରିବ ଓ ଖାଇ ପିନ୍ଧି ରହିବ । ତାକୁ ଗାଁକୁ ନେଇଘରେ ଛାଡ଼ି ରାତିରେ ଶୋଇଥାଏ । ପାହାନ୍ତାପହର ଉଠି ଦେଖିଲା ବେଳକୁ ସେ ଗୋଟିଏ ପୁରୁଣା ବହିଧରି ଇଲେକ୍ଟ୍ରିକ ଆଲୁଅରେ ପିଣ୍ଡାରେ ବସି ପଢୁଛି । ପଚାରି ବୁଝିବାରେ ସେ ୩ୟ ଶ୍ରେଣୀଯାଏ ପଢ଼ିଛି ବୋଲି କହିଲା । ଏତେ ଛୋଟ ପିଲା, ରୋଗୀଣା, କି କାମ କରିବ ? ଯାହା କରିବ କରୁ, ସ୍କୁଲକୁ ଯାଉ । ଏହି ବିଚାରରେ ତାପର ଦିନ ଠାରୁ ତାକୁ ସ୍କୁଲକୁ ପଠାଗଲା । ସେ ମଧ୍ୟ ପାଞ୍ଚଟି ପିଲାଙ୍କ ସହ ଛଅ ନମ୍ବର ପିଲା ହୋଇଥାଏ । ସବୁ କାମରେ ନିର୍ବିକାର । କେଉଁ କାମକୁ ପଛାଏନି । ସାନପିଲାଙ୍କ ଗୁହମୁତ ମଧ ନିର୍ବିକାର ଭାବେ ଧୋଇଦିଏ ବଡ଼ ଭାଇପରି । ଗୁଲନକୁ କାଖେଇ କାଖେଇ ଖୋଇପେଇ ସେ ମଣିଷ କରିଛି । ସେଇଟା ବଡ଼ ଅଖିଆଥିଲା ପିଲାଦିନେ । ତାସାଙ୍ଗକୁ ପିଲାଙ୍କ ଟିଉସନ୍ ବେଳେ ତାଙ୍କ ସାଙ୍ଗରେ ପଢ଼େ । ତାଙ୍କର ଯାମା ପେଣ୍ଟ ଚପଲ ହେଲେ ତା ପାଇଁ ହୁଏ । ସାଙ୍ଗ ହୋଇ ସ୍କୁଲକୁଯାଏ ଓ ଆସେ । ସେ ଆମଘରର ପିଲାବୋଲି ସମସ୍ତେ ଜାଣନ୍ତି । ତାର ଏଣ୍ଡୁଳିଆ ପେଟଟି ଠିକ୍ ହୋଇଗଲା । ସୋଥାଳିଆ ଚେହେରାଟି ମଧ ଠିକ୍

ହୋଇଗଲା । ଜାମାପେଣ୍ଟ ପିନ୍ଧି, ଚପଲ ଲଗାଇ ବାବୁ ପିଲାପରି ଆମପିଲାଙ୍କ ସାଙ୍ଗରେ ସ୍କୁଲ ଯାଏ । କେବେ ଘରକୁ ଗଲେ ଆଠ ଦିନ ପାଇଁ କହି ଯାଇଥିଲେ ୫ଦିନରେ ପଳାଇ ଆସେ । ଶ୍ରଦ୍ଧାରେ ସାଗୁ, ଓଉ, ଶାଗ ଏମିତି କେତେକ ଜିନିଷ ବ୍ୟାଗରେ ଧରି ଆଣେ । ଘରେ କିଏ ଥାଏ ଯେ ଘରେ ରହିବ । ଠାକୁରେ ପରୀକ୍ଷା କରିବା ପରି ତାର ସବୁ ଦିଗରୁ ପଡ଼ିକାଟ କରିଥିଲେ । ବାପଟି ବୁଲି ବହିବେପାର କରୁ କରୁ ପାଗଳ ହୋଇ ଘରଛାଡ଼ି ଚାଲିଯାଇଥାଏ । ବଡ଼ ଭାଇଟି ରାଉରକେଲାରେ କେଉଁ ହୋଟେଲରେ ଚାକିରୀ କରିବାକୁ ଯାଇ ସେଠି ମରିଯାଇଥିଲା । ମା ଯାଇଁ ମାମୁଘରେ ଛୋଟ ଭଉଣୀଟିକୁ ଧରି ପଡ଼ିଥାଏ; ତାଙ୍କ ଘର ଜଗି; କାରଣ ମାମୁଁଘର ଥାନ୍ତି କଲିକତାରେ । ଘର କହିଲେ ଚାଳଖଣ୍ଡେ । ସେଥିରେ ପଡ଼ିଥାଏ ବୁଢ଼ୀମା ବା ଜେଜିମା । ଅଧେ ଦିନ ଖାଏତ ଅଧେ ଦିନ ଉପବାସ । ଶେଷକୁ ପଡ଼ିଶା ତେଲିଘର ତା ଘରବାଡ଼ିରୁ ଖଣ୍ଡେ ବାଡ଼ ବୁଜି ଦଖଲ କରି ଯାଇଥିଲା; ତାଙ୍କର ଏହି ଅବସ୍ଥାର ସୁଯୋଗ ନେଇ ।

ଏହିପରି ବିଜୟ ବିଜୟପଥରେ ଆଗେଇଥିଲା ଦୀର୍ଘ ଆଠବର୍ଷ ପଢ଼ିପଢ଼ି ଏକାଦଶ ଶ୍ରେଣୀକୁ ଅସିଗଲା । ସେତ ବେମାରିଆ ଥିଲା । ମଝିରେ ମଝିରେ ବେମାର ପଡ଼େ । ମୋ ସ୍ତ୍ରୀ ତାର ସବୁ ସେବା କରେ । ଥରେ ତାକୁ ଏକାଦଶ ଶ୍ରେଣୀରେ ପଢୁଥିବାବେଳେ ମିଳିମିଳା ହେଲା । ପାଞ୍ଚ ଛଅ ଦିନେ ଭଲ ହୋଇ ସ୍କୁଲକୁ ଯାଆସ କରୁଥାଏ । ବର୍ଷାଦିନ ହଠାତ୍ ଦିନେ ଖରାବେଳେ ତା ମା ଜଣେ ଗାଁର ଶିକ୍ଷକଙ୍କୁ ଧରି ଆସି ପହଞ୍ଚି ତାକୁ ଖୋଜିଲେ । ସେ ସ୍କୁଲରୁ ଫେରି ଖାଇଲା ପରେ ତାକୁ ପଚାରିଲେ ତୁତ ଭଲ ଅଛୁ ଆସିବାକୁ ଲେଖି କାହିଁକି ଚିଠି ଦେଲୁ । ଆଗରୁ ଆମେ କେହି ତା' ମାକୁ ଦେଖି ନଥିଲୁ କି ଚିହ୍ନି ନଥିଲୁ । ମାର ଏ ପ୍ରଶ୍ନରେ ସେ ହସିଲା । କହିଲା ଦେହ ଖରାପ ଥିଲା । ସେମିତି ଲେଖି ଦେଇଥିଲି ଯେ ମତେ ଆସି ନେଇ ଯା । ଏକଥା ଶୁଣି ମନ ବଡ଼ ବିଷାକ୍ତ ହୋଇଗଲା । ତାର ଅନିଚ୍ଛା ସତ୍ୱେ ତା ଲୁଗାପଟା, ବହିପତ୍ର ଓ ବେଡ଼ିଂ ବିସ୍ତରା ଧରାଇ ତା ମା ସହ ଘରକୁ ପଠାଇ ଦିଆଗଲା ।

ବଣର ଶୁଆଟିଏ ଧରି ତାକୁ ପଞ୍ଜୁରୀରେ ରଖି ଦୁଧଭାତ ଖାଇବାକୁ ଦେଲେ ମଧ୍ୟ ସେ ପଞ୍ଜୁରୀ ଖୋଲା ଦେଖିଲେ ଉଡ଼ିପଳାଏ । ଠିକ୍ ସେହିପରି ସେ ଉଡ଼ିଯିବାକୁ ଚାହିଁଥିଲା । ତେଣୁ ଚିଠିଟିଏ ଲେଖି ଦେଇଥିଲା । ପରେ ମନ ବଦଳାଇବା ବେଳକୁ ଆମ ମନ ଖଟା ହୋଇଯାଇଥିଲା ।

ଘରେ ଯାଇ କିଛି ନଥିବା ସଂସାରରେ କେତେଥର ପରୀକ୍ଷାଦେଇ ପାଶକଲା । ନଡ଼ିଆ ବେପାର, ଚାଉଳ ବେପାର, କେଆଁର ଖାଦ୍ୟ ସଂସ୍ଥାରେ ଅସ୍ଥାୟୀ କାମ କରି କେଉଁଥିରେ ଠାକି ପରିଲାନି । ଦିନେ ହଠାତ୍ ଆସି ଖୋଜି ଖୋଜି କେଉଁଠୁ ଖବର ନେଇ ଭୁବନେଶ୍ୱରରେ ପହଞ୍ଚି କହିଲା ଯେ ଘର ପାଖରେ ବେଳାଭୂମି ଉନ୍ନୟନ କାମ ହେଉଛି । ସେଠି ଠିକା ଚାକିରୀ ଅଛି । କିଏ ଚାକିରୀ ଦେଉଛି । ନାମ ଓ ପଦବୀ ଇତ୍ୟାଦି ବୁଝିଆସିବାକୁ କହିବାରୁ ପାରା ପରି ଯାଇଁ ବୁଝି ଆସିଲା । ଠାକୁରଙ୍କରତ ଇଚ୍ଛା ଅଛି ଯେ କୋଣାର୍କର ମୁଣ୍ଡିମରାଯିବ । ତେଣୁ

ସେ ଯେଉଁ ନାଗାଁ ପଦବୀ ଟିପି ଆଣି ଦେଲା ଯୋଗକୁ ସେ ଚିହ୍ନାଥିଲେ । ଚିଠିଟିଏ ମୋଠୁଁ ନେଇ ଦେଖାଇ ଓ ଚାକିରୀ ପାଇଁ ଚିଠି ପାଇ ୨ଘଣ୍ଟା ମଧ୍ୟେରେ ଫେରି ଆସିଲା ।

ଠାକୁରେ ତାର ଦୁଃଖର ପାଞ୍ଜିକୁ ପୋଛିଦେଲେ । ପଡ଼ିଶା ତେଲି ତା ଘରବାଡ଼ି ଛାଡ଼ିଦେଲା । ସେଠାରେ ସେ ଘର ଖଣ୍ଡେ କଲା । ବାପାଙ୍କ ପାଗଳାମି କମିଗଲା ଓ ସେ ଘରକୁ ଆସି ଜମିବାଡ଼ି ଦେଖିଲେ । ମାମୁଁଘର କଲିକତାରୁ ପଳାଇ ଆସିବାରୁ ମା ଓ ସାନଭଉଣୀ ମାମୁଘରୁ ଘରକୁ ଫେରି ଆସିଲେ । ପାଖ ହାଇସ୍କୁଲ ପଣ୍ଡିତେ ତାଙ୍କ ଝିଅଟିକୁ ବିଜୟକୁ ବିଭା କରେଇଦେଲେ । ରାମଲକ୍ଷ୍ମଣ ପରି ପୁଅ ଜନ୍ମ ହେଲେ । ବୁଢ଼ୀମା ଏ ସୁଖଦେଖି ଆଖିବୁଜିଲେ । ଚାକିରୀ ସ୍ଥାୟୀହେଲା, ଦରମା ବଢ଼ିଲା, ଘରକଲା । ନଡ଼ିଆ ଚାଷ ଆରମ୍ଭ କରିଦେଲା । ଧନଜନ ଗୋପଲକ୍ଷ୍ମୀରେ ଘରଟି ହସିଉଠିଲା । ଏଇଥିପାଇଁ କୁହନ୍ତି, "ଚକ୍ରବତ୍ ପରିବର୍ତ୍ତନ୍ତେ ସୁଖାନିଚ ଦୁଃଖାନିଚ ।" ଏଇ ତାହାର ଉଦାହରଣ । ଠାକୁରେ ଏମିତି ଯାହାକୁ ଦିଅନ୍ତି ଛପର ଫାଡ଼ି ଦିଅନ୍ତି । ମଣିଷତାକୁ ବୁଝିବାକୁ ଅକ୍ଷମ । ବିଜୟକଥା ଭାବିଲା ବେଳକୁ ସ୍ୱପ୍ନ ପରି ମନେହୁଏ । ବିଚିତ୍ର କର୍ମାଙ୍କ ବୈଚିତ୍ର୍ୟ ବୁଝି ହୁଏନା ।

## ୧୧୬. ଗୁରବାକ୍ୟ

ଠାକୁର ରାମକୃଷ୍ଣ ପରମ ହଂସଦେବ ଉଦାହରଣ ଛଳରେ ଗୋଟିଏ ସୁନ୍ଦର ଗପ କହିଥିଲେ । ଜଣେ କାଳୀ ସାଧକ ଦିନଦିନ ଧରି ଶ୍ମଶାନରେ ଅର୍ଦ୍ଧରାତ୍ରରେ ସାଧନକରେ । ଆଉଜଣେ ତାକୁ ଗଛ ଉପରେ ଚଢ଼ି କ'ଣ କରୁଛି ଲକ୍ଷ କରୁଥାଏ । ଦିନେ ସାଧାକଟିର କ'ଣ ଭୁଲ ହୋଇଗଲା କେଜାଣି ସେ ଭେଟଣା ହୋଇ ଦେହତ୍ୟାଗ କଲା । ଗଛ ଉପରେ ତାକୁ ଦେଖୁଥିବା ଲୋକଟି ଗଛରୁ ଓଲ୍ହାଇ ଆସି ତା ଆସନରେ ବସି ମା ମା ବୋଲି ଦୁଇଥର ଡ଼ାକୁ ଡ଼ାକୁ ତା ଆଗରେ କାଳୀ ଆସି ପହଞ୍ଚି ତାକୁ ବର ଯାଚିବାରେ ସେ କହିଲା ମା ଯେଉଁ ଲୋକଟି ମାସ ମାସ ଧରି ସାଧନକଲା ସେ ନିଷ୍ଫଳ ହୋଇ ଦେହତ୍ୟାଗ କଲା । ଅଥଚ ମୁଁ ଦୁଇଥର ମା ମା ଡ଼ାକିବାରେ ମୋତେ ଦର୍ଶନ ଓ ବର ମିଳିଲା । ୟେକି ଆଶ୍ଚର୍ଯ୍ୟ; ମାୟା ? କାଳୀକହିଲେ ତୋର ପୂର୍ବଜନ୍ମରେ ବହୁତ ସାଧନା ଥିଲା । ତେଣୁ ତୁ ତାର ଫଳ ପାଇଲୁ । ସେହିପରି ଠାକୁରେ ଯାହାପାଇଁ ଯାହା ରଖିଥାନ୍ତି ସେ ତାହା ପାଏ ।

ଜେଜେ ଆମର ଚାରିଭାଇ । କୃପାସିନ୍ଧୁ, ଦୀନବନ୍ଧୁ, କାହ୍ନୁ ଓ କୁସୁନ । କୃପାସିନ୍ଧୁଙ୍କର ଅଂଶରେ ସନାକେଇ ଓ ଦୀନବନ୍ଧୁଙ୍କ ଅଂଶରେ ଆମେଥାଉ । କୁସୁନଙ୍କ ଅଂଶରେ ଏକମାତ୍ର ନିଃସନ୍ତାନ ଖୁଡ଼ୀ ଅନ୍ୟକୁ ସମ୍ପତ୍ତି ଦେଇ ଦେହତ୍ୟାଗ କରିଥିଲା । କାହ୍ନୁଙ୍କର ଅଂଶରେ ଗଣିଆକେଇ ମଧ୍ୟ ନିଃସନ୍ତାନ ହୋଇ ଏକା ଥିଲେ । ସେ ସନାକେଇଙ୍କ ଘରସହ ବେଶୀ ଚଳନ୍ତି । ତାଙ୍କ ଘରେ ବସନ୍ତି, ଉଠନ୍ତି, ଖାନ୍ତି, ପିଅନ୍ତି ଓ ତାଙ୍କ ପିଲାଙ୍କୁ ଭଲ ପାନ୍ତି । ତାଙ୍କଠାରୁ

ପୁଅଟିଏ କରିଆଣି ବ୍ରତକରିଥିଲେ । ସେ ସର୍ପାଘାତରେ ମରିଗଲା । ଗଣିଆକେଇ ଯେଉଁ ଏକାକୁ ସେଇ ଏକା । ଏତେ ବେଳକୁ ତାଙ୍କର ଯାହା କିଛି ଅସ୍ଥାବର ସମ୍ପତ୍ତି ଥିଲା ସେ ଟାକୁ ସନାକେଇଙ୍କୁ ଦେଇ ସାରିଥିଲେ ।

ସେ ଆମକୁ ଭଲ ପାଆନ୍ତିନି । ଘୃଣା କରନ୍ତି । ପାଠପଢ଼ାରୁ ବା ଚାକିରୀରୁ ଘରକୁ ଆସିଥିଲେ ସେ ବାଟରେ ଘାଟରେ ଦେଖା ହେଲେ ତାଙ୍କୁ ମୁଣ୍ଡ ଲଗାଇ ନମସ୍କାର ହେଲାବେଳକୁ ତାଙ୍କ କାନ୍ଧରେ ଥିବା ପାଟଲା ଗାମୁଛାକୁ ନଚାଇଦେଇ ମୁହଁମୋଡ଼ି ଚାଲିଯାନ୍ତି । ମୁଣ୍ଡ ଉଠାଇଲା ବେଳକୁ ସେ ଚାଲିଯାଇଥାନ୍ତି । ସେତିକି ନୁହେଁ ଥରେ ସେ ଆମକୁ ଖୁବ୍ ଅପଦସ୍ତ କରିଥିଲେ । ବୋଉର ଶ୍ରାଦ୍ଧକୁ ହରିହାଟବୋ ଅନ୍ତମୁଖି ହେଉଥାଏ । ଶ୍ରାଦ୍ଧରେ ବିଳମ୍ବଦେଖି ସେ ନ ଖାଇ ଉଠିପଳାଇଲେ । ତାଙ୍କ ପଛରେ ଗୋଡ଼ାଇ ଗୋଡ଼ାଇ ସେ ହାଟକୁ ପଳାଇ ଥିବାର ଖବର ପାଇ ଫେରି ସ୍ଥିର ହେଲାଯେ ତାଙ୍କ ସହ ଭାଇକାଟ ହେଲା । ତାଙ୍କୁ ଆଉ କେଉଁ କାମକୁ ଡ଼ାକିବୁନି କି ତାଙ୍କୁ ମଧ୍ୟ ଛୁତିକିଆ ମୁର୍ତ୍ତିକିଆ ଖବର ଦେବୁନି କି ତାଙ୍କୁ ମଧ ପାଳିବୁନି ।

ଏହି ଅବସ୍ଥାରେ କେତେ ବର୍ଷ ଗଲାପରେ ବାର୍ଦ୍ଧକ୍ୟରେ ଥରେ ତାଙ୍କର ଆଖିରେ ଯନ୍ତ୍ରଣାହେଲା । ସେ ଯାଇଁ କଟକ ବଡ଼ ଡ଼ାକ୍ତର ଖାନାରେ ଚିକିତ୍ସିତ ହେଉଥାନ୍ତି । ଯନ୍ତ୍ରଣା ବଢ଼ିଲା । ସେ ଜୀବନର ଆଶା ତ୍ୟାଗକରି ତାଙ୍କ ଗୁରୁ ମାଧବ ମିଶ୍ରଙ୍କୁ ଡ଼କାଇ ଦେଖିଲେ । ପଚାରିଲେ ମୋର ଯାହା ଦିଗୁଣ୍ଠ ଜମି ଓ ଘରବାଡ଼ି ଅଛି ତାକୁ କାହାକୁ ଦେବି । ଗୁରୁ ବିଚାର କରି କହିଲେ ପର୍ଶୁ ଏକମାତ୍ର ତୁମ ବଂଶର ଆଲୋକ ବର୍ତ୍ତୀକା । ତାକୁହିଁ ଦିଅ । ସେ ତୁମକୁ ସୁଧି ହେବ ଓ ପିଣ୍ଡଦେବ । ଅନ୍ୟକେହି ମୋ ଆଖିକୁ ଦିଶୁ ନାହାନ୍ତି । ଠାକୁରଙ୍କ ଇଚ୍ଛାରେ ସେ ସୁସ୍ଥ ହୋଇ ଘରକୁ ଆସିଲେ । ଆମ ଭାଇନାଙ୍କୁ କହି ମୋତେ ଡ଼କାଇଲେ । ବହୁବର୍ଷ ତାଙ୍କ ଡ଼ିହମାଡ଼ି ନଥାଏ । ରାତିରେ ଟର୍ଚ୍ଚ ଧରି ଧୀରେ ଧୀରେ ଯାଇଁ ଡ଼ାକିବାରେ ସେ କବାଟ ଫିଟାଇ କୁଣ୍ଢାଇ ପକାଇ କହିଲେ; "ଯେ ମୋ ଗୁରଙ୍କ ଆଦେଶ । ଯାହା ଅଛି ତୋତେ ଦେବି । ତୁ ମନା କଲେ ହାଡ଼ିକୁ ଦେବିପଛେ ଆଉ କାହାକୁ ନୁହେଁ ।" କଥାଟାକୁ ଥାକ ଦେଇ ପ୍ରକୃତ ମନ ଜାଣିବାକୁ ଭାଇ ମାନଙ୍କୁ ପଚାରି ପରେ କହିବାକୁ କହି ଚାଲି ଆସିଲି ।

ସେ କିନ୍ତୁ ସମ୍ଭାଳି ପାରିଲେନି । ଈଶ୍ୱରଙ୍କର ପ୍ରେରଣାରେ ସେ ବାରମ୍ବାର ଚିଠିଦେଇ ସଫଳ ନହେବାରୁ ନିଜେ ନିଜେ ଯାଇ ଜଣେ ନବସିନ୍ଧାଦ୍ୱାରା ମୋ ନାମରେ ଦାନପତ୍ର ଲେଖାଇ ନିଜେ ଖର୍ଚ୍ଚ ଦେଇ ସାଲେପୁରରେ ରେଜେଷ୍ଟ୍ରି କରି ଦେଲେ । ରେଜେଷ୍ଟ୍ରି ହେଉଥାଏ । ସେଠି ପହଞ୍ଚି ଖବର ପାଇଲି ଓ ସବରେଜିଷ୍ଟ୍ରାରଙ୍କ ପରାମର୍ଶରେ ଦଲିଲରେ ଦସ୍ତଖତ ଗୋଟିଏ କଲି । ସେ ସେହି ଦିନୁ ଯୁଆଡ଼େ ବଦଳି ହୋଇ ଗଲେ ପାଖେପାଖେ ଥାନ୍ତି । ହାଟଟଙ୍କିରେ ଘିଅ ନେଇ ଖାନ୍ତି । ତାଙ୍କର ତ ଶେଷ ସମୟ ହୋଇଯାଇଥିଲା । ଅଗ୍ନାଗ୍ନିବନସ୍ତ ବାଂଶପାଳରେ ଥିବା ବେଳେ ସେ ଭୟଭୀତ ହେଲେ । ଏତେ ଦୂରରେ ମଲେ କିପରି ସତ୍କାର ହେବ ? ଏ ଭୟ ତାଙ୍କୁ ଗ୍ରାସିଲା । ସେ ଝିଅ ଶାଶୁ ଘରକୁ ଗଲାପରି ବଡ଼ି, ଅଚାର, ଘିଅ, ଲୁଗାପଟା ଇତ୍ୟାଦି

ଯାହା ଚାହିଁଲେ ସବୁ ବାନ୍ଧି ଟଙ୍କା ପଇସାଧରି ଘରକୁ ଆସିଲେ । ବାଟରେ କେଉଁ କବିରାଜ ଠାରୁ ତାଙ୍କ ବାତଗୋଡ଼ରେ ଚେଙ୍କ ବା ଚିଆଁ ଲଗାଇ ଆସିଥିଲେ । ସେ ଘା' ଆଉ ଶୁଖିଲାନି । ତୁଚ୍ଛାରେ ରୋଗକୁ ଡ଼ାକି ଆଣି ସେଇଥିରେ ପଡ଼ିପଡ଼ି ମଲେ ।୧୯୭୫ ମାଘମାସ, ଶୁକ୍ଳପକ୍ଷ, ବଡଦଶମୀ ଦିନବେଳା ତାଙ୍କର ମୃତ୍ୟୁ ଅପୁନରାବର୍ତ୍ତନର ସୂଚନା ।

ଭାଇନାଙ୍କଠାରୁ ଚିଠି ପାଇ ମୋ ସ୍ତ୍ରୀକୁ ପଠାଇଥିଲି । ସେ କିଛିଦିନ ସେବା କରିଥିଲା । ମଲାପରେ ଭାଇନା ମୁଖାଗ୍ନି ଦେଲେ । ଦୁଇଦିନ ପରେ ଆସି କ୍ରିୟାକଲି । ଖୁବ୍ ବ୍ରାହ୍ମଣ, ଅବ୍ରାହ୍ମଣଙ୍କୁ ଭୋଜନ ଦିଆଗଲା । ଢ଼ିଅରେ ବାରଦିନରେ ନାମ ସଂକୀର୍ତ୍ତନ କରାଗଲା । ତାଙ୍କର ଆତ୍ମା ତୃପ୍ତ ହେଲା । ତାପରେ ହରଦ୍ୱାର, ବଦ୍ରୀନାଥ, କାଶୀ ଓ ଗୟା ଇତ୍ୟାଦିରେ ତାଙ୍କର ପିଣ୍ଡଦାନ କରିବା ସହ ଆଲ୍ଲାହାବାଦରେ ତ୍ରୀବେଣୀ ସଙ୍ଗମରେ ଅସ୍ଥି ବିସର୍ଜନ କରାଗଲା । ଯଦିଓ ଭାଇନା ଓ ସାନଭାଇ ଦୁହେଁ ଅଶୌଚ ପାଳିଲେ ଓ କ୍ରିୟା-କର୍ମରେ ଅଂଶନେଲେ ଦିନେ ଭୁଲରେ ପଇସାଟିଏ ମଧ୍ୟ ସାହାଯ୍ୟ କରିନଥିଲେ । କେବଳ ୧୨ ଦିନ ରୋଷେଇପାଇଁ ଚାଉଳ କିଣିବାକୁ ସ୍ଥିରକରିବାର ଦେଖି କେତେ ଗୌଣୀ ଚାଉଳ ଖାଲି ଦେଇଥିଲେ ।

ଅର୍ଜୁନ ଲାଖବିନ୍ଧି ଦ୍ରୌପଦୀଙ୍କୁ ପ୍ରାପ୍ତହେଲେ । ପାଞ୍ଚଭାଇ ଘରକୁ ଆସି ମାଙ୍କୁ ଡ଼ାକି କହିଲେ ଯେ ମା ଆଜି ଠାକୁରେ ଭଲ ଜିନିଷଟିଏ ଦେଇଛନ୍ତି । ଘରେ ଥାଇ ମା ଆଦେଶଦେଲେ ଯାହା ପାଇଛ ପାଞ୍ଚଭାଇ ବାଣ୍ଟିନେବ । କୁନ୍ତିସିନା ନଦେଖି ଏମିତି କହିଦେଇଥିଲେ-ମାତ୍ର ଯେତେ ଜମି କିଣାଯାଇଥିଲା ସେଥିରେ ଆମଭାଇନା ତିନିଶହ ଟଙ୍କା ମାତ୍ର ଦେଇ ଥିଲେ । ସାନଭାଇ ତ ପଢୁଥିଲା । ତେଣୁ ସେ ବା କ'ଣ ଦେବ ? ହେଲେ ନିଜେ ଟଙ୍କା ଦେଇ କିଣିଥିବା ସମ୍ପତ୍ତି ୩ଭାଇଙ୍କ ନାମରେ କରଯାଇଥିଲା । ସେହିପରି ଗଣିଆ କେଇଙ୍କ ଦତ୍ତ ସମ୍ପତ୍ତି ତିନି ଭାଇଙ୍କ ନାମରେ କରିବାକୁ ତାଙ୍କୁ ଦେଇଥିବା ପ୍ରସ୍ତାବ କକେଇ ଗ୍ରହଣ ନକରିଥିଲେ ମଧ୍ୟ ପରେ ସେହିପରି ତିନିଭାଇ ବାଣ୍ଟିନେବାର ଇଚ୍ଛାଥିଲା । ମାତ୍ର ସେମାନେ ସେତେବେଳେ ହୁଏତ ଏହି ମାନସିକ ଅବସ୍ଥାକୁ ବୁଝିବାକୁ ଅକ୍ଷମ ହୋଇ ସୁଧିକାର୍ଯ୍ୟରେ କିଛି ସାହାଯ୍ୟ କରି ନଥିଲେ । ପରବର୍ତ୍ତୀ ଅବସ୍ଥାରେ ସେଥିରୁ କିନ୍ତୁ ଅଂଶ ପାଇବାର ଇଚ୍ଛା ପ୍ରକଟ କରିଥିଲେ ଓ ସଫଳ ହୋଇଥିଲେ ।

ଗଣିଆ କେଇଙ୍କ ଗୁରୁମାଧବ ମିଶ୍ର ଠାକୁର ରାମକୃଷ୍ଣଙ୍କ ପରି ବିବାହିତ ହୋଇ ମଧ୍ୟ ସାଧକ ଜୀବନ ଯାପନ କରୁଥିଲେ । ହୁଡ଼ାବାବା ଦୀନବନ୍ଧୁ ଶତପଥୀଙ୍କର ସେ ଶିଷ୍ୟ । ଖୁବ୍ ଜ୍ଞାନୀ ଗୁଣୀ ଲୋକ । ତାଙ୍କୁ ଖୁବ୍ କମ ଲୋକ ଚିହ୍ନିଥିଲେ । ହେଲେ ଗଣିଆକେଇ ତାଙ୍କଠାରୁ ଦୀକ୍ଷିତ ଓ ରଘୁନାଥଙ୍କର ପରମଭକ୍ତ । ହନୁମାନ ସାଧନା ଜାଣନ୍ତି ଓ ତାଙ୍କଠାରେ ଦୃଢ଼ ବିଶ୍ୱାସୀ । ଆମ ବଂଶର ରାଧିଖୁଡ଼ୀ ଆମକାହାରିକୁ ବିଶ୍ୱାସକୁ ନନେଇ ବାହାର ଲୋକଙ୍କ ପ୍ରରୋଚନାରେ ଘର ଓ ଜମି ଦେଇଦେବାରେ ଅପାଣିଆ ହୋଇ ମଲା । ପିଣ୍ଡପାଣି ତା

ପାଇଁ ସ୍ୱପ୍ନ । ଅଥଚ ମାଧବ ମିଶ୍ରଙ୍କ ପରି ଗୁରୁ ବାକ୍ୟରେ ବିଶ୍ୱସ୍ତ ଗଣିଆକେଇ ତୀର୍ଥ ସେବା ସହ ଆଜିଯାଏ ମୋ ଠାରୁ ପିଣ୍ଡପାଣି ପାଉଛନ୍ତି । ଠାକୁରେ ସତ୍‌କର୍ମର ଫଳଦିଅନ୍ତି; ସତ୍‌ପାତ୍ରରେ ଦାନ୍ ବିଫଳ ଯାଏନା । ଅବଶ୍ୟ ତାଙ୍କର ନିଷ୍ପତ୍ତି ପଛରେ ମୋ ସଙ୍ଗାତର ବୋଉ (ହିସାବରେ ମାଇଁ)ଙ୍କର ପରାମର୍ଶ ରହିଥିଲା । ତାଙ୍କ ଅନ୍ତେ ସେ ଜାଗାରେ ଘରଟିଏ କରିବାକୁ ସେ ସଦାସର୍ବଦା ମୋତେ ମଧ୍ୟ ପରାମର୍ଶ ଦେଉଥିଲେ । ତାଙ୍କର ପରାମର୍ଶ ନୁହେଁ ଉପଦେଶ କାର୍ଯ୍ୟକାରୀ ହୋଇଛି । ସେଠାରେ ଗଣିଆକେଇଙ୍କର ସ୍ମୃତି ଭବନ ଗଢ଼ିଉଠିଚି । ନିତ୍ୟ ଠାକୁର ସେବା ସହ ଭାଗବତ ପାଠ ହେଉଛି । ଭୋକଉପାସରେ ଥିବା ଯେ କୌଣସି ଲୋକଙ୍କୁ ଅଧାକେଜି ଚାଉଳ ମାଗଣା ଦେବାର ବନ୍ଦୋବସ୍ତ ମଧ୍ୟ ଅଛି । ସେ ଚାହିଁଥିଲେ ତାଙ୍କ ଢିଅରେ ଦୀପଟିଏ ଜଳୁ । ଏସବୁ ସେହି ମର୍ଯ୍ୟାଦାପୁରୁଷୋତ୍ତମ ରାମଙ୍କ ଶୁଭାଶିଷର ଫଳ; ଯାହାକି ମୋରି ମାଧ୍ୟମରେ କାର୍ଯ୍ୟକାରୀ ହୋଇଛି ମାତ୍ର ।

## ୧୧୭. ସବୁବେଳେ ଏଇ ମନରହେନି

ବାସ୍ତବରେ ମନର ଅବସ୍ଥା ପରିସ୍ଥିତିକୁ ନେଇ ବଦଳିଥାଏ । ଆଉ କେତେବେଳେ ପରିସ୍ଥିତି ମଧ୍ୟ ମନର ଅନୁରୂପ ହୋଇଥାଏ । ତେଣୁ ଭଲମନ ଥିବା ବେଳେ ଭଲକାମ କରାଇନେବା ବା କରିଯିବା ବୁଦ୍ଧିମାନର କର୍ତ୍ତବ୍ୟ । ନିଜେ ଭଲ ଥିବାବେଳେ ନିଜର ଓ ଅନ୍ୟର ମନ କାହିଁକିବା ବଦଳିବ ବୋଲି ନୀତିବାନ ଲୋକେ କହନ୍ତି ସତ; ବେଳ ପଡ଼ିଲେ ତାଙ୍କର ବିଶ୍ୱାସରେ ଧୂଳି ପଡ଼ିଥାଏ । ଅବଶ୍ୟ ସେ ସେଥିପାଇଁ ଦୁଃଖ କରନ୍ତିନି । ବରଂ ନିଜର ବିଶ୍ୱାସ ଉପରେ ସେ ଅଟଳ ରହନ୍ତି ।

ଗଣିଆକେଇଙ୍କ ବାରପତ୍ର ଦିନ ରାତିରେ ପାହାନ୍ତାରୁ ଉଠି ଚାକିରୀକୁ ଚାଲିଯିବାପାଇଁ ସବୁ ଜିନିଷ ଦାଣ୍ଡ ପିଣ୍ଡାରେ ପଡ଼ିଥିବା ବେଡ୍ଡିଂ ଓ ବ୍ୟାଗରେ ସଂଗ୍ରହ କରିବାର ଦେଖି ଭାଇନା କହିଲେ କିରେ ବାହାଘର କଥା କିଛି ନବୁଝି କିପରି ଚାଲିଯିବୁ ? ଝିଆରିକୁ ବୋଧେ ସେତେବେଳେ ୧୫ ବର୍ଷ ହୋଇଥିବ । ସେ ମାଟ୍ରିକ ପରୀକ୍ଷା ପାଇଁ ବଛାବଛି ପରୀକ୍ଷା ଦେଇଥାଏ । ଏତେ ଶୀଘ୍ର କି ବିଭାଘର ହେବ ବୋଲି କହିବାରେ ସେ ଜିଦ୍ ଧରିଲେ । ମାଆ ନ ଥିବା ପିଲାଟା କାହିଁକି ରହିବ ବୋଲି ମନରେ ଗୋଟିଏ ଧକ୍କା ଲାଗିଲା । କେଉଁଠି ପ୍ରସ୍ତାବ ଅଛି ବୋଲି ପଚାରିବାରେ ଭାଇନା ୩ଟି ପ୍ରସ୍ତାବ କହିଲେ । ଦୁଇଦିନରେ ସେ ୩ଟି ପ୍ରସ୍ତାବ ଯାଇ ବୁଝିବାରେ ସେଗୁଡ଼ିକ କେବଳ ଉଡ଼ାଖବର ବୋଲି ପ୍ରତିତ ହେଲା । ପ୍ରସ୍ତାବ ନୁହେଁ । ଏଇ ଅବସ୍ଥାରେ ବାହାଘର ବୁଝିକରିବାକୁ ସମୟ ଲାଗିବ କହିବାରେ ସେ କହିଲେ ଗହଗା ନରସିଂହପୁରରେ ବେଣୁ ବାବୁଙ୍କର ପୁଅଟିଏ ଅଛି । ସେ ତୋର ବନ୍ଧୁ ପରିଚିତ । ତୁ କହିଲେ ହେବ । ଚିଠିଦେଇ ତାଙ୍କୁ ନେଇଆସିବାକୁ କହିବାରେ ତା' ପରଦିନ ଭୋରରୁ ଯାଇ ଭାଇନା ତାଙ୍କୁ ନେଇ ଆସିଲେ । ବହୁଦିନେ ଦେଖା, ବହୁତ ଗପସପ ହେଲା । ସେ ଗାଧୋଇ

ଖାଇବସିବା ବେଳେ ପ୍ରସ୍ତାବଟି ଦେବାରେ ସେ ବହୁତ ଖୁସି ହୋଇ ଉଠିଲେ । ଖାଇସାରି ଝିଅ ଦେଖା ଟ୪୦.୦୦ ଦେଲେ । କହିଲେ ଆର ବର୍ଷକୁ କରିବା । ଏତିକି କହି ଟିକେ ବିଶ୍ରାମ ନେଇ ସେ ବାହାରିଲାବେଳକୁ ଭାଇନା କହିଲେ "ଏଇମାନ କ'ଣ ସବୁବେଳେ ରହିବ" । ଏବେ ବାହାଘର କରିବାକୁ କହ । ମୁଁ ଅମତ ହୋଇ ତାଙ୍କୁ ବୁଝାଇବାକୁ ମାଗୁଣିଆ ଦଦେଇ ଓ କାଳିଆକେଇଙ୍କୁ ଡ଼କାଇବାରେ ସେ ବାଧ୍ୟହୋଇ ଆମକୁ ନେଇ କଟକ ଗଲେ; ସେଇ ସଂଧ୍ୟାରେ । ରାତାରାତି ରଘୁବାବୁ ଝିଅ ଦେଖିବାକୁ ଆସିଲେ । ତା' ପରଦିନ ତାଙ୍କର ପରୀକ୍ଷା କାର୍ଯ୍ୟକ୍ରମ ଥାଏ । ରାତିରେ ନିଷ୍ଠିନ୍ତ କୋଇଲିରେ ଫେଲୁ ଡ଼ାକ୍ତରଖାନାରେ ତାଙ୍କ ଶୋଇବା ପାଇଁ ବେଡ଼ିଂ ରଖାଗଲା । ସେଠିକା କେଳାସାହିର ଗୋଟେ ରିକ୍ସାରେ ଆସି ସେ ରାତାରାତି ଝିଅ ଦେଖି ଗଲେ । ତା'ପରେ ତାଙ୍କ ବାପା ଓ ମାଙ୍କ ସହ କଥାହୋଇ ନିର୍ବନ୍ଧଦିନ ଧାର୍ଯ୍ୟହେଲା । ରଘୁନାଥଙ୍କ ପାଖରେ ନିର୍ବନ୍ଧକରି ଫେରିବାପରେ ଖବର ଆସିଲା ଯେ ଝିଅ କଳା ଯୋଗୁଁ ରଘୁବାବୁ ଅରାଜି । ମୁଣ୍ଡରେ ବଜ୍ର ପଡ଼ିଲା । ସଂଧ୍ୟାରେ ସମସ୍ତେ ବସି "ମଙ୍ଗଳ ଭବନ ଅମଙ୍ଗଳ ହାରି -ଦ୍ରବୌ ସୋ ଦଶରଥ ଅଜିର ବିହାରୀ" ଆବୃତ୍ତିକଲୁଁ । ସକାଳୁ ଯାଇ ତାଙ୍କ ମାଆଙ୍କୁ ଆଣି ଝିଅ ଦେଖାଇବାରେ ସେ ଖୁବ୍ ଖୁସୀ ହୋଇ ପୁଣି ଟ୫୦.୦୦ ଝିଅଦେଖା ଦେଇ କଟକ ଯାଇ ପୁଅକୁ ତାର ଭୁଲବୁଝାଇଲେ ।ଶେଷରେ ବିଭାଘର ସ୍ଥିର ହେଲା । ଆଉ ଥାଏ ମାତ୍ର ୫ଦିନ ।

ଶୁଧିପରେ ସର୍ବସ୍ୱାନ୍ତ ଅବସ୍ଥାରେ ଥିବାରୁ ପଇସା ପତ୍ର ବ୍ୟବସ୍ଥା କ'ଣ ବୋଲି ଭାଇନାଙ୍କୁ ପଚାରିବାରେ ସେ ପାଞ୍ଚହଜାର ଟଙ୍କା ଓ ତା ମା'ର ଥିବା ସୁନାଗହଣା ତକ ଦେବାକୁ କହିଲେ । ପରଦିନ ଯାଇ ତାଙ୍କ ବଣିଆ ବନ୍ଧୁ ପାଖରୁ ବୁଲି ଆସି ଖବର ଦେଲେ ଯେ ତା ଘର ପୋଡ଼ି ଯାଇଛି । ସେ କିଛି କରିପାରିବନି । ସାନଭାଇ ତାପରେ ତାର ବଣିଆ ବନ୍ଧୁଘରକୁ ଯାଇ ଫେରିଆସି ଖବର ଦେଲେ ଯେ ତାର ଚୋରୀ ହୋଇଛି । ସେ ମଧ୍ୟ କିଛି ସାହାଯ୍ୟ କରିପାରିବନି । ମୁଣ୍ଡରେ ଚଡ଼କ ପଡ଼ିଲା । କଟକ ବାହାରି ଚିହ୍ନା ଦୋକାନରେ ଗହଣା ମୂଲକରି କିଛି ବାକୀ ରଖିବାକୁ କହିବାରେ ସେ ମଧ ଅରାଜି ହେଲା । ମାତୃଭୂମିର ସଂପାଦକ ସ୍ୱର୍ଗତ ବିଚିତ୍ରାନନ୍ଦ କରଙ୍କ ପାଖକୁ ଟଙ୍କା ଧାରପାଇଁ ଯିବା ବେଳକୁ ତାଙ୍କ କୋଷାଧକ୍ଷ ବନ୍ଦବାନ୍ଦ କରି ଚାଲିଗଲେଣି । "ନିରାଶ୍ରୟଂ ମାଂ ଜଗଦୀଶ ରକ୍ଷ" ସ୍ମରଣ କରି ସାରସ୍ୱତ ପ୍ରେସ୍‌ର ଦ୍ୱାର ଦେଶରେ ଠିଆହୋଇ ଥିବା ସମୟରେ ତ୍ରୈଲେକ୍ୟବାବୁ ରିକ୍ସାରେ ଯାଉଥିବା ବେଳେ ଏଠି କାହିଁକି ଠିଆ ହୋଇଛନ୍ତି ବୋଲି ପଚାରିବାରେ ତାଙ୍କୁ ସବୁ ବିବରଣି କହିବାରୁ ସେ ସାଙ୍ଗରେ ନେଇ ନିଅଁଟ ଥିବା ସବୁ ଟଙ୍କା ଦେଲେ । ରାତିରେ ଅଳଙ୍କାର କିଣି ସାରିବାପରେ ସାନଭାଇ ପହଞ୍ଚିବାରୁ ସାଙ୍ଗ ହୋଇ ଗାଁକୁ ଫେରିଲୁ । ସେଦିନ ହେଉଛି ବାଟଘସ ବା ମଙ୍ଗଳପାଗର

ପୂର୍ବଦିନ ଶନିବାର । ରବିବାର ଗହଣା ଦୋକାନ ବନ୍ଦ ଓ ସୋମାବାର ବିଭାଘର । ଦେବଦୂତ ପରି ତ୍ରୈଲୋକ୍ୟବାବୁ ଯଦି ପହଞ୍ଚି ଯଥୋଚିତ ସାହାଯ୍ୟ ନକରିଥାନ୍ତେ ତେବେ ଅବସ୍ଥା କ'ଣ ହୋଇଥାନ୍ତା ? ପ୍ରକାଶ ଯୋଗ୍ୟ ଯେ, ତ୍ରୈଲୋକ୍ୟ ବାବୁଙ୍କ ଦୋକାନରେ ଥିବା ଶ୍ରୀ ମା'ଙ୍କୁ ପ୍ରଣାମ କରି ଅତି ଖୁସିରେ ପଳାଇବା ବେଳେ ଗୋଟେ ଖାତରେ ଗଳି ପଡିବାରେ ଜୀବନ ସଂଶୟରେ ମା' ବୋଲି ଡାକିଥିବାରୁ କିଚ୍ଛି ବୋଲି କିଚ୍ଛି ଆଘାତ ହୋଇ ନଥିଲା ।

ଗହଣା ତ' ସବୁ ଯୋଗାଇ ଦେଲେ ଆଉ ରହିଲା ଭାଇଙ୍କ ପାଞ୍ଚହଜାର । ଏକଥା ପଚାରିବାରେ ସେ କୁଆଡ଼େ ହଜିଗଲେ । କାହିଁକି ପଚାରିଲି ବୋଲି ମନରେ ଦୁଃଖ ହେଲା । କାଲେ କ'ଣ କରିବସିବେ । ଗାଁ ସାରା ଖୋଜିଖୋଜି ଯାଇ ତାଙ୍କ ସାଙ୍ଗ କେଶବ ମିଶ୍ରଙ୍କ ଚଉଁରାମୂଳେ ବସିଥିବାର ଦେଖିଲି । ସେ ଧାରଣା ଦେଇଛନ୍ତି ବୋଲି କେଶବ ମିଶ୍ର ଥଟାରେ କହିବାରୁ ସବୁକଥା ବୁଝିଗଲି । "ପରହସ୍ତ ଗତ ଧନ" କାର୍ଯ୍ୟକାଳରେ କାମକାର୍ଯ୍ୟରେ ଆସେନି । ହାତଧରି ଭାଇନାଙ୍କୁ ସେଠୁ ଉଠାଇ ଆଣିଲାବେଳେ କହି ଆସିଲି ଯେ ମାତୃହରା ପିଲାଟାର ବାହାଘର ହେବ । ଯଦି ପାରିବ ସାହାଯ୍ୟ କରିବ । ଏତିକିରେ ମନଟଳିଗଲା । ଦୋକାନରୁ ସଉଦା ବାକୀ କରେଇ ଦେବାକୁ ସେ ରାଜି ହୋଇଗଲେ ।

ବାକି ଯୌତୁକ ଟଙ୍କା ପାଞ୍ଚହଜାର ଦରକାର । ଅନାନ୍ୟ ଖର୍ଚ୍ଚ ଅଛି । କେଉଁଠୁ ଆସିବ ? ମୋ ନିଜ ରୋଜଗାରରୁ କିଣିଥିବା ଜମି ବିକିଦେବାକୁ କହିବାରେ ଭାଇନା ରାଜି ହେଲେନି । କାରଣ ତାହା ତିନିଭାଇଙ୍କ ନାମରେ କିଣାଯାଇଥିଲା ଓ ସେ ଫଳଭୋକ୍ତା ଥିଲେ । ଶେଷରେ ମୋରି ମୁଣ୍ଡରେଟାଳିଦେଲେ । ଧ୍ରୁବ ମିଶ୍ରଠାରୁ ତିନିହଜାର ଓ ସାନ ଭଉଣୀଘରୁ ଦୁଇହଜାର ଏବଂ ଅନ୍ୟମାନଙ୍କଠାରୁ ଧାର ଅଣାଗଲା । କଥା ହେଲା ଧ୍ରୁବଘର ଓ ଭଉଣୀ ଘର ଟଙ୍କା ଭାଇନା ସୁଝିବେ ଓ ଅନ୍ୟଗୁଡ଼ିକ ଆମେ ଦୁଇଭାଇ ସୁଝିବୁ । "ନିରାଶ୍ରୟଂ ମାଂ ଜଗଦୀଶ ରକ୍ଷ ।" ପ୍ରକୃତରେ ଜଗନ୍ନାଥଙ୍କ ଦୟାରୁ ଟଙ୍କା ପଇସା ମିଳିଗଲା । କେବଳ ବିଶ୍ୱାସରେ । ତା ପଛରେ ଠାକୁରଙ୍କ ଆଶିର୍ବାଦ ଓ ମଣିଷର ବିଶ୍ୱାସ ରହିଛି । ଏଥିରେ କାହାରି ବାହାଦୁରି ନାହିଁ । ମାତୃହରା ପିଲାଟିର ବିବାହ ଉପଯୁକ୍ତ ସ୍ଥାନରେ ସେହି ଦୟାମୟଙ୍କ ସଂଯୋଜନାରେ ବେଣୁବାବୁଙ୍କ ସହ ଥିବା ପୂର୍ବସଂପର୍କରୁ ହୋଇଗଲା ନି ଯେ; ଠାକୁରଙ୍କ ବାନା ଉଡ଼ିଲା କାଳ କାଳକୁ । ବେଣୁ ବାବୁଙ୍କ ପରି ସ୍ନେହୀବଂଧୁ ମୋ ଜୀବନରେ ସେହି ଏକା । ଆଉ ରଘୁ ବାବୁଙ୍କ ପରି ଜ୍ୱାଇଁ ବାଣୀବିହାରର ସଂସ୍କୃତ ପ୍ରଫେସର ଶ୍ରୀ ରଘୁନାଥ ପଣ୍ଡାଙ୍କ ପରି ଭଲ ମଣିଷଟିଏ ମଧ ମିଳିବା କଷ୍ଟସାଧ । ବଂଧୁରୂପରେ ଜଗନ୍ନାଥ ଏଠି ନିଜେ ଅବତରି ଆସି ଏହିତପ୍ର ବୈତରଣୀ ପାର କରିଦେଲେ ।

## ୧୧୮. କାଣିଆ କପିଳା

ମଣିଷଠାରୁ ଆଉ ବିଶ୍ୱାସୀ ନାହିଁ କି ମଣିଷଠାରୁ ଆଉ ଅବିଶ୍ୱାସୀ କେହିନାହିଁ । କାମ ପଡ଼ିବାବେଳେ ସବୁ ହଁ ହଁ । କାମ ସରିଗଲେ ଆଉ କିଏ କାହାକୁ ପାଏ ନା ଦେଖେ । ରାସ୍ତାରେ ଦେଖିଲେ ମଧ ନଦେଖିଲା ପରି ମୁହଁ ବୁଲାଇ ଅନ୍ୟ ମନସ୍କପରି ଚାଲିଯାନ୍ତି । ଏହା ସଂସାରର ନିୟମ । କଳିଯୁଗର ନୀତି ଓ ଏହି କଳି ସମୁଦ୍ରକୁ ମନ୍ଥନ କରି ଏହାରି ଭିତରୁ ଅମୃତ ବାହାର କରି ତାକୁ ଆକଣ୍ଠ ପାନକରି ଆନନ୍ଦପାଇବାକୁ ହେବ ।

ବେଣୁବାବୁ ଥିଲେ ଶିକ୍ଷକ । ତାଙ୍କର ବଂଧୁ ଓ ବଂଶଜାତି ଅଧିକାଂଶ ଥିଲେ ଶିକ୍ଷକ । ସେମାନେ ପୁଣି ମୁଁ କେନ୍ଦ୍ରାପଡ଼ାରେ ଥିବା ବେଳର ଅତି ଆତ୍ମୀୟ । ତେଣୁ ତାଙ୍କ ଚର୍ଚ୍ଚା କରିବାରେ କିଛି ଅସୁବିଧା ହେଲାନି । ଖୁସିରେ ଧୁମ୍ ଧାମ୍‌ରେ ବିଭାଘର ହୋଇଗଲା । ଯଦୁବାବୁ (ସାନ ଭିଣୋଇ) ଓ ରଥକେଇ ପଡ଼ିଶାଙ୍କର ଦୈହିକ ସାହାଯ୍ୟରେ ସବୁକାମ ଉଠିଗଲା । ଘରୁ ଆସିବା ବେଳେ କହି ଆସିଲିଯେ ଭଉଣୀଘର ଟଙ୍କା ଆଗଦେଇଦେବ । ସେ ଯେମିତି ଖୁଣ୍ଟା ନଶୁଣେ ।

କେତେମାସ ଚାଲିଗଲା । ଭଉଣୀଠାରୁ ଚିଠି ଆସି ପହଞ୍ଚିଲା ଡେ଼ରି କଲେ ଖୁଣ୍ଟା ଶୁଣିବାକୁ ହେବ । ତେଣୁ ଶଳା ଅଜୁଆ ହାତରେ ଟଙ୍କା ଦେଇ ତାକୁ ଆଗ ଶୁଝିବାକୁ ପଡ଼ିଲା । ଭାଇନାକାଳେ କ'ଣ ଅଙ୍କ କେତେ ଟଙ୍କା ଆଗରୁ ଦେଇଥିଲେ । ଏହି ସୁଯୋଗରେ ସେ ମଧ ତାକୁ ଫେରାଇ ଆଣିଲେ । ତା'ପରେ ଧୁବ ପାଳି । ସେ ବାଗମାର ଦୌଡ଼ିଲା । ଏତେ ଯାଏ ଗଲା ଯେ ସେ ଭାଇନାଙ୍କୁ ମାଗିବାକୁ ମଧ ନାରଜ । ଶେଷରେ ପୁଅ ବ୍ରତଘର ବାସୀ ଜଣେ ବନ୍ଧୁଙ୍କଠାରୁ ଟଙ୍କା ଧାର ଆଣି ୨ବର୍ଷ ପରେ ତାକୁ ମଧ ସୁଝିବାକୁ ପଡ଼ିଲା । ସେ ଆମ ଲୋକା କକେଇଙ୍କର ବି ଜ୍ୱାଇଁ ହିସାବରେ ତା'ସହ ଥିବା ସଦ୍ଭାବ ସେହିଦିନୁ କଟିଗଲା କହିଲେ ଚଳେ । ସାନଭାଇ କେବେ ଧାରସୁଝାର ନାମଗନ୍ଧ ଧରି ନାହିଁ। ଦିନେବି ସେ ପଚାରିନି । ବଡ଼ଭାଇଙ୍କ ହାଲ ତ ଏପରି; ତେଣୁ କାହାକୁ କହିବା ? ଆପେ ଅର୍ଜିଥିବା କର୍ମଫଳ କର୍ମକୁ ଆଦରି ସହିବାକୁ ହେଲା । ନିଜପିଲାଙ୍କ ଦାନାରୁ କାଟି ସବୁତକ ଧାର ୩ବର୍ଷଲାଗି ସୁଝିବାରେ ପିଲାଙ୍କୁ ଦିନେ ଭଲ ଜାମା ଖଣ୍ଡେ ମଧ୍ୟ ପିନ୍ଧିବାକୁ କିଣି ଦେଇନି । ଦୈନିକ ଭାତ ଡାଲମା ଚୁଡା ଦୁଇ ତିଅଣ ମଧ୍ୟ ଘରେ ହୋଇନି । ଓଲଟି ସାନଭାଇ ପଶୁଡ଼ାକ୍ତର ଖୁଣ୍ଟାଦେବାର ଏକାନ ଶୁଣିଛି ଯେ ପିଲାଙ୍କୁ ଯଦି କ୍ଷୀର ଟିକେ କି ଭଲକରି ଖାଇବା ପିନ୍ଧିବାକୁ ଦେଇ ପାରିବନି ତେବେ ଜନ୍ମ ଦେବ କାହିଁକି ? ହେଲେ ନିଜର ଜନ୍ମକଲା ୫ଟିପିଲା ସାଙ୍ଗକୁ ବାପାଙ୍କ ଜନ୍ମକଲା ୫ଟିଙ୍କର ଯେ ଦାୟିତ୍ୱ ଥିଲା ତାହା ସେ କ'ଣ ବୁଝିବ ? ତାକୁ ତ ପାଠପଢ଼ାଗଲା । ବିଭାକରା ଗଲା ।



ସାନଭାଇ ଡ଼ା. ବଳରାମ
ଦ୍ୱିବେଦୀ

ସେ ତା'ର ଚକିରୀକରି ତା ପିଲାଙ୍କୁଆଧରି ରହିଲା । ନିଜଦୁଃଖ ସୁଖ ବୁଝିବାକୁ ଯାହାକୁ ସମୟ ନାହିଁ ଓ ଯାହାର ଶକ୍ତିନାହିଁ ସେ ଅନ୍ୟ କଥା କ'ଣ ବୁଝିବ ? ତେଣୁ ସେ ଏପରି କହିବା ସ୍ୱାଭାବିକ୍ । ସଂପୂର୍ଣ୍ଣ ନିଃସ୍ୱ ଅବସ୍ଥାରେ ଦୁଇଭଉଣୀ, ତିନିଭାଇ ଓ ଝିଆରୀର ବିଭାଘର । ତା ସାଙ୍ଗକୁ ନିଜର ଓ ୩ଭାଇ ଭଉଣୀଙ୍କର ପାଠପଢ଼ା ନିଜର ୫ଟି ପିଲାଙ୍କୁ, ବଢ଼ାଇବା ଓ ପଢ଼ାଇବା ସାଙ୍ଗକୁ ଘର କରିବା, ଜମିକିଣିବା, କୂଅଖୋଳିବା, ପାଇଖାନା କରିବା ବଂଧୁ ବାନ୍ଧବଙ୍କ ନିମିତ୍ୟ ପର୍ବରେ ଭାର ବେଭାର ଦେବା ସବୁକାମ କରିବାରେ କେତେ କଷ୍ଟ, କି ଦୁଃଖ, କେତେ ଖର୍ଚ୍ଚ ଓ କେତେଶ୍ରମ ଜାଣିଆର ସେ ଶ୍ରମ ଆଉ କ'ଣ କପିଳା ବୁଝିଲା ? ସେହି ଏକା ଦୁଃଖୀ ବାନ୍ଧବଙ୍କୁ ଜୀବନର ବନ୍ଧୁକରି ଏକଲା ଚଲୋ ନୀତିରେ ଏ ଦୁଃଖର ସାଗରକୁ ପାରି ହେବାକୁ ପଡ଼ିଥିଲା ଓ ପଡୁଛି । ସବୁଯାଉ, ତାଙ୍କୁ ବିସ୍ମରଣ ନହେଉ । ସେ ଥିଲେ ସବୁ ଅଛି । ତାଙ୍କରି ଅପାର କରୁଣାରୁ ପେଟ ଅପୁରା ରହିନି କି ଗାଣ୍ଡି ଲଙ୍ଗଳା ରହିନି । ବରଂ ତାଙ୍କ ଦୟାରେ ସବୁକାମ ସହଜରେ ଓ ସରଳରେ ହୋଇ ଯାଇଛି । ଏ ଦେହ, ଏ ଧନ, ଏ ମନ ତାଙ୍କ ପାଦରେ ସମର୍ପିତ । ତେଣୁ ତାଙ୍କ ଦେହ ତାଙ୍କ କାମ କରିଛି, ତାଙ୍କରି ନିର୍ଦ୍ଦେଶରେ । "ଧନ୍ୟ କରୁଣା ତୋହର .. ହେ କରୁଣା ସିନ୍ଧୁ କାହିଁ ତାର ପଟାନ୍ତର" ।

## ୧୧୯. "ନିରାମୟ ମଧ୍ୟେ ଜ୍ୟୋତି"

ଯେଉଁ ଲୋକଟି ବୋଝ ବୋହିପାରେ ତା' ମୁଣ୍ଡଉପରେ ଅଧିକ ଭାର ଲଦି ଦିଆଯାଏ । ଏ ହେଉଛି ଆମ ସଂସାରର ନିୟମ । ସେଥିପାଇଁ ତଥାକଥିତ ଚାଲାକ୍ ଲୋକମାନେ ମୁଣ୍ଡକୁ ହଲାଇ ଦେଇ ବୋଝକୁ ଫୋପାଡ଼ିଦେଇ ବୋହି ପାରୁନାହିଁ କହି

ଛଳନାରେ ଧକେଇ କାନ୍ଦନ୍ତି । ତାଙ୍କୁ ବୋଝ ଦେଲାବେଳେ ସେଥିପାଇଁ ହାଲୁକା ବୋଝ ଦିଆଯାଏ । ଆଉ ଯିଏ କର୍ମକୁ ଆଦରି କର୍ତ୍ତବ୍ୟ ଜ୍ଞାନରେ ମୁଣ୍ଡଝାଳକୁ ତୁଣ୍ଡରେ ମାରି ବୋଝକୁ ବୋହିଚାଲେ ତା ଉପରେ ଆଉ ଦୁଇବିଡ଼ା ଅଧିକା ଲଦାଯାଏ ।

ଠାକୁରମୁଣ୍ଡାର ଦୈବୀ ଏବଂ ମଣିଷକୃତ ବିପର୍ଯ୍ୟୟରେ ଦିନରାତି ନିଜେଖଟି ସବୁ ସହକର୍ମୀଙ୍କୁ ଖଟାଇ ଟିକେ ଶାନ୍ତିରେ ନିଃଶ୍ୱାସ ମାରିବା ବେଳକୁ ୧୯୭୬ରେ ବଦଳି ହେଲା ବାଂଶପାଳର ଭୂୟାଁପୀଢ଼ ଓ ଜୁଆଙ୍ଗପୀଢ଼କୁ । ନକ୍ସାଦେଖି ଘରକୁ ପାଖ ଓ ଜିଲ୍ଲାକୁ ପାଖବୋଲି ଅନୁମାନ କରି ଏବଂ ଏଠି ୪ବର୍ଷ ରହିବା ପରେ କେଉଁ ଦୂରକୁ ଯିବା ଅପେକ୍ଷା ବାଂଶପାଳକୁ ବାହରିପଡ଼ିବା ଦିନ ଜିଲ୍ଲାପାଳଙ୍କଠାରୁ ତା'ର ଆସିଲା ଦାୟିତ୍ୱ ହସ୍ତାନ୍ତର ନକରିବାକୁ । ତାକୁ ଏଡ଼ିଦେଇ ପିଛିଲା ତାରିଖରେ ଦାୟିତ୍ୱ ବୁଝାଇ ଦେଇ ନୂଆସ୍ଥାନକୁ ବାହାରିଲା ବେଳକୁ ରାସ୍ତାର ଦୁଇଧାରରେ ଯାତ୍ରା ଜମିଯାଇଥିଲା ଲୋକଙ୍କର ।

ସାଙ୍ଗରେ ଯାଇଥିଲେ ପ୍ରଧାନ ଶିକ୍ଷକ ଗିରିଶ ଚନ୍ଦ୍ର ପଟ୍ଟନାୟକ । ସଂଧ୍ୟାରେ କଟିଆ କେଉଁଝର ଉପଜିଲ୍ଲାପାଳଙ୍କ ଘର ପାଖରେ ଜିପରେ ନେଇଛାଡ଼ି ଆସିବା ବେଳେ ବୋଧେ କିଛି ଟଙ୍କା ଗୋଟିଏ କାଗଜରେ ଗୁଡାଇ ବଢାଇଲା ବେଳେ ଯେ ବିଶ୍ୱକୁ ପାଳନ କରୁଛନ୍ତି, ସେମଧ୍ୟ ଆମକୁ ସୃଷ୍ଟି କରିଛନ୍ତି ଓ ଏ କ'ଣ ବୋଲି ପ୍ରଶ୍ନ କରିବାରେ ଯେ ଆପଣଙ୍କ ଦାନବୋଲି କହିଲା । ଦାନଦେଇ ଆଉ କ'ଣ କିଏ ଫେରାଇନିଏ ? ଏତକ କହିତାକୁ ଫେରାଇ ଦେବାରେ ସେ କାନ୍ଦକାନ୍ଦ ହୋଇ ଉପରକୁ ହାତଟେକି ଆଲ୍ଲାଙ୍କ ପାଖରେ ମଙ୍ଗଳକାମନା କରି ଫେରି ଆସିଲା ।

ସଂଧ୍ୟାରେ ଉପଜିଲ୍ଲାପାଳଙ୍କୁ ସାକ୍ଷାତ କରିବାରେ ସେ କହିଲେ ଆପଣ କ'ଣ ଏ ରାତିରେ ପିଲାଙ୍କୁ ଧରି ବାଂଶପାଳ ଯିବେ ? ଆପଣ ବୋଧହୁଏ ନିରାଶ୍ରୟ । ହେଉ ଯାନ୍ତୁ । ଏହାକହି ତାଙ୍କ ଜିପ୍‌ରେ ଆମକୁ ପଠାଇ ଦେଲେ । ରାତିରେ ପହଞ୍ଚିଲାବେଳକୁ ଠାକୁରମୁଣ୍ଡାରୁ ଯାଇଥିବା ପିଅନଟି ରାନ୍ଧିରଖିଥିଲା । ଖାଇ ଶୋଇପଡ଼ିଲୁ । ସକାଳୁ ଉଠି ମୁହଁ ଧୋଇବାକୁ ପାଣିଟିକେ ନାହିଁ । କୂଅରେ ସାପବେଙ୍ଗ ଓ ଡ଼ାଳ ପଡିପଚିଛି । ରିହବାଘରେ ଶାଳଗଜା କଟାହୋଇ ସମତଳ କରାଯାଇଛି । ଦୁଆର ଓ ବାଡ଼ି କେବଳ ବଣ । ବୁଝିବାରେ ଜଣାଗଲାଯେ ଏଠାରେ ବ୍ଲକ ହେବାଦିନୁ କେହି କେବେ ରହିନଥିଲେ । ଏଇ ପ୍ରଥମ । ବ୍ଲକ କଲୋନିରେ ବିଡ଼ିଓ ଏକାକୁ ସାମନାରେ ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ରରେ ଗୋଟିଏ ମାତ୍ର କେରଳି ନର୍ସ । ବ୍ଲକ ଜଗୁଆଳି କେବଳ ଭରସା । ସକାଳେ ବୈତରଣୀ କୂଳକୁ ଯାଇ ଝାଡ଼ାଗଲୁ । ଦାନ୍ତଘସିଲୁ ଓ ଗାଧୋଇ ବାଲ୍ଟିରେ ପାଣିଧରି ଫେରିଲୁ । ଏ ଦଶାଦେଖି ଗିରୀଶବାବୁ କାନ୍ଦିପକାଇ କହିଲେ; ଦ୍ୱିବେଦୀବାବୁ ! ଆପଣ କଥାନମାନି କେଉଁଠୁ ଆସି କେଉଁଠି ପଡ଼ିଲେ ? ଏଠି ପିଲାଙ୍କୁ ନେଇ ଚଳିବେ କେମିତି ? ଠାକୁରେ ଆପଣଙ୍କୁ ଏକା ଭରସା ହୁଅନ୍ତୁ ।

କୂଅନାହିଁ, ସବୁ ଦିନିଆରାସ୍ତା ନାହିଁ, ବସ ନାହିଁ, ରିକ୍ସା ନାହିଁ, ଦୋକାନ ନାହିଁ, ହାଟନାହିଁ, ପୋଷ୍ଟ ଅଫିସ ନାହିଁ, ତା'ର ନାହିଁ କି ବେତାର ନାହିଁ, ସ୍କୁଲ ନାହିଁକି କଲେଜ ନାହିଁ, ବିଜୁଳି ନାହିଁକି, କିରୋସିନି ନାହିଁ ଓ କେହି ଗୋଟିଏ କର୍ମଚାରୀ ଏଠିରହୁନାହାନ୍ତି । ସବୁ ଖାଲି ନାହିଁ ନାହିଁର ଘର । "ନିରାମୟ ମଧ୍ୟେ ଜ୍ୟୋତି" ପରି ମନରେ ଗୋଟିଏ ଦମ୍ଭଥାଏ । ବିଡ଼ିଓର କାର୍ଯ୍ୟ ଲୋକମାନଙ୍କପାଇଁ । କୁଆଙ୍ଗ ହେଉ ବା ଭୂୟା ହୁଅନ୍ତୁ ଲୋକତ ଅଛନ୍ତି । ଜନତାହିଁ ଜନାର୍ଦ୍ଦନ । ତାଙ୍କରି ସେବାହିଁ ମାଧବ ସେବା । ସେମାନେ ମଧ୍ୟ ଆମପରି ମଣିଷ । ଏ ପରି ବ୍ୟବସ୍ଥାରେ ସେମାନେ ଯଦି ଚଳୁଛନ୍ତି ଆମେ କାହିଁକି ନଚଳିବା ? ଯେଉଁ ସୃଷ୍ଟିକର୍ତ୍ତା ତାଙ୍କୁ ଓ ଆମ୍ଭଙ୍କୁ ସୃଷ୍ଟି କରିଛନ୍ତି ସେ ଅବଶ୍ୟ ପାଳନ କରିବେ । ତାଙ୍କରି ଉପରେ ସଂପୂର୍ଣ୍ଣ ନିର୍ଭର କରି କାମ ଆରମ୍ଭ ହେଲା ଓ ସେ ମଧ୍ୟ ପାଖେ ପାଖେ ଛାଇପରି ରହି ସଦା ସହାୟ ହେଉଥିଲେ; ଏଥିରେ ସନ୍ଦେହ ନାହିଁ ।

## ୧ ୨ ୦. ବିଡ଼ିଓ ହାଟ ବସିଲା ଓ ଠାକୁରଙ୍କ ଜୈତ୍ରବାନା ଉଡିଲା

ମଣିଷ ଗୋଟିଏ ସାମାଜିକ ଜୀବ ବା ପ୍ରାଣୀ । ସେ ନିଜେତାର ପରିବେଶକୁ ଗଢ଼େ । କେତେକ ଭାଗ୍ୟବାନ ବ୍ୟକ୍ତି ଅଛନ୍ତି ; ତାଙ୍କପାଇଁ ସବୁ ଗଢ଼ାହୋଇ ଥୁଆଯାଇଥାଏ । ସେମାନେ ଆରାମରେ ଉପଭୋଗ କରନ୍ତି । ଆଉ କେତେକ ନିଜେ ନିଜର ପରିବେଶକୁ ଗଢ଼ନ୍ତି ନିଜହାତରେ ନିଜେ ଚଳିବାକୁ । ଏମିତି ମଧ୍ୟ ହୁଏ ଯେ ଗଢ଼ିସାରିବା ବେଳକୁ ଆୟୁ ନଥାଏ । ମୃତ୍ୟୁ ହଏବା ବଦଳି ହୋଇଥାଏ ବା ପରିସ୍ଥିତି ବଦଳିଯାଏ । ତାଙ୍କର କାମ ହେଲା ଗଢ଼ିବା । ଭୋଗ କରିବା ତାଙ୍କ ଭାଗ୍ୟରେ ନଥାଏ ।

୧ ୯ ୭ ୪ ଅଗଷ୍ଟ ଛଅ ତାରିଖରେ ବାଂଶପାଳରେ ଯୋଗଦେବା ପରେ ପ୍ରଥମେ ଘର ସଜାଡ଼ିବାକୁ ଆରମ୍ଭକରି ସବୁ ସହକର୍ମୀଙ୍କ ସହ ବସି ଏକମନରେ କାମକରି କାମ କରାଯିବାରେ ନିଜ ମଧ୍ୟରେ ଏକ ସଂପର୍କର ସେତୁ ତୋଳିବାକୁ ସ୍ଥିର ହେଲା । ସମସ୍ତେ ରାଜି ହେଲେ ମଧ୍ୟ ସମବାୟ ସଂପ୍ରସାରଣ ଅଧିକାରୀ ଅସହଯୋଗ ଘୋଷଣାକଲେ । ସେହିଦିନପୁଣି ସଭାପତିଙ୍କ ସହ ବସି ସେହି ବାଂଶପାଳ ବ୍ଲକ ପାଇଁ ୨ ୧ ଟି ସର୍ବ ନିମ୍ନ ଆବଶ୍ୟକତା ବିଶିଷ୍ଟ କାମ ତାଲିକା ପ୍ରସ୍ତୁତ କରି ସମସ୍ତେ ସବୁବେଳେ ତାକୁହିଁ କାର୍ଯ୍ୟକାରୀ କରିବାକୁ ଚେଷ୍ଟିତ ହେବାର ସ୍ଥିର ହେଲା ।

ସେହିଦିନହିଁ ସ୍ଥିର ହେଲାଯେ ସମସ୍ତେ ପାଞ୍ଚଟଙ୍କାକରି ଚାନ୍ଦାଦେଇ ଅଗଷ୍ଟପନ୍ଦର ଗୁରୁବାର ଦିନ ଏକ ସାପ୍ତାହିକ ହାଟ ପ୍ରତିଷ୍ଠା କରାଯିବ । ତାଳପତ୍ରରେ ଚାଳବାନ୍ଧି ଜଣେ ଲୋକକୁ ଟଙ୍କାଦେଇ ଚାଦୋକାନଟିଏ ଆରମ୍ଭ କରାଗଲା । ପାଖ ଆଶ୍ରମର ପିଲାଏ ହାଟ ଦେଖିବାକୁ ଆସିଲେ । ହାଟ ଆରମ୍ଭରେ ପ୍ରଚୁର ବର୍ଷାହେଲା । ଚା ଚୁଲି ଲିଭିଗଲା । ପୁଣିଥରେ ଜଳାଇ ଚା କରାଗଲା । କିରାଣି ହରିବାବୁଙ୍କ ଅଗଣାରୁ ଅଣାଯାଇ ଗୋଟିଏ ହରିବୋଲିଆ

ବରଗଛର ଘରା ରୋପଣ କରାଗଲା ହାଟ ମଝିରେ । ଏବେ ସେ ହାଟଟି ଗୋଟିଏ ବିରାଟ ସାପ୍ତାହିକ ହାଟରେ ପରିଣତ ହୋଇଛି ଓ ବିଡିଓ ହାଟ ବୋଲି ନାମ ପାଇଚ୍ଛି । ବହୁସଂଖ୍ୟାରେ ଗାଡ଼ିନେଇ ବେପାରିମାନେ ଲୁଗା, ଲୁଣ ଓ଼ ଅନ୍ୟାନ୍ୟ ତେଜରାତି ଓ ମନୋହାରୀ ଜିନିଷ ବିକିବାକୁ ଏବଂ ସ୍ଥାନୀୟ କୃଷି ତଥା ଜଙ୍ଗଲ ଜାତ ଦ୍ରବ୍ୟ କିଣିବାକୁ ଆସୁଛନ୍ତି । ସେହିପରି ଦେଢ଼କିଲୋମିଟର ଦୂରରେ ଥିବା ଏକ ଅଚଳନ୍ତି ଦୋକାନକୁ ଘରଦେଇ ବ୍ଲକ ପାଖକୁ ଅଣାଗଲା ; ଯେଉଁଠୁ ଅନ୍ତତଃ ତେଲ ଲୁଣ ମିଳିପାରିଲା ।

ଗୋଟିଏ ଚାଳଘରେ ପ୍ରାୟ ଦେଢ଼କିଲୋମିଟର ଦୂରରେ ଚଳୁଥିବା ପୋଷ୍ଟ ଅଫିସଟିକୁ ବ୍ଲକ ପାଖୁ ଘର ସୁବିଧାକରି ଅଣାଗଲା । ଯୋଗକୁ ତେଲକୋଇକୁ ଟଣାଯାଉଥିବା ଫୋନତାର ମଧ୍ୟ ବାଂଶପାଳ ଦେଇ ଟଣାଗଲା । ରାସ୍ତା କମିଗଲା ଓ ଖର୍ଚ୍ଚମଧ୍ୟ କମିବା ସହ ଗୋଟିକରୁ ଆଉଗୋଟିଏ ଆଦିବାସୀ ଅଞ୍ଚଳ ସଂଯୋଗ ହୋଇ ପାରିଲା । ସେଥିପାଇଁ ଆମ ଗାଁ ପାଖର ଜଣେ ସୁପର ଭାଇଜରଙ୍କ ସାହାଯ୍ୟ ଏବଂ ତାଙ୍କ ଜିଲ୍ଲାପନ୍ତୀଙ୍କ ସମର୍ଥନ ପାଇଁ ତାଙ୍କୁ ଗୋଟିଏ ଛୋଟ ଭୋଜିରେ ଧନ୍ୟବାଦ ଦିଆଯାଇ ଥିଲା ।

ପାଖ ଆଖରେ ମନ୍ଦିର ନଥିବାରୁ ଜଣେ ସନ୍ୟାସୀଙ୍କ ନିର୍ଦ୍ଦେଶରେ ଗୋଟିଏ ଗୋମୟ ପଡ଼ିଥିବା ସ୍ଥାନ ବଛାଯାଇ ଖିଚିଂରୁ ଶିବଲିଙ୍ଗ ଓ ପାର୍ବତୀ ମୂର୍ତ୍ତୀ ଅଣାଯାଇ ସ୍ଥାପନ କରାଗଲା । ସ୍ଥାପନ ପୂର୍ବରାତିରେ ସେ ସନ୍ୟାସୀ ବିନାନିମନ୍ତ୍ରଣରେ ସଂକୀର୍ତ୍ତନ ସହ ୨୫ କିଲୋମିଟର ଜଙ୍ଗଲ ରାସ୍ତା ପଦଯାତ୍ରାରେ ଅତିକ୍ରମ କରି ବ୍ରାହ୍ମଣ ଓ ପ୍ରତିଷ୍ଠା ସାମଗ୍ରୀ ସହ ପହଞ୍ଚି ସ୍ଥାନଟିକୁ ନାମାମୃତରେ ପ୍ଲାବିତ କରିଦେଇଥିଲେ । ପୋଷ୍ଟ ମାଷ୍ଟର ଥିବା ନନ୍ଦବାବୁ ମନ୍ଦିରର ଦୈନିକପୂଜା ଦାୟୀତ୍ୱ ନେଲେ ଓ ଏଥିପାଇଁ ସାମାନ୍ୟ ସ୍ଥାୟୀ ଜମାର ସୁଧରୁ ଖର୍ଚ୍ଚ ବ୍ୟବସ୍ଥା ହେଲା । ପାଖରେ ଥିବା ଏକ ହତା ବାଡ଼ିରେ ଥିବା ଘରେ ସ୍କୁଲ ପରିଦର୍ଶକ ରହୁଥିଲେ । ସେଠାରେ ଆଗେ ଗୋଟିଏ ଉଚ୍ଚ ପ୍ରାଥମିକ ସ୍କୁଲ ଥିଲା । ତାହା ବନ୍ଦ ହୋଇ ଯାଇଥିଲା । ତାକୁ ମରାମତି କରି ସେଠାରେ ୧ମରୁ ୭ମ ଯାଏ ଶ୍ରେଣୀ ଆରମ୍ଭ କରାଗଲା । ଶେଷ ବେଳକୁ ଉଠାଜଳସେଚନ ପାଇଁ ବିଦ୍ୟୁତ୍ ତାର ସାଂଯୋଗ ହୋଇ ବତୀଜଳିବା ସହ ପାଣିମଧ୍ୟ ମିଳିଗଲା ।

ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ପରିଦର୍ଶନ ସମୟରେ ୧୦୦ଟି ଦରଖାସ୍ତ ବିଭିନ୍ନ ଦାବୀସହ ଦିଆଗଲା ଯାହାର ପ୍ରଥମ ପାରାରେ ବସ୍ ଚଳାଇବାକୁ ଦାବୀକରାଯାଇଥିଲା । ତେଣୁ ଏକ ଘରୋଇ ବସ୍‌ମଧ୍ୟ ଚାଲିଲା । ଏବେ ପାଞ୍ଚଟି ବସ୍ ଚଳୁଛି; ଆଉରି ଆଗକୁ ଯାତ୍ରା ଓ ତରମାକାନ୍ତ ଯାଏ । ଯେଉଁ ଯାଗାଟି ପରିତ୍ୟକ୍ତ ହୋଇ ପଡ଼ିଥିଲା ତାହା ବସ୍ ଚାଲିବାଯୋଗୁଁ କେଉଁଝର ଲୋକଙ୍କ ପାଇଁ ଆଗ୍ରହର ସ୍ଥଳ ହୋଇଗଲା । "ପଙ୍ଗୁଲଙ୍ଘୟତେ ଗିରି" ପରି କିଛି ନଥିବା ସ୍ଥାନଟିକୁ ସବୁଥିବା ସ୍ଥାନରେ ଠାକୁରେ ବଦଳାଇ ଦେଇଥିଲେ । ଭବିଷ୍ୟତରେ ସେଠାକାର ଅନାଦୃତ ଅବହେଳିତ ଆଦିବାସୀ ମାନଙ୍କର ବହୁଳ

ଉପକାରରେ ଏସବୁ ଅନୁଷ୍ଠାନ କାମରେ ଆସିଥିଲା । ଈଶ୍ୱର ସୃଷ୍ଟ ପ୍ରକୃତିର ଗନ୍ତାଘର ଏହି ପୀଢ଼ରେ ତାଙ୍କରି ଦୟାରୁ ତାଙ୍କର ଜୈତ୍ରବାନା ଉଡ଼ିଲା ।

## ୧୨୧. ଚିତ୍ତେକୃପା - ସମରେ ନିଷ୍ଠୁରତା

ସପ୍ତସତୀ ଚଣ୍ଡୀରେ ଅଛି "ଚିତ୍ତେକୃପା - ସମରେ ନିଷ୍ଠୁରତା" । ମାଦୁର୍ଗା ଦାନବ ବିନାଶ ପାଇଁ ଯୁଦ୍ଧରେ ବ୍ୟାପୃତଥିବା ବେଳେ ଅତି ନିଷ୍ଠୁର ଭାବେ ଯୁଦ୍ଧକରି ଦୈତ୍ୟବିନାଶ କରୁଥିଲେ ମଧ ମା ହିସାବରେ ତାଙ୍କ ହୃଦୟ ମଧରେ କୃପାର ଗଙ୍ଗାପ୍ଲାବିତ ହେଉଥିଲା; ତାଙ୍କର ସନ୍ତାନ ମାନଙ୍କ ନିମିତ୍ତ । ଶାସନରେ ସେହିପରି । ଶାସିତଙ୍କ ପାଇଁ ହୃଦୟରେ କୃପା ଓ ଦରଦ ସହ ସେବା ପାଇଁ ବ୍ୟାକୁଳତାନଥିଲେ ତାଙ୍କ ପାଇଁ କିଛି କରିହୁଏନା । ଏହି ବାଟରେ କିଛି ପ୍ରତିବନ୍ଧକ ଆସିଲେ ନିଷ୍ଠୁରତାର ସହ ତାକୁ ଦମନକରି ହଟାଇ ନଦେଲେ କିଛି କାମ କରିହୁଏନା ।

ବାଂଶପାଳରେ ଯୋଗଦେବାର ଅଳ୍ପଦିନ ମଧରେ ଭୋଟର ତାଲିକା ପ୍ରକାଶିତ ହେବାକୁ ଆସିଲା । ନିର୍ଦ୍ଦିଷ୍ଟ ଦିନରେ ତାକୁ କରିବାକୁ ହେବ । ନଚେତ୍ ଲୋକ ପ୍ରତିନିଧି ଆଇନିରେ ଦଣ୍ଡିତ ହେବାକୁ ହେବ । ବିଭିନ୍ନ ପଞ୍ଚାୟତକୁ ପାଞ୍ଚଜଣ ପିଅନଙ୍କୁ ପଠାଇବାରେ ଦୁଇଜଣ ସିଧାସଳଖ ମନା କରିଦେଲେ । ସେମାନେ ସବୁଦିନ ଘରକୁ ପଳାନ୍ତି । ତାଙ୍କୁ କଷ୍ଟ ପଡ଼ିବ । ଯେତେ ବୁଝାଇ କିଛି ଫଳ ହେଲାନି । ଦୁଇଟି ମୂଲିଆକରି ଭୋଟର ତାଲିକା ପଠାଇ ଦେବା ସହ ସେ ଦୁଇଜଣକୁ ନିଲମ୍ବିତ କରି ଜିଲ୍ଲାପାଳଙ୍କୁ ଜଣେଇଦିଆଗଲା । ଠିକ୍ ସପ୍ତାହକପରେ ନବନିଯୁକ୍ତ ଜିଲ୍ଲାପାଳ ଶ୍ରୀ ଅକ୍ଷୟ କୁମାର ବିଶ୍ୱାଳ ଆସି ପହଞ୍ଚିଲେ । ହଠାତ୍ ପହଞ୍ଚ ଘଟଣାଟି ବୁଝିବା ପରେ ସେ ଆଦେଶକୁ କାଏମ ରଖି ଚିଠି ଦେଇ ଚାଲିଗଲେ । ଫଳରେ ସମସ୍ତଙ୍କ ମନରେ କୋକୁଆ ଭୟ ପଶିଲା । ଚଉଫପଟୁ ଥିବା ନିଘଞ୍ଚ ଜଙ୍ଗଲରେ ଅବସ୍ଥିତ ଯୋଗୁଁ ଏହି ଆଦିବାସୀ ବ୍ଲକର ଭଲ କୋଠାଘର, ଅଫିସ୍ ଓ ରହିବା ପାଇଁ ଥିଲା । ହାଟ ଦୋକାନତ ଖୋଲି ଯାଇଥିଲା । ମୂଳଗଣ୍ଡି ରହିଗଲା । ତେଣୁ ପ୍ରାୟ ସମସ୍ତେ ସେଠି ରହିଗଲେ । କେବଳ ଛୁଟିଦିନ ପଳାନ୍ତି । ଭାରି ଏକୁଟିଆ ଲାଗେ ଛୁଟିଦିନ ଗୁଡ଼ିକ ।

ସାମ୍ନାରେ ଥିବା ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ରର ଡାକ୍ତର ଦଶ ପନ୍ଦର ଦିନରେ ଥରେ ଆସି ମୁହଁ ଦେଖାଇ ମକଦ୍ଦମା ତାରିଖରେ, ଦରମା ଆଣିବାକୁ କିମ୍ବା କିଛି ସଭାସମିତିକୁ ଯାଉଛନ୍ତି କହି ଦୁଇ ଘଣ୍ଟା ମଧ୍ୟରେ ପୁଣି ପଳାନ୍ତି । ଜଣେ କେରଳୀ ନର୍ସ ବ୍ୟତୀତ ଆଉ କେହି ଆସନ୍ତିନି କି ରହନ୍ତିନି । ପଚାରିଲେ କହନ୍ତି ଲୋକେ ଡ଼ାକ୍ତର ଖାନକୁ ଆସନ୍ତିନି । ଘରେ ନେଇ ଔଷଧ ଦେଲେ ଫିଙ୍ଗି ଦିଅନ୍ତି । ତାଙ୍କର ଗୁଣୀ ଗାରେଡ଼ି ଭଲ ତ' ସେ ଭଲ । ସାଙ୍ଗରେ ଥିବା ହୋମିଓ ପ୍ୟାଥି ବାବୁଟି ଏତେବେଳେ ନିଜର ଓ ଅନ୍ୟବହୁ ସହକର୍ମୀ ତଥାସ୍ଥାନୀୟ ଲୋକଙ୍କର

କାମରେ ଆସୁଥାଏ । ତିନିମାସପରେ ଡ଼ାକ୍ତରଙ୍କ କାରସାଦି ବୁଝାପଡ଼ିଲା । ଭଦ୍ରକରେ ସେ ଲୋକଙ୍କ ଘର । ଘରେ ରହି ଘରୋଇ ଚିକିତ୍ସା କରି ଭଲ ଦିପଇସା ପାନ୍ତି । କର୍ମସ୍ଥଳକୁ ଦଶ ପନ୍ଦର ଦିନରେ ଥରେ ଥରେ ଦୁଇଘଣ୍ଟା ବୁଲି ଆସନ୍ତି । ଏ ବିଷୟ ତାର ଯୋଗେ ତାଙ୍କ ନିର୍ଦ୍ଦେଶକଙ୍କୁ ଜଣାଇବାରେ ସେ ଆସି ଅବସ୍ଥାଦେଖି ସବୁ କଥାବୁଝି ଗଲେ ଓ ଜଣେ ଯୁବ ଡ଼ାକ୍ତରଙ୍କୁ ପଠାଇଲେ । ଡ଼ା. ନିରଞ୍ଜନ ରାଉତ ଆଗ ଆସି ଆମଘରେ ସେ ଶୁଣିଥିବା ଗପସବୁ କହିଲେ । ତାଙ୍କୁ ବୁଝାଇଲିଯେ କୁକୁର ବିରାଡ଼ି ଓ ଗାଈଗୋରୁ ମଧ ଖାଦ୍ୟ ବା ଚିକିତ୍ସା ପାଇଲେ ପୁଣି ସେ ଜାଗାଖୋଜି ଆସନ୍ତି । ମଣିଷ କାହିଁକି ନ ଆସିବେ ? ଉଭୟେ ମନମେଳ କରି ରହିଲୁ, ଖାଦ୍ୟ, ଔଷଧ ଓ ରୋଗୀ ରହିବା ଓ ଚିକିତ୍ସାର ବ୍ୟବସ୍ଥା କଲୁ । ଗାଁ ଗାଁବୁଲି ଲୋକଙ୍କୁ ବୁଝାଇଲୁ । ତା'ପରେ ଧାଡ଼ି ଲମ୍ବିଲା ରୋଗୀଙ୍କର । ରହିବାକୁ କି ବସିବାକୁ ମଧ ଜାଗା ମିଳିଲାନି । ସେ ଡ଼ାକ୍ତର ବିଚରା ସେଠି ଖୁବ୍ ସୁନାମ ଅର୍ଜନ କଲେ ଓ ଲୋକେ ଉପକୃତ ହେଲେ । ତାଙ୍କ ସହକର୍ମୀ ଓ ଆମ ସହକର୍ମୀ ଶତାଧିକ ସଂଖ୍ୟାରେ ସେଠି ରହିବାରେ ଜାଗାଟି କର୍ମମୁଖର ହୋଇଉଠିଲା । ସମସ୍ତେ ମଧ ଡ଼ାକ୍ତର ଖାନାରୁ ଉପକୃତ ହେଲେ । ପ୍ରାକ୍ତନ ଡ଼ାକ୍ତର ବହୁତ ରାଗିଲେ । ଆଉ ସେ ଯାଗା ମାଡ଼ିଲେନି ।

ପ୍ରାଥମିକ ଶିକ୍ଷା ସେଠିଖାଲି ଖାତାପତ୍ରରେ ହିଁ ଥିଲା । ସ୍କୁଲ ଖୋଲେନି । ପିଲାଏ ଆସନ୍ତିନି । ଶିକ୍ଷକ ତାଙ୍କ ଘରେ ଥାନ୍ତି । ଗୋଟିଏ ବିଦ୍ୟାଳୟରେ ମିଛହାଜିରା ଯାଞ୍ଚକରିବାରେ ଦେଖାଗଲାଯେ କନକଲାତା ବାଘ ନାମ୍ନୀ ବିବାହିତା ଝିଅଟିଏର ନାମ ପ୍ରଥମ ଶ୍ରେଣୀରେ ପ୍ରଥମ ନାମ ହୋଇ ଗତ ୭ବର୍ଷଧରି ଗଡୁଥିଲା । ମାସ ଶେଷରେ ଆସି ଦରମା ନେଇ ଯାନ୍ତି । ଅନୁପସ୍ଥିତି ପାଇଁ କାଳେ ପଣିଦିଅନ୍ତି । ବାରମ୍ବାର ବୁଲି ସ୍କୁଲ ଦେଖି ପୁରାପୁରି ସାକ୍ଷ ଓ ପ୍ରମାଣ ସହ ଅଭିଯୋଗ ଅନ୍ୟୁନ ୪୫ ଜଣଙ୍କ ନାମରେ ପଠାଇ ମଧ କିଛି ଉପକାର ନମିଳିବାରୁ ଜିଲ୍ଲାପାଳଙ୍କୁ ଜଣାଇବାରେ ସେ ଥରେ ଗୋଟିଏ ସଭାରେ ମଣ୍ଡଳ ପରିଦର୍ଶକଙ୍କୁ ପଚାରିବାରେ ସେ ନିଃସହାୟତା ପ୍ରକାଶ କଲେ । ତେଣୁ ତାଙ୍କୁ ସଭାରୁ ବାହାରକରିଦେବାରେ ସେ ମାସକ ଭିତରେ ମମସ୍ତଙ୍କୁ ଦଣ୍ଡବିଧାନ କରିଦେବାରେ ଗଡ଼ିଆଡ଼େ ଛାନିଆ ପଶିଗଲା । ସବୁ ସ୍କୁଲ ଅନ୍ତତଃ ଖୋଲିଲା । ଶିକ୍ଷକ ଆସିଲେ ଓ ପିଲାଙ୍କୁ ଡ଼ାକି ପଢାଇଲେ । ପରବର୍ତ୍ତୀ କାଳରେ ଶୁଣାଗଲା ଯେ ପୁଣି ସେ ପରିଦର୍ଶକ ସେଠାକୁ ଆସିଥିଲେଓ ପୁଣି ପୁରୁଣା ବେଉସା ଚାଲିଲା । ଦୁଇବର୍ଷ ରହଣିର ମୋ ବଦଳି ହେବାପରେ ଖାସି କାଟି ଭୋଜିଭାତ କରାଗଲା ।

ସେହିପରି କଠିନ ହସ୍ତରେ ଦୁଇଜଣ ଗ୍ରାମସେବକ, ଦୁଇଜଣ ସଂପାଦକ ଓ ଆଉଦୁଇଜଣ ପିଅନଙ୍କୁ ମଧ୍ୟ ନିଲମ୍ବିତ କରିବାକୁ ପଡିଲା । ସେ ସମସ୍ତେ ଦୋଷୀ ସାବ୍ୟସ୍ତ ହେଲେ ମଧ୍ୟ ବଦଳି ପରେ ଧରାଧରି କରି ପୁନଃଅବସ୍ଥାପିତ ହୋଇଥିଲେ । ଆଦିବାସୀ ଅଧ୍ୟୁଷିତ ଅଂଚଳଗୁଡିକ ଠକଙ୍କର ବସାଘର । ସେଠି ସେମାନେ କାମ ନକରି ଠକିଥାନ୍ତି । ବହୁତ ମନଗଢା କଥାକହନ୍ତି । ସବୁବେଳେ ଲୋକଙ୍କ ଦୋଷ ଦେଖାନ୍ତି । ଉପର ବାଲାଙ୍କୁ

ଖୁସିକରି ନିଜେ ସୁଖରେ ରହନ୍ତି; ଲୋକଙ୍କର ରକ୍ତ ଶୋଷଣ କରି । ଅତ୍ୟନ୍ତ ଦୁଃଖର କଥା ସ୍ଥାନୀୟ ଅଳ୍ପ ଶିକ୍ଷିତ ଲୋକ ବିଶେଷ କରି ଶିକ୍ଷକ ଭାବେ ଅବସ୍ଥାପିତ ହୋଇ ଏଇଭଳି ଆଚରଣ କରି ନିଜ ଜାତିର କ୍ଷତିକରି ନିଜଗୋଡକୁ ହାଣନ୍ତି ।

## ୧୨୨. ମଣ୍ଡଘର

ମଣିଷ ଜୀବନ ସବୁଠାରୁ ମୂଲ୍ୟବାନ ଜୀବନ । ମାନବ ସେବା ମାଧବ ସେବା । ଏମିତି ବହୁ କଥା ଶିକ୍ଷିତ ଲୋକେ ଓ ମହାପୁରୁଷ ମାନେ କହନ୍ତି । ତାକୁ କାର୍ଯ୍ୟକାରି କରିବାକୁ କେତେ ସଂସ୍ଥା, କେତେସଂଘ ଗଢିଉଠେ । ଏପରିକି ଦେଶର ସମ୍ବିଧାନ ମଧ୍ୟ ଏହି ମନ୍ତ୍ରରେ ମନ୍ତ୍ରିତ ଏବଂ ଜନମଙ୍ଗଳ ସରକାର ତା'ର ପ୍ରତୀକ । ଏସବୁ ବହିରେ, କାଗଜରେ ଓ କଲମରେ ରହିଯାଏ । ସଭାସମିତିରେ ମଧ୍ୟ ଖୁବ୍ ଚର୍ବଣ, ଚର୍ବିତ ହୁଏ । କାର୍ଯ୍ୟରେ ଏସବୁ କରିବା; ସ୍ୱେଚ୍ଛାସେବୀ କ'ଣ; ନିୟମିତ ଦରମା ପ୍ରାପ୍ତ କର୍ମଚାରୀ ମାନଙ୍କ ପକ୍ଷରେ ମଧ୍ୟକଷ୍ଟକର ହୁଏ ।

ପ୍ରତିମାସର ଗ୍ରସ୍ତକ୍ରମରେ ୩ ଦିନ ଅଜ୍ଞାତବାସ ପାଇଁ ବ୍ୟବସ୍ଥା ପ୍ରାସ୍କ ବିଡିଓ ଚାକିରୀ କାଳରେ ରଖାଯାଉ ଥିଲା । ବାଂଶପାଳରେ ଏହିଦିନ ଗୁଡିକ ପ୍ରକୃତ ଭୂୟା ପୀଢ ଓ ଜୁଆଙ୍ଗ ପୀଢରେ କଟେ । ସେଗୁଡ଼ିକ ରାସ୍ତା କଡରେ ନାହିଁ । ସେ ସବୁ ଅଛି ଅଗମ୍ୟ ପାହାଡ ଉପରେ ଓ ଅଗ୍ମାଗ୍ନି ବନସ୍ତ ମଧ୍ୟରେ । ତଳେ ଗାଡିଛାଡି, ସାଙ୍ଗରେ ସ୍ୱଳ୍ପ ବେଡିଂ ବିସ୍ତରା, ମସୁରୀ, ଲଣ୍ଡୁନ, ମସଲା, ଡାଲି, ଚାଉଳ ଓ ଆଳୁଧରି ଯିବାକୁ ହୁଏ । ବହୁ ଥର ଏହି ଗସ୍ତବେଳେ ଉପବାସ ରହିବାକୁ ହୁଏ, କଟଡାଖିଆଯାଏ ଓ କେତେଥର ମ୍ୟାଲେରିଆ ଜରରେ ପେଂଗିବାକୁ ପଡେ । ମାତ୍ର ଅତିଥି ବତ୍ସଳ ଜୁଆଙ୍ଗମାନେ ଜରହେଲେ ଖଟିଆରେ ଶୁଆଇ ବୋହିଆଣି ଘରେ ଛାଡି ଦେଇଥାନ୍ତି ।

ପ୍ରତି ଗାଁରେ ଗୋଟିଏ କରି ମଣ୍ଡଘର ଗାଁ ମଝିରେ ଥାଏ । ତା'ର ତିନିକଡରେ କାନ୍ଥ ଥାଏ ଓ ମଝିରେ ଦିନ ରାତି ଧୂନି ଜଳୁଥାଏ ଗୋଟା କାଠମୁଣ୍ଡିଆର । ସେହି ଧୂନି ତାରି କଡେ ଜୁଆଙ୍ଗମାନେ ବସି ବିଡି ଟାଣୁଥାନ୍ତି, ଟ୍ରେପ ପକାଉ ଥାନ୍ତି ଓ ସେହିଠାରେ ଗାଁର ଯାବତୀୟ ଭଲମନ୍ଦ ବିଚାର ହୁଏ । ସେହି ଘରର ଗୋଟିଏ କୋଣରେ କୋଠଧାନ ରହେ । କାନ୍ଥରେ ସିଙ୍ଗ, ପର ଓ ବାଜା ସବୁ ଝୁଲୁଥାଏ । କେହି ଅତିଥି ଗାଁ କୁ ଆସିଲେ ସେହି ଘର ଲିପାଲିପି କରିଦେଇ ଦଉଡିଆ ଖଟଟିଏ ରହିବାକୁ ଦିଆଯାଏ । ଯାହାର ପାଳିଥାଏ ସେ ଗାଧୋଇ କରି ଖଟ ଓ ପାଣି ଗରା ଆଣି ଦିଅନ୍ତି । ପିଢାଟିଏ ପକାଇଦେଇ ତାଉପରେ ପାଦଧୋଇ ଦିଅନ୍ତି । କଖାରୁ କଦଳୀ ବା ଅନ୍ୟକିଛି ଫଳଥିଲେ ସେଠି ଥୋଇଦିଅନ୍ତି । ଏହା ସ୍ତ୍ରୀ ଲୋକମାନଙ୍କର କାମ । ରହିବାର ହେଲେ ସଫାହାଣ୍ଡିରେ ଭାତ ରାନ୍ଧିଦିଅନ୍ତି ଓ ଲୁଣ ହଳଦୀ ପକାଇ କୁକୁଡା ସିଝାଇ ଖାଇବାକୁ ଦିଅନ୍ତି ।

ପରଦିନ ସକାଳୁ ଯାହାର ପାଳିଥାଏ ସେ ଆସି ହାଜର ହୁଏ ଏବଂ ବେଡ଼ିଂ ବିସ୍ତରା ଧରି ଅନ୍ୟଯେଉଁ ଗାଁକୁ ଯିବାରଥାଏ ସେଠି ଛାଡିଦେଇ ଆସେ। ଯାହାର ପାଳିଥାଏ ସେ କାଲିକୁ ପଡୁଥିବା ପାଳିଆର ଦୁଆର ମହଁରେ ବଙ୍କୁଲି ବାଡିଟିଏ ରଖିଦେଇ ଆସେ । ସେଥିରୁ ତାର ଆଜି ପାଳିବୋଲି ଜାଣି ସେ ଆସି ସେଠାରେ ହାଜର ହୋଇଯାଏ । ମଣ୍ଡଘର ପାଖରେ ନାଚହୁଏ । ପୂଜାଉଜା ହୁଏ । ମଣ୍ଡ ଘରଟିକୁ ସଜାଇ ରଖାଯାଏ । ତାର ଚାରିକଡବାରଣ୍ଡା ପରି ଉଚ୍ଚା ଓ ଘର ମଝି ଟିକେ ଖାଲ । ସେ ହେଉଛି ଗାଁର ସଂସ୍କୃତି, ଅର୍ଥନୀତି, ରାଜନୀତି ଓ ସମାଜନୀତିର ଖଣ୍ଡ ପୀଠ। ସେଇଠି ସବୁ କଳିକଜିଆ ନିଷ୍ପତ୍ତିହୁଏ। ଦଣ୍ଡଦିଆଯାଏ। ଜାନିଯାତ୍ରା ଓ ପୂଜାର ବିଧିବ୍ୟବସ୍ଥା ହୁଏ । ମଣ୍ଡ ଘର ସମସ୍ତଙ୍କର ଅତିଥି ମଣ୍ଡପ । ତାହା ସମସ୍ତ ଗ୍ରାମବାସୀଙ୍କର ମିଳନ ପୀଠ, ପବିତ୍ର ପୀଠ ଓ ଗାଁର ପ୍ରତିଚ୍ଛବି ମଣ୍ଡଘରରେହିଁ ଦେଖିବାକୁ ମିଳେ ।

ଆମେ ସବୁ ସଭ୍ୟଲୋକେ ଅତିଥିଦେଖିଲେ ମୁହଁ ଲୁଚାଉ । ଖାଇବାକୁ ରହିବାକୁ ଦେବାକୁ ପଡିବ ବୋଲି ଚା ଦେଇ, ପାନଦେଇ ନମସ୍କାର କରି ବିଦାକରି ଦେଉ । ଆମେ "ଅତିଥି ଦେବୋ ଭବ" କହୁଥିବା ବେଳେ ସେମାନେ ଅତିଥିଙ୍କୁ ଦେବତା ପରି ବ୍ୟବହାର କରନ୍ତି ।

## ୧୨୩. କାମନାହିଁ ତ ଦରମା ନାହିଁ

ଥରେ ଅଜ୍ଞାତବାସ ସମୟରେ ପାହାଡ ଉପରେ ପ୍ରଥମକରି ଗୋଟିଏ ଗାଁରେ ପ୍ରବେଶ କରିବା ବେଳେ ଦେଖିବାକୁ ମିଳିଲାଯେ ପ୍ରାୟକୋଡିଏ ଜଣ ପିଲା, ଯୁବକ ଓ ବୁଢା ବୁଢୀ ଖରାକୁ ପିଠିକରି ଉପରବେଳା ବସିଛନ୍ତି । ତାଙ୍କୁ ପଚାରିବାରେ ଜର ହୋଇଛି ବୋଲି କହିଲେ । ଦେହରେ ହାତ ମାରିବା ବେଳକୁ ଜର ଖଇ ଫୁଟୁଥିଲା । ଖବର ମିଳିଲାଯେ ପନ୍ଦର ଦିନ ମଧ୍ୟରେ ଏପରି ଚାରିଜଣ ଜରରେ ମଲେଣି । ମନରେ କୌତୁହଳ ଜାଗ୍ରତ ହେଲା । ତିନିଦିନରେ ଷୋହଳ ଗାଁ ବୁଲି ତଥ୍ୟ ସଂଗ୍ରହ କରିବାରେ ଚବିଶିଜଣ ବୁଢା, ବୁଢୀ ଓ ପିଲା ମରିଛନ୍ତି । କାରଣ ହେଲା ଜର କାଶ ।

କାଗଜପତ୍ରରେ ମେଲେରିଆ କର୍ମଚାରୀମାନେଏଠି ଗାଁ ଗାଁ ବୁଲି ଘରେ ଔଷଧ ପକାନ୍ତି, ଲୋକଙ୍କୁ ବଟିକା ବାଣ୍ଟନ୍ତି ଓ ତାଙ୍କ ରିପୋର୍ଟରେ ଲୋକେ ଖୁବ୍ ସୁସ୍ଥଥାନ୍ତି । ହେଲେ କେବେ କେହି କଷ୍ଟକରି ପାହାଡ଼ ଚଢ଼ି ଚାଲିଚାଲି ବଣଜଙ୍ଗଲର ଗାଁକୁ ଯାଆନ୍ତିନି । ବଂର ବର୍ଷରେ ଥରେ ଅଧେ ଫସଲ ଅମଳ ବେଳେ ଯାଇ କିଛି ମକା, ରାଶି, ସୋରିଷ ଧରି ଆସନ୍ତି ଗାଁ କୋଠରୁ । ଆଶ୍ୱାସନା ଦେଇ ଆସନ୍ତିଯେ ତୁମ ପୁଅକୁ ଆଉ ଇଞ୍ଜେକ୍ସନ ଦିଆଯିବନି ।

ଏ ସବୁ ବିଷୟରେ ଏହି ଷୋହଳଖଣ୍ଡ ଗାଁରୁ ସର୍ବଶେଷ ତଥ୍ୟ ସଂଗ୍ରହକରି ତଳକୁ ଆସିଲା ବେଳକୁ ସଂଧ୍ୟା ହାଇଥିଲା ଓ ମେଲେରିଆ ଜର ମଧ୍ୟ ଆରମ୍ଭ ହୋଇଯାଇଥିଲା ।

ତେଣୁ ରାତାରାତି କେନ୍ଦୁଝରର ଗଡ଼କୁ ଯାଇ ଜିଲ୍ଲାପାଳ ଶ୍ରୀ ଅକ୍ଷୟ ବିଶ୍ୱାଳଙ୍କୁ ସାକ୍ଷାତ୍ କରି ସବୁବିଷୟ ଜଣାଇ ନିଜର ଚିକିତ୍ସା ପାଇଁ ଭୁବନେଶ୍ୱର ଆସିବାକୁ ଛୁଟି ମାଗନ୍ତେ ଆଉ କେତେଘଣ୍ଟା ରହିବାକୁ ସେ କହି ଜିଲ୍ଲା ଚିକିତ୍ସା ଅଧିକାରୀ ଓ ଅତିରିକ୍ତ ଜିଲ୍ଲାପାଳଙ୍କୁ ଡ଼କାଇ ନକ୍ସାତିଆରି କରି ଚରିଦଳ ଲୋକଙ୍କୁ ଚରିଟି ଗାଡ଼ି ଔଷଧ, ସାଗୁଦାନା ଓ କିଛି ଲୁଗାଦେଇ ସମଗ୍ର ଜୁଆଙ୍ଗପୀଢ଼ ଓ ଭୂୟାଁ ପୀଢ଼କୁ ପଠାଗଲା । ପ୍ରତିଦଳରେ ଜଣେ ଡ଼ାକ୍ତର, ଜଣେ ପ୍ରଶାସନିକ ଅଧିକାରୀ, ଜଣେ ପିଅନ ଓ ଜଣେ କିରାନୀଗଲେ । ଶୁଆ କାଠିରେ ଗୋଟିଏ ନିୟନ୍ତ୍ରଣ କକ୍ଷ ଖୋଲି ଖବର ସଂଗ୍ରହ ଓ ଆଶୁଚିକିତ୍ସା ଉଭୟ କାମ ଯୁଦ୍ଧକାଳୀନ ଭିତ୍ତିରେ କରାଗଲା । ଛୁଟିରୁ ଫେରି ଜଣାଗଲାଯେ ଦୁଇଶହରୁ ଅଧିକ ଲୋକ ମରିଥିଲେ । ହେଲେ ସେ ଅଞ୍ଚଳରେ ଏତେ କାମ କରାଯାଇଥିଲେ ମଧ୍ୟ ଜଣେ ହେଲେ ମ୍ୟାଲେରିଆ କର୍ମୀ ଦେଖିବାକୁ ମିଳିନଥିଲେ । ଜିଲ୍ଲାପାଳଙ୍କ ଆଦେଶରେ ସେ ସମସ୍ତଙ୍କର ଦରମା ବନ୍ଦକରାଯାଇଥିଲା । ସେମାନେ ଜଣାଇଥିଲେ ଯେ ଗସ୍ତ ଖର୍ଚ୍ଚ ମିଳୁନି ଓ ନିୟମିତ ଦରମା ମିଳୁନି ଇତ୍ୟାଦି । ତେଣୁ ଜିଲ୍ଲାପାଳ ଆଦେଶ ଦେଲେ ଯେ କାମ ନାହିଁ ତ ଦରମା ନାହିଁ । ଦୀର୍ଘ ବର୍ଷଧରି ଘରେ ରହି ମିଛ ରିପୋର୍ଟ ଦେଇ ଔଷଧ ବିକିଖାଇ ମାହାଲିଆ ଦରମା ନେଉଥିବା ୩୫ ଜଣ ମେଲେରିଆ କର୍ମୀ ନିଜର କୃତକର୍ମର ଫଳପାଇଲେ ସତ; ମାତ୍ର ଯେଉଁ ଅମୂଲ୍ୟ ଜୀବନତକ ସେ ବଣ ଜଙ୍ଗଲ ଓ ପାହାଡ଼ରେ ଅକାଳରେ ଝରିଗଲେ ଶିବଙ୍କାନ କରି କିଏ ସେ ଜୀବଗୁଡ଼ିକଙ୍କର ସେବା କରିଲା ? ଦେଶରେ ଶାସନ ନଥିଲା ? ଚିକିତ୍ସା ବିଭାଗ ନଥିଲା ? ରାଜନୈତିକ ଦଳ ନଥିଲେ ? ସ୍ୱେଚ୍ଛାସେବୀ ଅନୁଷ୍ଠାନ ନଥିଲେ ନା ଧର୍ମ ସଂସ୍ଥା ନଥିଲେ ?

## ୧୨୪. ସବୁ ଦୋକାନରେ ତାଲା ପଡ଼ିଲା

ବାଂଶପାଳରେ ଯୋଗଦେବାର ଦ୍ୱିତୀୟଦିନ ସାଇକେଲଟିଏ ଧରି ବ୍ଲକଠାରୁ ପ୍ରାୟ ଦେଢ଼ କିଲୋମିଟର ଦୂରରେ ଥିବା ବାଂଶପାଳ ଗାଁକୁ ବୁଲିଯାଇ ଦେଖିଲାବେଳକୁ ଗୋଟିଏ ଯାଗାରେ ବହୁତ ଲୋକ ଜମା ହୋଇଛନ୍ତି । ପାଖକୁ ଯାଇ ଦେଖିବାରେ ଜଣାଗଲା ଯେ ଚାଉଳ ବିକ୍ରୀ ହେଉଛି ; ଆଦିବାସୀ ଉନ୍ନୟନ ସମବାୟ ସମିତି ଶାଖାରେ । ଗୋଲାଘର ଠାରୁ ଅନତି ଦୂରରେ ଗୋଟେ ଗଛମୂଳେ ଜଣେ ଲୋକ ଗୋଟେ ଖାତାରେ ଖାଲିଟିପ ନେଉଛି ଓ ଟଙ୍କାରଖୁଛି । ଆଉଜଣେ କିଲେ କିଲେ ଚାଉଳ ସମସ୍ତଙ୍କୁ ଦେଉଛି । ଏମିତି କ'ଣ ହେଉଛି ବୋଲି ପଚାରିବାରେ ଆଗକୁ ପର୍ବଅଛି । ତେଣୁ ପାଞ୍ଚକିଲୋକରି ଚାଉଳ ବିକିବାକୁ ଜିଲ୍ଲାପାଳଙ୍କ ଆଦେଶ ଅଛିବୋଲି କହିଲେ । କିନ୍ତୁ ପ୍ରକୃତରେ ପ୍ରତ୍ୟେକ କିଲେକରି ଚାଉଳ ନେଉଥାନ୍ତି । ଗୋଲାଘରକୁ ଯାଇ ତାଙ୍କ ସୁପର ଭାଇଜରଙ୍କୁ ପଚାରିବାରେ ସେ କହିଲେ କ'ଣ ନେଉଥିବେ । ଯାହାର ଯାହା ଦରକାର । ତେବେ ହିସାବ କାହିଁକି ପାଞ୍ଚକିଲୋ ପଡୁଛି

ବୋଲି ପଚାରିବାରେ ସେପରି କାହିଁକି ହେବ ? ମିଛ କଥାବୋଲି ସେ କହିଲେ । ତେଣୁ ଚାଉଳ ନେଉଥିବା ପାଞ୍ଚଜଣଙ୍କ ନାମ ଟିପି ତାଙ୍କ ବିବରଣୀ ଲେଖି ରଖିବା ପରେ ଗୋଦାମରେ କେତେ ଚାଉଳ ଅଛି ଓ ଖାତାରେ କେତେ ଅଛି ପଚାରି ଦେଖି ରସିଦ୍ ଦେଇ ଖାତା ନେଇ ଆସି ଗୋଦାମଘରେ ତାଲା ଦେବାକୁ କହି ଆସିବା ପରେ ତାଙ୍କର ଚେତା ପଶିଲା ।

ରାତିକୁ ତାଙ୍କ ଅଫିସର୍ ଶିବବାବୁ ଆସିଲେ । ସେ ଏସବୁ ଶୁଣି ଖପା ହୋଇଗଲେ । ସକାଳୁ ଆସି ଆମଘରେ ହାଜର ହୋଇ କେଉଁ କ୍ଷମତାରେ ଖାତା ଓ ଚାଉଳ ଗୋଦାମ ଦେଖି ତାଲା ଦେବାକୁ କହିଲେ ବୋଲି ପଚାରିଲେ । ପୁଣି କହିଲେ ମୁଁ ଥିଲେ ଖାତା ନଦେଇ କିକ୍ ଦେଇ ଫେରାଇ ଦେଇଥାନ୍ତି । ଠିକ୍ ଏତିକିବେଳେ ତେଲକୋଇ ତହସିଲ ଦାର ବଟବାବୁ ନୂଆ ବିଡ଼ିଓଙ୍କୁ ଦେଖି ଯିବାକୁ ଆସି ପହଞ୍ଚି ଏ ସବୁ ଶୁଣି କହିଲେ କ'ଣ ହେଲା ? ବିଡ଼ିଓ, ତହସିଲଦାର ଖାତା ଦେଖିବେନି ? ଆଉ କିଏ ଦେଖିବ; ବରଂ ନଦେଖିବାରୁ ଜିଲ୍ଲାପାଳ କୈଫିୟତ୍ ମାଗୁଛନ୍ତି । ଏତକ ଶୁଣି ଶିବବାବୁ କହିଲେ ଜଣେ ଭାଇ ହିସାବରେ ମୁଁ ପଚାରି ଆସିଥିଲି । ଆଉ କିକ୍ ମାରିବାହାର କରିବାକୁ କିଏ କହୁଥିଲା ବୋଲି ତାଙ୍କୁ ପଚାରିବାରେ ସେ ସବୁ କଥା ଛାଡ଼ି ଖାତା ଫେରାଇ ଦେବାକୁ ଏବଂ ଭବିଷ୍ୟତରେ ଏପରି ନହେବାକୁ ପ୍ରତିଶ୍ରୁତି ଆଗତୁରା ଦେଲେ । ହେଲେ ସେତେବେଳେକୁ ରାତାରାତି ଖାତା ଜିଲ୍ଲାପାଳଙ୍କ ପାଖକୁ ପଠାଇ ଦିଆଯାଇଛି ବୋଲି କହିବାରେ ତାଙ୍କ ମୁହଁ ଶୁଖିଗଲା ।

ସେ ଘର ବରାଦରେ ଛଡ଼ାତେନ୍ତୁଳି ପ୍ୟାକେଟଟି ନେଇ ଜିଲ୍ଲାପାଳଙ୍କୁ ସାକ୍ଷାତ କରିବା ବେଳକୁ ଖାତା ଓ ରିପୋର୍ଟ ଦେଖି ସେ ଚିହିଙ୍କି ରହିଥିଲେ । ତେନ୍ତୁଳିକୁ ପିଅନ ଲଗାଇ ଫୋପାଡ଼ିଦେଲେ ଓ ସବୁ ଗୋଦାମ ଯାଞ୍ଚ କରିବାକୁ ଲୋକ ପଠାଇ ସବୁଠାରେ ଏହିପରି ଚଞ୍ଚକତା ହୋଇ ଥିବାର ଦେଖି ସବୁ ଗୋଦାମରେ ତାଲା ପକାଇ ଦେଲେ । ସେହିପରି ଘରୋଇ ଖୁଚୁରା ବିକ୍ରେତା ମାନେ ଟାଉଟର ବେପାରୀଙ୍କୁ ଗହମ, ଚାଉଳ କିରୋସିନ ଦେଇ ଖାତା ତିଆରି କରୁଥିବାର ଖବର ପାଇ ଜଣକୁ ଧରି ବେପାରୀ ଘର ଖାନତଲାସୀ କରେଇ ସେ ଖୁଚୁରା ବିକ୍ରେତାଠାରୁ କିଣିଥିବା ଜିନିଷ ଧରାଇ ଦେବାରେ ସେମାନେ ମଧ୍ୟ ସତର୍କ ହୋଇଗଲେ । ତାପରେ ଶିବବାବୁ ତାଙ୍କ ଭୁବନେଶ୍ୱର ହାକିମଙ୍କୁ ଧରି ଥରେ ବ୍ଲକରେ ପହଞ୍ଚି ଆଦିବାସୀ ସମବାୟ କିପରି ସଂସ୍ଥାବୋଲି ପ୍ରଶ୍ନ କରିବାରେ ସଂସ୍ଥାଭଲ । ଲୋକ ବିଶେଷ ଦ୍ୱାରା ଭଲ ବା ମନ୍ଦ କାମ ହୁଏ ବୋଲି କହିବାରେ ସେ ମଧ୍ୟ ଖପ୍ପା ହୋଇଆସି ବଦଳି ଚେଷ୍ଟା କଲେ । ଶେଷରେ ମୁଖ୍ୟ ଶାସନ ସଚିବ ଶିବବାବୁଙ୍କୁ ବଦଳି କରାଇଲେ । ଜିଲ୍ଲାପାଳ ଯୁଦ୍ଧରେ ଜିତିଲେ ।

ସେଠାରେ ଥିବା ଏକମାତ୍ର ଆଶ୍ରମ ସ୍କୁଲର ପିଲାମାନଙ୍କୁ କାଠକାଟିବା, ରୋଷେଇ କରିବା, ବାସନ ମାଜିବା, ଘର ବାହାର ସଫାକରିବା, ଲୁଗା କାଚିବା, ବଗିଚା କାମ କରିବା ଓ ଅନ୍ୟାନ୍ୟ କାର୍ଯ୍ୟ କରିବାରେ ସମୟ ଦେବାକୁ ପଡ଼େ । ପାଠପଢ଼ାପାଇଁ ହାତରେ ପ୍ରାୟ

ସମୟ ନଥାଏ । ଆମର ପିଲାଏ ଯାହାଟିକେ ପଢ଼ିଥିଲେ ସେଠି ତାକୁ ଗୁରୁଙ୍କୁ ଦେଇ ଦେଲେ ଓ ନିଜେ ଗୁରୁ ହୋଇଗଲେ । ଶ୍ରେଣୀରେ ନିଜେ ପଢ଼ିଥିବା ଦୁଇ ଅକ୍ଷର ପିଲାଙ୍କୁ ପଢ଼ାଇଲେ ଓ ବେତଧରି ଗଣେଇ ଶିଖାଇଲେ । ସେଠି ୪ର୍ଥ ପଞ୍ଚମରେ ଅକ୍ଷର ଶିକ୍ଷା ଓ ଅଙ୍କଗଣନା ପ୍ରାୟ ହୁଏ । ଆଦିବାସୀପିଲା ପାଠ ଟିକେ ବିଳମ୍ବରେ ଧରନ୍ତି । ତା ସାଙ୍ଗକୁ ବାରକାମରେ ମନଦେଇ ପାଠପଢ଼ାପାଇଁ ସମୟ ନଥାଏ । ଆମପିଲାଏ ମଧ୍ୟ ତାଙ୍କ ସାଙ୍ଗରେ ଆଦିବାସୀ ହୋଇଗଲେ । ଯାହାକିଛି ପଢ଼ିଥିଲେ ଗୃହ ଶିକ୍ଷକଙ୍କ ଜରିଆରେ ।

ବାଂଶପାଳରେ ଥିବା ସମୟରେ ବଡ଼ଝିଅକୁ ତା ଅଜାଘରେ, ବଡ଼ପୁଅକୁ ମୋ ସାନଭାଇ ପାଖରେ ରଖାଇ ପଢ଼ାଉଥିଲି । ଆଉ ଦୁଇଟି ପୁଅ ଓ ସାନଝିଅ ସାଙ୍ଗରେ ଥିଲେ । ତେଣୁ ସାନଭାଇ ସେତେବେଳେ ଭୁବନେଶ୍ୱର ଘରୁ ମିଳୁଥିବା ସ୍ୱଳ୍ପଭଡ଼ା ଆଦାୟ କରୁଥାଏ ଓ ବଡ଼ପୁଅର ଯତ୍ନନେଇ ତାକୁ ପଢ଼ାଇବାରେ ସେ ଟିକିଏ ଭଲ ପଢୁଥିଲା । ବଡ ଝିଅପାଇଁ ପଢ଼ା ଖର୍ଚ୍ଚ ଦିଆଯାଉ ଥିଲେ ମଧ ଆଈଙ୍କ ସ୍ନେହରେ ସେ ତାର ପାଠପଢ଼ାକୁ ପଛରେ ପକାଇ ଦେଇଥିଲା ।

ଈଶ୍ୱର ଯାହା ପାଇଁ ଯେତିକି ଶିକ୍ଷା, ଯେତିକି ଧନ ଓ ଯେତିକି ସୁଖ ସୁବିଧା ଦେବାର କଥା ଦିଅନ୍ତି । ମଣିଷ ଭାବେ ମୁଁ କଲି ବା ମୁଁ କରେଇଲି, ଏପରି କହିବା ବୃଥା । ତାଙ୍କର ଅନୁଗ୍ରହବିନା କିଛି ହୁଏନା ।

## ୧୨୫. କୁଡ଼ିଆଟିଏ ମିଳିଲା

କିଏ କେଉଁଠି କିପରି ଜନ୍ମ ନେବ, କିପରି କେଉଁଠି ବଢ଼ିବ ? କେଉଁଠି ରହିବ, କେମିତି ପଢ଼ିବ, କିପରି ଧନାର୍ଜନ କରିବ ସେସବୁ ଈଶ୍ୱର ପୂର୍ବରୁ ସ୍ଥିର କରିଥାନ୍ତି । ତାହା ମାଳି ଗଡ଼ାଇବା ପରି ଗୋଟିକପରେ ଗୋଟିଏ ଚାଲିଆସେ । ଲୋକଟି ମନେ କରେଯେ ମୁଁ ସବୁ କରିପକାଇଲି । ବାହାଦୁରିକରେ । ସେ ଜାଣି ମଧ ଜାଣେ ନା ଯେ "ଝୁଣ୍ଟିପଡ଼ିଲେ ଉଠି ପାରିବୁ ନାହିଁ – ଝଡ଼ିଲା ପତ୍ର ବୃକ୍ଷେ ଲାଗିଛି କାହିଁ" ।

ଗାଁରେ ରହିବି, ଗାଁରେ ଘର କରିବି, ଜମିବାଡି କରିବି, ବାଡ଼ିବଗିଚା କରିବି ଇତ୍ୟାଦି ଗୋଟିଏ ଝୁଙ୍କ ଥିଲା । ସେସବୁ କିଛି କରିବାପରେ ଠାକୁରେ ସେ ଝୁଙ୍କ ଭାଙ୍ଗିଦେଇଥିଲେ । କେନ୍ଦ୍ରାପଡ଼ା ଛାଡ଼ିବା ପରେ ସର୍ବସ୍ୱାନ୍ତ ହୋଇଥିଲି କହିଲେ ଅତ୍ୟୁକ୍ତି ହେବନି । ସବୁବେଳେ ମନରେ ଥାଏ କେଉଁଠି କୁଡ଼ିଆ ଖଣ୍ଡେ ନାହିଁ । ପିଲାଏ କିପରି କେଉଁଠି ରହିବେ ? ଚାକିରୀ ତାଳଗଛ ମୂଳ ଛାଇ । ଥରେ ଦୁଇଥର ଭୁବନେଶ୍ୱର ଆସି ଆକୁତାକୁ କହେ । ହେଲେ ସେ ମୂଲ୍ୟଶୁଣି ରହିଯାଏ । "ଅଣ୍ଟିରେ ନଥାଏ ଧନ- ପୁଅବାହାକରି ବାରେ ମନ ।" ୧୯୭୪ରେ ଥରେ କ'ଣ କାମରେ ଭୁବନେଶ୍ୱର ଆସିବା ବାଟରେ କେନ୍ଦୁଝରରେ ବିଷ୍ଣୁନନ୍ଦଙ୍କ ଘରେ ଥାଏ । ରାତିରେ ବସ୍‌ଧରିବା କଥା । ସେ କହିଲେ ପିଉସା ଆଜି ଝିଅର ଜନ୍ମଦିନ ।

ସତ୍ୟନାରାୟଣ ପୂଜାହେବ । ତେଣୁ ତୁମେ ସକାଳୁ ଯିବ । ଏଥିରେ ରାଜି ନହେବାରେ ସେଠାରେ ଉପସ୍ଥିତ ଜଣେ ସନ୍ୟାସୀ ରାତିଟି ରହିଯିବାକୁ ଆଦେଶ ଦେବାଭଳି କହିବାରେ ଅଗତ୍ୟା ରହିବାକୁ ପଡ଼ିଲା ।

ପୂଜାପରେ ସେ ସନ୍ୟାସୀ ମନର କଥା ପଚାରି ବୁଝି କହିଲେ ଯେ କାଲି ସକାଳୁ ଯିବ ଓ ଏଥର ଖଣ୍ଡେ କୁଡ଼ିଆ ମିଳିବ । ସକାଳ ବସ୍‌ଧରି ଆସି ଭୁବନେଶ୍ୱରରେ ୨ଟାବେଳେ ପହଞ୍ଚି ଝୁଲବାବୁଙ୍କୁ ସାଙ୍ଗରେ ଧରି ଦୁଇତିନିଟି ଯାଗା ଦେଖିଲେ ମଧ ମନକୁ ଗଲାନି । ଫେରି ଆସୁଥିବା ବେଳେ ସେ ହାତ ଦେଖାଇ କହିଲେ ଏଇଠି କେଉଁଠି ଗୋଟେ ଛୋଟ ଘର ବିକ୍ରୀ ହେବ । ତାଙ୍କୁ ବାଧ୍ୟକରି ସେଠାକୁ ଯାଇଁ ଯେଉଁଠି ପ୍ରଥମେ ପଚାରିଲୁ ସେହିଘରଟି ବିକ୍ରୀ ହେବାର ଥିଲା । ସେ କଥା ଦେଇ କହିଲେ ମୁଁ ଆରଥରକୁ ବୁଝି କହିବି । ତେଣୁ ସାନଭାଇ ପାଖରୁ ଓ ଅନ୍ୟ ଆଡ଼େ ବୁଲି ରାତି ୧୦ଟାରେ ଗୋପିଆନାଙ୍କ ଘରେ ପହଞ୍ଚିବାରେ ଖବର ମିଳିଲା ଯେ ସେ ଝୁଲବାବୁ ଖୋଜୁଥିଲେ । ସେ ପୁଣି ଆସି ପହଞ୍ଚିଲେ । ସାଙ୍ଗହୋଇ ଗଲୁ । ଆଠ ନମ୍ବରରେ ତାଙ୍କ ଭାଇଙ୍କ ପାଖରେ ରହୁଥିବା ବିଧବା ମହିଳା ଜଣକ କହିଲେଯେ ଆଜି ରାତିରେ ପାଞ୍ଚହଜାର ଟଙ୍କା ଅଗ୍ରୀମ ଦେଲେ ମୋଟ ଦଶହଜାର ଟଙ୍କା ନେଇ ଯାଗା ଓ ଘର ଦିବଖରା ଦେଇଦେବି । ତାଙ୍କ ସହ ମୂଲଚାଲ ଆରମ୍ଭ କରିବାରୁ ଗୋପିଆନା ବାଧା ଦେଲେ । କହିଲେ ମୂଲ୍ୟବରଂ କମ ଅଛି । ପୁଣି ସେ ଜଣେ ବିଧବା ଓ କଷ୍ଟରେ ପଡ଼ି ବିକୁଛନ୍ତି । ସେହି ରାତିରେ ଚୁଅଘର ବୁଲି ଧାରରେ ଟଙ୍କା ଆଣି ତାଙ୍କୁ ଦିଆଗଲା । ପାଶ୍ ବହିରେ ମାତ୍ର ୬ହଜାର ଟଙ୍କା ଥିଲା । ତାକୁ ଆଖିରେ ରଖି ଏଧାର କରଗଲା । ମାତ୍ର ମାସେପରେ ସେ ପୁଣି ଟଙ୍କା ମାଗିଲେ ଓ ରେଜେଷ୍ଟ୍ରି କରିବାକୁ କହିଲେ । ତେଣୁ ପାଶ୍ ବହିରେ ଥିବା ଟଙ୍କା ତାଙ୍କୁ ଦେଇ ରେଜେଷ୍ଟ୍ରିକରାଗଲା ଓ ପୂର୍ବଧାର ପାଞ୍ଚହଜାର ଅସୁଝା ରହିଗଲା । ଅଧାରାତିରେ ଶ୍ରୀଘ୍ର ଫେରି ପାଇବା ଆଶାରେ ଧାର ଦେଇଥିବା ବନ୍ଧୁ ମାନଙ୍କ ମଧରୁ ଜଣଙ୍କର ପତ୍ନୀ ପଛରେ ଛାଞ୍ଚୁଣୀ ଫୋପାଡ଼ିବାର ଦୃଶ୍ୟ ସହିବାକୁ ପଡ଼ିଲା । ନିଜର ଦୋଷ । କାହାକୁ କହିବା ?

ଯା ହେଉ ସନ୍ୟାସୀଙ୍କ ବାକ୍ୟ ଫଳିଲା । କୁଡିଆଟିଏ ମିଳିଲା । ମାଲାକାନଗିରି ଯିବାବେଳକୁ ସେଇଟାହିଁ ପିଲାଙ୍କର ଆଶ୍ରୟ ହେଲା ।

## ୧୨୬. ପ୍ରତିଶୋଧ ପରାୟଣ ମନ

ଯଦିଜଣେ ଭଲକାମ କରିଭଲ ଫଳ ନପାଏ ତା ମନଟି ସାରୁ ଖାଇଲା ପରି ରଙ୍ଗ ରଙ୍ଗହୁଏ । ସେ ଯେତେ ଭଲ କାମିକା ହୋଇଥିଲେ ମଧ ତାମନରେ ଦୁଃଖଟି ଉଙ୍କିମାରି ଉଠେ । ପୁଣି ତାର କର୍ମଧାରାକୁ ସେ ସେହିପରି ପ୍ରଭାବିତ କରେ । ପିଲାଏ ଭୁବନେଶ୍ୱରରେ ଆଉ କର୍ମସ୍ଥଳି ମାଲାକାନଗିରିରେ । ଏପରି ଅବସ୍ଥାରେ କାମରେ ଯେତେ ଚେଷ୍ଟାକଲେ ମଧ ମନ ଲାଗେନି ।

ତା ସାଙ୍ଗକୁ ଗଙ୍ଗାଧର ବୁରୁଦା ନାମକ ଜଣେ ମିଳିଗଲେ ସଭାପତି । ସେ ବିଧାୟକ ଗଙ୍ଗାଧର ମାଡ଼ୀଙ୍କର ବଂଧୁ । ତାଙ୍କ ଘରେ ରହନ୍ତି । ଦେଖିଥିବା ବହୁ ଆଦିବାସୀ ଲୋକଙ୍କ ତୁଳନାରେ ସେ ଖୁବ୍ ବୁଦ୍ଧିଆ । ଏଥିରେ ସନ୍ଦେହ ନାହିଁ । ସେ ତାଙ୍କର ବୁଦ୍ଧି ସବୁକୁ ସ୍ଥାନୀୟ କର୍ମଚାରୀ ମାନଙ୍କ କାମର ଖାଣ୍ଟିନୁଣ୍ଟି ଦେଖିବାରେ ଖଟାନ୍ତି । ସେଥିପାଇଁ ସ୍ଥାନୀୟ ଉପଜିଲ୍ଲାପାଳଙ୍କ ସହ ତାଙ୍କର ଭଲ ପଟୁ ନଥିଲା । ସେ ମଧ ଖୁବ୍ ଟାଣୁଆ ଲୋକ । ତେଣୁ ତାଙ୍କୁ ଆଦୌ ମଣିଷରେ ଗଣୁ ନଥିଲେ ।

ଏଇପରି ଅବସ୍ଥାରେ ସଭାପତି ବିଡ଼ିଓଙ୍କ ଗସ୍ତ ବିବରଣୀରେ ଟିପଣୀ ଦେବା ଓ ଗସ୍ତଖର୍ଚ୍ଚ ବିଲ ଦସ୍ତଖତ ନକରିବା ଆରମ୍ଭ କରି ଦେଲେ । ତେଣୁ ତାଙ୍କ ମାସିକ ପାରିଶ୍ରମିକ ବନ୍ଦ କରିଦିଆଗଲା । ଆଇନରେ ଅଛି ଯେ ଗସ୍ତ ବିବରଣୀରେ ଜିଲ୍ଲାପାଳ ଟିପଣୀବା ମନ୍ତବ୍ୟ ଦେବେ ଓ ସଭାପତି ତାକୁ ମଞ୍ଜୁର କରିବେ । ସେ ତାକୁ ନମାନି ଟିପଣୀ ଦେବାରେ ସେ ସମ୍ବନ୍ଧରେ ମତାମତ ଦେଇ କେଉଁଟି ଆଇନି ସମ୍ମତ ତାହା ଜଣାଇବାକୁ ଜିଲ୍ଲା ଅଫିସକୁ ଲେଖାଗଲା । ଉତ୍ତର ଆସିଲା ଯେ ସଭାପତି ମଧ ଟିପଣୀଦେଇ ପାରିବେ । ତେଣୁ ସଭାପତି ଉତ୍ପାତ ଆରମ୍ଭ କରିଦେଲେ । ହେଲେ ତାଙ୍କ ପାରିଶ୍ରମିକ (ମାନଧନ) ଓ ଗସ୍ତ ଖର୍ଚ୍ଚ ମଧ ବନ୍ଦ ହୋଇଗଲା । ଅତିରିକ୍ତ ଜିଲ୍ଲାପାଳ ତଦନ୍ତ କରିବାକୁ ଆସି ତାଙ୍କ ବିଲ୍ ଦେଇ ଦେବାକୁ କହିବାରୁ ସେ ଆଗ ବନ୍ଦ କରିଥିବା ଗସ୍ତଖର୍ଚ୍ଚ ଦେବାକୁ ଯୁକ୍ତି ଦର୍ଶାଇବାରେ ବାଧ ହୋଇ ଉଭୟେ ଉଭୟଙ୍କର ଦସ୍ତଖତ ଏକା ସମୟରେ କରି ସମସ୍ୟାର ସମାଧାନ କରାଯାଇଥିଲା । ବୋଧହୁଏ, ଏଇ କଥାକୁ ମନରେ ରଖି ଜିଲ୍ଲାପାଳ ଗୁପ୍ତ ଚରିତ୍ର ପଞ୍ଜିକାରେ ଲେଖିଲେ ଯେ ଏହି ବିଡ଼ିଓଙ୍କର ପଞ୍ଚାୟତ ସମିତି ଲେଖା ଆଇନି ସମ୍ବନ୍ଧରେ ଭଲ ଜ୍ଞାନ ନାହିଁ । ଏହାର ଉତ୍ତରରେ ଜଣାଇ ଦିଆଗଲାଯେ ଏହି ବିଡ଼ିଓ ୨୦ବର୍ଷ ପୂର୍ବରୁ ଲେଖାବିଧି ପାଶକରି ୧୬ବର୍ଷ ବିଡ଼ିଓ ଭାବେ କାମ କରି ଶେଷକୁ କେମିତି ଆଇନି ନଜାଣିଲେ । ଏପରି ମନ୍ତବ୍ୟ ଦେଇଥିବା ଅଧିକାରୀଙ୍କ ସଙ୍ଗରେ ବିଡ଼ିଓ ଗୋଟେ ପରୀକ୍ଷା ଦେବାକୁ ପ୍ରସ୍ତୁତ । ବାସ୍ ଏତିକରେ ସେ ମନ୍ତବ୍ୟ ସେ ଉଠାଇ ନେଲେ । ମାଲାକାନଗିରିରେ ଅନ୍ୟାନ୍ୟ ଆଦିବାସୀ ଅଞ୍ଚଳପରି ପ୍ରାଥମିକ ଶିକ୍ଷା ଖୁବ୍ ପଛରେ । ଏଠିମଧ ଶିକ୍ଷକମାନେ ଘରେ ରହି ପରିଦର୍ଶକଙ୍କୁ ପଣିଦେଇ ପୂରା ଦରମା ନିଅନ୍ତି । ଚେଷ୍ଟାକରି, ଲେଖାଲେଖି କରି ମଧ ଏ ଦିଗରେ କିଛି ଉନ୍ନତି ପରିଲକ୍ଷିତ ହୋଇ ନଥିଲା ।

ଏଠାରେଥିବା ଦିବ୍ୟଜୀବନ ସଂଘର ଶ୍ରୀକୃଷ୍ଣ ମନ୍ଦୀରରେ ବେଶ୍ ସଂଧ୍ୟା ଭଜନ ଓ କୀର୍ତ୍ତନ ହୁଏ । ଏଠି ଶ୍ରୀରାମକୃଷ୍ଣ ଆଶ୍ରମ ପ୍ରତିଷ୍ଠା ପାଇଁ ସଂଘଟିଏ ଗଢ଼ି ଭୂମିପୂଜା ମଧ କରାଯାଇଥିଲା । କାମରେ ଟିକିଏବି ହେଳା କରିନଥିଲେ ମଧ ୧୦୦ଭାଗ ମନକାମରେ ଥିଲାବୋଲି କହିହେବନି । ଏଠାରୁ ବଦଳି ହେବା ବେଳେ ମଲାକାନଗିରିକୁ ଆସିଥିବା ଜିଲ୍ଲାପାଳଙ୍କୁ ଦେଖାକରିଏଠୁ ଛାଡ଼ି ଦେବାକୁ କହିବାରେ ନୂଆଲୋକ ଆସିଲେ ଛାଡ଼ ମିଳବ ବୋଲି କହିଲେ । ଛାଡ଼ ପରେ ନୂଆଲୋକ ଆସିଲେ କ'ଣ ଅସୁ ବିଧାବୋଲି ବାରମ୍ବାର

ଯୁକ୍ତି ପ୍ରତିଯୁକ୍ତି ଶୁଣି ଉପଜିଲ୍ଲାପାଳ ସେଠାରୁ ଟାଣି ଆଣି ଥିଲେ । ଦିନକରେ ଦେଖାଗଲା ବିନା ନୂଆଜିଲ୍ଲାପାଳରେ ଜିଲ୍ଲାପାଳ କାମଛାଡ଼ି ନିଜେ ଚାଲିଗଲେ ବଦଳି ଆଦେଶ ପାଇ । ତେଣୁ ଭୁବନେଶ୍ୱରଠୁ ମିଳିଥିବା ତାରବାର୍ତ୍ତାବଳରେ ସେଠା ଗ୍ରାମପଞ୍ଚାୟତ ସଂପ୍ରସାରଣ ଅଧିକାରୀଙ୍କୁ ଦାୟିତ୍ୱଦେଇ ଚାଲିଆସିବାରେ କୈଫିୟତ୍ ମଗାଗଲା । ସେ ତାର ବାର୍ତ୍ତାଟି ଦର୍ଶାଇବାରେ ସବୁଥମିଗଲା ।

ଏଠାରେ ଥିବାବେଳେ ତନିଆ ଓ ତା' ବର ରବୀନ୍ଦ୍ର ପଣ୍ଡା ଆସି ସେ ବସାରେ ଶେଷବେଳକୁ ମୋ ସହିତ ରହିଲେ । ତାଙ୍କର ଦଣ୍ଡକାରଣ୍ୟ ଯୋଜନାକୁ କନିଷ୍ଠ ଯନ୍ତ୍ରୀ ଭାବେ ବଦଳୀ ହୋଇଥାଏ । ଯାହା ହେଉ ମାଲକାନଗିରିରେ ବାଲି ମେଳା ଜଳ ବିଦ୍ୟୁତ୍ ପ୍ରକଳ୍ପ, ଦଣ୍ଡକାରଣ୍ୟ, ମେସାନଦୀ ଇତ୍ୟାଦି ଦେଖିବାର ସୁଯୋଗ ମିଳିଥିଲା । ତାସହ ସହୀଦ ଲକ୍ଷ୍ମଣ ନାୟକଙ୍କ ଜନ୍ମସ୍ଥାନ, ବଣ୍ଡା ଜନଜାତିର ବାସସ୍ଥଳି , ବଣ ପାହାଡ ଓ କୋୟାଜନଜାତିଙ୍କ ସହପରିଚିତ ହେବାର ସୁଯୋଗ ଠାକୁରେ ଦେଇଥିଲେ ।

# ୧୨୭. ପରିବର୍ତ୍ତନ

ସବୁବେଳେ ଗୋଟିଏ ପ୍ରକାରର କାମକଲେ ଯେତେ ଚେଷ୍ଟା କଲେ ମଧ ମନଟା କେମିତି ଲାଗେ । ମନର ସ୍ୱଭାବ ହେଉଛି ଭିନ୍ନ ଭିନ୍ନ ସ୍ୱାଦ ଗ୍ରହଣ କରିବା । ପରିସ୍ଥିତିର ପରିବର୍ତ୍ତନରେ ମନର ଯେପରି ପରିବର୍ତ୍ତନ ହୁଏ କାମର ପରିବର୍ତ୍ତନରେ ସେହିପରି ମନର ପରିବର୍ତ୍ତନହୁଏ । ତା' ଫଳରେ କାମରେ ସରସତା ଆସେ ଓ ଆଗ୍ରହ ବଢ଼େ । ପ୍ରଶାସନିକ ସେବାରେ ଥିବା ଲୋକମାନଙ୍କର କାର୍ଯ୍ୟରେ ପରିବର୍ତ୍ତନ ଯୋଗୁଁ ତାଙ୍କର ବିଭିନ୍ନ କ୍ଷେତ୍ରରେ ଅଭିଜ୍ଞତା ବଢ଼ିବା ସହ ନୂଆକାମରେ ଆଗ୍ରହ ମଧ ବଢ଼େ । ପାଣି ଅନ୍ଧ ଆଉ ସରକାର ଅନ୍ଧ । ଗଣତାନ୍ତ୍ରିକ ସରକାରରେ କେହି ଜଣେଗୋଟିଏ ସ୍ଥାନରେ ସବୁବେଳେ ନଥାଏ କି ତା ମର୍ଜିବା ମନରେ କାମ ହୁଏନି । ତେଣୁ ତୁମେ ଯେତେ ଭଲକାମ କଲେ ମଧ ତୁମ ନୂଆ ହାକିମ ପାଖରେ ତୁମେ ନୂଆ ଓ ତୁମର କାମ ମଧନୂଆ ।

ଦୀର୍ଘ ୧୬ବର୍ଷ ବିଡ଼ିଓ ଭାବେ କାମ କରିବା ପରେ ୧୯୭୭ ଶେଷ ସମୟରେ ଫୁଲବାଣି ଜିଲ୍ଲାର ବାଲିଗୁଡ଼ା ଠାରେ ଆଦିବାସୀ ଉନ୍ନୟନ ପାଇଁ ଅଗ୍ରୀମ ଯୋଜନା ବିଡ଼ିଏରେ ପ୍ରଶାସନିକ ସହକାରୀ ପ୍ରକଳ୍ପ ନିର୍ଦ୍ଦେଶକ ଭାବେ ଅବସ୍ଥାପିତ କରାଗଲା । ଏଠାରେ ଥିବା ପ୍ରକଳ୍ପ ନିର୍ଦ୍ଦେଶକ ଶ୍ରୀ ନରେନ୍ଦ୍ର କୁମାର ବଳିଆର ସିଂ ଜଣେ ବିଶିଷ୍ଟ ଭଦ୍ରବ୍ୟକ୍ତି । ତାଙ୍କ ସାଙ୍ଗରେ କାମ କରିବାରେ ଆନନ୍ଦ ଥାଏ ।

ଭାରତବର୍ଷରେ ଯେତେବେଳେ ନକ୍ସାଲ୍ ଆନ୍ଦୋଳନ ମୁଣ୍ଡ ଟେକିଲା, ତାକୁ ମୁକାବିଲା କରିବା ପାଇଁ ଭାରତ ସରକାର ଏକ କମିଟି ବସାଇଥିଲେ । ସେ କମିଟିର ପରାମର୍ଶ ଅନୁଯାୟୀ ସାରାଭାରତ ବର୍ଷରେ ୮ଟି ଏପରି ଆଦିବାସୀ ଉନ୍ନୟନ ଆଗୁଆ ପ୍ରକଳ୍ପ ଆରମ୍ଭ

ହୋଇଥିଲା । ସେ ଥିରୁ ଓଡ଼ିଶାରେ ୪ଟି କାର୍ଯ୍ୟକରୁଥିଲା । ବାଂଶପାଳ ବ୍ଲକଟି ଏପରି ଏକ ଯୋଜନା ଅନ୍ତର୍ଗତ ଥିବାରୁ ଏହାର କାମ ବିଷୟରେ ଭଲ ଜ୍ଞାନଥିଲା । ବାଲିଗୁଡ଼ାଠାରେ ତାକୁହିଁ ସମ୍ପର୍କ କରି ବେଶ୍ ଭଲଭାବେ କାମ କରିବାର ସୁଯୋଗ ମିଳିଗଲା । ସମସ୍ତେ ଏକମନ ହୋଇ କାମ କରୁଥାଉ । ଯୋଗକୁ ବଳିଆର ସିଂଙ୍କର ବଦଳୀ ହୋଇ ଯିବାରେ ଅତିରିକ୍ତ ଜିଲ୍ଲାପାଳ ଫୁଲବାଣିରେ ରହି ପ୍ରକଳ୍ପ ନିର୍ଦ୍ଦେଶକ କାମ କରୁଥିଲେ । ଫଳରେ ସଂପୂର୍ଣ୍ଣ ପ୍ରକଳ୍ପର ସବୁ କାମ ଦେଖିବାର ଓ କରିବାର ସୁଯୋଗ ମୋପାଇଁ ସୃଷ୍ଟିହେଲା । ଜିଲ୍ଲାପାଳ ଶ୍ରୀ ଦେବାନନ୍ଦ ନାୟକ ଖୁବ୍ ଅମାୟିକ ଲୋକଥିଲେ । ସେ ସବୁକାମ ପାଇଁ ନିର୍ଭର କରିବାରେ ଏବଂ ସୁନ୍ଦର ବ୍ୟବହାର ପ୍ରଦର୍ଶନ କରିବାରେ ଆହୁରି ଯୋରସୋର୍‌ରେ କାମରେ ଲାଗିପଡ଼ିବାକୁ ହେଲା ।

ବେଲଘରଠାରେ ଏହି ସମୟରେ କୁଟିଆ କନ୍ଧମାନାଙ୍କପାଇଁ ସ୍ୱତନ୍ତ୍ର ପ୍ରକଳ୍ପଟିଏ ଆରମ୍ଭ ହେଲା । ବନ୍ଧୁ ହରେକୃଷ୍ଣ ହୋତା ପ୍ରଧାନ ଶିକ୍ଷକ ପଦବୀରୁ ଆସି ଏଠି ସ୍ୱତନ୍ତ୍ର ପ୍ରକଳ୍ପ ଅଧିକାରୀ ହେଲେ । ତେଣୁ ତାଙ୍କ ସହ ବସି ତୃମୁଡ଼ି ବନ୍ଧ ରାଜସ୍ୱ ବିଭାଗର ବିଶ୍ରାମାଗାରରେ ପ୍ରକଳ୍ପ ପାଇଁ ରିପୋର୍ଟ ପ୍ରସ୍ତୁତ କରିବା ସହ ସବୁକାମରେ ସଂଶ୍ଳିଷ୍ଟ ହେବାକୁ ପଡ଼ିଲା । କାର୍ତ୍ତିକ ମାସରେ ଅରୁଆଖାଇ ଜଳେଶପେଙ୍ଗା ମହାଦେବ ଦର୍ଶନକରି ତୃମୁଡ଼ି ବନ୍ଧ ରାଜସ୍ୱ ବିଶ୍ରାମାଗାରରେ ପ୍ରକଳ୍ପ ରିପୋର୍ଟ ପ୍ରସ୍ତୁତି ଖୁବ୍ ଆନନ୍ଦ ଦାୟକ ଥିଲା । ହୋତାବାବୁ ସବୁ ତଥ୍ୟ ସଂଗ୍ରହ କରିଥିଲେ । ତେଣୁ ସେ ରିପୋର୍ଟଟି ରାଜ୍ୟସ୍ତରରେ ପ୍ରଶଂସିତ ହେଲା । ଶେଷକୁ ହୋତାବାବୁ ଲମ୍ବାଛୁଟିରେ ଗଲାବେଳେ ଏବଂ ପ୍ରକଳ୍ପ ଛାଡ଼ି ବଦଳି ହେବାବେଳେ ତାଙ୍କ ଦାୟିତ୍ୱ ନେଇ ସିଧାସଳଖ ସେଠାରେ କାମକରିବାକୁ ପଡିଲା । ଏତିକି ବେଳେ କୁଟିଆକନ୍ଧ ମାନଙ୍କ ସମ୍ବନ୍ଧରେ ଇଂରାଜୀରେ ଲେଖିଥିବା ପାଣ୍ଡୁଲିପିଟି ତଦାନିନ୍ତନ ଜିଲ୍ଲାପାଳ ହିମାଂଶୁ ଶେଖର ସରକାର ନେଇ ସଂଶୋଧିତ ଓ ପରିବର୍ଦ୍ଧିତ କରି ରାଜ୍ୟ ସରକାରଙ୍କ ସଚିବାଳୟ ଲାଇବ୍ରେରିକୁ ଦେଇଥିଲେ । ତାରି ଓଡ଼ିଆ ଟିପାକୁ ଭିତ୍ତିକରି ପରେ "ବେଲଘରର ଲାଙ୍ଗୁଳୀବାବା" ବହିଟି ଆତ୍ମପ୍ରକାଶ କଲା ।

## ୧୨୮. ଅଙ୍ଗୁର ଫଳ ଖଟା

କଥାରେ ଅଛି ବିଲୁଆକୁ ଅଙ୍ଗୁର ଫଳ ଖଟା ଲାଗିଲା । ଅଙ୍ଗୁର ଉଚ୍ଚଲଟାରେ ଫଳିଥିଲା । ବିଲୁଆ ଡ଼େଇଁଡ଼େଇଁ ତାକୁ ଖାଇ ପାରିଲାନି । ମନଦୁଃଖରେ ଫେରି ଆସିଲା ବେଳକୁ ତାକୁ ଠେକୁଆ ପଚାରିବାରୁ ସେ କହିଲା ଅଙ୍ଗୁର ଫଳ ଖଟା । ଯାହାକୁ ଭଲ ଜିନିଷ ମିଳେନା,ସେ ତାକୁ ପାଇବାକୁ ମନକରି ନପାଇ ମନଖଟା କରେ । ମନର ଭାବକୁ ଲୁଚାଇବାକୁ ସେ କେତେବେଳେ କ'ଣ କହେ ବା କରେ ।

ସରକାରଙ୍କର ବିଚିତ୍ର ଗତି । ସମାନ କାମପାଇଁ ସମାନ ବେତନ ପ୍ରଥା ପ୍ରାକୃତିକ ଆଇନ । ବହୁବାର ବହୁ ଉଚ୍ଚ ଓ ସର୍ବୋଚ୍ଚ ନ୍ୟାୟାଳୟ ଏ ସମ୍ବନ୍ଧରେ ମତ ମଧ ଦେଇଛନ୍ତି ।

ହେଲେ ଆମ ସରକାର ତାକୁ ଗ୍ରହଣ କରିବାକୁ ନାରାଜ । ତା'ର ଫଳ ଭୋକ୍ତା ଆମେମାନେ । ଯେଉଁମାନେ ଗୋଷ୍ଠୀ ଉନ୍ନୟନ ବିଭାଗରେ ବିଭାଗୀୟ ବିଡିଓ ଥିଲେ ସବୁବେଳେ ଅଭିଜ୍ଞତା ଦୃଷ୍ଟିରୁ ସେମାନେ ଭଲ କାମ କରି ପ୍ରସଂଶିତ ହେଉଥାନ୍ତି । ମାତ୍ର ତିନିରୁ ପାଞ୍ଚ ବର୍ଷପାଇଁ ବିଡ଼ିଓ ହୋଇ ଆସୁଥିବା ଓଡ଼ିଶା ପ୍ରଶାସନିକ ସେବାର ନୂଆପିଲା ବା ଅନ୍ୟବିଭାଗରୁ ପଦୋନ୍ନତି ପାଇ ଆସିଥିବା ବୃଦ୍ଧ ଯେତେ ଖରାପ କାମକଲେ ମଧ ଅଧିକା ଦରମା ପାନ୍ତି । ସେଥିପାଇଁ ବିଭାଗୀୟ ବିଡ଼ିଓ ମାନଙ୍କର ଗାତ୍ରଦାହ ହେବା ସ୍ୱାଭାବିକ । ସେମାନେ ସଂଘଗଢ଼ି ଯେତେ ବକ୍ତୃତା ଦେଲେ ବା ଲେଖିଲେ ମଧ୍ୟ କେହି ଶୁଣନ୍ତିନି । ଓଲଟି ସରକାର ଆଇନ ସ୍ଥିରକଲେ ସେ ସବୁ ବିଡ଼ିଓଙ୍କୁ ପ୍ରଶାସନିକ ସେବାକୁ ନେଇ ନିଆଯିବ । ସେତେବେଳେକୁ ବିଡ଼ିଓ ସଂଘ ନିଷ୍ପତ୍ତି କରିଥିଲେ ଯେ ବିଭାଗୀୟ ବିଡ଼ିଓମାନଙ୍କର ଏକ ସ୍ୱତନ୍ତ୍ର ସେବା କ୍ୟାଡର ସୃଷ୍ଟିକରି ସମାନ ଦରମା ଓ ସୁବିଧା ଦିଆଯାଉ । ପୁରୁଣା ବିଡ଼ିଓ ହିସାବରେ ଆମେ ସବୁ ଆଗଧାଡ଼ିର ଲୋକେ ପାଟିତୁଣ୍ଡ କରି ଏପରି ପ୍ରସ୍ତାବ ଗୃହିତ କରାଇଥିଲୁ । କେନ୍ଦ୍ର ସରକାର ମଧ ଏହି ମର୍ମରେ ଏକ ନିର୍ଦ୍ଦେଶ ଦେଇଥିଲେ । ତାକୁ ମଧ କିଏ ଶୁଣୁଛି । ଥରେ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଫୁଲବାଣି ଗସ୍ତବେଳେ ଜିଲ୍ଲାପାଳ ଦେବାନନ୍ଦ ନାୟକଙ୍କ ଉପସ୍ଥିତରେ ଡ଼ାକି କହିଲେ ଭଲ କାମ ସବୁ କରୁଛ । ଭଲ ଭବିଷ୍ୟତ ଥିବା ପ୍ରଶାସନିକ ସେବାକୁ ସବୁ ବିଡ଼ିଓ ଆସିବାକୁ ଲେଖିଦିଅ । ସଂଘ ବିରୁଦ୍ଧରେ ଏପରି ଲେଖା ଦେବାକୁ ମନା କରିଦେବାରେ ସେ ଦୁଃଖିତ ହୋଇ ଫେରିଥିଲେ । ଜିଲ୍ଲାପାଳ ମଧ ଦୁଃଖ ପ୍ରକାଶ କରିଥିଲେ । ହେଲେ ସେହିବର୍ଷ ଆମର କେତେକେ ବନ୍ଧୁ ଧରାଧରି କରି ସୁପାରିସ୍ ନେଇ ଓଡ଼ିଶା ପ୍ରଶାସନିକ ସେବାକୁ ଚାଲିଯାଇଥିଲେ । ଯେ ହେଉଛି ଆମ ଓଡ଼ିଶା ସରକାରଙ୍କର ଇତିହାସର ପୁନରାବୃତ୍ତି । ତା'ପରେ ପ୍ରଶାସନିକ ସେବା ପଦୋନ୍ନତି ପାଇଁ ବଛାବଛି ନିଯୁକ୍ତି ବହୁବର୍ଷ ବନ୍ଦ ରହିଲା ଓ ଆମମାନଙ୍କ ଭାଗ୍ୟ ଘରେ ତାଲା ପଡ଼ିଗଲା ।

ଭଲକାମ କରି ଆମକୁ ଆତ୍ମସନ୍ତୋଷ ଖୁବ୍ ମିଳୁଥିଲା । ଉପରିସ୍ଥ କର୍ମକର୍ତ୍ତାମାନେ ମଧ୍ୟ ଭୁରିଭୁରି ପ୍ରଶଂସା କରୁଥିଲେ । ସହକର୍ମୀମାନେମଧ୍ୟ ଖୁବ୍ ସହଯୋଗ ଦେଉଥିଲେ ଏବଂ ଦୀର୍ଘ ଅଭିଜ୍ଞତାରୁ ପରାମର୍ଶ ପାଇ ଖୁବ୍ ଖୁସିଥିଲେ । ହେଲେ ଦରମା କଥା ମନେପଡ଼ିଲା ବେଳକୁ ମନଟା କଷା ଲାଗୁଥିଲା । ପୁଣି ଏକାଭଳି ସେହିକାମ କରୁଥିବା ପ୍ରଶାସନିକ ସେବାର ବନ୍ଧୁମାନଙ୍କ ସହ ମିଶିବାବେଳେ ମନଭିତରେ କଷାଦାଗ ଲାଗୁଥିଲା ।

ଉଚ୍ଚନୀଚ ମନୋବୃତ୍ତି ଗୋଟିଏ ଖରାପ ମନୋବୃତ୍ତି । ହେଲେ ମଧ୍ୟ ଉଚ୍ଚ ନୀଚକୁ ସବୁବେଳେ ନୀଚ ଦୃଷ୍ଟିରେ ଦେଖିବା ସ୍ୱାଭାବିକ । ସେମାନେ କ'ଣ ମହାପୁରଷ ? ସେହିଭଳି ନୀଚ ଉଚ୍ଚରେ ଥିବା ବ୍ୟକ୍ତିଙ୍କୁ ନିଶ୍ଚୟ ଟିକେ କଣେଇ ଚାହିଁବ । ସିଧା ଚାହିଁବାକୁ ଇଚ୍ଛାଥିଲେବି ହେବନି । ପେଟ ଖାଲିଥିବା ଲୋକ କ'ଣ କେବେ ପେଟପୁରା ଖାଇଥିବା ଲୋକ ପରି ଦିଶିବ ?

# ୧୨୯. ଶୁଭ ଦୃଷ୍ଟିରେ

ସବୁବେଳସମାନ ଯାଏନି । ସବୁ ଲୋକ ସମାନ ନୁହନ୍ତି । ସମସ୍ତେ ଖୋସାମତି ଖୋଜନ୍ତିନି । କେତେବେଳେ କାହାର ଭଲ ସମୟ ଆସିଲେ ତା'ଉପରେ ଶୁଭଗ୍ରହର ଦୃଷ୍ଟିପଡ଼େ ଓ ସେ ବିଭିନ୍ନ କ୍ଷେତ୍ରରେ ଅଗ୍ରଗତି କରେ । କେତେବେଳେ ସମୟର ପ୍ରଭାବ ତ କେତେବେଳେ ବ୍ୟକ୍ତିପ୍ରଭାବ ଏହାର ନିୟାମକ ହେଲେ ମଧ୍ୟ ଈଶ୍ୱର ହେଉଛନ୍ତି ଏହାର ଶେଷ ନିୟନ୍ତା । "ଦୈବଚୈବାତ୍ର ପଞ୍ଚମେ" । ସ୍ଥାନ, କାଳ ପାତ୍ର, କାରଣ ସବୁ ଠିକ୍ ଥିଲେ ମଧ୍ୟ ଦୈବଇଚ୍ଛା ବଳବତୀ ।

ବାଲିଗୁଡ଼ାରେ ୪ବର୍ଷ ରହଣି ଶେଷଆଡ଼କୁ ଆଦିବାସୀ ଉନ୍ନୟନ ବିଭାଗର ସଚିବ ଓ କମିଶନର ଶ୍ରୀ ପୂର୍ଣ୍ଣ ଚନ୍ଦ୍ର ହୋତା ତାଙ୍କର ଗସ୍ତ ସମୟରେ ଦିନେ ଏକାନ୍ତରେ ଡ଼ାକି ବାସ୍ତବ ଉନ୍ନୟନ ପାଇଁ କ'ଣ କରାଯିବା ଦରକାର ବୋଲି ପରାମର୍ଶ ଲୋଡ଼ିଲେ । କଥାବାର୍ତ୍ତା ଶେଷରେ ଏଠାରେ କାହିଁକି ଅଛ ବୋଲି ପ୍ରଶ୍ନର ଉତ୍ତରରେ" ଯାହାର କେହିନାହିଁ ସେ କ'ଣ କରିବ" ବୋଲି କହିବାରେ ସେ ଆଶ୍ଚର୍ଯ୍ୟ ହୋଇ ଗଲେ । "ଭଲ କାମର କ'ଣ କିଛି ଫଳ ନାହିଁ ?" କହି ସେ ଆଲୋଚନା ଶେଷକରି ବିଶ୍ରାମ ପାଇଁ ଗଲେ । ଟା'ର ମାସକପରେ ଖବର ପାଇଲି ଯେ ମୋତେ ଭୁବନେଶ୍ୱରକୁ ହରିଜନ ଉନ୍ନୟନ ସମବାୟ କର୍ପୋରେସନରେ ଅବସ୍ଥାପିତ କରାଯାଇଛି । ଅପେକ୍ଷାରେ ଥାଏ । ଦିନେ ଅଧକ୍ଷ ତଥା କାର୍ଯ୍ୟନିର୍ବାହୀ ଯାଇ ପହଞ୍ଚି ସାକ୍ଷାତ୍କାରପରି ସବୁ ପଚାରି ବୁଝିବା ପରେ ଶୀଘ୍ରକାର୍ଯ୍ୟରେ ଯୋଗଦେବାକୁ କହିଗଲେ । ତେଣୁ ସେଠାରେ ଦାୟିତ୍ୱ ହସ୍ତାନ୍ତର କରି ଭୁବନେଶ୍ୱରକୁ ପିଲାଙ୍କ ପାଖକୁ ଆସିବାର ସୁଯୋଗ ମିଳିଲା ଦୀର୍ଘ ପାଞ୍ଚବର୍ଷ ପରେ । ସ୍ଥାନ ପରିବର୍ତ୍ତନ, କାମ ପରିବର୍ତ୍ତନ, ପିଲାଙ୍କ ସାଙ୍ଗରେ ରହଣି ଓ ରାଜ୍ୟର ରାଜଧାନୀରେ କାମ ଯୋଗୁଁ ମନରେ ଖୁବ୍ ଉତ୍ସାହ ଥାଏ । କାମ କରିବାକୁ ଏଠିମଧ୍ୟ ବହୁତ ସୁବିଧା ସାଙ୍ଗକୁ ପ୍ରଶସ୍ତ କ୍ଷେତ୍ର ଥାଏ ।

ଦୀର୍ଘ ୨ବର୍ଷ ଆଗରୁ ନିଗମଟି ଗଢ଼ାଯାଇଥିଲେ ମଧ୍ୟ କେବଳ ୪୬ଟି ଦରଖାସ୍ତ ଆସିଥିଲା । କାହାକୁବି ପଇସାଟିଏ ଋଣ ଦିଆଯାଇ ନଥିଲା । ଯେଉଁ ଉଦ୍ଦେଶ୍ୟରେ ନିଗମ ଗଢ଼ାଯାଇଥିଲା ସେ ଉଦ୍ଦେଶ୍ୟରେ ପଇସାଟିଏ ବ୍ୟୟ ହୋଇନଥିଲେ ମଧ୍ୟ ଘରଭଡ଼ା, ଦରମା, ଗାଡ଼ି, ଗସ୍ତ ଖର୍ଚ୍ଚ ଆସବାବ ଓ କାଗଜପତ୍ର ବାବଦରେ ଅଧକୋଟିଏ ଟଙ୍କା ଖର୍ଚ୍ଚ ସରିଥିଲା । ଯେଉଁମାନେ କାମ କରିବାକୁ ଥିଲେ ତାଙ୍କ ମଧ୍ୟରୁ କାହାରି କାମ ସମ୍ବନ୍ଧରେ ପ୍ରତ୍ୟକ୍ଷଜ୍ଞାନ ଓ ଅଭିଜ୍ଞତା ତ' ନଥିଲା । ତା ସାଙ୍ଗକୁ କ୍ଷେତ୍ରରେ ବୁଲାବୁଲି କରି କାମ କରାଇବାର ବୟସ ମଧ୍ୟ କାହାର ନଥିଲା ।

ତେଣୁ ପ୍ରଥମରୁ ସବୁ ଆଡ଼କୁ ନିର୍ଦ୍ଦେଶନାମା ପଠାଇ, ନିଜେ ଖରାବର୍ଷାରେ ଦୌଡ଼ି, ବ୍ଲକକୁ, ସମବାୟ ସମିତିକୁ, ଶାଖା ବ୍ୟାଙ୍କକୁ ଓ ଲୋକଙ୍କ ପାଖକୁ ଯାଇ ପ୍ରଥମ ବର୍ଷରେ କିଛି

ଆଖିଦୃଶିଆ କାମ କରେଇ ଦେବାରେ ସମସ୍ତଙ୍କ ଦୃଷ୍ଟି କେନ୍ଦ୍ରୀଭୂତ ହେଲା । ଆହୁରି କାର୍ଯ୍ୟର ପ୍ରସାର ପାଇଁ ଗାଡ଼ି, କ୍ଷିପ୍ର ଲେଖକ ଓ ସହାୟକ ମଧ ମିଳିଲେ । ତେଣୁ ଖୁବ୍ ଖଟିକାମକରିବାରେ ଆଗ୍ରହ ଆହୁରି ବଢ଼ିଗଲା । ସେଠାକୁ ସାଧାରଣତଃ କମିସନର ପଦବୀର ଅଧକ୍ଷ ଓ କାର୍ଯ୍ୟନିର୍ବାହୀ ଆସୁଥିଲେ । ଶ୍ରୀ ଉପେନ୍ଦ୍ର ମଳିକ, ଶ୍ରୀ ଏସ୍ ଏଲ ଚଟାର୍ଜୀ, ଶ୍ରୀ ରମାକାନ୍ତ ମିଶ୍ର ଓ ଶ୍ରୀ ଜିତେନ୍ଦ୍ର ନାଥ ପୋଦାର ୬ବର୍ଷ ମଧରେ ଅଧକ୍ଷ ହୋଇ ଆସିଲେ । ସେମାନେ ସମସ୍ତେ କାମରେ ଏତେ ପ୍ରୀତ ଥିଲେ ଯେ ସବୁକାମରେ ପରାମର୍ଶ କରୁଥିଲେ । ଉନ୍ନୟନ ଅଧିକାରୀ ଥିବା ରାଜ୍ୟ ସମବାୟ ବ୍ୟାଙ୍କର ପ୍ରାକ୍ତନ ନିର୍ଦ୍ଦେଶକ ଫକିର ପଣ୍ଡାଙ୍କ ପରି ଲୋକ ମଧ ସବୁବେଳେ ସବୁ କାମ ପାଇଁ ପରାମର୍ଶ କରୁଥିଲେ ଓ ଉତ୍ସାହିତ କରୁଥିଲେ । ୧୮ଟି ବାଣିଜ୍ୟିକ ବ୍ୟାଙ୍କ ସହ ଚୁକ୍ତିନାମା କରାଗଲା । ସବୁ ସମୟରେ ବ୍ୟାଙ୍କ ମଧ କାମ କରିବାକୁ ଆଗେଇ ଆସିଲେ । କାର୍ଯ୍ୟକାରୀ ମୂଳଧନ ବହୁତ ବଢ଼ିଗଲା । ଯୋଗକୁ ହରିଜନ ସାଙ୍ଗକୁ ଆଦିବାସୀ ଉନ୍ନୟନ ସମବାୟ ମଧ ଯୋଡ଼ାଗଲା । ନିଜର ଘରକିଣି ପରିବର୍ଦ୍ଧିତ କରି ସେଠି କାର୍ଯ୍ୟାଳୟ ପ୍ରତିଷ୍ଠାକରାଗଲା । ପ୍ରତିଷ୍ଠା କାର୍ଯ୍ୟରେ ମୁଖ୍ୟ ହୋଇ ସେ କାମ ମଧ କରିବାର ସୁଯୋଗ ମିଳିଲା । ଓଡ଼ିଶାର ୩୪ଟି ନିଗମ ମଧରୁ ଯେଉଁ ୭ଟି ନିଗମ ଲାଭରେ ଚାଲୁଥିଲା ତା ମଧରେ ଏ ନିଗମ ଗୋଟିଏ ଥିଲା । ସବୁ ସ୍ତରରୁ ଯେତେ ପ୍ରଂଶସା ମିଳୁଥିଲା ସେଥିରୁ କିଛି ଛିଟିକି ଆସୁଥିଲା ଭଲକାମ କରୁଥିବା ଜଣକ ପାଖକୁ । ଦରମା ଯେତିକିକୁ ସେତିକି ହେଲେ ମଧ ସୁନାମ ରଖିବାକୁ ଜାଗା ନଥିଲା । ସବୁ ବଡ଼ ବଡ଼ ସଭା ସମିତିକୁ ଯିବା, ସବୁ କ୍ଷେତ୍ରରେ ପରାମର୍ଶ ଦେବା, ଉଭୟେ କାର୍ଯ୍ୟାଳୟ କାମ ସହ କ୍ଷେତ୍ର କର୍ମରେ ଅଗ୍ରଣୀ ଭୂମିକା ଗ୍ରହଣ କରିବା ଯୋଗୁଁ ଥରେ ଜଣେ ୩ ପାହାଚ ଉପରର ସଚିବ ଅସହିଷ୍ଣୁ ହୋଇ ଜ୍ୟେଷ୍ଠ କନିଷ୍ଠର ପ୍ରଶ୍ନ ଉତ୍‌ଥାପନ କରି ମୁଖ୍ୟ ଶାସନ ସଚିବ ସ୍ତରର ଅଧକ୍ଷ ରମାକାନ୍ତ ବାବୁଙ୍କ ଦ୍ୱାରା ଭର୍ତ୍ସିତ ହୋଇଥିଲେ । ଶେଷକୁ ସେ ମଧ ତାଙ୍କ ଦାୟିତ୍ୱ ଏହି କନିଷ୍ଠଙ୍କୁ ଦେଇ ବିଦାୟ ନେଇଥିଲେ । ଏତିକି ବେଳେ ଶ୍ରୀ ରାଜକିଶୋର ଭୂଜବଳ ବିଭାଗୀୟ ସଚିବ ଥିଲେ । ସେ ଆଦିବାସୀ ଉନ୍ନୟନ ବିଭାଗର ଜିଲ୍ଲା ଅଧିକାରୀ ଭାବେ କିମ୍ବା ସ୍ଥାୟୀଭାବେ ନିଗମର ଅଧିକାରୀ ହୋଇ ଯିବାକୁ ପରାମର୍ଶ ଦେଇଥିଲେ ।

ଏସବୁ ପ୍ରଶଂସା ପୁଡ଼ିଆବନ୍ଧା ହୋଇ ବାକ୍ୟରେ ଥିଲା । ଶ୍ରୀଯୁକ୍ତ ରାମକାନ୍ତ ମିଶ୍ର ଚିହ୍ନରା ବଣିଆପରି ସେଥିରେ ଅଳଙ୍କାର ତିଆରି କରି ଲୋକ ଲୋଚନକୁ ଆଣିଲେ । ସେ ଗୁପ୍ତ ଚରିତ୍ର ପଞ୍ଜିକା ଉତ୍‌କୃଷ୍ଟଭାବେ ଲେଖି ରାଜ୍ୟ ପ୍ରଶାସନିକ ସେବା ପାଇଁ ସୁପାରିଶ କରିଦେବାରେ ଦୁଇବର୍ଷପରେ ସେଥିରେ ମଧ ଅବସ୍ଥାପିତ କରାଗଲା । ହେଲେ ସେତେବେଳକୁ ଆଉ ବୟସ ନଥିଲା, ମନର ଆଗ୍ରହ ନଥିଲା, ନଥିଲା ଦେହରେ ବଳ ।

ଯାହାହେଉ ଶ୍ରୀଯୁକ୍ତ ଜିତେନ୍ଦ୍ର ନାଥ ପୋଦାରଙ୍କ ସମୟରେ ନିଗମ ଛାଡ଼ିବାବେଳେ ଛଳଛଳ ଆଖିରେ ସେ ଦେଇଥିବା ବିଦାୟ ସମ୍ବର୍ଦ୍ଧନା ଓ ପ୍ରଶଂସାସୂଚକ ବାକ୍ୟ ସହ ତାଙ୍କ

ଦଶ ସାଲ ଖଣ୍ଡିକ ଏବେ ମଧ୍ୟ ସ୍ୱିକୃତିର ସ୍ମୃତି ପରିବହନକରି ମନରେ ଆନନ୍ଦ ଦେଉଛି ଓ ଜାଗରଣ କରୁଛି ଅତୀତର ସ୍ମୃତି । ସାରା ଚାକିରୀ ଜୀବନରେ ଏହାହିଁ ବୋଧହୁଏ ଶେଷ ଓ ଶ୍ରେଷ୍ଠ ସ୍ୱିକୃତୀ ।

## ୧୩୦. ଋଣ ମୁକ୍ତି

ଲୋକ ଯେତେବେଳେ କାମରେ ଲାଗିଯାଏ ସେ ଆଉ ସବୁକଥା ଭୁଲିଯାଏ । ପରାର୍ଥେ କର୍ମମୁଖର ଜୀବନରେ ନିଜକାମ ପଛରେ ପଡ଼ିଥାଏ । ନିଜକାମକୁ ସେ ଭୁଲିଯାଏ । ଏପରିକି ବନ୍ଧୁକ୍ଷେତ୍ରରେ ତାକୁ ଅବହେଳା ମଧ୍ୟ କରିବସେ । ସେତେବେଳର କର୍ମନିଶା ତାକୁ ପାଗଳ କରି ଦେଇଥାଏ । ବାସ୍ତବରେ, ପାଗଳ ପରି ପାଗଳ ହୋଇ କାମ ନକଲେ କାମରେ ଯଶ ମିଳେନି, ଶାନ୍ତି ମିଳେନି, ମିଳେନି ଆତ୍ମସନ୍ତୋଷ । କର୍ତ୍ତବ୍ୟ କର୍ମରେ ମଜ୍ଜିଯାଇ ତଦାକାର ହୋଇ ଗଲେ ହିଁ ସେ କର୍ତ୍ତବ୍ୟ ସରସ, ସୁନ୍ଦର ଓ ଉପାସନାରେ ପରିଣତ ହୋଇଥାଏ । ତାହାହିଁ କର୍ମଯୋଗ ।

ଏହିପରି ଏବେ ଯାଏ କାମ କାମ କାମରେ ମଜ୍ଜିଯାଇ ନିଜପ୍ରତି ଓ ନିଜପିଲାଙ୍କ ପ୍ରତି କର୍ତ୍ତବ୍ୟ ମଧ୍ୟ ଭୁଲି ଯିବାକୁ ପଡ଼ିଥିଲା । ନିଶାଟିକେ ଖସିଗଲାପରେ ନିଜକାମପ୍ରତି ଦୃଷ୍ଟି ପଡ଼ିଲା । ଯେ ପରପାଇଁ ଖଟିଥାଏ ତାକୁ ଠାକୁରେ ସବୁଥିରେ ସହାୟ ହୁଅନ୍ତି । ଏତିକି ବେଳେ ସାନପୁଅର ବ୍ରତ ଘର ସହିତ ବଡ଼ ଝିଅର ବିଭାଘର ହେଲା । ଫକୀର ବାବୁ ଦିନସାରା ବାପପରି ସାଙ୍ଗେ ସାଙ୍ଗେ ରହି ସାହାସ, ପ୍ରେରଣା ଓ ସାହାଯ୍ୟଦେଇଥିଲେ । ଉମା'ତ ନିଜ ଝିଅପରି ବିଭାଘର ଯୋଗାଡ଼ ସବୁ ମୁଣ୍ଡକୁନେଇ କରେଇଥିଲେ । ନିଗମରୁ ବହୁଲୋକ ଓ ଗାଡ଼ି ଅଯାଚିତ ଭାବେ ସାହାଯ୍ୟପାଇଁ ମିଳିଥିଲା ।

ପୁଣି ଏହି ସମୟରେ ଏ ଯୁଗର ଭୀଷ୍ମ ସ୍ୱାଧୀନତା ସଂଗ୍ରାମୀ କଳେଇ କସ୍ତୁରୀ ଚରଣ ଦ୍ୱିବେଦୀଙ୍କର ଦେହାନ୍ତ ହୋଇଥିଲା । ଯମପରି ଦୃଢ଼ ଏସ୍ ଏଲ ଚଟର୍ଜୀ ଥାନ୍ତି ଅଧ୍ୟକ୍ଷ । ମୃତ୍ୟୁଖବର ପାଇ ରାସ୍ତାରୁ ଫେରି ଆସିବା ବେଳକୁ ସେ ଗାଡ଼ି ଓ ଟଙ୍କା ଦେଇ ସଚିବଙ୍କୁ ସାହାଯ୍ୟାର୍ଥେ ପଠାଇ ଦେଇଥିଲେ । ସମସ୍ତେ ଯେ ଅଯାଚିତ ସାହାଯ୍ୟପାଇଁ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ସେ ଯେତେ ଦୃଢ଼ ହେଲେ ମଧ୍ୟ କର୍ତ୍ତବ୍ୟ ପରାୟଣତା ପାଖରେ ତାଙ୍କର ସବୁ ଦୃଢ଼ତା ପାଣି ହୋଇ ଯାଇଥିଲା । ବରଂ ଦୃଢ଼ତା ସାହାଯ୍ୟତାରେ ପରିଣତ ହୋଇଯାଇଥିଲା ।

ସାନଶାଳା ବିଗତ ୯ ବର୍ଷଧରି ରାହୁପରି ସଙ୍ଗେ ସଙ୍ଗେ ରହି କେବଳ ଯେ ଗ୍ରାସିଥିଲା ତାହା ନୁହେଁ ବହୁ ମାନସିକ ଅଶାନ୍ତିର ମଧ୍ୟ କାରଣ ହୋଇଥିଲା । ଯେତେଥର ଯେତେ କାମ ପାଇଁ ଟଙ୍କା ନେଇଛି କେବେ ଠିକ୍ ଭାବେ ବା ସଂପୂର୍ଣ୍ଣ ପରିଶୋଧ କରିନି । ବରଂ ପିଲାଙ୍କ ଦାନାରେ ଭାଗିଦାର ହୋଇଛି ବର୍ଷ ବର୍ଷଧରି । ବୋଧହୁଏ ପୂର୍ବ ଜନ୍ମରେ ତା ପାଖରେ ଋଣୀ

ରହିଥିବାରୁ ଏପରି ଘଟୁଥିଲା । ଏହି ନିଗମରେ ଥିବାବେଳେ ସେ ସେଠି ଚାକିରୀ ଟିଏ ପାଇ ମଧ୍ୟ ରାହୁ ଗ୍ରାସରୁ ୩ବର୍ଷପର୍ଯ୍ୟନ୍ତ ମୁକ୍ତି ମିଳିନଥିଲା । ଯାହାହେଉ ଶେଷକୁ ତାଠାରୁ ମୁକ୍ତି ମିଳିଲା ଓ ସେ ଅନ୍ୟତ୍ର ରହିଲା ।

ରାତିରେ ୮ଟା ଯାଏ ଅଫିସ୍ କାମ ଚାଲେ । ଫେରିବାବେଳକୁ ରାମକୃଷ୍ଣ ମିସନରେ କିଛି ସମୟ ଲେଖାପଢ଼ା କାମ କରିବାକୁ ହୁଏ । ଗୁରୁସ୍ଥାନର ଏଋଣରୁ ମଧ୍ୟ ମୁକ୍ତି ମିଳିଥିଲା । ପିଲାଙ୍କ ପାଠପଢ଼ା ପୂରାପୁରି ପଛରେ ପଡ଼ିଯାଇଥିଲା । ୯ଟାପରେ ରାତି ୧୨ଟା ଯାଏ ତାଙ୍କ ପିଛା ଲାଗିବାକୁ ପଡୁଥିଲା । ତାଙ୍କୁ ଦେଇଥିବା ପଢ଼ା ଆଦାୟ କରିବା, ନୂଆ ପଢ଼ା ଦେବା ନିୟମିତ ଭାବେ ଚାଲୁଥିଲା । ତା ସାଙ୍ଗକୁ ଦୁଇ ପୁତୁରା ମଧ୍ୟ ଆସି ଦୁଇବର୍ଷ ରହିପଡ଼ିଲେ । ଝିଅବିଭାଘର ଯୋଗାଡ଼ କରିଥିବା ଉମା ମଧ୍ୟ ଚାରିବର୍ଷ ରହି ଶେଷରେ ଚାକିରୀ ପାଇ ଗଲା ।

ଏହିପରି ଠାକୁରେ ବହୁ ଋଣରୁ ମୁକ୍ତି ଦେଲେ । ଗୁରୁଋଣ, ପିତୃଋଣ, ଋଷି ଋଣ ଓ ପୂର୍ବ ଜନ୍ମର ପ୍ରାରବ୍ଧ ଋଣରୁ ଏହିଠାରେହିଁ ଠାକୁରେ ମୁକ୍ତିଦେଇଥିଲେ । ତା' ଛଡା କର୍ମକ୍ଷେତ୍ରରେ ବହୁବ୍ୟକ୍ତି ଓ ବହୁ ଅନୁଷ୍ଠାନ ଉପକୃତ ହୋଇଛନ୍ତି ମଧ୍ୟ ।

## ୧୩୧. ମହୁରଗରୁ କାନ୍ତାରରେ

ସମୁଦ୍ରରେ ଯୁଆର ଆସିଲେ ଛୋଟ ଛୋଟ ନଈନାଳରେ ପଛୁଆ ପାଣି ଆସି କେତେ ବିଲବାଡ଼ିରେ ମାଡ଼େ । ସେଥିରୁ ମାଛ ଚାଷ ହୁଏ, ମାଛ ଧରାହୁଏ, ଲୁଣ ମରାହୁଏ, ଛୋଟବଡ଼ ଡ଼ଙ୍ଗାସବୁ ସମୁଦ୍ରକୁ ଯାଆସ କରିପାରନ୍ତି । ତା'ର ଉପକାରର ସୀମା ନାହିଁ । ଯେତେ ଉପକାର କଲେ ମଧ୍ୟ ଯୁଆର କ'ଣ ସବୁବେଳେ ରହେ ? ଭଟ୍ଟା ଆସିବ ହିଁ ଆସିବ । ଚକ୍ରବତ୍ ପରିବର୍ତ୍ତନ୍ତି ସୁଖାନିଚ ଦୁଃଖାନି ଚ । ଏହା ଈଶ୍ୱରଙ୍କର ସୃଷ୍ଟିତତ୍ତ୍ୱ । ସଂସାରରେ ଓ ଜୀବନରେ ଏହା ନିତିଦିନିଆ ଘଟଣା । ଏହା ସତ୍ୟ । ଏହାକୁ ଏଡ଼ାଇ ହେବନି ବା ଅସ୍ୱୀକାର କରିହେବନି ।

ଏତେଭଲକାମ କରିମଧ୍ୟ ୬ବର୍ଷ ଶେଷରେ ହରିଜନ ଉନ୍ନୟନ ସମବାୟ ନିଗମରୁ ଚାକିରି ଶେଷ ହେଲା । ଦାୟିତ୍ୱ ହସ୍ତାନ୍ତର କରି ଛୁଟିରେଥାଏ । ପୁଣି ବିଡ଼ିଓ ଭାବେ ଅବସ୍ଥାପିତ କରାଗଲା । ୨ମାସ ଛୁଟିରେ ୨ଯାଗା ବଦଳି ହୋଇଥିଲା । ଶେଷକୁ ଯାଇ ହରଭଙ୍ଗାରେ ଯୋଗଦେଲି । ସେତେବେଳକୁ ବ୍ଲକର ଯାହା ଅବସ୍ଥା ହୋଇଥିଲା ଦେଖି ବ୍ୟତିବ୍ୟସ୍ତ ହେବାକୁ ପଡ଼ିଲା । ୧୦ବର୍ଷ ତଳର ବ୍ଲକ ଆଉ ନଥିଲା । ବିଶେଷକରି ହରଭଙ୍ଗା ।ଏକ ବିଚିତ୍ର ସ୍ଥାନ, ଏଠି କେହି କର୍ମଚାରୀ ରହନ୍ତିନି । ଗ୍ରାମସେବକ ମାନେ ତାଙ୍କ ଘରେ । କିଏ କୋଉ ପୋଲିସ୍ ବାଲାଙ୍କ ପୁଅତ କିଏ ଜିଲ୍ଲା କିରାନୀଙ୍କ ଜୋଇଁ । କ୍ୟାସିୟର ତାଙ୍କ ଘରେ ତାଙ୍କର ଧଳାକଳା ସିମେଣ୍ଟ ବେପାର କରିବାକୁ ବେଳନାହିଁ । ଏମାନଙ୍କ ଉପରେ କିଛି କାର୍ଯ୍ୟାନୁଷ୍ଠାନ ନାହିଁ । ଆଉ କେତେଜଣ ନାଁକୁ ସେଠିଥିଲେ । ସେମାନେ କିଏ ନୟାଗଡ଼ରୁ କିଏ ଫୁଲବାଣୀରୁ ତ କିଏ ବଉଦରୁ ଘଣ୍ଟାଏ ଦିଘଣ୍ଟାଏ ପାଇଁ ଆସି ପୁଣି ଚାଲିଯାନ୍ତି ।

ଯୋଗାଣ ବିଭାଗରେ ଗହମ, ଚିନି, କିରୋସିନି ଆସେ । ତାର ବଣ୍ଟନ ଚାଲିଥାଏ । ବିଡିଓ ଦସ୍ତଖତ କରନ୍ତି । ମାତ୍ର ଜିନିଷ ସବୁ ବରହମପୁରରେ ସେଇଠି ରହିଥାଏ । ଏଠିଖାଲି ଖାତା ତିଆରି ହୁଏ । ସେଥିଲେ ସ୍ଥାନୀୟ ଲୋକ । ତାଙ୍କୁ କିଏ କଣ କହିବ ? କନିଷ୍ଠ ଯନ୍ତ୍ରୀ ସବୁ କାମ ଯା ତା ନାମରେ ନିଜେହିଁ କରନ୍ତି । ତେଣୁ କାମର ଭଲମନ୍ଦ ଦେଖିବ କିଏ ? ସବୁକାମରେ ହଜାର ହଜାର ଅଗ୍ରୀମ । ସେ ପୁରଖା ଓ ଗୁଣ୍ଡା ଶ୍ରେଣୀର; ତାଙ୍କୁ କିଏ କଣ କହିବ ? ସାମାନ୍ୟ ନଳକୂପ ମେକାନିକ ମଧ ସେଠି ବଡ଼ । ଲୋକ ପାଣିନପାଇ ପାଟିକଲେ ସେ ତାଙ୍କୁ ଧମକାନ୍ତି । କାମପାଇଁ ଚାପଦେଲେ ମଦଖାଇ ଗାଳି କରନ୍ତି । ପୋଲିସ୍ ଥାନାରେ ଦେଲେ ମଦୁଆଙ୍କୁ କ'ଣ କରାଯିବ ବୋଲି କହନ୍ତି । ପିଅନମାନେ ବାବୁ । ସେମାନେ ଅଫିସ୍ ଜଗିବେନିକି ଘର ଓଳେଇବେନି । ନିଜେକରି ଦେଖାଇଦେଇ ପାଳିକରିଦେଲେ ମଧ କାମ କରିବାକୁ ନାରାଜ । ପିଣ୍ଡାରେ ବେଞ୍ଚରେ ବସି ଗୋଡ଼ ହଲାଇ ଯା ତା ଦରଖାସ୍ତ ଲେଖି ଦିପଇସା ପାଇବାର ଚେଷ୍ଟା ।

ସବୁଗୁଡ଼ିକରେ ଏକାଠି ହାତପକାଇ ଅନୁପସ୍ଥିତ ଥିବା ଗ୍ରାମସେବକ ଓ କ୍ୟାସିଅରଙ୍କୁ ଅନ୍ତର କରାଯିବା ସହ ତାଙ୍କ ବିରୋଧରେ ଅଭିଯୋଗ ପତ୍ର ଦିଆଗଲା । କନିଷ୍ଠ ଯନ୍ତ୍ରୀଙ୍କୁ ବଦଳିକରାଗଲା ଓ କାମ ନକରି ନେଇଥିବା ଅଗ୍ରୀମ ପାଇଁ ନୋଟିସ୍ ଜାରୀ କରାଗଲା । ନଳକୂପ ମେକାନିକ୍ ଓ ଯୋଗଣ ପରିଦର୍ଶକଙ୍କୁ ନିଲମ୍ବିତ କରାଗଲା । ପିଅନ ମାନଙ୍କୁ କଡ଼ାକଡା କାମ ଦିଆଗଲା । ଇଏତ ବଲୁରୀବସାରେ ହାତ ପୁରାଇବା କଥା । ଜିଲ୍ଲାପାଳ ଅରବିନ୍ଦ ବେହେରା ସଂପୂର୍ଣ୍ଣ ନୈତିକ ସମର୍ଥନ କରିଥିଲେ ମଧ ସେ ରହୁଥିଲେ ୩୦ କି.ମି. ଦୂରରେ । ଥାନା ୫କିମି ଦୂରରେ । ଉପଜିଲ୍ଲାପାଳ ୪୦ କି.ମି. ଦୂରରେ । ପାଖରେ ଗାଁ ଗଣ୍ଡାମଧ ନାହିଁ । ଛୋଟ ବଜାରଟି ସବୁ ବାହାର ଲୋକଙ୍କ ବେପାର ସ୍ଥଳ । ଅତୀତରେ ଏହିସବୁ ଅସୁବିଧାର ସୁଯୋଗନେଇ ଶୀଘ୍ର ସଂପ୍ରସାରଣ ଅଧିକାରୀଙ୍କୁ ମାଡ଼ ଓ ବିଡ଼ିଓଙ୍କୁ ଧକାଂଧକା କରିଥିବାର ରେକର୍ଡ଼ ଅଛି ।

ଏତେସବୁ ଦଣ୍ଡ ଓ ଆଇନଗତ କାର୍ଯ୍ୟାନୁଷ୍ଠାନ କରି ମାତ୍ର ଦୁଇଟି ମାସ ମଧରେ କାମ ଗୁଡ଼ିକ ଠିକ୍ ବାଟରେ ପକାଇଲା ବେଳକୁ ଯେ ସମସ୍ତେ ଆରମ୍ଭ କରିଦେଲେ ମେଳି । ବିଭିନ୍ନ ଗ୍ରାମପଞ୍ଚାୟତରେ ବହୁଳ ଜନସମର୍ଥନ ମିଳୁଥିଲେ ମଧ ସଦର ମହକୁମାରେ ସଂପୂର୍ଣ୍ଣ ନିଃସହାୟତା ଅନୁଭବ କରି ବାଧହୋଇ ପୁଣି ୪ମାସ ଛୁଟିନେଇ ବସିବାକୁ ହେଲା । ହେଲେ କାମଟିଠିକ୍ ବାଟରେ ପଡ଼ି ଯାଇଥିଲା ଓ ଦୁଷ୍ଟଲୋକ ଅଧିକାଂଶ ଦୂରେଇ ଯାଇଥିଲେ । ଆଉ ଦଣ୍ଡ ଦେବାକୁ ବା ଦୁଷ୍ଟଙ୍କୁ ସମ୍ମୁଖୀନ ହେବାକୁ ଦେହ ଓ ମନରେ ବଳ ମଧ ନଥିଲା । ତେଣୁ ଅଗତ୍ୟା ଛୁଟିକଟେଇ ରହିବାକୁ ସ୍ଥିର କରିଚାରିମାସ ଦମ୍ଭରେ ବସିଯିବାକୁ ହେଲା ।

## ୧୩୨. ଈଶ୍ୱର ଦୟାକଲେ

ବିଳମ୍ବରେହେଲେ ମଧ୍ୟ ସତ୍‌କର୍ମର ଫଳ ଓ ନିଷ୍ଠାର ଫଳ ଈଶ୍ୱର ଦିଅନ୍ତି । ସେଥିପାଇଁ ମଣିଷର ଧୈର୍ଯ୍ୟ ରହିବା ଦରକାର । ଈଶ୍ୱର ହୁଏତ ଏମିତି ନୀତିବାନ ଓ ନିଷ୍ଠାବାନ ଲୋକମାନଙ୍କୁ ପରୀକ୍ଷା କରନ୍ତି । ହେଲେ ତାଙ୍କର ଦୟା ନହେଲେ ସେ ପରୀକ୍ଷାରେ କିଏ ଉତ୍ତୀର୍ଣ୍ଣ ହେବ ? ଏହି ୪ମାସ ଛୁଟି ସମୟରେ ବଡ଼ ମାନସିକ ଆଶାନ୍ତି ସୃଷ୍ଟି ହୋଇଥିଲା । କେବଳ ନିୟମିତ ପୂଜା ଉପାସନା ଓ ଶାସ୍ତ୍ରାଧ୍ୟୟନରେ ସମୟ ଅତିବାହିତ କରିବାକୁ ପଡୁଥାଏ । ଏହାହିଁ ମାନସିକ ଶାନ୍ତିରକ୍ଷାର ଏକମାତ୍ର ପନ୍ଥା ।

ଛୁଟିରେ ଥିବାବେଳେ ଗୋପୀଆନା ଥରେ ଗୋଷ୍ଠୀ ଉନ୍ନୟନ ବିଭାଗର ଅତିରିକ୍ତ ସଚିବ ଈଶ୍ୱର ଚନ୍ଦ୍ର ଦାଶଙ୍କ ସହ କଥାହେଲେ । ସେ ବୋଧହୁଏ ଭଲକାମ ଓ ବହୁ ପ୍ରଶଂସା ବିଷୟ ଆଗରୁ ଜାଣିଥିଲେ ବା ଶୁଣିଥିଲେ । ତେଣୁ ଡ଼କାଇଲେ । ସାକ୍ଷାତ୍ କରିବାରେ କହିଲେ ବ୍ୟସ୍ତ ହୁଅନା । ୧୦ବର୍ଷ ଜିଲ୍ଲା ଓ ରାଜ୍ୟସ୍ତରୀୟ ଅଧିକାରୀଭାବେ କାମ କରି ଏତେ ଉଚ୍ଚ ପ୍ରଶଂସିତ ହୋଇ ପୁଣି ବ୍ଲକକୁ ଯିବା ଦରକାର ନାହିଁ ।

ସତକୁ ସତ ବିଳମ୍ବ ହେଲେ ମଧ୍ୟ ସେ ତାର ବ୍ୟବସ୍ଥା ପାଇଁ ସଚିବଙ୍କ ସହ ଆଲୋଚନା କଲେ । ହେଲେ ବିଭାଗୀୟ ସଚିବ କେଜାଣି କାହିଁକି ଅସହିଷ୍ଣୁ ହୋଇ କହିଲେ ଓଃ ସେହି ଗାଇଫାଇ ରଖି କୋଠାକରି ରହିଥିବା ବିଡ଼ିଓ କଥା କହୁଛନ୍ତି । ଏ ବିଷୟ ଜାଣି ତାଙ୍କୁ ସାକ୍ଷାତ୍ କରିବାରେ ତାଙ୍କର ଫଁ କମିଗଲା । ଶେଷରେ ରାଜ୍ୟ ହିନ୍ଦକୁଷ୍ଟ ନିବାରଣ ସଂସ୍ଥାରେ ମୁଖ୍ୟ ଥଇଥାନ୍ ଅଧିକାରୀ ଭାବେ ଅବସ୍ଥାପିତ କରାଗଲା । ସେଠାରେ ଥିବା ସଚିବ କେ. ବିଶ୍ୱନାଧମ୍ ବଡ଼ କାମିକା ଲୋକ । ତାଙ୍କ ସହକାମ କରିବା ଏକ ମଣିକାଞ୍ଚନ ସଂଯୋଗ ସହ ସମାନ । ସେଠାରେ ତାଙ୍କ ସହ ଦୁଇବର୍ଷ କାମ କରିବା ସମୟରେ ଦିଲ୍ଲୀରେ ୧୫ଦିନ ପାଇଁ ଏକ ତାଲିମ୍ କାର୍ଯ୍ୟକ୍ରମରେ ଯୋଗ ଦେବାର ସୁଯୋଗ ମିଳିଥିଲା । ସମୁଦ୍ର କୂଳରେ ରାମେଶ୍ୱର ଠାରେ କେନ୍ଦ୍ରସରକାରଙ୍କ ସହାୟତାରେ ଗୋଟିଏ ନିରୋଗ କୁଷ୍ଠ ରୋଗୀ ମାନଙ୍କର ଥଇଥାନ ଶିବିର ସ୍ଥାପନ କରି ତାକୁ ସଫଳତାର ସହ ଚଳାଇବାର ଗୌରବ ମିଳିଥିଲା । ଏତଦ୍ ବ୍ୟତୀତ ସବୁ ଶିଶୁ ଭବନ ବୁଲିଦେଖି ସେଗୁଡ଼ିକୁ ସକ୍ରୀୟ କରାଯାଇଥିଲା । ବିଭିନ୍ନ କୁଷ୍ଠାଶ୍ରମରେ ଶ୍ରମଭିତ୍ତିକ କାମ ଗୁଡ଼ିକ ପୁନରାରମ୍ଭକରି ଅନୁଷ୍ଠାନର ଆୟବୃଦ୍ଧି ବେଶ୍ ଘଟାଯାଇଥିଲା ।

ତାଛଡ଼ା ବିଭିନ୍ନ ବସ୍ତିରେ ରହୁଥିବା କୁଷ୍ଠ ରୋଗୀ ମାନଙ୍କର ଅବସ୍ଥା ଦେଖି ତାଙ୍କ ପାଇଁ ଥଇଥାନ ସମ୍ବନ୍ଧେ ସରକାରଙ୍କ ସହ ପରାମର୍ଶ ଚାଲିଥିବା ବେଳେ ବିଶ୍ୱନାଧମଙ୍କର କାର୍ଯ୍ୟକାଳ ଶେଷ ହୋଇଯାଇଥିଲା ଏବଂ ତାଙ୍କ ସ୍ଥାନରେ ଡ଼ା. ଲୀଳାବତୀ ପଟ୍ଟନାୟକ ଯୋଗ ଦେଇଥିଲେ । ଚାଲୁ କାମଗୁଡ଼ିକ ଦେଖିବା ବ୍ୟତୀତ ନୂଆକାମ କରିବାରେ ସାହସିକତା ତାଙ୍କର

ନଥିଲା । ତେଣୁ ସେଠାରେ ଆଉ ଭଲ ଲାଗୁ ନଥିଲା । ସେତେବେଳେକୁ ଓଡ଼ିଶା ପ୍ରଶାସନିକ ସେବାରେ ଯୋଗଦାନ ହୋଇ ସାରିଥାଏ । ତେଣୁ ଅନ୍ୟତ୍ର ଭଲ କାମ କରିବାର ଆଗ୍ରହ ମନରେ ଜାଗ୍ରତ ହୋଇଥିଲା । ତା ସହିତ ଅସମାପ୍ତ ହିନ୍ଦକୁଷ୍ଠ ନିବାରଣ ସଙ୍ଘର କାମ ଯୋଗୁଁ ମନରେ ମଧ୍ୟ ଅବସାଦ ଥାଏ । ବାସ୍ତବରେ ସେ ଅବସାଦ ଶେଷରେ ବଢ଼ିଲା । ସେଠାରେ ଥିବାବେଳେ ଯେଉଁ ସ୍ୱେଚ୍ଛାସେବକମାନଙ୍କୁ କାର୍ଯ୍ୟଦିଆଯାଇଥିଲା ତାଙ୍କ ସହ ଆମପରେ ସଂପର୍କ ତୁଟିଗଲା । ପୌଢ଼ଶିକ୍ଷା ପାଇଁ ମଞ୍ଜୁରୀ ମିଳିଥିବା ଯୋଜନା ଟଙ୍କା ଫେରିଗଲା । ବହୁତ ନୂଆକରି ଆରମ୍ଭ କରିଥିବା କାମ ବନ୍ଦପ୍ରାୟ ହୋଇଯିବାର ଶୁଣିବାକୁ ମିଳିଲା ।

ମହାତ୍ମାଗାନ୍ଧୀ ନିଜେ ଦୁଇ ଦୁଇଥର ପରିଦର୍ଶନ କରିଥିବା କଟକ କୁଷ୍ଠାଶ୍ରମ ପ୍ରତି ଚରମ ଅବହେଳା ଶେଷରେ ଶୁଣିବାକୁ ମିଳିଥିଲା । ଠାକୁରଙ୍କର ଯାହା ଇଚ୍ଛା ତାକୁ କିଏ ଅନ୍ୟଥା କରିବ ? ଏ ଦିଗରେ କିନ୍ତୁ ବହୁତ କିଛିକାମ କରିବାର ଥିଲା ଓ ଅଛି ମଧ୍ୟ।

## ୧୩୩. ତାଳପାଚିବାକୁ କୁଆ ବସିବାକୁ

କାକତାଳୀୟ ନ୍ୟାୟ ଗୋଟିଏ ପ୍ରବାଦ ନୁହେଁ । ବହୁସ୍ଥାନରେ ଏହା ବାସ୍ତବତାରେ ପରିଣତ ହୋଇଥାଏ । ତାଳ ପାଚିବା ଋତୁରେ ତାଳପାଚେ । ପାଚିଲା ତାଳ ଗଳିପଡ଼ିବା କଥା । ଏତିକିବେଳେ ତା'ଉପରେ କୁଆଟି, ବସିଗଲେ ତାରି ଉପରେ ତାଳଟି ଗଳିପଡ଼େ । ସଂସାରରେ ବହୁକର୍ମରେ ଏହିପରି ସଂଯୋଗ ଘଟିଥାଏ । କିଏ ତାକୁ କାକତାଳୀୟ ଓ ଆଉ କେତେ ତାକୁ ଯୋଗ ଭୋଗ ଇତ୍ୟାଦି କହିଥାନ୍ତି । ତେବେ ମାନିବାକୁ ହେବଯେ ଏପରି ସଂଯୋଗ ନୂଆ ନୁହେଁ; ଏହା ବିଧି ନିର୍ଦ୍ଦିଷ୍ଟ ।

ହୋଲିଦିନ ସାହିରୁ କେତେକଲୋକ ବିଜୁବାବୁଙ୍କୁ ଅବିର ଦେବାକୁ ଯାଇଥିଲୁ । ସେଠୁ ଫେରି ସାଇରେ ବୁଲିବାବେଳେ ଅଜୟବାବୁଙ୍କ ଘରେ ତାଙ୍କ ଦେଢ଼ୁତା ପୁଅଭାଇ ଶରତ୍ ବାବୁ ତାଙ୍କ ଘରକୁ ଆସିଥିଲେ । ତାଙ୍କୁ ମଧ୍ୟ ଅବିର ଦେଲୁ । ସେତିକିବେଳେ ଅଜୟବାବୁ କହିଲେ ଭାଇନାତ ମନ୍ତ୍ରୀ ହେବେ । ଆପଣ ହେବେ ବ୍ୟକ୍ତିଗତ ସଚିବ । ଉଭୟେ ଏଥିରେ ମୌନ ସମ୍ମତିଦେଇ ଅବିର ଖେଳ ଶେଷ କରିବାର କେତେଦିନରେ ସତକୁ ସତ ସେ ରାଜ୍ୟମନ୍ତ୍ରୀ ମଣ୍ଡଳରେ ଯୋଗ ଦେଲେ । ଠିକ୍ ସେତିକିବେଳକୁ ହିନ୍ଦକୁଷ୍ଠ ନିବାରଣ ସଂଘରୁ ଦାୟିତ୍ୱ ହସ୍ତାନ୍ତର କରି ବାରିପଦାଯିବାକୁ ଆଦେଶ ମିଳିଥାଏ । ଅଜୟବାବୁ ପୂର୍ବସ୍ମୃତି ମନେପକାଇ ଦେଇ କହିଲେ ଆଉ ବାରିପଦା କାହିଁକି ଯିବେ; ଭାଇନାଙ୍କ ପାଖରେ ତ ସାଢ଼େ ଚାରିବର୍ଷ କଟିଯିବ । ଏଇଠି ଅବସର ନେଇଯିବେ । ତାଙ୍କୁ ଦେଖା କରନ୍ତୁ ।

ସତକୁସତ ତାଙ୍କୁ ଦେଖା କରିବାରେ ସେ ପୂର୍ବସ୍ମୃତି ମନେପକାଇ ସାଙ୍ଗେସାଙ୍ଗେ ରାଜି ହୋଇଗଲେ । ଉପରକୁ ନୋଟଟିଏ ପଠାଇଦେଲେ । କାର୍ଯ୍ୟମଧ୍ୟ ଆରମ୍ଭ ହେଲା ।

କିନ୍ତୁ ନୋଟଟି ମଞ୍ଜୁର ହୋଇ ଫେରିଲାନି । ବୁଝୁବୁଝୁ ରାଜସ୍ୱ ବିଭାଗ ସେଥିରେ ରାଜି ହେଉନାହାନ୍ତି । ଏମିତି ତିନିଥର ଯା ଆସରେ ଆଦେଶ ନମିଳିବାରୁ ମନ୍ତ୍ରୀ ନିଜେତାକୁ ନେଇ ମୁଖ୍ୟମନ୍ତ୍ରୀଙ୍କଠାରୁ ଆଦେଶ କରେଇନେଇ ଆସିଲେ ।

ଏଇଠି ଶୁଭକାର୍ଯ୍ୟରେ ଏକ ଅଶୁଭର କଣ୍ଟା ଫୋଡ଼ାଗଲା । ଯେ ତାକୁ କରେଇ ଦେଉ ନଥିଲେ ତାଙ୍କର ସ୍ୱାର୍ଥରେ ଓ ଅହମିକାରେ ଦାଗ ଲାଗିଲା । ସେଥିଲେ ବହୁଉଚ୍ଚରେ । ତେଣୁ ତାଙ୍କୁ ବେଶୀ କାଟିବା ସ୍ୱାଭବିକ । ହେଲେ ଏକଥା ତଳେ ଜାଣିବା କଷ୍ଟକର । ଏମିତି ତିନିବର୍ଷ କଟିଯିବାପରେ ନୀତିଗତ ମତପାର୍ଥକ୍ୟ ଯୋଗୁଁ ମନ୍ତ୍ରୀ ଶରତ୍ କର ଅନ୍ୟ ତିନିଜଣଙ୍କ ସହ ତ୍ୟାଗପତ୍ର ଦେଇଦେଲେ ଏବଂ ତାହା ଗ୍ରହଣ କରାନଯାଇ ସେମାନଙ୍କୁ କାର୍ଯ୍ୟ ନିବୃତ୍ତ କରାଗଲା । ତେଣୁ ସେଇଠି ରହି ଅବସର ନେବାର ଯେ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଥିଲା ତାହା ଫସର ଫାଟିଲା ।

ଯାହାହେଉ ସେତେବେଳକୁ ନୂଆ କରି ଖୋର୍ଦ୍ଧାଜିଲା ଖୋଲୁଥାଏ । ସେହିଠି ଅବସ୍ଥାପିତ କରାଗଲା । ଜିଲ୍ଲାପାଳ ରଘୁନଥ ମିଶ୍ର ପୁରୁଣା ଲୋକଟିଏ ପାଇ ପାଖଛଡ଼ା ନକରି ଏକାଧିକ ଦାୟିତ୍ୱ ଦେଲେ ଯାହାକି ବୟସାଧିକ୍ୟ ସତ୍ୱେ କଷ୍ଟକରିନିପୁଣତାର ସହ କରାଗଲା ।

ଆଗରୁ ଶିକ୍ଷକ ରାଜକିଶୋର ନାୟକ ଯେକି ଖଦିବୋର୍ଡ଼ର ଅଧକ୍ଷ ଥିଲେ ସେ ଉନ୍ନୟନ ଅଧିକାରୀ ଭାବେ ନେଇ ଯିବାକୁ ଚାହୁଁଥିଲେ । ମନ୍ତ୍ରୀଙ୍କ ପାଖରେ ଥିବାରୁ ତାହା ସମ୍ଭବ ହେଉ ନଥିଲା । ଏବେପୁଣି ସେ ଲାଗିଲେ ଓ ସେହି କାକତାଳୀୟ ନ୍ୟାୟରେ ସେଠି ଅବସ୍ଥାପିତ କରାଗଲା ।

ସେଠାରେ ପୁଣି ସାଧନା ଆରମ୍ଭ ହୋଇଗଲା । ଉଦ୍ୟୋଗପୁରୀର ସମସ୍ତ ଉଦ୍ୟୋଗ ବନ୍ଦ ଥିଲା । ଖାଲି କର୍ମଚାରୀମାନେ ବସି ବସି ଦରମା ନେଉଥିଲେ । ଦିନରାତି ଲାଗିଲାଗି ସେଥିରୁ ୪ଟି ବିଭାଗକୁ ଚାଲୁ କରାଗଲା ଓ ୨ଟିକୁ ଲାଭ ଜନକ କରାଗଲେ ମଧ୍ୟ ସେଥିପାଇଁ ଦୁଇଜଣ ଦୁଷ୍ଟଙ୍କୁ ନିଲମ୍ବିତ ଓ ୩ଜଣଙ୍କୁ ବହୁକଷ୍ଟରେ ସ୍ଥାନାନ୍ତରିତକରି ତାକୁ ଚଳାଇବାକୁ ପଡ଼ିଥିଲା । ବୁଢ଼ାଦିନେ ସକାଳ ୮ଟାରେ ସାଇକେଲ ବା ଲୁନାରେ ଯାଇ ସେଠିକାମ ଦେଖି ପୁଣି ବୋର୍ଡ଼କୁ ଯାଇ ସେଠି ପଡ଼ିରହିଥିବା ନଥିପତ୍ରକୁ ତଦ୍‌ବିର କରି କାମ କରିବା କଷ୍ଟ । ଯାହହେଉ ରାଜୁବାବୁଙ୍କର ଯେଉଁ ଗଭୀର ଆସ୍ଥାଥିଲା ତାକୁ କାର୍ଯ୍ୟରେ ପରିଣତ କରି ଦେଖାଇ ଦିଆଗଲା । ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଇଥିଲେ ସେ କଠୀନ ଓ ନିଷ୍ପାପର କାର୍ଯ୍ୟଦେଖି ।

ମନ୍ତ୍ରୀଙ୍କ ଦପ୍ତରରେ ସକାଳ ୮ଟାରୁ ରାତି ୧୦ଟାଯାଏ କାମ ହେଉଥିଲା ବସିବସି । ଏଠି ଦୌଡ଼ିବା ଓ ବସିବା ଉଭୟକାମ ଲାଗିଗଲା । ଅଧିକ ବୟସରେ ଏତେସମୟ କାମ କରିବା ଦ୍ୱାରା ଏବଂ ଖା ପିଅ ଠିକ ନରହିବା ଦ୍ୱାରା ବେମାରି ଟିଏ କିଣାଗଲା ଯାହାକି ସାରାଜୀବନ ପାଇଁ କଣ୍ଟା ହୋଇ ରହିଲା । ଡ଼ା. ଶୈଳେଶ୍ୱର ନନ୍ଦ ଯେକି ସେତେବେଳେ

ଓଡ଼ିଶା ସଙ୍ଗୀତ ନାଟକ ଆକାଡ଼େମିର ସଚିବଥିଲେ ସେ ଅଯାଚିତ ଭାବେ ଡ଼ାକିନେଇ ପରୀକ୍ଷା କରି ରୋଗ ଜଣାଇଦେଲେ ଓ ଔଷଧ ବ୍ୟବସ୍ଥା ନିୟମିତ କରିଦେଲେ । ସେ କଟକରେ ଥିବା ଯାଏ ମାଗଣାରେ ପରୀକ୍ଷା ନିୟମିତ କରୁଥିଲେ । ସେତିକି ନୁହେଁ ବିଳମ୍ବ ହେଲେ ତାଙ୍କଘରେ ଖାଇବାକୁ ଦେଉଥିଲେ ଓ ସ୍କୁଟରରେ ଆଣି ବସରେ ଛାଡୁଥିଲେ ।

ଯେତେ ସାହାଯ୍ୟ କଲେବି ଯେଉଁ ମଧୁମେହ ରୋଗଟି କଠୀନ କର୍ମର ପାରିଶ୍ରମିକ ଭାବେ ମିଳିଲା ତାହା ସାରାଜୀବନକୁ ରହିଗଲା ସ୍ମାରକ ହୋଇ । ଆଗରୁତ ବହୁତ ଦୌଡ଼ାଦୌଡ଼ି କାମଥିଲା । ଏ ଯେଉଁ ୩ବର୍ଷ ବସିବାକୁ ପଡ଼ିଗଲା ଯେ କେବଳ ତାରି ଫଳ ଏଥିରେ ସନ୍ଦେହ ନାହିଁ ।

## ୧୩୪. ସାରସ୍ୱତ ସାଧନା ପଥେ

ସବୁ ମଣିଷଙ୍କର ନିଜର ମୁଖ୍ୟକାମ ସହିତ ଗୋଟିଏ ଗୌଣ ଅଭ୍ୟାସ ଥାଏ । ଟିକିଏ ଫୁରୁସତ ପାଇଲେ ସେ ଗୌଣ କର୍ମଟି ବା ଅଭ୍ୟାସଟି ଆତ୍ମ ପ୍ରକାଶ କରେ । କିଏ ଖେଳିବା, କିଏ ଚିତ୍ରାଙ୍କନ କରିବା, କିଏ ଦେବ ସେବା କରିବା, କିଏ ଗୀତ ବୋଲିବା, କିଏ ବାଦ୍ୟ ବଜାଇବା, ଆଉ କିଏ ଲେଖାରେ ଆନନ୍ଦ ପାନ୍ତି । ତାଙ୍କ ଅଜ୍ଞାତ ସାରରେ ସେ ସେହିଦିଗକୁ ଟାଣି ହୋଇଥାନ୍ତି । ସେଥିରୁ ତାଙ୍କୁ ଗୋଟିଏ ପ୍ରକାର ତୃପ୍ତିମିଳେ; ମୁଖ୍ୟକର୍ମରେ ଯେପରି ଆତ୍ମସନ୍ତୋଷ ମିଳେ ।

ପିଲାଦିନେ ଅନନ୍ତବ୍ରତ ବହି ପଢ଼ିଲାବେଳେ ତାକୁ ଗୀତଛନ୍ଦରେ ଲେଖିଲେ ଭଲ ହୁଅନ୍ତା ଭାବି ସେଥିପ୍ରତି କିଛି ସମୟ ବ୍ୟୟ କରାଇଥିଲା । ସେକ'ଣ ଲେଖାଯାଇଥିଲା ଓ କୁଆଡ଼େ ହଜିଲା ଆଉ ମନେ ନାହିଁ । ତା'ପରେ ସ୍କୁଲପଢ଼ା ସମୟେକେ ବକ୍ତୃତା କରିବାରେ ଆଗ୍ରହ ବଢ଼ିଥିଲା । କେବଳ ଛାତ୍ରାବାସ ପତ୍ରିକାରେ ଥରେ ଗୋଟିଏ କ'ଣ ଲେଖିଥିବା ମନେହୁଏ । ପଂଚାୟତ ବିଭାଗରେ ଥିବାବେଳେ ମଧ୍ୟ ତିନିଚାରିଟି ସନ୍ଦର୍ଭ ଲେଖିଥିଲି ଓ ତାହା ଛପାଯାଇଥିଲା ।

ଇତିମଧ୍ୟରେ ବହୁବର୍ଷ କଟିଗଲା । ଚାକିରୀ ସହ ଘରକାମ ଓ ତା ସାଙ୍ଗକୁ ପାଠପଢ଼ାରେ ସଂପୂର୍ଣ୍ଣ ମଜ୍ଜିଯିବାକୁ ପଡ଼ିଥିଲା । ବାସ୍ତବରେ ୭ମ ଶ୍ରେଣୀ ପାସ୍ କରିବା ପରେ ଆଉ ନିୟମିତି ସ୍କୁଲ ଶିକ୍ଷା ନଥିଲା । କଲେଜ୍ ପିଣ୍ଡା ମଧ ମାଡ଼ିବାର ସୁଯୋଗ ନଥିଲା । ହେଲେ ଘରୋଇଭାବେ ଆଇଏ, ବିଏ ଏବଂ ଏମଏ ଏକା ଏକାଥରକେ ପରୀକ୍ଷା ଦେଇ ପାସ୍ କରିବାରେ ଗୋଟିଏ ଝୁଙ୍କ ଥିଲା । ଅବଶ୍ୟ ସରକାରୀ କାର୍ଯ୍ୟକରି ବିଭିନ୍ନ ଲେଖାପଢ଼ା ଯୋଗୁଁ ଜ୍ଞାନର ପରିସୀମା ବଢ଼ିଯାଇଥିଲା । ଏମ.ଏ ପରୀକ୍ଷାରେ ପାସ୍ ଖବର ଶୁଣି ତଦାନିନ୍ତନ ଜିଲ୍ଲାପାଳ ବୀରକିଶୋର କର କପିକରି ପାସ୍ କରିଥିଲି ବୋଲି ମନ୍ତବ୍ୟ କରିବାରେ ଏକାନ୍ତରେ ସେ ଅଭ୍ୟାସ ନାହିଁ ବୋଲି ସତର୍କରେ ଉତ୍ତର ଦିଆଯାଇଥିଲା । ଆଇ ଏ ଓ ବି ଏ ପରେ ଏମ

ଏ ପରୀକ୍ଷା ଏତେ ସହଜ ହୋଇନଥିଲା;  ସାଙ୍ଗରେ କେହି ପଢ଼ିବାକୁ ନଥିବାରୁ । ଶେଷରେ ଜଣେ ବି.ଏ. ପଢୁଥିବା ପିଲା ତାଙ୍କ ଅନର୍ସ ବିଷୟରୁ କେତେକେ ପଢ଼ିଦେବାରେ ତାକୁହିଁ ସମ୍ବଳ କରି ବାକୁ ପଢ଼ିଥିଲା ସ୍ୱତନ୍ତ୍ର ପେପର ପାଇଁ ।

ବିଡ଼ିଓ ଥିବାବେଳେ ବହୁ କଠିନ ପରିଶ୍ରମ କରିବାକୁ ପଡୁଥିଲା । ଛୁଟିଦିନରେ ମଧ୍ୟ କାମ ଥାଏ । ତେବେ ଲାଗଲାଗ ଝଡ ବର୍ଷା ପଡିଗଲେ ଆଉ ବାହାରକୁ ଯାଇ ନହେଲେ ଘରେ ବସି କବିତା ଲେଖାଯାଏ । ତାକୁ ନିଜ ସ୍ତ୍ରୀ ଓ ପିଲାଙ୍କ ଆଗରେ ଗୁଣୁ ଗୁଣୁ ହୋଇ ବୋଲାଯାଏ । ସେମାନଙ୍କର ଏଥିପ୍ରତି ଯେଉଁ ଆଗ୍ରହ ପ୍ରକାଶ ପାଏ ତାହାହିଁ ଅଧିକ ଲେଖିବାକୁ ପ୍ରେରଣା ଦେଉଥିଲା । ଜୁଆଙ୍ଗ ପୀଢ଼ିରେ ଥିବାବେଳେ ଜୁଆଙ୍ଗମାନଙ୍କ ସମ୍ବନ୍ଧରେ ସଂଗୃହିତ ତଥ୍ୟସବୁ ଇଂରାଜୀରେ ଟାଇପ କରି ଉପଜିଲ୍ଲାପାଳଙ୍କୁ ତାଙ୍କ ନିର୍ଦ୍ଦେଶରେ ଦିଆଯାଇଥିଲା । ତାକୁନେଇ କେହିଜଣେ ଆଇଏସ୍ ସାହାବ ବାହାର ବିଶ୍ୱବିଦ୍ୟାଳୟରେ ସଜାଇ ଲେଖିଦେଇ ଡ଼କ୍ଟୋରେଟ ପାଇଥିଲେ । ବାଲିଗୁଡ଼ାରେ ଥିବା ବେଳେ ବେଲଘରର କୁଟିଆକନ୍ଧମାନଙ୍କ ସମ୍ବନ୍ଧରେ ସଂଗୃହିତ ତଥ୍ୟ ଜିଲ୍ଲାପାଳ ନେଇ ସଂଶୋଧନ କରି ଟାଇପ୍ କରି ରାଜ୍ୟ ସରକାରଙ୍କୁ ଦେଇଥିଲେ । ଏହିଦୁଇ ଲେଖାର ଟିପାକୁ ସମ୍ବଳକରି ଓଡ଼ିଆରେ ବେଲଘରର ଲଙ୍ଗୁଳୀବାବା ଓ ଗୋନାସିକାର ଋଷି ବହିଦୁଇଟି ଛପା ଯାଇଥିଲା ।

ତତ୍କାଳୀନ ମନ୍ତ୍ରୀ ଶ୍ରୀ ଭଜମନ ବେହେରା ଶ୍ରୀ ଯଦୁନାଥ ଦାଶ ମହାପାତ୍ର ତାକୁ ଉନ୍ମୋଚନ କରିଥିଲେ । କବିତା ପୁସ୍ତକଟିର ପାଣ୍ଡୁଲିପି ବେତାର ନିର୍ଦ୍ଦେଶକଙ୍କୁ ଦିଆଯାଇ ଥିଲା । ତାଙ୍କ କମିଟି ତାକୁ ଦେଖି ଠିକ୍ ଚିହ୍ନ ଦେଇ ବାଛିଥିଲେ । ମାତ୍ର ଭଗବାନ କହିଲେ ଚଉଶହ ଟଙ୍କା ଦରକାର । ଶ୍ରମର ମୂଲ୍ୟ ଏଇଆ ଭାବି ଫେରାଇ ଆଣି ପରେ ପ୍ରକାଶ କରାଗଲା ଓ ଅଧାପିକା ତଥା କଣ୍ଠଶିଳ୍ପୀ ଅନିମାକର ତାକୁ ଉନ୍ମୋଚନ କରିଥିଲେ । ବହୁଦିନ ପରେ ପ୍ରସାର ଭାରତୀ ତାକୁ ଗ୍ରହଣ କରିଥିଲେ । କକେଇ ସ୍ୱାଧୀନତା ସଂଗ୍ରାମୀ କଣ୍ଡୁରୀଚରଣ ଦ୍ୱିବେଦୀଙ୍କ ଜୀବନକୁ ସମ୍ବଳକରି ଲେଖାଯାଇଥିବା ବହିଟିର ମୁଖବନ୍ଧ ଲେଖିଥିଲେ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ । ତାକୁ ରାଜ୍ୟପାଳ ଶ୍ରୀଯୁକ୍ତ ଯଜ୍ଞଦତ୍ତ ଶର୍ମା ଓ ମୁଖବନ୍ଧକାର ଉନ୍ମୋଚନ କରିଥିଲେ । ଶେଷୋକ୍ତ ବହିଦୁଇଟି ମନ୍ତ୍ରୀଙ୍କ ବ୍ୟକ୍ତିଗତ ସଚିବ ଥିବାବଳେ ଉନ୍ମୋଚିତ ହୋଇଥିଲା । ସେତିକି ନୁହେଁ ଗୋକର୍ଣ୍ଣିକା ସାହିତ୍ୟ ସମାଜମଧ ଆଦିବାସୀମାନଙ୍କ ଉପରେ ଲେଖାବହିପାଇଁ ରାଜ୍ୟପାଳଙ୍କ ଦ୍ୱାରା ସମ୍ମାନିତ କରିଥିଲେ । ଚିନ୍ତା ଓ ଚେତନା ମଧ ସମ୍ମାନ ପାଇଁ ବାଛି ଚିଠି ଦେଇଥିଲେ ମଧ ଶରତ୍ ବାବୁଙ୍କ ମନ୍ତ୍ରୀତ୍ୱ ଯିବାପରେ ପଛେଇ ରହି ଯାଇଥିଲେ । ହେଲେ ପରବର୍ତ୍ତୀ କାଳରେ ଢେଙ୍କାନାଳର ବିଶ୍ୱଭ୍ରାତୃତ୍ୱ ସଂସ୍ଥା ଓ ଭୁବନେଶ୍ୱରର ନିଖିଳ ଓଡିଶା ପ୍ରଗତିବାଦୀ ଲେଖକ ସଂଘ ଯଥାକ୍ରମେ ଅଖଣ୍ଡ ଉତ୍କଳ ପ୍ରହରୀ ଓ କବି ଭାବେ ସମ୍ମାନିତ କରିଥିଲେ ।

ତାପରେ ବହୁ କବିତା ଆସରରେ ସ୍ୱରଚିତ ବହୁ କବିତା ଆବୃତ୍ତି କରିବାର ସୁଯୋଗ ମିଳିଥିଲା । ସେଥିମଧ୍ୟରୁ ରାଜଧାନୀ ପୂଜା ସମିତିରେ ବନ୍ଧୁ ନାରାୟଣ ବ୍ରହ୍ମାଙ୍କ ପ୍ରଚେଷ୍ଟାରେ ପ୍ରତିବର୍ଷ ୨ ଥର କବିତା ପାଠ ନିୟମିତ ହେଉଥିଲା ଏବଂ ପ୍ରତିବର୍ଷ ଗୋଟିଏ ଗୋଟିଏ ସଂକଳନ ପ୍ରକାଶିତ ହେଉଥିଲା । ସେହିପରି ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀମଣ୍ଡଳ ଦ୍ୱାରା ଏ କାର୍ଯ୍ୟ ଓଡିଆ ନବ ବର୍ଷ (ପଣାସଂକ୍ରାନ୍ତୀ) ଓ ଇଂରାଜୀ ନବବର୍ଷରେ କବି ସମ୍ମିଳନୀ ହେଉଛି ଓ ଏଠାରେ ନିୟମିତ କବିତା ପାଠ ହେଉଛି । ବ୍ରହ୍ମାବାବୁ ଓ ମୁଁ ଏହାର ସଂପୂର୍ଣ୍ଣ ଦାୟିତ୍ୱ ନେଇ, ଏଠୁଁ ମଧ୍ୟ ସଂପର୍କର-ସେତୁ କବିତା ସଂକଳନ ପ୍ରକାଶିତ ହେଉଛି । ଉଦୟପୁରର ଦାଶରଥୀ ପଟ୍ଟନାୟକଙ୍କ ପ୍ରେରଣାରେ ଲେଖାଯାଇଥିବା "ଅବଧୂତ" ନାମକ କବିତାର ପାଣ୍ଡୁଲିପି ହଜିଯିବାରେ ବହୁ ମନଦୁଃଖ ରହିଯାଇଥିଲା । ଏତଦ୍ ବ୍ୟତୀତ ସମାଜ, ଉତ୍କଳିକା, ସାହାଣମେଲା, ସୁବାର୍ତ୍ତା, ଲୋକଶକ୍ତି, ସମୟ, ମାତୃଭୂଷା, ପ୍ରଜାତନ୍ତ୍ର, ସନଟାଇମସ୍, ସମ୍ବାଦ, ପଞ୍ଚାୟତ, ଗୋକର୍ଣ୍ଣିକା ଇତ୍ୟାଦି ପତ୍ରିକାରେ ବହୁତ ଲେଖା ବିଭିନ୍ନ ସମୟରେ ପ୍ରକାଶିତ ହୋଇଥିଲା । "ବଡ ମୋର ଗାଁଟି" ରେ ଗ୍ରାମ୍ୟଚିତ୍ର ଓ ଗ୍ରାମ୍ୟ ଚରିତ୍ର ପ୍ରସ୍ଫୁଟିତ । ଏତାଛଡା ଶତାଧିକ କବିତା ଯାହାକି ଗୋଦାବରୀଶ ସାହିତ୍ୟ ସଂସଦ, ଭୁବନେଶ୍ୱର ସାହିତ୍ୟ ସମାଜ, ନିଖିଳ ଉତ୍କଳ ପ୍ରଗତିଶୀଳ ଲେଖକ ସମାଜ ଇତ୍ୟାଦିରେ ପଠିତ; ତାହା ସବୁ ପ୍ରକାଶ ପାଇଁ ପ୍ରସ୍ତୁତ ।

ଅନ୍ତତଃ ଆଉ ଗୋଟିଏ କବିତା ପୁସ୍ତକ ସହ ଆଚରଣଧର୍ମ ଉପରେ ଏକ ନିବନ୍ଧ ଓ ଗଳ୍ପ ପୁସ୍ତକ, ଆଦିମ ଅଧିବାସୀ ବଣ୍ଡାମାନଙ୍କ ସମାଜିକ ଜୀବନ ଉପରେ ଶିବ ଲୋକର ରୁଦ୍ରଗଣ ଲେଖା ପ୍ରକାଶ କରାହୋଇ ଅଛି । ହେଲେ ଈଶ୍ୱରଙ୍କ ଇଚ୍ଛା କିଏ ଜାଣିବ ? ତାଙ୍କର ବିନା ନିର୍ଦ୍ଦେଶନାରେ ଶୁଖିଲା ପତ୍ର ମଧ୍ୟ ହଲିପାରେନା । ଏ ଯେତିକି ସାମାନ୍ୟ ସାରସ୍ୱତ ସାଧନା ସେସବୁ ତାଙ୍କରି କୃତିତ୍ବତା ଅନ୍ୟ କିଛି ନୁହେଁ । ବହୁକଥା କହିବାକୁ ମନହେବ ସିନା ତାଙ୍କ ବିନା ପ୍ରେରଣାରେ ଅକ୍ଷର ଟିଏ ଲେଖିବାକୁ ମନହେବନି ।

## ୧୩୫. ମାଙ୍ଗଳିକ କର୍ମରେ

ସଂସାରଭିତରେ ଘରକରିଥିଲେ ପଥର ପଡ଼ିଲେ ସହି । ସବୁ ଦୁଃଖକୁ ସହି, ତାକୁ ଅତିକ୍ରମ କରି ନିଲଠା ମଣିଷ ପୁଣି ସୁଖ ପଥରେ ଆଗେଇ ଥାଏ । ଭୁଲି ଯାଏ ତାର ଅସୁବିଧା ଆଉ ଦୁଃଖ । ବିଡ଼ିଓ ଚାକିରୀ ସମୟରେ ବଡ଼ ଓ ମଝିଆଁ ପୁଅ ଦୁହିଁଙ୍କ ବ୍ରତଘର ଶେଷ ହୋଇଯାଇଥିଲା । ଗାଁରୁ ପୁରୋହିତ, ଭଣ୍ଡାରୀ ଓ ଭାଇଭାଉଜ ଭଉଣୀ ଭିଣୋଇଙ୍କୁ ଆଣି ସେକାମ ଖୁବ୍ ସହଜରେ ଶେଷ ହୋଇଥିଲା । ସେତେବେଳକୁ ଭୁବନେଶ୍ୱରରେ ଏତେଟା ଜଣାଶୁଣା ନଥିଲା । ତେଣୁ ଆଦବ କାଇଦାରେ ଟମ୍ବୁ ବା କନା ନବାନ୍ଧି, ଗୈକିଟେବଲ ନଆଣି ଘରେ ଭଲ ମନ୍ଦ ରନ୍ଧାରନ୍ଧିକରି ବଂଧୁ କୁଟମ୍ବଙ୍କୁ ଖାଇବାକୁ ଦେଇ ସେ ଦୁହିଙ୍କୁ ପଇତା ଦିଆଯାଇଥିଲା । ଏପରିକି ବିଲାତ ଫେରନ୍ତା ଡ. ବଂଶୀଧର ସାମନ୍ତରାୟ, ସଉକବାଲା

ଲୋକ, କଣ୍ଟା ଚାମଚରେ ଖାଇବା ଲୋକ ଖାଲି ଖୋଲା ଦାଣ୍ଡରେ ତଳେ କଦଳୀ ପତ୍ରରେ ଭୋଜିଖାଇ ଖୁସିରେ ଯାଇଥିଲେ । ତା ପରେ ଭୁବନେଶ୍ୱର ହରିଜନ ନିଗମରେ ଥିବାବେଳେ ବଡଝିଅ ଓ ସାନପୁଅର ବିବାହ ଓ ବ୍ରତ ଏକାଠି ହେଲା । ବିଭାଘର ସଂଯୋଗପାଇଁ ଉମାର ଅବଦାନ ଅବିସ୍ମରଣୀୟ । ତାକୁ ଛାଡ଼ି ଏତେଦୂରରେ ବାରମ୍ବାର ଦୌଡ଼ି ସମ୍ବନ୍ଧ ସ୍ଥାପନ ଅସମ୍ଭବ ହୋଇଥାନ୍ତା । ଦିନ ଏଗାରଟାରେ ବରଆସିବବୋଲି ରାତି ୪ଟାରୁ ବ୍ରତଘର ଆରମ୍ଭ କରି ଦିନ ୧୧ଟା ବେଳକୁ ଶେଷକରିବାକୁ ପଡ଼ିଥିଲା । ତେଣୁ ବଂଧୁ ବାନ୍ଧବ ଦୁଃଖ ପ୍ରକାଶ କରିଥିଲେ; ଗୁରିଆନା ସବୁବେଳେ ଉପାଷ ରହି ଭିକ୍ଷାଦିଅନ୍ତି ।ବ୍ରତଭୀକ୍ଷା ଦେଇ ନପାରି ତାଙ୍କମନରେ ବେଶୀ ଦୁଃଖ ହେଲା । ଫଂକୀରବାବୁ ତ ବାପପରି ସକାଳୁ ରାତିଯାଏଁ ମୋ ପାଖରେ ଥିଲେ ।

ହେଲେ ଠାକୁରଙ୍କ ଇଛା ଅନ୍ୟ ପ୍ରକାର । ବର ଆସିଲା ସଂଧ୍ୟାରେ । ବରଜାତିଙ୍କ ପାଇଁ ପ୍ରସ୍ତୁତ ଜଳଖିଆ, ଦ୍ୱିପ୍ରହର ଭୋଜନ ସମସ୍ତ ଖରାଦିନେ ସଂପୂର୍ଣ୍ଣ ନଷ୍ଟ ହୋଇଯାଇଥିଲା । ବରଧରା ଯାଇଥିବା ମୋ ସାନଭାଇ ଜୋଇଁଙ୍କର ମଝିଆ ଭାଇନାଙ୍କ ଅହମିକାରେ ମୋ ବିରୁଦ୍ଧରେ ପଦେକହି ଅଗ୍ନିସଂଯୋଗ କରିଥାଏ । ଏକଥା ଆମକୁ ଜଣାନାହିଁ । ବର ଆସୁଆସୁ ବିଭାଘର ଆରମ୍ଭ ହୋଇଗଲା । ବରଜାତିଙ୍କ ପାଇଁଖାଇବାକୁ ବଢ଼ାହେବାପରେ ତାଙ୍କ ମଝିଆ ଭାଇ ରୋଷ ପ୍ରକାଶ କଲେ । ତାଙ୍କୁ ସବୁ ବୁଝାଇବା ବ୍ୟର୍ଥହେବା ପରେ ଯାହା ଜବାବ ଥିଲା ତାହା ସ୍ମରଣ କରେଇ ଦେବାରେ ସେ ଆହୁରି ଖିପାହୋଇଗଲେ । ତାଙ୍କ ସବୁ ଛାଡ଼ି ପଳାଇଲେ । ତାଙ୍କ ବଡ଼ଭାଇ ତାଙ୍କୁ ବୁଝାଇ ବ୍ୟର୍ଥ ହେଲେ । ତେଣୁ ସେ କେବଳ ଖାଇବା ପାଖରେ ବସି ଉଠିଲେ ଏବଂ ଅନ୍ୟବରଜାତି ମାନେ ଖାଇପିଇ ସୁଖରେ ଗଲେ । ତାଙ୍କ ରାଗ ପ୍ରଶମନ ହୋଇନଥାଏ । ଯୋଗକୁ ସକାଳେ ପାଣିର ଅଭାବ । ଝିଅବିଦା ବେଳକୁ ସେ ପୁଣି ତମ ପ୍ରକାଶ କରିବାରୁ ୨୦ବର୍ଷ ପୋଷିଲି, ପାଳିଲି ଓ ପାଠପଢ଼ାଇଲି । ଏବେ ଝିଅକୁ ରଖିବି ଓ ପଠାଇବି ନାହିଁ ବୋଲି ଯିଦ୍ ଧରିବାରେ ସେ ନିରାଶ ହେଲେ ଓ ଝିଅକୁ ନେଇ ଛାଡ଼ିବାକୁ ଗଲାବେଳେ ବାଟରେ ଗାଡ଼ି ଖରାପ୍ ହୋଇ ଦୁଃଖ ଭୋଗିବାକୁ ପଡ଼ିଲା । ଗୋପିଆନା ଆଉ ଗୋଟେ ଗାଡ଼ି ପଠାଇଲେ । ରାତି ଅଧରେ ସେଇଥିରେ ଗଲୁ । ପୁଣି ଝିଅ ଫେରାଇବାକୁ ସେହି ମଝିଆଁ ଭାଇ ଅରାଜିହେବାରୁ ୪ମାସ କାଳ କାନ୍ଦିକାନ୍ଦି ଖାଲି ଇଷ୍ଟଦେବୀ ମାକୁଣ୍ଡେଶ୍ୱରୀଙ୍କୁ ଡାକୁ । ଆଉ ଶେଷରେ ଝିଅଆସିଲା । କାଦୁଅ ପାଣିରେ ଗାଧୋଇ ଦେହରେ କାଛୁ ବାହାରି ଯାଇଥିଲା । କିନ୍ତୁ ତାମନରେ ସାହସ ଓ ଆନନ୍ଦଥିଲା । ତା ଉପରେ କିଛି ଅତ୍ୟାଚର କରାଯାଇ ନଥିଲା । ଯାହା ସାମାନ୍ୟ ବାକ୍ୟବାଣ ପ୍ରୟୋଗ ହୋଇଥିଲା । ସେ ତାକୁ ନୀରବରେ ସହିଯାଇଥିଲା । ମନ୍ତ୍ରୀଙ୍କ ପାଖରେ ବ୍ୟକ୍ତିଗତ ସଚିବ ଥିବାବେଳେ ବଡ଼ପୁଅ ଓ ସାନଝିଅର ବିଭାଘର ସ୍ଥିର ହେଲା । ସେତେବେଳକୁ ବହୁ ସଂଖ୍ୟକ ଲୋକଙ୍କ ସହ ଚିହ୍ନାଜଣା ହୋଇଯାଇଥାଏ । ତେଣୁ ଖୁବ୍ ସଂଜମ ଆଚରଣ କରି ଭୋଜିଭାତ ଇତ୍ୟାଦି କରାଗଲା । କେବଳ ବିଭାବାସୀ ଭୋଜୀ ଦିନ ଥରେ ମାତ୍ର ମନ୍ତ୍ରୀ ଆସି ଭୋଜି ଖାଇଥିଲେ ।

ସପ୍ତମଙ୍ଗଳା ମଧ୍ୟରେ ଭାଇନା ସୁରେନ୍ଦ୍ର ନାଥ ଦ୍ୱିବେଦୀ ମଧ୍ୟ ଆସିଥିଲେ । ସେତେବେଳେ ସେ ଅରୁଣାଚଳର ରାଜ୍ୟପାଳ ଥିଲେ । ଗାଁପଟେ ପୁଅ ବିଭାଘର ହୋଇଥିବାରୁ ବହୁତ ଗାଁଲୋକ ନିମନ୍ତ୍ରଣ ରକ୍ଷାକରି ବରଜାତି ହୋଇଥିଲେ । ସାନଝିଅ ବିଭାଘର ତା ସହିତ ଖୁବ୍ ସରଳରେ ହୋଇଯାଇଥିଲା । ଖୁବ୍ କମ୍ ସଂଖ୍ୟକ ବରଜାତି ଆସିଥିଲେ ଓ ଖୁବ୍ ଶାନ୍ତି ଶୃଙ୍ଖଳାରେ ବିଭାଘର ଓ ଝିଅବିଦା ହୋଇଥିଲା । ଏତେ ଶାନ୍ତି ଓ ସୁବିଧାରେ ଦୁଇଦୁଇଟି କାମ ଏକତ୍ର ହୋଇଯିବା ସହିତ ମଝିଆଁପୁଅ ଯେକି ନିଜର ଇଛାରେ ଆମ ଅଜ୍ଞାତରେ କେତେ ଦିନୁଁ ବିଭାହୋଇ ଥିଲା ତା ବୋହୁକୁ ମଧ୍ୟ ଅଣାଯାଇ ଥିଲା । ବଡ଼ପୁଅ ବିଭାନହେବା ଯାଏ ତାକୁ ଆଣିବାକୁ ମନା କରିଦିଆ ଯାଇଥିଲା । ମନେକରି ସବୁ ବଂଧୁ, ବାନ୍ଧବ, କୁଟୁମ୍ବ ଓ ଜ୍ଞାତିଙ୍କୁ ଲୁଗା, ଭାରମିଠା ଇତ୍ୟାଦି ଦିଆଯାଇଥିଲା । ଏହି କାମଟି ଉଠାଇବାରେ ମୋ ବଡ଼ଝିଅର ବହୁତ ଅବଦାନ ଥିଲା । ଅଧିକାଂଶ ଟଙ୍କା ଧାର ଉଧାରରେ ଚଳା ଯାଇଥିଲା । ଈଶ୍ୱରଙ୍କ ଦୟାରୁ ୧୦ବର୍ଷର ବାକିଆ ବଢ଼ାଦରମା ମିଳିବାରେ ସେସବୁ ପରେ ସୁଝାଯାଇ ପାରିଥିଲା । ଏହି ଅବସରରେ ବଡ଼ଭାଇଙ୍କ ବଡ଼ପୁଅ ଯେକି ଗୁଡିଆ ପରିବାରରେ ବିଭା ହୋଇଥିଲା ତା ବୋହୁକୁ ଆଣିବା ଏବଂ ସାନଭାଇ ର ପିଲାଙ୍କୁ କିଏ କ'ଣ କହିବା ଇତ୍ୟାଦି ଛୋଟ ଛୋଟ ଘଟଣାରେ ଟିକିଏ ଅଶାନ୍ତି ଉପୁଜିଥିଲେ ମଧ୍ୟ ଏଡ଼େବଡ଼ କାମଟି ଠାକୁରଙ୍କ କରୁଣାରୁ ଶାନ୍ତିଶୃଙ୍ଖଳାରେ ଶେଷ ହୋଇଥିଲା । ସେହିପରି ଆଉ ଏକ ସଂଯୋଗର କଥା । ରାଜଧାନୀ ପୂଜା ସମିତିରେ କବିତା ପାଠ ବେଳେ ଅବସରପ୍ରାପ୍ତ ପୁଲିସ୍ ଡିଜି ଓ କବି ଦୁର୍ଗାମାଧବ ମିଶ୍ର ନିଜେ ଗୋଟେ ଶିଶୁ କବିତା ପଢି ସମସ୍ତଙ୍କୁ ମୁଗ୍ଧ କରିଥିଲେ । ସେ ମଧ୍ୟ ମୋ କବିତାଟି ଶୁଣି ମୋତେ କୁଣ୍ଢାଇ ପକାଇଥିଲେ । ଯୋଗକୁ ତାଙ୍କରି ସାନଭାଇ ଇନ୍ଦ୍ରମାଧବ ମିଶ୍ରଙ୍କ ଝିଅ ଅଜନ୍ତା ସହ ମୋ ସାନ ପୁଅ ବିରଜା ପ୍ରସାଦ (ଗୁଲନ)ର ବିଭାଘର ହେଲା । ସେତେବେଳକୁ ଅବଶ୍ୟ ଦୁର୍ଗାମାଧବ ବାବୁ ନଥିଲେ ମଧ୍ୟ ତାଙ୍କର ସ୍ମୃତି ମୋ ମନକୁ ଆସିଥିଲା ।



ବଡପୁଅ -ଇଂ ଦୁର୍ଗାପ୍ରସାଦ ଦ୍ୱିବେଦୀ ଓ ବଡବୋହୁ ମମତା ସହ ନାତି ଜଗନ୍ନାଥ



ମଝିଆଁ ପୁଅ ଲଲାଟେନ୍ଦୁ ଓ ବୋହୂ ଅସୀମା



ବଡଜ୍ୱାଇଁ -ଇଂ ନିରଞ୍ଜନ ପଣ୍ଡା ଓ ବଡଝିଅ ସଂଘମିତ୍ରା



ସାନଜ୍ୱାଇଁ ହରେକୃଷ୍ଣ ଦାଶ ଓ
ସାନଝିଅ ସତ୍ୟମିତ୍ରା



ସାନପୁଅ ବିରଜା ପ୍ରସାଦ ଦ୍ୱିବେଦୀ ଓ ବୋହୂ ଅଜନ୍ତା

## ୧୩୬. ଈର୍ଷାନଳରେ

ଈର୍ଷା ଠିକ୍ ନିଆଁପରି । ଯାହାକୁ ଈର୍ଷା କରାଯାଏ ସେ ଈର୍ଷାନଳରେ ପୋଡ଼ିମରେ । ହେଲେ ଯେ ଈର୍ଷାକରେ ସେ ମଧ ଈର୍ଷାନଳରେ ପୋଡ଼ିମରେ । ମଣିଷ ଏକଥା ଜାଣିମଧ ଭୋଗିମଧ ଈର୍ଷାକରେ । ଖୁବ୍ ଉଚ୍ଚଶିକ୍ଷିତ ବ୍ୟକ୍ତିଓ ଖୁବ୍ ଉଚ୍ଚସ୍ଥାନରେ ଅଧିଷ୍ଠିତ ବ୍ୟକ୍ତି ମଧ ଏହି ଈର୍ଷା ରୋଗରେ ପୀଡ଼ିତ ହେବାର ଦେଖାଯାଏ । ଗରିବଙ୍କ ଘରେ ଏରୋଗ କମ ଦେଖାଯାଏ ।

ଅଶିକ୍ଷିତଙ୍କ ଘରେ ମଧ୍ୟ ଜନ୍ମ ଦେଖାଯାଏ । ଏମାନେ ଈର୍ଷାନ୍ୱିତ ହେଲେ ପ୍ରକାଶ କରିଦିଅନ୍ତି । ତାକୁ ଲକ୍ଷକରି କୁହାଯାଏ ପେଜଖିଆକୁ ଶାଗଖିଆ ଦେଖି ପାରେନି । ମାତ୍ର ଶିକ୍ଷିତ ଓ ଉପରସ୍ତରରେ ଏହା ଭୀଷଣାକୃତି ଧାରଣ କରେ ।

ଦୁଇଟିନିଟାବର୍ଷ ମଧରେ ପୁଅଝିଅଙ୍କର ବାହାଘର, ଦୁଇଟିବହିର ପ୍ରକାଶନ, ସାହିତ୍ୟିକ ଭାବେ ପ୍ରତିଷ୍ଠାଲାଭ ସାଙ୍ଗକୁ ଆଗରୁ ସାଇରେ ଥିବା ସ୍କୁଲର ତଥା ସାଇରେଥିବା କଲ୍ୟାଣ ସମିତିର ସଭାପତି ଭାବେ ବର୍ଷବର୍ଷଧରି ରହିବା ଫଳରେ ଜଣେ ସର୍ବଭାରତୀୟ ସେବା ଅଧିକାରୀ ମନ୍ତବ୍ୟ ଦେଇଥିଲେ ଯେ, "ଗାଈଗାଈ ରଖି କୋଠାବାଡି କରିଥିବା ସେ ଯେଉଁ ବିଡ଼ିଓ ।" ସେହି ଜଣକ ନୁହେଁ; ଆହୁରି ଅନେକ ଏହିପରି ଈର୍ଷାନଳରେ ଜଳିଯାଇଥିଲେ । ତା ସାଙ୍ଗକୁ ଆମ ମନ୍ତ୍ରୀ ସଂସ୍କୃତି, କ୍ରୀଡ଼ା ଯୁବ କଲ୍ୟାଣ ଲୋକ ସଂପର୍କ ପର୍ଯ୍ୟଟନ ଦାୟିତ୍ୱରେ ଥିଲେ । ସେ ପୁଣି ଭଲ କହିଲା ବାଲା । ତେଣୁ ସାରା ଓଡ଼ିଶା ବୁଲି ବକ୍ତୃତା କରିବା ସାଙ୍ଗକୁ ପ୍ରତିଦିନ ଦୂରଦର୍ଶନରେ ତାଙ୍କୁ ପ୍ରଦର୍ଶିତ କରାଯିବାରୁ ତାଙ୍କର ରାଜନୈତିକ ପ୍ରତିବାଦୀମାନେ ମଧ ଈର୍ଷାନଳରେ ଜଳି ଉଠିଥିଲେ । ତା' ସାଙ୍ଗକୁ ବାରୁଦରେ ନିଆଁ ଧରାଇଥିଲା ଆଉଏକ ଘଟଣା । ଜଣେ ଉଚ୍ଚଅଧିକାରୀ ଆମ ମନ୍ତ୍ରୀଙ୍କର କେଉଁଠି ସହପାଠୀ ଥିଲେ । ସେ ତାଙ୍କ ମନୋନିତ ଜଣକୁ ବ୍ୟକ୍ତିଗତ ସଚିବ ଭାବେ ପଠାଇବାକୁ ଇଛା କରିଥିବା ବେଳେ ତାଙ୍କର ଇଛା ବିରୁଦ୍ଧରେ ମୁଖ୍ୟମନ୍ତ୍ରୀଙ୍କ ସ୍ୱିକୃତି ନେଇ ମନ୍ତ୍ରୀ ନିଜର ଲୋକ ଭାବେମୋତେ ବାଛିଥିବାରୁ ସେ କୁହୁଳୁ ଥିଲେ ।

ସବୁଆଡୁ ଈର୍ଷାନଳ ଜଳି ଉଠିଲା । ସନ୍ତାନସହ ବନରେ ମୃଗୁଣୀକୁ ଏକ ଦିଗରୁ ବ୍ୟାଧ, ଅନ୍ୟଦିଗରୁ କୁକୁର, ୩ୟ ଦିଗରୁ ଜାଲ ଓ ୪ର୍ଥ ଦିଗରୁ ଅଗ୍ନିର ଭୟ ପରି ଉଚ୍ଚାଧିକାରୀ, ପ୍ରତିଦ୍ୱନ୍ଦୀ, ରାଜନୀତିଜ୍ଞ, ପଡ଼ୋଶୀ ଓ ସହକର୍ମୀଙ୍କର ଈର୍ଷାନଳ ଚାରିଦିଗରୁ ବର୍ଷଣ ହେଲା । ଜଙ୍ଗଲରେ ନିଜର ସନ୍ତାନ ସହ ଘାସଚରୁଥିବା ମୃଗପରି ସଦାକର୍ମରତ ବ୍ୟକ୍ତି ଏହି ଈର୍ଷା ଜାଲ ବିସ୍ତାରର ସଂଠାସମ୍ବନ୍ଧ ଜାଣିବା ଅବସ୍ଥାରେ ନଥିବା ସ୍ୱାଭାବିକ ।

ଦିନେ ହଠାତ୍ ସକାଳେ ଗାଈଧୋଇ ଦେଇ ଗୁହାଳ ସଫା କରୁଥିବା ବେଳେ ଜଣେ ଭଦ୍ରଲୋକ ଆସିପଚାରିଲେ ୟେ ମାଜିଷ୍ଟ୍ରେଟ ଦ୍ୱିବେଦୀବାବୁଙ୍କ ଘରତ ? ହଁ ମୁଁ ସେହି ଦ୍ୱିବେଦୀ ବାବୁ କହିବାରେ ସେ କିଛି ସମୟ ଅପେକ୍ଷା କରି କାମ ସରିବାରୁ ଘରଖାନତଲାସି କରିବାର ଏକ ଓ୍ୱାରଣ୍ଟ ଦେଖାଇଲେ । ତାପରେ ଆରମ୍ଭ ହେଲା ତଲାସି । ସକାଳ ୭ଟାରୁ ୧୨ଟା ଯାଏ ଚାଲିଲା । ଘଣ୍ଟାକରେ ତଲାସୀ ସରିଥିଲା । ଦଶପୁଂଟିଆ ଘର ଦିବଖରା କ'ଣ ବା ଅଛି । ତାଲିକା ପ୍ରସ୍ତୁତି ଇତ୍ୟାଦିରେ ଆଉ ୪ଘଣ୍ଟା ଗଲା । ମଝିରେ ସେମାନେ ଓ ଆମେ ଖାଇଲୁ । ଠାକୁର ପୂଜା ହେଲା ଇତ୍ୟାଦି । ସେତେବେଳକୁ ଘରେ ଦୁଇବୋହୁଙ୍କ ସହ ଶାଶୁ ମଧ ଯୋଗକୁ ଥିଲେ । ତେଣୁ ଅପଦସ୍ତ ହେବାର ଚରମ ସୁଯୋଗ ସୃଷ୍ଟି ହୋଇଥିଲା ।

ଘରେ ପଶୁପଶୁ ଦୁଇଜଣ ଇନସ୍‌ପେକ୍ଟର ଗୋଟିଏ ଜଳାଧଳା ଟିଣ୍ଡି, ଗୋଟିଏ ଟଙ୍କକୋଷ ଖଟଉପରେ ପଡ଼ିଥିବା ଧୋକଡ଼ା କନ୍ଥା ଦେଖି ସଜାଙ୍କୁ ବୃଦ୍ଧାଟା କାହିଁକି ଆଣି ଏଠି ପୁରାଇଲା ବୋଲି ମନ୍ତବ୍ୟ କରିଥିଲେ । ମଝିରେ ଡି ଏସ ପି ସାନପୁଅର ଗୋଟିଏ ପୁରୁଣା ପଢ଼ାବହିକୁ ତାଲିକା କରିବାକୁ କହିବାରୁ ତାଲିକା କରୁଥିବା ଇନିସ୍‌ପେକ୍ଟର ମଧ୍ୟ ତାଲିକା କରିବାକୁ ମନା କଲେ । ଜିଦ୍ କରିବାରୁ ସେ ମଧ୍ୟ ଜିଦ୍ କରି ଲେଖିଲେନି ।

ଶାଶୁଘର ଦେଇଥିବା ସ୍ତ୍ରୀଙ୍କ ସୁନା ସହ ଦୁଇବୋହୂଙ୍କର ସୁନା ସବୁ ମିଶି ୧୦ଭରି ହେଲା । ବଦ୍ ସମ୍ପତ୍ତି ହେଲା ସେତିକି । ନିୟମ ମୂତାବକ ସେସବୁ ଆଦୌ ତାଲିକା ଭୁକ୍ତ ହେବାର ନୁହେଁ । କେଉଁ ଜିନିଷ କାହାର ପରେ ଡ଼କାଇ ଚିହ୍ନଟ କରି କାଟିଦେବାକୁ କହି ଶେଷରେ ତାଙ୍କୁ ଦାୟିତ୍ୱରେ ଥିବା ଡ଼ି ଏସ୍ ପି କାଟିନଥିଲେ । ଘରେ ଥିବା ଭଙ୍ଗା ଟେବୁଲ ଲ୍ୟାମ୍ପ ଛିଣ୍ଡାକନ୍ଥା, କୁଲା ଝାଡ଼ୁଣି ଓ ଭଙ୍ଗା ଲୁହାକଡ଼େଇ ତାଲିକା ଭୁକ୍ତ କରିମଧ୍ୟ ସବୁମିଶି ଲକ୍ଷେ ପୁରିଲାନି । ଟଙ୍କା ଖୋଜି ଖୋଜି ହଜାରେ ପୁରିଲାନି । ଶେଷକୁ ଗୋଟିଏ ଔଷଧ ମୁଣିରେ ଥିବା କେତେଟଙ୍କା ମିଶି ଏକହଜାର ହୋଇଥିଲା । ଏତିକି ବେଳେ ହନୁ ସତ କହିଲାପରି ଜଣେ ଇନସ୍‌ପେକ୍ଟର କହିଲେ ଆମେ କୋଡ଼ିଏ ଲକ୍ଷ ଟଙ୍କା ଆଶା କରୁଥିବା ବେଳେ ମାତ୍ରହଜାରେ ହେଲା । ଏପରି ଅବସ୍ଥା ଦେଖି ରାଜନୀତିଆଙ୍କ ଦ୍ୱାରା ପ୍ରଭାବିତ ଓ ପ୍ରେରିତ ସେ ଡ଼ିଏସପି ପଢ଼ିଶାରେ ଡ଼ା. ଗଦାଧର ମହାପାତ୍ରଙ୍କ ଜୋଇଁ ତିଆରି କରୁଥିବା କୋଠା ଓ ଚନ୍ଦ୍ର ଶେଖର ପୁରରେ ଆଉଗୋଟିଏ କୋଠା ଅଛି ବୋଲି ଦର୍ଶାଇ ମିଥ୍ୟା ରିପୋର୍ଟ ଦାଖଲ କରିଥିବାର ମଧ୍ୟ ପରେ ଜାଣିବାକୁ ମଳିଥିଲା ।

ତାଲିକାଶେଷ ହେବାଯାଏ ସଂପୂର୍ଣ୍ଣ ଧର୍ଯ୍ୟଧରି ପୋଲିସ୍ ବାଲାଙ୍କ ସହ ସପୂର୍ଣ୍ଣ ସହଯୋଗ କରୁଥିଲେ ମଧ୍ୟ ମନରେ ଗୋଟିଏ କୋହ ଜାତ ହେଲା । ସାରା ଜୀବନ ଗଧପରି ଖଟି ଖଟି ଚା, ପାନ, ବିଡ଼ି, ଗୁଡ଼ାଖୁ , ସିଗାରେଟ, ମାଛ, ମାଂସ ନଖାଇ, ସିନେମା ଥେଟର ନଦେଖି, ପିଲାଙ୍କ ଦାନା ଓ କନାରୁ କାଟି ଦିବଖରା ଘରକିଣି ପିଲାଙ୍କୁ ମଣିଷ କରିବାରେ ଏତେ ଈର୍ଷା । ଆଉ ଯଦି ଅନ୍ୟମାନଙ୍କ ପରି କୋଟି କୋଟି ଟଙ୍କାର ସମ୍ପତ୍ତି କରାଯାଇଥାନ୍ତା ତେବେ କ'ଣ ହୋଇ ନ ଥାନ୍ତା ! ଏଇଟା କଣ ସାଧୁତା ଓ କଠୀନ ଶ୍ରମର ଫଳ ! ଏହା ବ୍ୟସ୍ତ ହୋଇ କହିବା ବେଳେ ସେ ନିଷ୍ଠୁର ଅସାଧୁ ଡ଼ି ଏସ୍ ପି କହିଲେ ଯେ ସେ କଥା କହିଲେ କ'ଣ ହେବ ! ପ୍ରକୃତ ସାଧୁତା ଜଣାପଡ଼ିବ କେଶ୍ ଛିଡ଼ିଲେ । ପିଲାଏ ମୋତେ ବାଧା ଦେବା ସତ୍ତ୍ୱେ ପାଟିରୁ ବାହାରି ପଡିଲାଯେ ଯେଉଁ ବ୍ୟକ୍ତି ଏପରି କରିଛି ତାକୁ କୁଷ୍ଟ ବ୍ୟାଧି ହୋଇ ଯାଉ ।

ଏତେସତ୍ତ୍ୱେ ମନରେ ଦୃଢ଼ ଆଶାଥିଲା ଯେ ଆଗରେ ଯେତିକି ସମ୍ପତ୍ତିର ତାଲିକାହେଲା ଆୟ ତୁଳନାରେ ତାହା ଯଥେଷ୍ଟ କମ । ତାକୁ ନେଇ କେବେ କେଶ୍ ହୋଇ ପାରିବନି । ଯେଉଁ ଅଧିକାରୀ ତାକୁ ଦେଖିବେ ସେ ଫୋପାଡ଼ି ଦେବ । କେବେ କେଶ୍ ପାଇଁ ଅନୁମତି ଦେବନି । ଏହି ଦୃଢ଼ତାରେ କାହାକୁ କିଛି ନକହି ପୁଣି କାମରେ ମନ ଢ଼ାଳି ଦେଇଥିବାବେଳେ ଠିକ୍ ମାସକ ପରେ

ଚିଠି ପହଞ୍ଚିଲା । ଅଭିଯୋଗ ଆଗତ କରାଯିବା ପୂର୍ବରୁ ନିଲମ୍ବିତ କରାଗଲା । ମୁଣ୍ଡରେ ଅକାଳରେ ନିଳାକାଶରୁ ବଜ୍ରପାତ ହେଲା । ମନରେ ଯେଉଁ ପ୍ରଚଣ୍ଡ ଆଘାତ ହେଲା ତା'ର ପ୍ରଭାବରେ ସ୍ଥାନୀୟ ସ୍କୁଲ ସଭାପତି ପଦରୁ ଇସ୍ତଫା ଦେବା ସହ ରାମକୃଷ୍ଣ ମିଶନର ପରିଚାଳନା କମିଟି ଓ ସ୍ଥାନୀୟ କଲ୍ୟାଣ ସମିତିର ସଭାପତି କାର୍ଯ୍ୟ ଛାଡ଼ି ଦେବାକୁ ହେଲା । କାରଣ ନୈତିକତାର ପ୍ରମାଣ ନଦେବା ଯାଏ ଏସବୁ ପବିତ୍ର ଅନୁଷ୍ଠାନରେ ରହିବା ଅନୁପଯୋଗୀ । ଏସବୁ ଯନ୍ତ୍ରବତ ଈଶ୍ୱରଙ୍କ ପ୍ରେରଣାରେ ଘଟିଯାଇଥିଲା ।

## ୧୩୭. ବାଟରୁ ଧନ୍ୱନ୍ତରୀ ଫେରିଲେ

ଠାକୁରେ କହିଛନ୍ତିଯେ ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀ ଓ ଜ୍ଞାନୀ ଏପରି ତାଙ୍କର ଚାରିପ୍ରକାର ଭକ୍ତ ଅଛନ୍ତି । ବିପଦଗ୍ରସ୍ତ ଗଜ, ମୃଗୁଣୀଓ ଦ୍ରୌପଦୀ ସର୍ବସ୍ୱ ତ୍ୟାଗକରି ସଂପୂର୍ଣ୍ଣ ଶରଣାପନ୍ନ ହୋଇଥିଲେ । ତାଙ୍କର ପୂର୍ବ ତପଥିଲା । ବିପଦମଧ ତାଙ୍କୁ ବାଧ କରିଥିଲା । ତା ସହ ତାଙ୍କର ନିଜଚେଷ୍ଟା ପରାହତ ହେବାରେ ସେ ସଂପୂର୍ଣ୍ଣ ଶରଣାପନ୍ନ ହୋଇ ଈଶ୍ୱରଙ୍କର କୃପାର ପାତ୍ର ହୋଇଥିଲେ ।

ଠିକ୍ ସେହପରି କାହାକୁ ଦୁଃଖ କହିବା ପୂର୍ବରୁ ଠାକୁରଙ୍କୁ ଦୁଃଖ ଜଣାଇବାକୁ ପୁରୀର ଜଗନ୍ନାଥଙ୍କ ପାଖକୁ ଯାଇସେଠାରେ ଯେଉଁ ଅଲୌକିକ ଘଟଣା ଘଟିଲା ତାହା ଉଲ୍ଲେଖନୀୟ ନୁହେଁ । ତା' ପରଦିନ ସାନଭାଇ ବସାରେ ବସିଥିବାବେଳେ ଜଣେ ଭଦ୍ରଲୋକ ତାଙ୍କ ଗାଈର ଚିକିତ୍ସା ପାଇଁ ଆସି ଏ ଖବର ପାଇ ନିଜେ ନିଜେ ହିସାବ କରିପକାଇ କହିଲେ, "ରାହୁ ଓ କେତୁଙ୍କ ମହାଦଶାରେ ଏପରି ଘଟିଛି । ଅକ୍ଟୋବର ମାସରେ ଏ ଅବସ୍ଥା ଘୁଞ୍ଚିଯିବ । ସାଧୁ ଓ ସତ୍ୟବାଦୀମାନଙ୍କ ଉପରେ ଆକ୍ରମଣ ନହେଲେ ଠାକୁରଙ୍କ ଆସନ ଟଳେନି ।"

ଏଇ କଥାଟିକୁ ସମ୍ବଳ କରି ଫେରିଆସି ଘରେ ପହଞ୍ଚିବା ପରେ ମୋର ଶିକ୍ଷକ ସଚ୍ଚିଦାନନ୍ଦ ମିଶ୍ର ଏଖବର ପାଇ ଆସିପହଞ୍ଚି କାନ୍ଦିପକାଇଲେ । କହିଲେ ତୋତେ ଯଦି ଏ ଦଣ୍ଡ ଆଉ ସାଧୁ ସଚ୍ଚୋଟ କିଏ ରହିଲେ ? ଅନ୍ୟଜଣେ ଲେଖିଲେ ଓ ଦୁଃଖ ପ୍ରକାଶ କଲେ । ଶେଷକୁ ଶିକ୍ଷକ ଚନ୍ଦ୍ରମଣି ନାୟକ ଏସବୁ କାଗଜ ସହ ଭିଜିଲାନ୍ସ ନିର୍ଦ୍ଦେଶକଙ୍କୁ ସାକ୍ଷାତ୍ କରିବାକୁ ପରାମର୍ଶ ଦେଲେ । ଏହାର ସାଧୁପ୍ରତିବାଦ ଜଣାଇବାକୁ ଚନ୍ଦ୍ରମଣିବାବୁ ଓ ରାଜକିଶୋର ବାବୁ ମୁଖ୍ୟ ମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ସାକ୍ଷାତ୍ କରିବାକୁ ଅନୁମତି ନେଇଯାଇ ତାଙ୍କ ସଚିବ ପ୍ୟାରି ମହାପାତ୍ରଙ୍କ ପାଖରେ ପହଞ୍ଚିବାରେ ସେ କହିଲେ ଏଇତ ସେ ଫାଇଲରେ ନିଲମ୍ବନ ଆଦେଶ ନେଇ ଆସିଛି । ଆଉ ଯାଇ କ'ଣ ହେବ ? ଚନ୍ଦ୍ରମଣିବାବୁ ମୋର ସାଧୁତା ସମ୍ବନ୍ଧେ ନିଜର ଅଭିଜ୍ଞତା କହିବା ବେଳକୁ ସେ କହିଲେ "ମୁଁ ମଧ ତାଙ୍କୁ ଜାଣିଥିଲି । କିନ୍ତୁ ଏବେ ସେ ପୂର୍ବର ଦ୍ୱିବେଦୀ ନାହିଁ । ସେ ମନ୍ତ୍ରୀଙ୍କ ଉପରେ । ତା'ର ସମ୍ପତ୍ତି ତା ଆୟର ୧୫୦ ଗୁଣ" । ଏହାଶୁଣି ସେ ଆଉ ମୁଖ୍ୟମନ୍ତ୍ରୀଙ୍କୁ ଦେଖା ନକରି ଫେରି ଆସିଲେ । ସେ

ଦୁହେଁ ସେ ଦିନପୂର୍ବ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଅନୁଯାୟୀ ଦେଖା କରିଥିଲେ ସବୁ ଛିଡ଼ିଯାଇଥାନ୍ତା । ମାୟା ଓ ମିଥ୍ୟାର ଜାଲ କଟିଯାଇଥାନ୍ତା । ମାତ୍ର ତାଙ୍କୁ ତାହା କରିବାକୁ ଦିଆଗଲାନି ।

ପରୀକ୍ଷିତ ମହାରାଜ ଋଷି ଶାପ ପାଇ ଗଙ୍ଗାକୂଳରେ କୁଶ ଶଯ୍ୟାରେ ବସି ଭାଗବତ ଶୁଣୁଥାନ୍ତି । ତାଙ୍କୁ ମାରିବାକୁ ତକ୍ଷକ ମାୟାବଟୁ ରୂପରେ ଯାଉଥାନ୍ତି । ତକ୍ଷକଙ୍କ ବିଷଜ୍ୱାଳାରୁ ରାଜାଙ୍କୁ ରକ୍ଷା କରିବାକୁ ଧନ୍ୱନ୍ତରୀ ଯାଉଥାନ୍ତି । ଯୋଗକୁ ଦୁହେଁ ଦେଖା ହେଲେ । ପରୀକ୍ଷା ନେବାପାଇଁ ତକ୍ଷକ ଗୋଟିଏ ଗଛକୁ ଦଂଶନ କରିବାରେ ଗଛ ଓ ତା ଉପରେ ଥିବା କାଠକଟାଳୀ ଉଭୟେ ମରିଗଲେ । ଧନ୍ୱନ୍ତରୀ ତାଙ୍କ ଔଷଧ ପ୍ରୟୋଗକରି ସେ ଦୁହିଙ୍କୁ ବଞ୍ଚାଇ ଦେଲେ । ତକ୍ଷକ ଭୟପାଇ ମଣି ମାଣିକ୍ୟ ଦେଇ ଧନ୍ୱନ୍ତରୀଙ୍କୁ ବାଟରୁ ଫେରାଇଦେଇ ନିଜେ କପଟରେ ଯାଇ ପରୀକ୍ଷୀତଙ୍କୁ ଦଂଶନକରି ପ୍ରାଣନାଶ କଲେ ।

ସେହିପରି ଧନ୍ୱନ୍ତରୀ ରୂପରେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରତିବାଦ ଜଣାଇବାକୁ ଯାଇ ଥିବା ସାଧୁ, ସଚ୍ଚୋଟ ଅଭିଜ୍ଞ, ସ୍ୱନାମଧନ୍ୟ ଶିକ୍ଷକ ଦ୍ୱୟ ପ୍ୟାରୀ ବାବୁଙ୍କ ପ୍ରରୋଚନାରେ ଫେରି ଆସିଲେ ଓ ପ୍ୟାରି ତକ୍ଷକଙ୍କ ବିଷ ଜ୍ୱାଳାହିଁ କାମ କଲା । ମିଥ୍ୟା ତଥ୍ୟ ଦେଇ ଏଫ.ଆଇ.ଆର ଦାଖଲ କରାଗଲା ।

## ୧୩୮. ମହାମାନ୍ୟ ବିଚାର - ବିଚିତ୍ରତା'ର ଗତି

ନ୍ୟାୟ ଶାସ୍ତ୍ରରେ ଲେଖା ଅଛି ଯେ ବିଳମ୍ବିତ ନ୍ୟାୟ ଦାନ ନ୍ୟାୟ ନଦେବା ସଙ୍ଗେ ସମାନ । ବାସ୍ତବରେ ଜଣେ ଅସୁବିଧାରେ ପଡ଼ି ନ୍ୟାୟବିଚାରର ଦ୍ୱାରାସ୍ଥ ହୋଇ ତାର ଅବସ୍ଥାର କେତେକ'ଣ ପରିବର୍ତ୍ତନପରେ ବର୍ଷ ବର୍ଷ ବିତିଯିବାପରେ ଯଦି ନ୍ୟାୟ ମିଳେ ତେବେ ତାର ମୂଲ୍ୟ କ'ଣ ? ଆମ ଭାରତ ବର୍ଷରେ ମହାମାନ୍ୟ ନ୍ୟାୟଧୀଶ ମାନଙ୍କର ନ୍ୟାୟ ଠିକ୍ ଏହିପରି । ସେଠିମଧ କଳଙ୍କର ଛାପ ବା ଛାୟା । କିଏ ହାତେ ହାତେ ନ୍ୟାୟ ବା ରକ୍ଷା ନେଇ ଆସୁଛିତ କିଏ ବର୍ଷ ବର୍ଷଧରି ଅକାଶରୁ ନ୍ୟାୟ ଖସିବାକୁ ଅାଁକରି ଚାହିଁଛି । ଏସବୁ ଓକିଲ ଓ ପଇସାର ଭୋଜ ବିଦ୍ୟା ।

ବିଶିଷ୍ଟ ଓକିଲ ଅଜିତ୍ କୁମାର ରଥଙ୍କୁ ଏ ବିଷୟ ଜଣାଇବାରେ ସେ ତତ୍‌କ୍ଷଣାତ୍ ଅର୍ଜିଟିଏ ପ୍ରସ୍ତୁତ କଲେ । ଏକାର୍ଯ୍ୟରେ ବେଶୀ ସମୟ ଯିବାରେ ଓ ବର୍ଷାଯୋଗୁଁ ଖାଇବାକୁ ଯାଇ ନପାରିବାରେ ବ୍ୟସ୍ତ ହୋଇ ଫୋନ ଆସିଲା । ସେ ମଧ ସେଥିରେ ତରକି ଯାଇ ନିଜର ଗାଡ଼ିକରି ଘରକୁ ପଠାଇଲେ । ହେଲେ ୧୯୯୩ ମସିହାରୁ ଦାଖଲ ହୋଇଥିବା ସେ ଅର୍ଜିର ପ୍ରାଥମିକ ଶୁଣାଣି ମଧ ହୋଇ ପାରିଲାନି ଆଜିଯାଏଁ । ଛଅମାସ ମଧ୍ୟରେ ପୁଣି ଚାକିରୀରେ ଯୋଗ ଦେଇ, ନିଜର ସମସ୍ତ ପାଉଣାପାଇ, ଅବସର ନେଇ, ଅବସର କାଳୀନ ସବୁ ପାଉଣା ମିଳିସାରିଥିଲେ ମଧ ଏବେ ଯାଏ ନ୍ୟାୟାଳୟରୁ ପାଇବାକୁ ଥିବା ଘୋଟକ ଡିମ୍ବକୁ ଅପେକ୍ଷା କରାଯାଇଛି । ତା'ର ସାତପଛରେ ଶହ ଶହ ବହୁତ ମାମଲାର ରାୟ

ମିଳିଥିବାର ନଜିର ର ଅଭାବ ନାହିଁ । ଏଥି ସହିତ ଚନ୍ଦ୍ରମଣିବାବୁଙ୍କ ପରାମର୍ଶରେ ଭିଜିଲାନ୍ସ ନିର୍ଦ୍ଦେଶକଙ୍କୁ ଦେଖା କରିବାରେ ସେ ସନ୍ଦର୍ଭରେ କହିଲେ ଏତେସାଧୁ ଯଦି ଏଫ. ଆର.ଆଇ କିପରି ହେଲା ? ଖାନତାଲାସି ହୋଇପାରେ । କିଛି ନଥିଲେ ଏଫ ଆଇ ଆର ହେବାର କାରଣ କ'ଣ ? ଏହାଶୁଣି କି ଏଫ ଆଇ ଆର ବୋଲି ପଚାରିବାରେ ସେ ତାକୁ ମଗାଇ ଦେଖାଇବାରେ ହସ ଲାଗିଲା । ଲେଖାଥିବା ମିଛ ଦୁଇଟି କୋଠାରୁ ଗୋଟିଏ ହେଲେ ମିଳୁବୋଲି ପ୍ରାର୍ଥନା କରିବାରେ ସେ ଆଶ୍ଚର୍ଯ୍ୟହୋଇ ଫୋନ୍ କରି ବୁଝିଲେ ଯେ ସତରେ ବିଡ଼ିଏ ଘର କଛିନାହିଁ । ତେଣୁ ତାହା ଏକ ମିଥ୍ୟା ଆରୋପ ବୋଲି ସେ ବୁଝିଗଲେ । କେବଳ ଆଶୁ ନିଷ୍ପତ୍ତି ପ୍ରାର୍ଥନା କରନ୍ତେ ସେ ତାହା ନିଶ୍ଚିନ୍ତରେ ହେବାକୁ ପ୍ରତିଶ୍ରୁତି ଦେଇଥିଲେ ।

ଏତିକି ବେଳେ ବିଜୁବାବୁ ଡ଼କାଇଛନ୍ତି ବୋଲି ସ୍ୱର୍ଗୀୟ ନାରଣ ସିଂହ କହିବାରେ କେଉଁଠି, କେତେବେଳେ ଦେଖା କରିବାକୁ ପଚାରିବାରେ ସେ କିଛି କହିନପାରିବାରୁ ତାଙ୍କ ଦରଜା ପାଖରେ ଦୁଇଥର ଅପେକ୍ଷା କରି ଫେରିବାକୁ ହେଲା । ଶେଷରେ ବନ୍ଧୁ ରାଓ ବାବୁ କହିଲେ ତାଙ୍କୁ ଲେଖି ଅନୁମତି ଅଣାଯାଉ । ତାହାହିଁ ହେଲା ଚିଠିଟିଏ ଲେଖିବାର ୧୫ ଦିନ ମଧ୍ୟରେ ଅନୁମତି ଆସିଲା । ସେହି ଅନୁଯାୟୀ ସଚିବାଳୟ ପ୍ରକୋଷ୍ଠରେ ତାଙ୍କୁ ସାକ୍ଷାତ କରି ଖାନତଲାସି ତାଲିକାଟି ଦେଖାଇବାରେ ଏବେ କେଉଁଠି ବୋଲି ସେ ପ୍ରଶ୍ନ କଲେ । ଏବେ ନିଲମ୍ବିତ ହୋଇ ଘରେ ଅଛି । ଏବିଷୟ କାହିଁକି ଆଗରୁ ଜଣାଇଲନି ବୋଲି କହିବାରେ ଖଦୀବୋର୍ଡ଼ ଅଧ୍ୟକ୍ଷ ରାଜକିଶୋର ନାୟକ ପଠାଇଥିବା ଚିଠିର ନକଲ ଦେଖାଇବାରେ ସେ ତାକୁ ପାଇନଥିବା ଦର୍ଶାଇ ଅତିରିକ୍ତ ସଚିବ ଅରବିନ୍ଦ ବାବୁଙ୍କୁ ଡ଼କାଇ ପଚାରିଲେ ଏସବୁ କ'ଣ ଓ କାହିଁକି ହୋଇଛି । ସେତିକିବେଳେ ଅରବିନ୍ଦବାବୁ ନିଜେ କଲେକ୍ଟର ଥିବାବେଳେ ମୁଁ ଦୁର୍ନିତୀ ପରାୟଣ ବ୍ୟକ୍ତି ମାନଙ୍କ ନାମରେ ଲେଖି ବହୁ ବ୍ୟକ୍ତିଙ୍କୁ ନିଲମ୍ବିତ କରିଥିବା ପ୍ରକାଶ କରିବାରେ ସେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଏତିକି ବେଳେ ବିନା ଡ଼କରାରେ ଆସି ପହଞ୍ଚିଲେ ସଚିବ ପ୍ୟାରୀବାବୁ । ଛାଏଁ ଛାଏଁ କହିଲେ ଗୋଟାଏ କ'ଣ ଫାଇଲ ଆସିଥିଲା । ଭିଜିଲାନ୍ସ ବାଲା କହିଛନ୍ତି ଆୟ ତୁଳନାରେ ବହୁତ ସମ୍ପତ୍ତି ଅଛି । ଏତିକି ଶୁଣି ବିଜୁବାବୁ ଧରିଥିବା ଖାନ୍‌ତଲାସି ତାଲିକାଟି ଦେଖାଇ କହିଲେ କେଉଁଠି କ'ଣ ଅଛି ? ହେଇ ନିଅ ଦେଖ । ହଉ ଫାଇଲ ମଗାଇ ଥରେ ଦେଖିଦେବା କହି ପ୍ୟାରୀବାବୁ ଚାଲିଗଲେ । ତାପରେ ଶରତକର ମନ୍ତ୍ରୀଙ୍କ ପାଖରେ ଥିବାବେଳେ ସେ ଦେଇଥିବା ଭଙ୍ଗା ଆଟାଚିଟି ବିଜୁବାବୁଙ୍କ ପାଖକୁ ଠେଲି ଦେଇ ମନ୍ତ୍ରୀ ମୋ ଘରେ ୫ଟା କାର, ୨ କିଲୋ ସୁନା ଓ ୨୦ଲକ୍ଷ ଟଙ୍କା ରଖି ନାହାନ୍ତି କି ଦେଇ ନାହାନ୍ତି । ଏଇ ଭଙ୍ଗା ଆଟାଚିଟି ଦେଇଥିଲେ ନିଅନ୍ତୁ । ସାରା ଜୀବନ ଗଧପରି ଖଟି, ସଙ୍କୋଚ ଜୀବନ-ଯାପନରେ, ଚା, ପାନ, ବିଡ଼ି, ସିଗାରେଟ, ମାଛମାଂସ ନଖାଇ ପିଲାଙ୍କ ଦାନା କନାରୁ କାଟି ୧୦ହଜାର ଟଙ୍କାରେ କିଣିଥିବା ଘର ଦିବଖରା ଅପାଣବି ଦେଖିଛନ୍ତି ଏବଂ ସାଧୁତାର ଏଇ ହେଲା ପୁରସ୍କାର ବୋଲି କହିବାରେ । "ମୁଁ ଦେଖିବି ଓ ବୁଝିବି । ବ୍ୟସ୍ତ ହୁଅନା କହି ସେ ବିଦାୟ ଦେଲେ ।"

ଏ ମଧ୍ୟରେ ୨ ମାସେ ଗଲା କିଛି ହେଲାନି । ବିଜୁବାବୁଙ୍କ କଥା ଆଇନି । ଏବେ ବି ତାଙ୍କ ଆଦେଶ ବନ୍ଧାହୋଇ ରହିଯାଉଛି ବୋଲି ପୁଣି ଲେଖି ଜଣାଇବାରେ ମାର୍ଚ୍ଚ ୩୧ ମଧ୍ୟରେ ବ୍ୟକ୍ତିଗତ ଭାବେ ଭିଜିଲାନ୍ସ ନିର୍ଦ୍ଦେଶକ ସବୁ କାଗଜ ପତ୍ର ଉପସ୍ଥାପିତ କରିବାକୁ ଆଦେଶ ହେଲା; ଦୈବୀବାଣୀ ସତହେଲା ।

## ୧୩୯. ବାନା ଉଡ଼ିଲା

ସୁଖ ରାତି ଶୀଘ୍ର ପାହିଯାଏ । ଦୁଃଖରାତି ଲମ୍ବିଲମ୍ବି ଯାଏ । ସେହି ୧୨ ଘଣ୍ଟା ବାର ଯୁଗପରି ଲାଗେ । ଲୋକେ ମଧ୍ୟ ଯେପରି ବ୍ୟବହାର କରନ୍ତି ସେ ଅନୁଭୂତି ତାକୁ ଆଉରି ଲମ୍ବା ରାତିରେ ପରିଣତ କରିଦିଏ । ସେ ଥଣ୍ଡା, ଲମ୍ବା, ଦୁଃଖ ରାତିକୁ ପୁହାଇବାକୁ ଦରକାର ଠାକୁରଙ୍କ ଆଶିର୍ବାଦ ଓ ଧୈର୍ଯ୍ୟ ।

ବହୁଟଙ୍କା ଖର୍ଚ୍ଚ କରି ଏଠିକୁସେଠିକୁ ଲୋକ ପଠାଇ ନପାରିବାରୁ ଶେଷକୁ ମୁଁ ନିଜେ ଦାଖଲ କରିଥିବା କାଗଜକୁ ମୂଳକରି ରିପୋର୍ଟ ପ୍ରସ୍ତୁତ ହେଲା । ଯୋଗକୁ ଚାକିରୀ ଆରମ୍ଭରୁ ମୋର ସବୁ ଆୟ ଟିଭି ନମ୍ବର ସହ ଲେଖି ରଖିଥିଲି; ଯାହା ଏଠାରେ ବଡ଼ କାମରେ ଲାଗିଲା । ପୁଣି ସେହି ଡ଼ି ଏସ ପି ଘର ମାପ କରିବାକୁ ଜଣେ ଇଞ୍ଜିନିୟରଙ୍କୁ ଧରି ଆସି ପୁରୁଣା କିଣା ଘରକୁ ନୂଆବୋଲି ମାପିବାରୁ ତାଙ୍କୁ ପ୍ରଚଣ୍ଡ ଗାଳିଦେବାରେ ସେ ଦୋଷସ୍ୱୀକାର କରିଥିଲେ । ମିଥ୍ୟାରେ ଲେଖିଥିବା କୋଠା, ସ୍ତ୍ରୀଙ୍କ ବାପ ଘରୁଆଣିଥିବା ଓ ବୋହୁଙ୍କ ଅଳଙ୍କାର ମୂଲ୍ୟାୟନ କରିଥିବା ଦର୍ଶାଇବାରେ ସେ କାଇଲି ହୋଇ ଫେରିଯିବାବେଳେ ଜଣେ ଉଦ୍ୟାଟିଆ କାର୍ତ୍ତୀକ ପ୍ରଧାନତାଙ୍କୁ ପ୍ରଣାମ କଲାବେଳେ ସେ କ'ଣ ତୁମ ଦାଦୀବୋଲି ପଚାରିବାରେ ଉଭୟେ ଲଜ୍ଜିତ ହୋଇଥିଲେ । ପରେ ସଚିବାଳୟ ହତାରେ ସେ ଡ଼ି ଏସ ପି ଭଲେଇ ଦେଖେଇ ହୋଇ ପ୍ରଣାମ କରି ନିଜର ନର୍ଦ୍ଦୋଷତା ପ୍ରକାଶ କରିଥିଲେ । ଶେଷରେ ମୁଖ୍ୟମନ୍ତ୍ରୀଙ୍କୁ ଦେବାକୁ ପ୍ରସ୍ତୁତ ରିପୋର୍ଟଟି ନିର୍ଦ୍ଦେଶକ ଦେଖିବା ଆଗରୁ ତାଙ୍କ ଉପ ନିର୍ଦ୍ଦେଶକ ଦେଖି କହିଲେ କେତେମାସ ତଳେ ୧୫୦ଗୁଣ ସମ୍ପତ୍ତି ଦର୍ଶାଇ ଥିବାବେଳେ ଏବେ କେମିତି ଆୟବେଶୀ ଓ ସମ୍ପତ୍ତି କମ ବୋଲି ଦେଖା ଯିବ ? ତେଣୁ ପୁଣି ଦୁଇ ଚାରିହଜାର ଟଙ୍କାର ସମ୍ପତ୍ତି ବେଶୀ ଦର୍ଶାଇ ରିପୋର୍ଟ ସଂଶୋଧନ କରି ଦାଖଲ କରାଗଲା । ଫଳରେ ଆଦେଶ ବାହାରିଲା ଯେ ଅଭିଯୋଗ ଦାଖଲ ପୂର୍ବରୁ ନିଲମ୍ବନ ଆଦେଶ ପ୍ରତ୍ୟାହାର କରାଗଲା । ତେଣୁ ସ୍ଥାନୀୟ ଭୁବନେଶ୍ୱର ଉପଜିଲ୍ଲାପାଳଙ୍କ କାର୍ଯ୍ୟାଳୟରେ ପ୍ରଶାସନିକ ମାଜିଷ୍ଟ୍ରେଟ ହିସାବରେ ଯୋଗ ଦେବାରେ ପୁଣି ଥରେ ରାଜକିଶୋର ବାବୁ ଚିଠିଲେଖିଲେ । ସେ ଚିଠି ପରେ ପୁଣି ଆଦେଶ ଆସିଲା ଯେ କିଛି ଅଭିଯୋଗ ନଥିବାରୁ ନିଲମ୍ବନ କାଳ ଚାକିରୀ ଭାବେ ଗଣା ହେବ ଓ ପୁରା ଦରମା ମିଳିବ । ତା'ପରେ ସବୁ ଠିକ୍ ହୋଇଗଲା । ସବୁ ପ୍ରାପ୍ୟ ମିଳିଗଲା ।

ମଣିଷର ୪୦ବର୍ଷର ଅଭ୍ୟାସ କ'ଣ ସହଜରେ ଛାଡ଼େ । ଉପଜିଲ୍ଲାପାଳ ପୁରୁଣା ଅଡ଼ିଟ୍ ରିପୋର୍ଟର ସଂଶୋଧନ କରି ରିପୋର୍ଟ ଦେବାକୁ ଲଗାଇ ଦେବାରେ ଅଳିଆଗଦା ଝାଡି, ପୁରୁଣା କାଗଜ କାଢ଼ି, ନିଜହାତରେ ଲେଖି ଅନ୍ୟୁନ ୩ଟି ରିପୋର୍ଟର ୪୦ଟି ତ୍ରୁଟି ସଂଶୋଧନ ପତ୍ର ପଠାଗଲା । ଶେଷକୁ ସ୍ୱାଧୀନତା ଦିବସରେ ଲବୁଆ ପୋଲିସ୍‌ଙ୍କ ଦାୟିତ୍ୱରେ ମାଜିଷ୍ଟ୍ରେଟ ଭାବେ ମେଘରେ ତିନ୍ତି କର୍ତ୍ତବ୍ୟ କରି ୧ମାସ କାଳ ଜ୍ୱର କାଶ, ଶର୍ଦ୍ଦୀରେ ଶଯ୍ୟାଶାୟୀ ହେବାକୁ ପଡ଼ିଥିଲା । ଅନ୍ୟମାନେ କର୍ତ୍ତବ୍ୟରେ ଥାଇ ଘରେ ଶୋଇଥିବା ବେଳେ କର୍ତ୍ତବ୍ୟର ଡ଼ାକରାରେ ମେଘରେ ତିନ୍ତି ରୋଗବରଣ କରିବା ଦ୍ୱାରା ଶେଷ କର୍ତ୍ତବ୍ୟ ନିଷ୍ଠାର ପ୍ରମାଣ ଦିଆଯାଇଥିଲା; ପରିଣତ ବୟସରେ । ସେଥିପାଇଁ ଉପଜିଲ୍ଲାପାଳ ଅବସର ନେବା ଦିନ ଚଭୋଜୀରେ ଅକୁଣ୍ଠ ପ୍ରଶଂସା କରିବା ସହ ବ୍ୟକ୍ତିଗତ ଭାବେ କୋଳାଗ୍ରତ କରି କର୍ତ୍ତବ୍ୟ ନିଷ୍ଠାର ପ୍ରଶଂସା କରିଥିଲେ ।

ଶେଷରେ ଦୁଃଖୀ ଜନବନ୍ଧୁ ଶ୍ରୀଜଗନ୍ନାଥ ମନ୍ଦିରରେ ଓ ଅକର୍ମା କର୍ମଦାୟକ ଲିଙ୍ଗରାଜ ମହାପ୍ରଭୁଙ୍କ ମନ୍ଦିରରେ ବାନା ଉଡିଥିଲା; ନ୍ୟାୟ ଓ ସାଧୁତାର ବିଜୟ, ଧର୍ମର ବିଜୟ ଓ ପ୍ରଭୁଙ୍କ କରୁଣାର ବିଜୟବାନା ।

# ଉତ୍ତରାର୍ଦ୍ଧ

## ୧୪୦ - ଜୀବନାଦର୍ଶ

ପ୍ରତ୍ୟେକ ଲୋକର କେହିନା କେହି ଗୁରୁ ଥାନ୍ତି । ସେ ପିତା, ମାତା, ମୁରବୀ, ଶିକ୍ଷାଗୁରୁ ହୋଇ ପାରିନ୍ତି । ଗୁରୁ ଆଉ କେହି ନୁହନ୍ତି । ସେ ସାକ୍ଷାତ ଈଶ୍ୱର । ଜଣେ ଲୋକ ଯାହାକୁ ନିଜେ ଗୁରୁ ଭାବରେ ଗ୍ରହଣ କରିନିଏ ସେ ତା ପାଇଁ ଈଶ୍ୱର ହୋଇଯାନ୍ତି । ପୁରାତନ ପ୍ରଥାରେ ଶିକ୍ଷାଗୁରୁ ଓ ମନ୍ତ୍ର ଗୁରୁଙ୍କର ଖୁବ୍ ମାନ୍ୟତା ଥିଲା ଯାହାକି ଏବେ ମଧ ରହିଛି । ଆଦର୍ଶଗତ ଗୁରୁ ସେହି ଶିକ୍ଷକ ବା ମନ୍ତ୍ରଗୁରୁ ମଧ ହୋଇପାରନ୍ତି କିମ୍ବା ବିଶ୍ୱ, ଦେଶ, ସମାଜର କୌଣସି ମୃତ ବା ଜୀବିତ ବ୍ୟକ୍ତିମଧ ଗୁରୁଭାବେ ଜୀବନ ଉପରେ ଅଖଣ୍ଡ ପ୍ରଭାବ ବିସ୍ତାର କରିଥାନ୍ତି; କାରଣ ତାଙ୍କୁ ବ୍ୟକ୍ତି ନିଜେ ବାଛିଥାନ୍ତି ବା ଗ୍ରହଣ କରିଥାନ୍ତି ଜୀବନାଦର୍ଶ ଭାବରେ ।

ମହାତ୍ମାଗାନ୍ଧୀ ଏବଂ ଗୋପବନ୍ଧୁ ଦାସ ମୋର ଆଦର୍ଶଗୁରୁ । ଏହିମାନଙ୍କ ଧର୍ମରେ ଦୀକ୍ଷିତ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ଯେକି ବର୍ତ୍ତମାନକୁ ଦୀବଂଗତ ଓ ୯୧ ବର୍ଷରେ ପଦାର୍ପଣ କରି ସେ ମଧ ମୋର ଶିକ୍ଷାଗୁରୁ ଥିଲେ । ସମାଜ ସେବାପାଇଁ ଏ ଜୀବନ କ୍ଷେତ୍ରରେ ସେହି ପ୍ରଥମ ବୀଜବପନ କରିଥିଲେ ଆମ ଗାଁ ସ୍ୱାଧୀନ ହାଇସ୍କୁଲରେ ନାମ ଲେଖାଇବା ଦିନଠାରୁ । ହାଇସ୍କୁଲ ପାଇଁ ଛଣ, ବାଉଁଶ ନଡ଼ା ଚାନ୍ଦା ସଂଗ୍ରହ କରି ବୋହି ଆଣିବା, ଘର ପାଇଁ ମାଟି,

ଇଟା ବୋହିବା ବିନା ସଙ୍କୋଚରେ ତାଙ୍କରି ପ୍ରେରଣାରେ କରାଯାଇ ଥିଲା । ପୁଣି ବିଦ୍ୟାଳୟରେ ସୂତାକାଟି ମହାତ୍ମାମାନଙ୍କୁ ପ୍ରଦାନ ତାଙ୍କରି ପ୍ରେରଣାରେ । ପାଠପଢ଼ା ବେଳେ ଛାତ୍ରମାନଙ୍କ ମଧ୍ୟରେ ଜନ ସେବା ଦଳ ଗଠନ କରି ନୀଳ ଖଦି କନାର ପହରଣ ସହ ମେଳା, ଯାତ୍ରା, ମେଳଣରେ ପାନୀୟ ଜଳ ବଣ୍ଟନ ଓ ଚାନ୍ଦା ଆଦାୟ ତାଙ୍କରି ପ୍ରେରଣାରେ ହିଁ କରାଯାଇଥିଲା । ଗାଁ ରାସ୍ତା ସଫେଇ ଓ କେନାଲ ବନ୍ଧ କଡ଼ରେ ଝାଡ଼ା ଫେରିବାକୁ ସର୍ବସାଧାରଣଙ୍କ ପାଇଁ ଖନ୍ଦା ପାଇଖାନା (ଟ୍ରେଞ୍ଚ ପାଇଖାନା) ପ୍ରସ୍ତୁତି ଓ ସଫେଇ ତାଙ୍କରି ଉପଦେଶ ଓ ପ୍ରେରଣାରେ କିଶୋର ସଂଘ ଗଢ଼ି କରାଯାଇଥିଲା । ଗାଁର ପଲ୍ଲୀମଙ୍ଗଳ ମହିଳା ସମିତିରେ ସ୍ୱେଚ୍ଛାସେବୀ ଭାବେ କାମ କରିବାର ତାଲିମ୍ ଓ ପ୍ରୋତ୍ସାହନ ସେ ହିଁ ଦେଇଥିଲେ । ସିଧାସଳଖ ଭାବେ ନୈଶ ବିଦ୍ୟାଳୟ କରି ହରିଜନ ପିଲାଙ୍କୁ ଅବୈତନିକ ଭାବେ ପାଠ ପଢ଼ାଇବା ତାଙ୍କର ଉପଦେଶ ନହେଲେ ମଧ୍ୟ ତାଙ୍କରି ଆଦର୍ଶର ପ୍ରେରଣାରେ ବୋଧହୁଏ ହୋଇଥିଲା । ସେ ପ୍ରଥମେ ଆମ ଗାଁରେ ତାଙ୍କ ବେବର୍ତ୍ତାସାହୀ ରେ ହରିଜନ ମାନଙ୍କ ସହ ଏକତ୍ର ପଂକ୍ତି ଭୋଜନ କରାଇଥିଲେ ଓ ତା ଫଳରେ ତାଙ୍କୁ କିଛି ଦିନ ବାସନ୍ଦ ଭୋଗିବାକୁ ପଡ଼ିଥିଲା । ଆଉ ଦୀନ ଲାଇବ୍ରେରୀ ଗଢ଼ି ପିଲାଙ୍କୁ ବହି ଓ ଖବର କାଗଜ ଇତ୍ୟାଦି ପଢ଼ିବାର ସୁଯୋଗ ଦେବା ତାଙ୍କ ସହ ସଂପର୍କ ଆଗରୁ ଘଟିଥିଲା । ହେଲେ ମଧ୍ୟଜୀବନର ସବୁକାମରେତାଙ୍କର ଆଦର୍ଶର ଛାପ ନିଶ୍ଚିତ ଭାବରେ ପଡ଼ିଥିଲା । ଯଦିଓ ତାଙ୍କ ପ୍ରତିଷ୍ଠିତ ସ୍ୱାଧୀନ ସ୍କୁଲ ଛାଡ଼ି ଶେଷ ଦୁଇବର୍ଷ ସାଲେପୁରରେ ପଢ଼ିଥିଲି ତାଙ୍କ ବ୍ୟତିରେକେ ମୋର ହାଇସ୍କୁଲ ପାଠପଢ଼ା କେବେ ହୋଇନଥାନ୍ତା କାରଣ ଆଗରୁ ଗାଁରେ ହାଇସ୍କୁଲ ନଥିଲା ଓ ସେ ହିଁ ୧୯୫୦ରେ ମୁଁ ମାଇନର ପାସ୍ କଲା ପୂର୍ବବର୍ଷ ଆରମ୍ଭ କଲେ ନିଜେ ମାଇନର ସ୍କୁଲର ଶିକ୍ଷକ ଥାଇ ।

ଗାଁ ସ୍କୁଲ ଛାଡ଼ି ପାଠ ଶେଷ କରି ଚାକିରୀ କରିବା ପରେ ମଧ୍ୟ ତାଙ୍କ କଥା, ତାଙ୍କ ଆଦର୍ଶ, ତାଙ୍କ ଚାଲିଚଳନ ମୋ ଜୀବନ ଉପରେ ଘୋର ପ୍ରଭାବ ପକାଇଲା । ତେଣୁ ମୁଁ ପ୍ରାୟ ଅଧିକାଂଶ ବର୍ଷ ନିରାମିଷ ଆହାରୀ ଥିଲି, ସଙ୍କୋଚ ଜୀବନ ବିତାଇଥିଲି । ପାଦରେ ଯୋତା କି ଚପଲ ମଧ୍ୟ ନଥିଲା । ପରେ ଏ ସବୁଥିରେ ଚାକିରୀର ଆବଶ୍ୟକତାକୁ ଚାହିଁ ଘୋର ପରିବର୍ତ୍ତନ ଘଟିଥିଲେ ମଧ୍ୟ ମୋଟା ମୋଟି ତାଙ୍କୁ ହିଁ ଏବେ ଯାଏ ଆଦର୍ଶ ଭାବେ ଜୀବନରେ ପ୍ରତିଷ୍ଠା କରିପାରି ନିଜକୁ ଧନ୍ୟ ମନେ କରୁଛି ।

ସେହି ସଚ୍ଚିଦାନନ୍ଦ ମିଶ୍ର ଆମଗାଁର ମୋର ବାଲ୍ୟ ଶିକ୍ଷକ ଗାଏ ଗୁରୁ ସୋମନାଥ (ମିଶ୍ର) ବେବର୍ତ୍ତାଙ୍କର ଜ୍ୟେଷ୍ଠ ପୁତ୍ର । ସେ ୱାର୍ଦ୍ଧାରେ ଗାନ୍ଧିଜୀଙ୍କ ନଇ ତାଲିମ୍ ନେଇଥିଲେ । ୧୯୩୮ ମସିହାରେ ସିଂହ ଭୂମି ବିଚ୍ଛିନ୍ନାଞ୍ଚଳ ଯାଇ ହାଟଗମ୍ଭାରିଆ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ ଡ଼ଃ. ହରେକୃଷ୍ଣ ମହତାବଙ୍କ ପ୍ରେରଣାରେ ଓ ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ସାହାଯ୍ୟରେ ଉତ୍କଳ ଅବକାଶ ବାହିନୀ ତରଫରୁ । ସେ କଟକରେ ଥିବାବେଳେ ୧୯୪୨ ଅଗଷ୍ଟ ଆନ୍ଦୋଳନ ବେଳେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ସହ ମିଶି କାର୍ଯ୍ୟ କରୁଥିଲେ । କଟକ ସହରରେ ସୁରେନ୍ଦ୍ର ଦ୍ୱିବେଦୀ ଲୁଚିରହି କାଢୁଥିବା ବୁଲେଟୀନ୍‌ର ସେ ଥିଲେ ବଣ୍ଟନକାରୀ । ସେହି ମକଦ୍ଦମାରେ ସେ ମଧ୍ୟ କାରାବରଣ କରିଥିଲେ । ବାର୍ଦ୍ଧକ୍ୟ ଯାଏ ନିଜେ ହାତରେ ସୂତାକାଟି ଲୁଗାବୁଣାଇ ଖଦଡ଼ ପିନ୍ଧୁଥିଲେ । ସେ ମଧ୍ୟ ଜଣେ ସୁବକ୍ତା ।

ତାଙ୍କ ଜୀବନ କାଳରେ ବିଚ୍ଛିନ୍ନାଞ୍ଚଳ ବିଦ୍ୟାଳୟ ବ୍ୟତୀତ ସେ ଟାଙ୍ଗୀ, ଆମଗାଁ ଖଣ୍ଡସାହି, କେନ୍ଦୁପାଟଣା ଠାରେ ତିନୋଟି ହାଇସ୍କୁଲ ପ୍ରତିଷ୍ଠା କରିଥିଲେ। ଶେଷରେ ଉତ୍କଳବାହିନୀ ତରଫରୁ ଖଇରାଠାରେ ଗ୍ରାମ୍ୟ ବିଶ୍ୱ ବିଦ୍ୟାଳୟ ପ୍ରତିଷ୍ଠା ଉଦ୍ୟମରେ ରତଥିବା ବେଳେ ଡକାୟତ ଆକ୍ରମଣରେ ହାତ ଭାଙ୍ଗିବା ପରେ ସେ ନିଶାଛାଡ଼ି ଥିଲେ। ଆଉ ଶିକ୍ଷାନୁଷ୍ଠାନ ଗଠନ କରିନଥିଲେ ମଧ ବନ୍ଧୁ ଛାତ୍ରଙ୍କୁ ଯୋଗ୍ୟ ମଣିଷ କରି ଗଢ଼ିଛନ୍ତି ଘରୋଇ ଭାବେ ପଢ଼ାଇ । ସେ ଆଇଏ ପରେ ସିଟି ପାଶ କରିଥିଲେ ମଧ ଜଣେ ସବ୍‌ଜାନ୍ତା ଶିକ୍ଷକ । ସାହିତ୍ୟ, ସଂସ୍କୃତ, ବିଜ୍ଞାନ, ଗଣିତ ଓ ଇଂରାଜୀ ସବୁ ବିଷୟରେ ହାଇସ୍କୁଲ ଶେଷ ଯାଏ ସହଜ ଓ ସରଳ ଭାବେ ଶିକ୍ଷାଦାନ କରିପାରୁଥିବା ତାଙ୍କ ପରି ଶିକ୍ଷକ ଓ ସଂଗଠକ ବିରଳ । ଏକାନବେ ବର୍ଷ ବୟସରେ ମଧ ସେ ପିଲାଙ୍କୁ ପଢ଼ାଇବାକୁ ଭଲପାଉଥିଲେ । ନିଜ କନ୍ୟା, ନାତୁଣୀ, ଭାଇ, ପୁତୁରା ସମସ୍ତେ ତାଙ୍କ ଶିଷ୍ୟ ।

ସେ ମହାତ୍ମା ଗାନ୍ଧିଙ୍କ ପ୍ରାକୃତିକ ଚିକିତ୍ସା, ରାମ ନାମ, ଛାତ୍ରଙ୍କ ପ୍ରତି ଗାନ୍ଧିଜୀ ଇତ୍ୟାଦି ବହୁତ ବହି ଭାଷାନ୍ତର କରିବା ସହ ଗୀତା ଓ ମହାତ୍ମାଙ୍କ ଜୀବନି ଇତ୍ୟାଦି ୧୦ ଖଣ୍ଡ ବହି ଲେଖିଛନ୍ତି । ଗୀତା ତାଙ୍କ ମୁହଁରେ ଓ ଗୀତାଦର୍ଶ ତାଙ୍କର ଜୀବନାଦର୍ଶ ।

ସ୍ୱାଧୀନତା ପରେ ବିଳମ୍ବରେ ବିବାହ କରିଥିଲେ ମଧ ତାଙ୍କର ଚାରିଟି ଝିଅ । ପ୍ରତ୍ୟେକ ଝିଅ ଓ ଜ୍ୱାଇଁ ନିଜ ଗୋଡ଼ରେ ଠିଆ ହେବା ପରି ସ୍ୱଚ୍ଛଳତା ଅର୍ଜନ କରିଛନ୍ତି । ଗାଁରେ ଥିବା ତାଙ୍କର ପୈତୃକ ଚାଳିଘର ଖଣ୍ଡି ବାତ୍ୟାରେ ଭାଙ୍ଗିଯିବା ପରେ ସେ ଅନିକେତ ହୋଇ କେବେ ଛାତ୍ରମାନଙ୍କ ଘରେ ଓ କେବେ କେଉଁ ଝିଅ ଘରେ ବା ଭଡ଼ାଘରେ ଭୁବନେଶ୍ୱର, ବ୍ରହ୍ମପୁର ଓ ରାଉରକେଲା ଇତ୍ୟାଦିରେ ରହୁଥିଲେ । ଅନିକେତ ହେଲେ ମଧ ଗୀତା ଜ୍ଞାନରେ ସେ ସ୍ଥିର ମତି ବା ସ୍ଥିତପ୍ରଜ୍ଞ । ସେ ଥିଲେ ଦେଶ ଚିନ୍ତା, ଜାତିଚିନ୍ତା, ମାତୃଭୂମି ଓ ମାତୃଭାଷା ଚିନ୍ତାରେ କେବଳ ବ୍ୟଥିତ ନୁହନ୍ତି ଜାଗ୍ରତ ପ୍ରହରୀ ପରି ଶତତ ଚେଷ୍ଟିତ । ତାଙ୍କର ଗୁଣଗାନ କରି ବସିଲେ ଗୋଟିଏ ସ୍ୱତନ୍ତ୍ର ପୁସ୍ତକ ହୋଇଯିବ । ଏଠାରେ ସେ ବିଷୟରେ ଉଲ୍ଲେଖ କରି ଗୋଟିଏ ପରିଚ୍ଛେଦ ଯୋଡ଼ିବାର ଉଦ୍ଦେଶ୍ୟ ହେଉଛି ଯଦି ଆମର ଗୁରୁକୁଳ ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହୋଇ କାର୍ଯ୍ୟ କରିଥାନ୍ତେ ତେବେ ଦେଶରେ ଆଜି ଅସାଧୁତା, ଦେଶଦ୍ରୋହ, ହିଂସା, ପରଶ୍ରୀକାତରତା, ଲୋଭ, ମୋହ, ରୋଗର ବିଜୟ ଡ଼ିଣ୍ଡିମ ବାଜୁନଥାନ୍ତା । ରହିବାକୁ ଘରନାହିଁ, ପୋଷିବାକୁ ପୁଅ ନାହିଁ । ସେ କ'ଣ ଅପୋଷା ଓ ଆଲୋଡ଼ା ହୋଇଯାଇଛନ୍ତି । ସେ ସିନା ଟିଉସନ କରି ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରି ସମ୍ପତ୍ତି କମେଇ ନାହାନ୍ତି ଓ କୋଠା ବାଡ଼େଇ ନାହାନ୍ତି; ତାଙ୍କ ପାଇଁ ହଜାର ହଜାର କୃତଜ୍ଞ ଛାତ୍ରଙ୍କ କୋଠାର ଦ୍ୱାର ଉନ୍ମୁକ୍ତ । ସବୁରି ହୃଦୟ ସିଂହାସନରେ ସେ ହୋଇଛନ୍ତି ରାଜାଧିରାଜ ।

ସଚ୍ଚିବାବୁ ଆଉ ଇହ ଜଗତରେ ନାହାଁନ୍ତି । ୨୦୦୬ ଅଗଷ୍ଟ ୧୮ ତାରିଖରେ ରାଉରକେଲାରେ ତାଙ୍କ ଝିଅ ଘରେ ଇହଲୀଳା ସମ୍ବରଣ କରି ମୋତେ ଚୀରଦିନ ପାଇଁ ଅନାଥ କରିଗଲେ । ତାଙ୍କ ପାଇଁ ବାୟା ମଠରେ ଓ ଗାଁ ହାଇସ୍କୁଲରେ ଶୋକସଭା କରାଯିବା ସହ ସ୍ମରଣିକା ପ୍ରକାଶ, ମିଷ୍ଟାନ୍ନ ବଣ୍ଟନ କରାଯାଇ ତାଙ୍କର ପ୍ରତିମୂର୍ତ୍ତି ସ୍ଥାପନ ପାଇଁ ପ୍ରସ୍ତାବ ଗୃହୀତ ହୋଇଛି । ପ୍ର. ସର୍ବେଶ୍ୱର ଦାଶ, ରାଜକିଶୋର ନାୟକ, ଶକ୍ତି ପ୍ରସାଦ ମିଶ୍ର ଓ ତଦାନିନ୍ତନ ମନ୍ତ୍ରୀ କାଳୀନ୍ଦି ଚରଣ ବେହେରା ଇତ୍ୟାଦି ଏଥିପାଇଁ ଅଯାଚିତ ସହାୟତାର ହାତ ବଢାଇ ମୋତେ ଋଣୀ କରିଦେଇଛନ୍ତି ଗୁରୁ କାର୍ଯ୍ୟ ପାଇଁ । ତାଙ୍କର ପ୍ରଥମ ବାର୍ଷିକ ଶ୍ରାଦ୍ଧ ସଭାରେ ପ୍ର. ସର୍ବେଶ୍ୱର ଦାଶଙ୍କ ପ୍ରସ୍ତାବ ଅନୁଯାଇ ତାଙ୍କୁ ମରଣୋତ୍ତର "ଉତ୍କଳ ପ୍ରାଣ - ସଚ୍ଚିଦାନନ୍ଦ" ସମାଧିରେ ଭୂଷିତ କରାଯାଇଛି ।

ଆମ ଦେଶ, ବିଶେଷରେ ଉତ୍କଳ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହେଉ । ଏବେବି ବେଳ ଅଛି । ଶିକ୍ଷକ ସମାଜ ନିଜର ପଦମର୍ଯ୍ୟାଦା ତାଙ୍କରି ଆଦର୍ଶରେ ପୁନଷ୍ଠ ପ୍ରତିଷ୍ଠିତ କରି ସୁନାର ରାଇଜ ଗଢ଼ିବାକୁ କୋଟି କୋଟି ତ୍ୟାଗୀ ବୈଜ୍ଞାନିକ, ଶିକ୍ଷକ, ଡ଼ାକ୍ତର, ଇଂଜିନିୟର ବା ଧରମା ସୃଷ୍ଟି କରନ୍ତୁ । ସ୍ୱାଧୀନ ଭାରତ ସ୍ୱାଧୀନତାର ମହୁ ଚାଖୁ । କେବଳ ମୁଷ୍ଟିମେୟ ଏ ମଧୁପାନ କରି ମତ୍ତ ନହୋଇ ତାଙ୍କ ପାଖ, ପଡ଼ିଶା, ସାଇଭାଇ, ହରିଜନ, ଆଦିବାସୀ, ଦରିଦ୍ରଙ୍କ ମୁହଁକୁ ଚାହାଁନ୍ତୁ । ନିଜର କର୍ତ୍ତବ୍ୟ କରନ୍ତୁ ଓ ଏଦେଶକୁ ନୂତନ ଭାବେ ଗାନ୍ଧିଜୀଙ୍କ ସ୍ୱପ୍ନର ରାମରାଜ୍ୟରେ ପରିଣତ କରନ୍ତୁ । ଈଶ୍ୱର ସମସ୍ତଙ୍କୁ ସଦ୍ ବୁଦ୍ଧି ଦିଅନ୍ତୁ ।

## ୧୪୧ - ଗୁରୁଦକ୍ଷିଣା

ଯୁଗେ ଯୁଗେ ଗୁରୁ ଦକ୍ଷିଣାଟା ରହିଛି । ଭଗବାନ ଶ୍ରୀକୃଷ୍ଣ ଗୁରୁ ଦକ୍ଷିଣା ବାବଦ ଗୁରୁ ପତ୍ନୀଙ୍କ ନିର୍ଦ୍ଦେଶରେ ତାଙ୍କର ମୃତପୁତ୍ରଙ୍କୁ ଫେରାଇ ଆଣିଥିଲେ । ଏକଲବ୍ୟ ଗୁରୁ ଦକ୍ଷିଣା ଦେବାକୁ ନିଜର ବୁଢ଼ା ଆଙ୍ଗୁଳୀ କାଟି ଦେଇଥିଲା । ଏମିତି ଅନେକ ଗରୁ ଦକ୍ଷିଣାର ନଜିର ରହିଛି । ଏ ଯୁଗରେ ମଧ ବହୁତ ଛାତ୍ର ଶିଷ୍ୟ ନିଜ ନିଜର ଗୁରୁଙ୍କ ସନ୍ତୋଷ ବିଧାନ ପାଇଁ ବହୁ ଧନ ସମ୍ପତ୍ତି ଦେବାର ନଜିର ରହିଛି । ପ୍ରାୟ ସବୁ ଭଲ ମଣିଷ ନିଜର ପିଲା ଦିନର ଗୁରୁଙ୍କ ସହ ସାକ୍ଷାତ୍ ହେଲେ କୃତଜ୍ଞତା ଭରା ପ୍ରଣାମଟିଏ କରି ଋଣ ପରିଶୋଧ କରିଥାନ୍ତି । ଶାସ୍ତ୍ରରେ ଗୁରୁ ବା ଋଷୀ ଋଣ, ପିତୃଋଣ ଓ ଦେବଋଣର ବ୍ୟାଖ୍ୟା ରହିଛି । ଏହା ଭାରତ ବର୍ଷରେ ବିଶେଷ ଭାବେ ହିନ୍ଦୁ ପରମ୍ପରାରେ ଗୋଟିଏ ସ୍ୱିକୃତ ସଂସ୍କାର ।

ସେତେବେଳକୁ ସଚ୍ଚିବାବୁ କଟକରେ ରହୁଥାନ୍ତି । କାହିଁକି ଗାଁକୁ ଯାଇଥାନ୍ତି । ନାଳବନ୍ଧରେ ମୋର ଦେଖା ହେଲେ । ମୁଁ ସେତେବେଳଯାଏ ମୋର ସମସ୍ତ ଗୁରୁଜନ ମାନଙ୍କୁ ମୁଣ୍ଡ ଲଗାଇ ପ୍ରଣାମ କରୁଥାଏ । ତାଙ୍କୁ ପ୍ରଣାମ କରିବାରେ ସେ ମୋ ପିଠି ଆଉଁସି ଦେଇ କେଉଁଠି କ'ଣ କରୁଛି ପଚାରି ବୁଝିବା ସହ ସୂଚନା ଦେଲେ ଯେ ତୋ ଦ୍ୱାରା ଗୋଟିଏ ବଡ଼କାମ

ହେବ । ମୁଁ ବୁଝିପାରିଲିନି । ପଚାରିଲି କ'ଣ କାମ କୁହନ୍ତୁ । ସେ କହିଲେ ସମୟ ଆସିଲେ ପରେ କହିବି । ଏତିକିରେ ସେ କଥା ରହିଲା । ଗୁରୁ ଶିଷ୍ୟ ଯେ ଯାହା ବାଟରେ ଗଲୁ । ୧୯୯୬ରେ ସଚ୍ଚିବାବୁ, ଭଗବାନ ରଥ, ସର୍ବେଶ୍ୱର ଦାଶ, ଧନେଶ୍ୱର ମହାନ୍ତି, ରବିନ୍ଦ୍ର ସାହୁ ମାଧବରାଉତାୟେ ଇତ୍ୟାଦି ସାମନ୍ତରାପୁରରେ ରହୁଥିବା ଚିନ୍ତାମଣି ପାଣିଗ୍ରାହୀଙ୍କ ଘରେ ବସି ଉତ୍କଳ ବାହିନୀ ପୁନଃ ପ୍ରତିଷ୍ଠା କରି କ୍ରିୟାଶୀଳ କରିବାକୁ ପରାମର୍ଶ କରି ସେ ଅନୁଷ୍ଠାନର ଜମିବାଡ଼ି ମକଦ୍ଦମା ଲାଗିଥିବାରୁ ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା ପାଇଁ ଓ ବିଶେଷ ଭାବେ ବିଚ୍ଛିନ୍ନାଞ୍ଚଳରେ ତାକୁ ବଞ୍ଚାଇ ରଖିବାକୁ ଗୋଟିଏ (Trust fund) ବା ନ୍ୟାସୀ ମଣ୍ଡଳୀ ଗଢ଼ିବାକୁ ସ୍ଥିର କଲେ । ସେତେବେଳକୁ ମୁଁ ଅବସର ନେଇ ସାରିଥାଏ । ୨ୟ ବୈଠକକୁ ମୋତେ ଡ଼ାକିଲେ । ଉତ୍କଳ ସମ୍ମିଳନୀ ସଂପୂର୍ଣ୍ଣ ନିଷ୍କ୍ରିୟ ହୋଇ ପଡ଼ିଥିବାରୁ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଦାବୀ ଏବଂ ସେଠାରେ ଓଡ଼ିଆ ଭାଷା ସଂସ୍କୃତିର ପ୍ରଚାର ପ୍ରସାର କରିବା ପାଇଁ କମିଟି ଟିଏ ଗଢ଼ି କାର୍ଯ୍ୟାରମ୍ଭ କରାଗଲା । ଚିନ୍ତାମଣି ବାବୁ ସଭାପତି ତଥା ପରିଚଳାନା ନ୍ୟାସୀ ଥିବା ବେଳେ ରବୀନ୍ଦ୍ର ସାହୁ ସଂପାଦକ ଥିଲେ । ତାର କୋଷାଧକ୍ଷ ରହିବାକୁ ଏବଂ ତା ପାଇଁ ବାଇଲ ପ୍ରସ୍ତୁତ ଦାୟିତ୍ୱ ସଚ୍ଚିବାବୁ ମୋତେ ଧରାଇ ଦେଲେ । ମୁଁ ଚିଠା କରିଦେବା ପରେ ରବିବାବୁ ତାକୁ ରେଜେଷ୍ଟ୍ରି କରାଇଲେ ଓ ତିନିବର୍ଷ ସଂପାଦକ ରହିବା ପରେ ଆଉ ଆସିଲେନି । ବାଧ ହୋଇ ମୋତେ ସଂପାଦକ ଦାୟିତ୍ୱ ନେବାକୁ ହେଲା । ଇଏ ଗୋଟିଏ ବିରାଟ ଦାୟିତ୍ୱ । ବିଚ୍ଛିନ୍ନାଞ୍ଚଳ ସମସ୍ୟା ମୁଁ ଜାଣିଥିଲେ ମଧ କେବେ ସେଆଡ଼େ ଯାଇନଥିଲି । ସଚ୍ଚିବାବୁ ଓ ଧନେଶ୍ୱର ବାବୁ ମୋତେ ନେଇ ସେ ଅଞ୍ଚଳ ଦେଖାଇ ଦେବା ଓ ପରିଚିତ କରାଇ ଦେବାର ଦାୟିତ୍ୱ ନେଲେ । ସଚ୍ଚିବାବୁ କହିଲେ ତୋତେ ହିଁ ଏ କାମଟି କରିବାକୁ ହେବ । ଯେଉଁ ବାର୍ଷିକ ସାଧାରଣ ସଭା ବୁଦ୍ଧନଗରରେ ମାଧବ ରାଉତରାୟ ବାବୁଙ୍କ ଘରେ ହୋଇଥିଲା ସେଠାରେ ଅବଶ୍ୟ ଯୁଧିଷ୍ଠିର ଦାସ ମୋ ନାମଟି ସଂପାଦକ ଭାବେ ପ୍ରସ୍ତାବ କରାଇ ଗୃହୀତ କରାଇ ନେଲେ । ସେଠାରେ ସଚ୍ଚିବାବୁ ବା ରବିବାବୁ ନଥିଲେ । କିନ୍ତୁ ସଚ୍ଚିବାବୁ ଏହାହିଁ ଚାହୁଁଥିଲେ ଓ ତାଙ୍କରି ଇଙ୍ଗିତରେ ଏ କାର୍ଯ୍ୟଟି ସେ କରାଇ ନେଲେ ଏବଂ ମୋ ଉପରେ ଏତେ ବଡ଼ ଦାୟିତ୍ୱ ଦେଇ ଦେଇ ଗୁରୁ ଦକ୍ଷିଣା ଆଦାୟ କରିନେଲେ ।

ମୋତେ ସଚ୍ଚିବାବୁ ସଙ୍ଗରେ ନେଇ ଟ୍ରେନ୍‌ରେ ଚକ୍ରଧର ପୁର ଦୁଇଥର ଯାଇ ପୁରୁଣା ବସ୍ତିର ସ୍ୱାଭିମାନୀ ଓଡ଼ିଆ ପ୍ରବୋଧ କୁମାର ମିଶ୍ରଙ୍କ ସହ ସୁପରିଚିତ କରାଇ ଦେବା ସହ ୧୯୩୮ ରେ ସେ ଯେଉଁ ହାଟ ଗମ୍ଭାରିଆ ବିଦ୍ୟାଳୟ ବସାଇ ଥିଲେ, ଷଢ଼େଇକଳା, ଖରସୁଆଁ ଓ ସଣୁଆ, ଦେଓଗାଁ ଇତ୍ୟାଦି ଆଉ ଦୁଇଥର ଭଗବାନବାବୁଙ୍କ ସହ ନେଇ ଦେଖାଇ ଚିହ୍ନାଇ ଦାୟିତ୍ୱ ଧରାଇ ଦେଲେ । ରବିନ୍ଦ୍ର ବାବୁ ବେମାରିଆ ଲୋକ । ସେ ମଧ ମୋତେ ଦାୟିତ୍ୱ ଦେଇ ଆଡ଼େଇ ଗଲେ । ସାରୁ ଭିତରେ ମାରୁ ପରି ସେହି ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତି ଉପରେ ଏତେ ବାଧା ଓ ଏତେ ସମସ୍ୟା ରହିଛି ବୋଲି ମୋର ଧାରଣା ନଥିଲା ।

ଯେତେଥର ଗଲି ସେତିକି ସେତିକି ସମସ୍ୟା ଦୃଷ୍ଟିକୁ ଆସିଲା । ସେହି ସଚ୍ଚିବାବୁଙ୍କ କଥାମାନି ପ୍ରତିଥର ଯାହା ଦେଖେ ସେ ସମ୍ବନ୍ଧେ ବିଭିନ୍ନ ଖବର କାଗଜକୁ ସମ୍ବାଦ ବା ପ୍ରବନ୍ଧଟିଏ ଲେଖି ପଠାଇ ଦିଏ । ଏହିପରି କୋଡ଼ିଏ ପଚିଶଟି ପ୍ରବନ୍ଧ ପ୍ରକାଶିତ ହେବା ପରେ ମାତୃଭୂମି ଓ ମାତୃଭାଷା ପ୍ରେମୀ ବହୁତ ବନ୍ଧୁ ପତ୍ର ଲେଖିବାକୁ ଆରମ୍ଭ କଲେ ଏବଂ ପ୍ରତ୍ୟେକ ଏକ ହଜାର କରି ଟଙ୍କା ଦେଇ ନ୍ୟାସୀ ମଣ୍ଡଳରେ ଆଜୀବନ ସଭ୍ୟ ହେଲେ । ମୋ ମନରେ ଜୋର ଓ ଅଣ୍ଟାରେ ବଳ ଆସିଲା । କାମ ପାଇଁ ମନ ମଧ୍ୟ ଟଟିଲା ଓ ଆଗ୍ରହ ମଧ୍ୟ ହେଲା । ତା ସାଙ୍ଗକୁ ବିଛିନ୍ନାଞ୍ଚଳର ବଂଧୁମାନେ ମୁଁ ସେଠାକୁ ଗଲେ ମୋ ରହିବା ଖାଇବାର ବନ୍ଦୋବସ୍ତ ଶ୍ରଦ୍ଧାର ସହ କରିବାରେ ମୋର ମଧ୍ୟ ଖର୍ଚ୍ଚଜନିତ ସମସ୍ୟା ରହିଲାନି । ଏପରି ହେଲା ଯେ ଥରେ ଷଢ଼େଇକଳାରୁ ପଞ୍ଚଶଖା ଯାଥା ହଳଧର ଦାଶ, ହରିଶ୍ଚନ୍ଦ୍ର ମହାନ୍ତି, ପ୍ରମୋଦ ଆଚାର୍ଯ୍ୟ, ଚନ୍ଦ୍ରଶେଖର କର ଓ ସର୍ବେଶ୍ୱର ସୂତାର ଆମ ଘରକୁ ଆସି ମୋତେ ଷଢ଼େଇକଳା ଯିବାକୁ ଡ଼ାକୁଥାନ୍ତି । ମୋ ସ୍ତ୍ରୀ କହିଲେ ସେ ତ ବହୁମୂତ୍ର ରୋଗୀ । ତାଙ୍କର ଖାଦ୍ୟ କଟକଣା ଅଛି । ପୁଣି ସେଠି କେଉଁଠି ରହିବେ ? ଏତକ ଶୁଣି ସେମାନେ କହିଲେ ସେ ଷଢ଼େଇକଳା ପହଞ୍ଚିଲେ ତାଙ୍କ ଗଣ୍ଠିଲିକୁ ଟଣାଭିଡ଼ା କରାଯାଏ ଓ ସମସ୍ତେ ତାଙ୍କ ଖାଦ୍ୟାଭ୍ୟାସ ଜାଣୁ । ଆପଣ ସେ ବିଷୟରେ ବ୍ୟସ୍ତ ହୁଅନ୍ତୁନି । ଏତିକିରେ ଆଉ ଦିନେ ମୋ ସ୍ତ୍ରୀ ମୁଁ ସେ ଅଞ୍ଚଳକୁ ବାହାରିଲେ ଆଉ ଆପତ୍ତି କରନ୍ତିନି । ଚକ୍ରଧରପୁର ଗଲେ ପ୍ରବୋଧବାବୁଙ୍କ ଘର କିମ୍ବା ଲଜିଂରେ ରହୁଥିଲୁ । ୧୯୯୯ର ମହାବାତ୍ୟା ବେଳେ ଚକ୍ରଧରପୁର ପୁରୁଣା ବସ୍ତି ଓଡିଆ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ରବୀନ୍ଦ୍ର ଷଢଙ୍ଗୀ ଆମଘରେ ଅତିଥି ହୋଇ ପ୍ରାଣରକ୍ଷା କରିଥିଲେ । ସେହି ଦିନୁ ମୁଁ ଚକ୍ରଧରପୁର ଗଲେ ତାଙ୍କ ଘର ମୋ ନିଜର ଘର ପରି ହୋଇଯାଇଛି । ତାଙ୍କ ମା, ଭାଇ ଓ ପିଲାଏ ନିଜ ପରିବାରର ଲୋକ ପରି ବ୍ୟବହାର କରନ୍ତି ।

ତା ବାଦ୍ ସେଠାକାର ସରୋଜ ପ୍ରଧାନ ତାଙ୍କର ଅନ୍ତରର ଆବେଗରେ ବହୁଥର ତାଙ୍କ ଘରକୁ ମଧ୍ୟ ଭୋଜନ ପାଇଁ ଟାଣନ୍ତି । ସେ ଓ ତାଙ୍କ ସ୍ତ୍ରୀ ଓ ପିଲା ଆମ ଘରକୁ ଆସି ଆପଣାର ହୋଇଯାଇଛନ୍ତି । ଖରସୂଆଁ କଥା ଛାଡ଼ । ଡ଼ା. ବିଶ୍ୱନାଥ କର ବଞ୍ଚିଥିବା ବେଳେ ଯେବେ ଗ଼ଲେ ତାଙ୍କରି ଘରେ ରହିବା ଖାଇବା ହେଉଥିଲା । ଏବେ ମଧ୍ୟ ଅନ୍ୟତ୍ର ଭୋଜନ କଲେ ତାଙ୍କ ସ୍ତ୍ରୀ ଓ ପିଲାଏ ମନଦୁଃଖ କରନ୍ତି । ଆଉ ଜୟନ୍ତୀଗଡ଼ରେ ସୁବାଷ ବେହେରା, ତାଙ୍କ ବାପା, ମା ଓ ଭାଇ ଜାଣନ୍ତି ଯେ ମୁଁ ତାଙ୍କ ପରିବାର ବଂଧୁ । ବଜାରରେ ଖାଇଲେ ତାଙ୍କର ମନଦୁଃଖ । ତାଙ୍କରି ଘରେ ହିଁ ଖାଇବା ହୁଏ ।

ଏବେ ଷଢ଼େଇକଳାର ଚନ୍ଦ୍ରଶେଖର କର, ହଳଧରଦାଶ ଓ ଯୁବକ ଜ୍ୟୋତିଲାଲ ସାହୁ ତଥା ନିଳାମ୍ବର ସିଂହ ଦେଓ ମୋତେ ଅତିଥିଭାବେ ତାଙ୍କ ଘରେ ରହିବା ଖାଇବାକୁ ସମ୍ମତି ନଦେଲେ ଦୁଃଖ ପ୍ରକାଶ କରନ୍ତି । ବହଡ଼ା ଗୁଡ଼ାର ଡ. ଦୀନେଶ ବାବୁଙ୍କ ଘର ତ ଆମ ନିଜ ଘର, ଇଏବ ଗଲା ରହିବା ଖାଇବା । ଥରେ ବସ୍‌ରେ ଓ ଥରେ କାର୍‌ରେ ଯିବା ଛଡ଼ା ପ୍ରାୟ ସବୁଥର ପୁରୀ ନିଜାମୁଦ୍ଦିନ କଳିଙ୍ଗ ଉତ୍କଳ ଏକ୍ସପ୍ରେସରେ ଯା ଆସ ହୁଏ । ରାତ୍ରି ଭୋଜନ

ପରେ ରାତି ୯ଟାରୁ ୧୦ଟା ମଧ୍ୟରେ ଭୁବନେଶ୍ୱରରୁ ଗାଡ଼ି ଧରି ଶୋଇଗଲେ ସକାଳେ ପହଞ୍ଚିଲା ବେଳକୁ ପ୍ରତିଥର ଷ୍ଟେସନରେ ଗାଡ଼ିସହ ଲୋକ ହାଜର । ଏସବୁ ଲେଖିବାର ଉଦ୍ଦେଶ୍ୟ ବିଚ୍ଛିନ୍ନାଞ୍ଚଳ ଓ ଓଡ଼ିଆ ପୁଅ ମାନଙ୍କର ମାତୃଭୂମି ଓ ମାତୃଭାଷା ପ୍ରେମର ପରିଚୟ । ଖାଲି ଯିବା ଆସିବା, ଖାଇବା ରହିବା କଥା କହିଦେଲେ ଶେଷ ହେବନି । ପ୍ରତ୍ୟେକ ଥର ସେମାନେ ମୋ ସାଙ୍ଗରେ ବିଭିନ୍ନ ଗାଁ, ବିଦ୍ୟାଳୟ, ପାଠାଗାର ଓ ଅନୁଷ୍ଠାନ ପରିଦର୍ଶନ ସମୟରେ ଛାଇ ପରି ରହି ସବୁ ସୁବିଧା କରାଇ ଦେଇ ବାଟ ଦେଖାଇଦେଇ, ଉଦ୍ଦିଷ୍ଟ କାମ କରାଇ ଦିଅନ୍ତି ।

କେବଳ ସଚ୍ଚିବାବୁ ମୋତେ ଗୁରୁ ଦକ୍ଷିଣା ବିଚ୍ଛିନ୍ନାଞ୍ଚଳ ପାଇଁ ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀ ମଣ୍ଡଳ ଓ ପ୍ରବର୍ତ୍ତୀତ ଉତ୍କଳ ମଣି ଶିକ୍ଷା ପ୍ରସାର ପାଣ୍ଠିର ଦାୟିତ୍ୱ ଧରାଇ ଯାଇଛନ୍ତି ତା ନୁହେଁ ମୋତେ ତାଙ୍କ ବାପା ହାତଧରି ଅକ୍ଷର ଶିଖାଇବା ପରି ସେ କେତେବାର ମୋତେ ସାଙ୍ଗରେ ନେଇ ସେ ଅଞ୍ଚଳର ଲୋକ ଓ ସମସ୍ୟା ପ୍ରତି ପରିଚିତ କରାଇବା ସହ ଅତୀତ ଇତିହାସ, ଭବିଷ୍ୟତ କାର୍ଯ୍ୟପନ୍ଥା ଓ ନ୍ୟାସୀ ମଣ୍ଡଳୀର ଉଦ୍ଦେଶ୍ୟ ସହ ପ୍ରତିବଦ୍ଧତାର ଡ଼ୋରରେ ଆବଦ୍ଧ କରିଦେଇଛନ୍ତି । ସେ ଖୁବ୍ ସ୍ନେହୀ ତେଣୁ ସେ ଅଞ୍ଚଳକୁ କାହା ଘରକୁ ଗଲାବେଳେ କେବଳ ଖାଲି ହାତରେ ଯାଇ କାହାର ବୋଝ ହୁଅନ୍ତିନି । ବରଂ ବଂଧୁ ସୁଲଭ ବ୍ୟବହାର ଦେଖାଇ ତଦ୍ରୁପ ବ୍ୟବହାର ପାଆନ୍ତି । ମୋତେ ମଧ୍ୟ ସେହି ଶିକ୍ଷା ଦେଇ ସେମାନଙ୍କର ଆପଣାର କରିଦେଇଛନ୍ତି । ଅବଶ୍ୟ ଶେଷ ୪ବର୍ଷ ହେବ ସେ ବୟସାଧିକ୍ୟ ଯୋଗୁଁ ଆଉ ସେଠାକୁ ଯାଇପାରୁ ନଥିଲେ । କିନ୍ତୁ ତାଙ୍କ ମନ-ରାଜ୍ୟରେ ସେଠାକାର ସମସ୍ୟାର ଚିତ୍ର ଓ ସମାଧାନର ପନ୍ଥା ସଦା ଜାଗ୍ରତ ।

## ୧୪.୨ - ବିଚ୍ଛିନ୍ନାଞ୍ଚଳ ସମସ୍ୟା ଘେରରେ

ଏ ଦେଶକୁ ଓ ଆମ ରାଜ୍ୟକୁ ବନ୍ୟା, ମରୁଡ଼ି, ବାତ୍ୟା ଇତ୍ୟାଦି ସମସ୍ୟା ସଦାସର୍ବଦା ଘେରି ରହିଥିବାରୁ ଆମର ଆର୍ଥିକ ମେରୁଦଣ୍ଡ ସଂପୂର୍ଣ୍ଣ ଭୁଷୁଡ଼ି ପଡ଼ିଅଛି ଓ ଆମେ ସମସ୍ତେ ତାର କୁଫଳ ଭୋଗୁଛେ । ତା ସାଙ୍ଗକୁ ମଣିଷକୃତ ସମସ୍ୟାର ମଧ୍ୟ ଅନ୍ତ ନାହିଁ । ଗରିବ ଓ ନିରୀହ ଲୋକେ ବା ଜନ ସାଧାରଣ ସମସ୍ୟା ଜନିତ ଦୁଃଖ ଭୋଗ କରନ୍ତି । ମାତ୍ର ଏହାର ସ୍ରଷ୍ଟା ହେଉଛନ୍ତି ରାଜନୀତିଆ ଧନୀ ଓ କ୍ଷମତାଶାଳୀ ଶାଙ୍କପତିଙ୍କ ଭଳି ଲୋକମାନେ । ବିଚ୍ଛିନ୍ନାଞ୍ଚଳ ସମସ୍ୟା କ୍ଷମତା ରାଜନୀତିର ଫଳ । ଲକ୍ଷ ଲକ୍ଷ ଲୋକ ତାର ଦୁଃଖ ପୁରୁଷାନୁକ୍ରମେ ଭୋଗ କରୁଛନ୍ତି ।

କାହିଁ କେଉଁ କାଳରୁ ଓଡ଼ିଶା ସହ ଛବିଶଟି ଗଡ଼ଜାତ ବା ଦେଶୀୟ ରାଜ୍ୟ ଥିଲା । ଆମେ ସବୁ ତଳ ଶ୍ରେଣୀରେ ପଢ଼ିବା ବେଳେ ଭୂଗୋଳରୁ ସେସବୁ ନାମ ମୁଖସ୍ତ କରୁଥିଲୁ । । ୧୯୪୭ରେ ଦେଶ ସ୍ୱାଧୀନ ହେବା ପରେ ତା. ୧/୧/୧୯୪୮ରେ ବଲ୍ଲଭ ଭାଇ ପଟେଲଙ୍କ ନେତୃତ୍ୱରେ ପଚିଶଟି ଦେଶୀୟ ରାଜ୍ୟ ଓଡ଼ିଶା ସହ ପୂର୍ବପରି ରହିବାକୁ ଚୁକ୍ତିପତ୍ର ସ୍ୱାକ୍ଷର

କରିଥିଲେ । ମୟୁରଭଞ୍ଜ ବର୍ଷକ ପରେ ଓଡ଼ିଶା ସହ ଚୁକ୍ତି କରି ମିଶିଲା । ପ୍ରଥମରୁ ତା. ୧/୧/ ୪୮ ରୁ ଷଢ଼େଇକଳା ଓ ଖରସୂଆଁ ରାଜ୍ୟ ଦ୍ୱୟ ଓଡ଼ିଶା ସହ ମିଶିଥିଲେ ମଧ୍ୟ ପ୍ରଶାସନିକ ଅସୁବିଧା ଦର୍ଶାଇ ଭାରତ ସରକାର ତା. ୧୮/୫/୧୯୪୮ ରୁ ସେ ରାଜ୍ୟ ଦ୍ୱୟକୁ ଅସ୍ଥାୟୀ ଭାବେ ବିହାର ସହ ମିଶାଇ ଦେଲେ । ସିଂହଭୂମି ସମେତ ଷଢ଼େଇକଳା ଓ ଖରସୂଆଁ ଖାଣ୍ଟି ଓଡ଼ିଆ ଅଞ୍ଚଳ । ଲକ୍ଷ ଲକ୍ଷ ଓଡ଼ିଆ ସେଠାରେ ବାସ କରନ୍ତି । ଏହି ଅନ୍ୟାୟ ବିରୁଦ୍ଧରେ ସମଗ୍ର ଓଡ଼ିଶାରେ ସ୍ୱତଃ ସ୍ଫୂର୍ତ୍ତ ଭାବେ ୧୯୫୬ରେ ଏକ ବିରାଟ ଛାତ୍ର ଓ ଯୁବ ଆନ୍ଦୋଳନ ଗଢ଼ି ଉଠିଥିଲା । ଆମରି ସରକାର ଆମ ଉପରେ ଗୁଳି ଚଳାଇ ସହିଦ୍ ସୁନିଲ ଓ ବେଙ୍ଗପାଣିଆ ଇତ୍ୟାଦିଙ୍କୁ ମାରି ଦେଇ ଆନ୍ଦୋଳନକୁ ଦବାଇ ଦେଲେ । ଏହି ଯେ ଆନ୍ଦୋଳନଟି ମରିଗଲା ତାହା ଆଉ ଉଠିନି ବା ଉଠିପାରିନି ।

ଏହାର ଫଳ ସ୍ୱରୂପ ଓଡ଼ିଶା ଛିନ୍ନ ମସ୍ତା ହୋଇଗଲା । ଏହା ବ୍ୟତୀତ ୧୯୩୬ ଅପ୍ରେଲରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ବେଳେ ବହୁ ଓଡ଼ିଆ ଅଞ୍ଚଳ ଓଡ଼ିଶା ସହ ମିଶି ପାରି ନଥିଲା । ଆମେ ସିନା ଭୌଗଳିକ ବା ରାଜନୈତିକ ସଂପର୍କ ଦୃଷ୍ଟିରୁ ସେସବୁ ଅଞ୍ଚଳକୁ ହରାଇଲୁ ହେଲେ ସେଠିକାର ଲୋକମାନେ ଭାଷା, ସଂସ୍କୃତି, ଅର୍ଥନୀତି, ପ୍ରଶାସନିକ ଓ ଭାବଗତ ସଂପର୍କ ହରାଇ ଅଶେଷ ଦୁଃଖ ଭୋଗି ଚାଲିଛନ୍ତି । ଏସବୁ ସମସ୍ୟାକୁ ଦୂରକରିବାକୁ ଦୁଇ ସରକାରଙ୍କ ମଧ୍ୟରେ ଚୁକ୍ତି ହୋଇଥିଲା ଓ ଦେଶର ସଂଖ୍ୟାଲଘୁ ଭାଷାଭାଷୀଙ୍କ ସ୍ୱାର୍ଥରକ୍ଷା ପାଇଁ ସାମ୍ବିଧାନର ୨୯ ଓ ୩୦ ଧାରରେ ଥିବା ବ୍ୟବସ୍ଥାନୁଯାୟୀ ସଂଖ୍ୟାଲଘୁ ଭାଷାଭାଷୀ କମିସନ ଗଢ଼ାଯାଇଥିଲା, ଯାହା ଏବେ ବି ଅଛନ୍ତି ।

ଏତେସତ୍ତ୍ୱେ ୧୯୯୭ରେ ସଚ୍ଚିବାବୁଙ୍କ ସହ ସିଂହଭୂମିର ଚକ୍ରଧରପୁର ଓ ସେଠାରୁ ଷଢ଼େଇକଳା ଓ ଖରସୂଆଁ ଯାଇ ବୁଝିଲୁ ଯେ ବର୍ଷ ବର୍ଷ ଧରି ଓଡ଼ିଆ ପାଠ୍ୟ ପୁସ୍ତକ ସେଠାକାର ଓଡ଼ିଆ ବିଦ୍ୟାଳୟକୁ ଦିଆଯାଉନି । ଓଡ଼ିଆ ସ୍କୁଲରୁ ଦଳ ଦଳ କରି ଓଡ଼ିଆ ଶିକ୍ଷକଙ୍କୁ ଅଣ ଓଡ଼ିଆ ସ୍କୁଲକୁ ବଦଳି କରାଯାଉଛି । ଓଡ଼ିଆ ଶିକ୍ଷକଙ୍କ ସ୍ଥାନରେ ଥିବା ଅଣଓଡ଼ିଆ ଶିକ୍ଷକଙ୍କୁ ଅବସ୍ଥାପିତ କରାଯାଉଛି । ଇଚ୍ଛୁକ ଓଡ଼ିଆ ଛାତ୍ରଛାତ୍ରୀଙ୍କୁ ଶିକ୍ଷାଗତ ତାଲିମ୍ ଦିଆଯାଉନି । କିଏ କେମିତି ଆସି ଓଡ଼ିଶାରେ ତାଲିମ୍ ପାଉଛନ୍ତି । ପ୍ରଶ୍ନପତ୍ର ମଧ୍ୟ ଓଡ଼ିଆରେ ଆସୁନି । ଓଡ଼ିଆ ପିଲାମାନଙ୍କ ଉତ୍ତର ଖାତା ମଧ୍ୟ ଠିକ୍ ସମୟରେ ଦେଖାନଯାଇ ପରୀକ୍ଷା ଫଳ ସ୍ଥଗିତ ରଖାଯାଉଛି । ଏପରିକି ଓଡ଼ିଆ ବହି ଖଣ୍ଡେ କିଣିବାକୁ ମିଳୁନି । ଓଡ଼ିଆ ଲୋକଙ୍କୁ ସରକାରୀ ଚାକିରୀ ମଧ୍ୟ ମିଳୁନାହିଁ । ବ୍ୟବସାୟ ପାଇଁ ସେମାନଙ୍କୁ ମଧ୍ୟ ପ୍ରୋତ୍ସାହନ ନାହିଁ ।

ଫଳରେ ସବୁ ଲୋକେ ଘର ବ୍ୟତୀତ ବାହାରେ ହିନ୍ଦି କହୁଛନ୍ତି । ସବୁ ପିଲା ଅନିଚ୍ଛା ସତ୍ତ୍ୱେ ହିନ୍ଦି ପଢ଼ୁଛନ୍ତି । ଚାକିରୀ ପ୍ରଲୋଭନରେ କାଣ୍ଡି କାଣ୍ଡିଆ ଜେନା ଜାନା ପରି ନିଜର ସାଙ୍ଗିଆ ମଧ୍ୟ ବଦଳାଇ ଦେଇ ନିଜକୁ ହିନ୍ଦି ଭାଷୀ ବୋଲି ପରିଚୟ ଦେଉଛନ୍ତି । ଓଡ଼ିଆ ଲୋକଙ୍କର ସାମାଜିକ ଭିତ୍ତିଭୂମି ଓ ସାଂସ୍କୃତିକ ପୃଷ୍ଠଭୂମି ଭୁଷୁଡ଼ି ଗଲାଣି । ଓଡ଼ିଆ ଭାଷାକୁ

ଭୁଲି ହିନ୍ଦି ପଢ଼ିଲେଣି । ସେଠାରେ ଥିବା ୩୬୦ଟି ଓଡ଼ିଆ ବିଦ୍ୟାଳୟ ମଧ ନାମକୁ ଅଛି । ମାତ୍ର ଏବେ ଚାଲୁଛି ୧୩୪ଟି । ସେ ସବୁଥିରେ କେଉଁଠି ଜଣେ ଅଧେ ଓଡ଼ିଆ ଲୋକ ଅଛନ୍ତି । ଏସବୁ ଘଟଣା ଛାଁ କୁ ଛାଁ ଘଟୁନି । କ୍ଷମତାଶୀଳ ରାଜନେତା ମାନେ ନୀଚ ସ୍ୱାର୍ଥ ବୁଦ୍ଧିରେ ସମ୍ବିଧାନକୁ ନମାନି, ସଂଖ୍ୟାଲଘୁ କମିଟିକୁ ନମାନି, ଆମ ସରକାରଙ୍କ ସହ ହୋଇଥିବା ଚୁକ୍ତିପତ୍ରକୁ ନମାନି ବଳଯାହାର ମୂଳକ ତାର ନୀତିରେ ମନଇଛା ଏସବୁ କରି ଚାଲିଛନ୍ତି ଓଡ଼ିଆ ମାରଣ ନୀତି ଧରି ।

ଏଣେ ଆମ ଓଡ଼ିଶା ସରକାର ନାହିରେ ତେଲ ଦେଇ ନିଘୋଡ଼ ନିଦରେ ଶୋଇ ଯାଇଛନ୍ତି । ସମ୍ବିଧାନ, ସଂଖ୍ୟାଲଘୁ କମିଶନ ସୁପାରିଶ ଓ ସଂପାଦିତ ଚୁକ୍ତିପତ୍ର କାର୍ଯ୍ୟକାରୀ ହେଉନି ବୋଲି କାହାର କିଛି ଚିନ୍ତା ନାହିଁ । ପାଞ୍ଚ ସାତ ବର୍ଷରେ ଥରେ ଗୃହକମିଟି ବା କେଉଁ ମନ୍ତ୍ରୀ ବା ଅଧିକାରୀ ସେ ଅଞ୍ଚଳ ବୁଲି ଆସିଲେ ଯଥେଷ୍ଟ । ତାଙ୍କ ଭାଷଣ ଖବର କାଗଜ ପୃଷ୍ଠା ମଣ୍ଡନ କଲେ ତାଙ୍କର ସନ୍ତୋଷ । ଆଉ ଓଡ଼ିଆ ଭାଷା, ଜାତି ଓ ସ୍ୱାଭିମାନର ସୁରକ୍ଷା କରିବାକୁ ଉତ୍କଳ ଗୌରବ ମଧୁସୂଦନ ଗଢ଼ିଥିବା ଉତ୍କଳ ସମ୍ମିଳନୀ ସଂପୂର୍ଣ୍ଣ ନିଷ୍କ୍ରିୟ । ଉତ୍କଳ ବାହିନି ମୃତବତ୍ । ନୀଳଚକ୍ର ଇତ୍ୟାଦି କେବଳ ନାମ କମାଇବାରେ ନିବିଷ୍ଟ । ଅଥଚ ଦୁଃଖ ଭାଗୀ ହେଉଛନ୍ତି ଆମରି ଭାଇ, ଆମରି ରକ୍ତ, ଆମରି ଜାତି, ଆମରି ଭାଷାଭାଷୀ ସବୁ ଦୃଷ୍ଟିରୁ । ତାଙ୍କ ପାଇଁ ଆମର କଣ କିଛି କର୍ତ୍ତବ୍ୟ ନାହିଁ ? ସେମାନେ ତ ଘରେ ଘରେ ଓ ନିଜ ଭାଷା ଓ ସଂସ୍କୃତିକୁ ବଞ୍ଚାଇବାକୁ ବର୍ଣ୍ଣବୋଧ ବହି ନିଜ ଘରେ ଛୁଆ ମାଇପଙ୍କୁ ପଢ଼ାଉଛନ୍ତି । ମାଣବସା, ସୁଦଶା ବ୍ରତ ଓ ତଅପୋଇ ଓଷା ପୂର୍ବପରି କରୁଛନ୍ତି । ନ୍ୟାୟ ନିମିତ୍ୟରେ ନିଜ ଘରେ, ତୋରଣରେ 'ଶୁଭବିବାହ' ଲେଖି ନିଜକୁ ଗୌରାବାନ୍ୱିତ ମନେ କରୁଛନ୍ତି । ହିନ୍ଦି ଲିପିରେ ଓଡ଼ିଆ ନାଟକ ଲେଖି ପ୍ରତିଯୋଗିତା ଓ ମଞ୍ଚସ୍ଥ କରି ପୁରସ୍କାର ଦିଆନିଆ କରୁଛନ୍ତି । କାଁ ଭାଁ କେଉଁଠି କେମିତି ଘରୋଇ ଓଡ଼ିଆ ଶିକ୍ଷକ ରଖି ପିଲାଙ୍କୁ ଓଡ଼ିଆ ପଢ଼ାଉଛନ୍ତି । ଯାହାର ସୁବିଧା ଅଛି ଅର୍ଥାତ୍ ସୀମା ବା ଓଡ଼ିଶା ଭିତରେ ବଂଧୁ ଘରେ ପିଲାଙ୍କୁ ରଖି ଓଡିଆ ମାଧ୍ୟମରେ ପଢାଉଛନ୍ତି, ଆଜିଯାଏ କେହି ଜଣେ ହେଲେ ଓଡ଼ିଆ ଅଣଓଡ଼ିଆଙ୍କ ଘରେ ବନ୍ଧୁ ବାନ୍ଧୁ ନାହାନ୍ତି । ଝିଅ ଦେବାକୁ ବା ବୋହୁ ନେବାକୁ ଓଡ଼ିଶାକୁ ଏବେ ମଧ ଆସୁଛନ୍ତି ।

ହେଲେ ଆମେ ତାଙ୍କ ପାଇଁ କଣ କରିଛୁ ? ଆମ ତଥାକଥିତ ଓଡ଼ିଆ ଅନୁଷ୍ଠାନ କଣ କରିଛି ? ଆମ ଓଡ଼ିଶା ସରକାର କଣ କରିଛନ୍ତି ? ଆମ ସମ୍ବିଧାନର ରକ୍ଷକ ଆମ ବିଧାନସଭା, ଲୋକସଭା, ରାଜ୍ୟସଭା ଓ ସଂଖ୍ୟାଲଘୁ ଭାଷାଭାଷୀ କମିସନ କଣ କରିଛନ୍ତି ? ଗୋଟେ ଗୋଟେ ସଭା ସମିତି, ଗ୍ରନ୍ଥ ଓ ବିବରଣୀ ଛପାଇବା ଛଡ଼ା ବାସ୍ତବ କ୍ଷେତ୍ରରେ ଯେଉଁ ଲଢ଼େଇ ଦରକାର ତାହା କିଏ କରୁଛି ବା କରିଛି ?

ମଧୁବାବୁ, ଗୋପବଂଧୁ ବାବୁ, ଗୋଦାବରୀଶ ବାବୁ, ବା ପ୍ରଚାରକ ଅନନ୍ତ ମିଶ୍ର ଥିବା ଯାଏ ଓ ପରେ କେତେବର୍ଷ ରାଧାନାଥ ରଥ ସେ ଅଞ୍ଚଳକୁ ଯାଇ ଓଡ଼ିଆ ସ୍କୁଲ ବସାଇବା, ଚଳାଇବା ସହ ଓଡ଼ିଆ ଭାଷା ସଂସ୍କୃତିର ସୁରକ୍ଷା ପାଇଁ କିଛି କରିଥିଲେ । ତାଙ୍କ ଅନ୍ତେ ବିଚ୍ଛିନ୍ନାଞ୍ଚଳର ଓଡ଼ିଆମାନେ ବାପ ଛେଉଣ୍ଡ ହୋଇ ଯାଇଛନ୍ତି ।

୧୯୩୮ ରେ ସଚ୍ଚିଦାନନ୍ଦ ମିଶ୍ର, ୧୯୩୯ରେ ଭଗବାନ ରଥ ବାସୁ ଦେବଦାସ, କୃଷ୍ଣ ପଟ୍ଟନାୟକ ଇତ୍ୟାଦି ସିଂହ ଭୂମି ଯାଇ ସେଠାକାର ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଓ ତାରାପଦ ଷଡ଼ଙ୍ଗୀଙ୍କ ସହାୟତାରେ ଓଡ଼ିଆ ସ୍କୁଲ ବସାଇବା ଓ ସଂସ୍କୃତି ରକ୍ଷା ପାଇଁ କିଛିକାମ କରିଥିଲେ । ୧୯୫୬ ସୀମା ଆନ୍ଦୋଳନ ପରେ ସବୁକାମ ପ୍ରାୟ ବନ୍ଦ ଥିଲା । ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀ ମଣ୍ଡଳ ତରଫରୁ ସଚ୍ଚିବାବୁଙ୍କ ପ୍ରେରଣାରେ ସତର ବର୍ଷର ବ୍ୟବଧାନରେ ସତରହଜାର ଓଡ଼ିଆ ପଢ଼ାବହି ପଠାଗଲା । ଯିବା ବେଳେ ଅବଶ୍ୟ ଗୁରୁବାବୁ ସେ ଗାଡ଼ିରେ ଖଣ୍ଡେ ଉତ୍କଳ ସମ୍ମିଳନୀ କନାଗୁଡ଼ାଇ ଦେଇଥିଲେ। ୨୦୦୦, ୨୦୦୧, ୨୦୦୨ ଏପରି ତିନିବର୍ଷ ଲଗାତର ଓଡ଼ିଆ ପଢ଼ାବହି ନେଇ ଚକ୍ରଧର ପୁରଠାରେ ରଖି ସେଠୁ ଜୟନ୍ତୀଗଡ଼, ଚକ୍ରଧରପୁର ସଣୁଆ ଷଢ଼େଇକଳା, ଖରସୂଆଁ, ବନ୍ଧଡ଼ାଗୁଡ଼ା ଓ ଖଣ୍ଡାମୌଦା କେନ୍ଦ୍ରକୁ ପଠାଇ ସେଠୁ ସବୁ ଓଡ଼ିଆ ବିଦ୍ୟାଳୟକୁ ପଠାଯିବା ପରେ ସେଠା ସରକାର ଆମ ସରକାର, ଓ ସେଠା ଲୋକଙ୍କ ମଧ୍ୟରେ ଚେତନା ପଶିଲା । ଅବଶ୍ୟ ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀ ମଣ୍ଡଳ ତରଫରୁ ସ୍ମାରକ ପତ୍ର ଦେଇ ଓଡ଼ିଶା ବିଧାନସଭାର ସଂଖ୍ୟାଲଘୁ ଭାଷାଭାଷୀ ଗୃହ କମିଟିକୁ ନେଇ, ସେଠରେ ବୁଲାଇ, ଅବସ୍ଥା ଦେଖାଇ ଲିଖିତ ଭାବେ ପ୍ରତି ସମସ୍ୟା ସମ୍ବନ୍ଧେ ସ୍ମାରକ ପତ୍ର ଦେଇ ସେଠା ସରକାରଙ୍କ ସହ ସୁଦୀର୍ଘ ଆଲୋଚନା କରାଇ ସବୁ କିଛି ବ୍ୟବସ୍ଥା କରାଯାଇ ମଧ୍ୟ ବିଳମ୍ବିତ ସମୟରେ କିଛି ସୁଫଳ ମିଳିଛି । ୨୦୦୪ ଓ ୨୦୦୫ରେ ଝାଡ଼ଖଣ୍ଡ ସରକାର ଓଡ଼ିଆ ବହି କିଣିନେଇ ସେଠା ଓଡ଼ିଆ ସ୍କୁଲକୁ ଦେଇଛନ୍ତି ।

ପୂର୍ଣ୍ଣାଙ୍ଗ ଉତ୍କଳ ତରଫରୁ ଷଢ଼େଇକଳା ଜିଲ୍ଲା ସଦର ମହକୁମା, କେରା ଓ ଖରସୁଆଁରେ ଧାରଣା ଦେବା ଫଳରେ ସାହାଣ ମେଳା ପରି ଓଡ଼ିଆ ସ୍କୁଲରୁ ଓଡ଼ିଆ ଶିକ୍ଷକ ମାନଙ୍କୁ ଦଳ ଦଳ ବଦଳି ବନ୍ଦ ହୋଇଛି । ଏବେ ସେଠାକାର ବହୁତ ଓଡ଼ିଆ ପିଲା ଶିକ୍ଷା ସହାୟକ ମଧ୍ୟ ହୋଇଛନ୍ତି ।

ପୂର୍ଣ୍ଣାଙ୍ଗ ଉତ୍କଳ ତରଫରୁ ସେହି ବିଚ୍ଛିନ୍ନାଞ୍ଚଳରେ ମାସିକ ସ୍ୱଳ୍ପ ମାନଧନ ଦେଇ ୨୦ଟି ଓଡ଼ିଆ ଶିକ୍ଷା ପାଇଁ ବିଦ୍ୟାଳୟ ସ୍ଥାପନ କରାଯାଇଛି । ସେଥିପାଇଁ ଉତ୍କଳ ମଣି ଓଡ଼ିଆ ଶିକ୍ଷା ପ୍ରସାର ପାଣ୍ଠିର ସୁଧ ଓ କେତେକ ବଦାନ୍ୟ ବ୍ୟକ୍ତିଙ୍କ ସ୍ୱତନ୍ତ୍ର ଦାନ ମିଳିଅଛି । ଏଥିମଧ୍ୟରୁ ଦୁଇଟି ବିଦ୍ୟାଳୟ ପରିଚାଳନା ପାଇଁ ବ୍ୟକ୍ତିଗତ ଭାବେ ସ୍ୱର୍ଗୀୟ ସଚ୍ଚିଦାନନ୍ଦ ମିଶ୍ରଙ୍କ ନାମରେ ଓ ଲେଖକଙ୍କ ପିତା ଅନାମ ଦ୍ୱିବେଦୀଙ୍କ ନାମରେ ପଚାଶ ହଜାର ଟଙ୍କା କରି ସ୍ଥାୟୀ ଜମା ଉତ୍କଳମଣି ଶିକ୍ଷା ପ୍ରସାର ପାଣ୍ଠିରେ ଜମା କରାଯାଇଛି; ଯାହାର ସୁଧରୁ ସଂପୃକ୍ତ ବିଦ୍ୟାଳୟର ଶିକ୍ଷକଙ୍କୁ ମାନଧନ ଦିଆଯାଉଛି । ଅନୁରୂପ ଭାବେ ଡ଼ ପ୍ରସନ୍ନ କୁମାର ମିଶ୍ର, ପ୍ରମୋଦ ଚନ୍ଦ୍ର ରଥ ଓ ଭଗବାନ ରଥ ସ୍ଥାୟୀ ଜମା ରଖି ତିନୋଟି ବିଦ୍ୟାଳୟ ଚଳାଉଛନ୍ତି । ସେଠାରେ ଅବସ୍ଥିତ ସ୍କୁଲ ପୁସ୍ତକାଗାର ଓ ଗ୍ରାମ୍ୟ ପାଠାଗାର ପାଇଁ ଓଡ଼ିଶାରୁ ମାଗିନେଇ ହଜାର ସଂଖ୍ୟାରେ

ଗଳ୍ପ, ଉପନ୍ୟାସ, କବିତା ବହି ଓ ପତ୍ରିକା ଯୋଗାଇ ଦିଆଯାଇଛି । ମାଗଣାରେ ଦୁଇଟି ଓଡ଼ିଆ ଖବର କାଗଜ ମଧ୍ୟ ଦୁଇଟି ସ୍ଥାନକୁ ସଂପୃକ୍ତ ସଂପାଦକଙ୍କ ବଦାନ୍ୟତାରେ ପଠାଯାଉଛି । ଓଡ଼ିଆ ସମ୍ବାଦଓ ସମ୍ବାଦ ପତ୍ର ସଂପ୍ରସାରଣ ପାଇଁ ଷଢ଼େଇକଳା ଓ ଖରସୁଆଁରେ ଦୁଇଜଣ ସାମ୍ବାଦିକ ସୃଷ୍ଟି କରାଯାଇଛି ।

ପ୍ରସିଦ୍ଧ ଛଉନୃତ୍ୟ ଗୁରୁ କେଦାର ସାହୁ ଓ ଯୁବକବି ଜ୍ୟୋତିଲାଲ ସାହୁଙ୍କୁ ପୂର୍ଣ୍ଣାଙ୍ଗ ଉତ୍କଳ ତରଫରୁ ସମ୍ମାନିତ କଲାପରେ ସେମାନେ ଝାଡ଼ଖଣ୍ଡ ରତ୍ନ ଉପାଧି ପାଇଛନ୍ତି ଓ କେଦାର ବାବୁ ପଦ୍ମଶ୍ରୀ ଉପାଧି ପାଇଛନ୍ତି । ଏତଦ୍‌ବ୍ୟତୀତ ସ୍ୱର୍ଗୀୟ ବିଶ୍ୱନାଥ କର, ଗୋବିନ୍ଦ ମହାନ୍ତ ଓ ମୋତିରାମ ତନ୍ତୀଙ୍କୁ ମରଣୋତ୍ତର ଓଡ଼ିଆ ପୁଅ ଉପାଧି ପ୍ରଦାନ କରାଯାଇଛି । ଆହୁରି ବହୁତ ଛଉନୃତ୍ୟ ଗୁରୁ, ମୁଖାଶିଳ୍ପୀ, କବି ଓ କଳାକାରଙ୍କୁ ପୂର୍ଣ୍ଣାଙ୍ଗ ଉତ୍କଳ ସମ୍ମାନିତ କରି ସେଠାକର ଓଡ଼ିଆମାନଙ୍କ ମଧ୍ୟରେ ଦେଶପ୍ରାଣ, ଜାତିପ୍ରାଣ ଓ ଭାଷାପ୍ରାଣ ସଞ୍ଚାର କରାଯାଇଛି ।

ଷଢ଼େଇକଳା ,ଖରସୁଆଁ ଓ ଟାଟା ଠାରେ ତିନିଥର ଓଡିଶାରୁ ଯାଇଥିବା ବହୁ କବି ଓ ସେଠାକାର କବି ମାନଙ୍କର ମିଶ୍ରିତ ଭାବେ ୩ଥର କବିସମ୍ମିଳନୀ ଓ ସାହିତ୍ୟ ଚର୍ଚ୍ଚାର ସଭା କରାଯାଇଛି ।



ଓଡିଶା ବିଧାନସଭାର ୫୪ ନମ୍ବର କୋଠରୀରେ ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀ ମଣ୍ଡଳର ଅଧିବେଶନ । ଉପସ୍ଥିତ - ଡାହାଣର ମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନ, ବାଚସ୍ପତି ଶ୍ରୀ ଶରତ କୁମାର କର, ବାଚସ୍ପତି ଭଗବାନ ରଥ, ସଂପାଦକ ପର୍ଶୁରାମ ଦ୍ୱିବେଦୀ, ପ୍ରତିଷ୍ଠାତା ନ୍ୟାସୀ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର, ନ୍ୟାସୀ ଶ୍ରୀ ରଜକିଶୋର ନାୟକ ତାଙ୍କ ପଛକୁ ମଝିରେ କୋଷାଧକ୍ଷ ନାରାୟଣ ବ୍ରହ୍ମା ।



(ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀ ମଣ୍ଡଳ ତରଫରୁ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଓ ବାଚସ୍ପତି ଶ୍ରୀ ଶରତ କୁମାର କରଙ୍କ ଦ୍ୱାରା ସମ୍ମାନିତ ଷଢେଇକଳାର ଯୁବକବି ଶ୍ରୀ ଜ୍ୟୋତିଲାଲ ସାହୁ ।)

ସିଂହଭୂମି, ଷଢେଇକଳା ଓ ଖରସୂଆଁରେ ଶତାଧିକ ଓଡ଼ିଆ ଛାତ୍ରଙ୍କୁ ଛାତ୍ର ବୃତ୍ତି ମଧ୍ୟ ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀ ମଣ୍ଡଳ ତରଫରୁ ଦିଆଯାଇଛି । ହଜାର ସଂଖ୍ୟାରେ ବର୍ଣ୍ଣବୋଧ ଓ ମାଣବସା, ତଅପୋଇ, ସୁଦଶାବ୍ରତ ଇତ୍ୟାଦି ଓଷାବାର ବହି ସହ ଓଡ଼ିଆ ଭଜନ କ୍ୟାସେଟ୍ ଯୋଗାଇ ଦିଆଯାଇ ଓଡ଼ିଆ ସଂସ୍କୃତିର ସୁରକ୍ଷା କରାଯାଇଛି । ଷଢେଇକଳା ଓ ଖରସୂଆଁ ଠାରେ ଦୁଇଟି ଭାଗବତ ଟୁଙ୍ଗୀ ପ୍ରତିଷ୍ଠିତ ହୋଇଛି ।

ଗତ ଜନଗଣନା ବେଳେ ୫୦ଟି ଗ୍ରାମ୍ୟ କମିଟି ଗଢାଯାଇ ପୂର୍ଣ୍ଣାଙ୍ଗ ଉତ୍କଳ ତରଫରୁ ସ୍ୱଳ୍ପ ପକେଟ୍ ଖର୍ଚ୍ଚ ଦିଆଯାଇ ଗାଁ ଗାଁ ବୁଲି ସବୁ ଓଡ଼ିଆ ଲୋକ ଯେପରି ନିଜକୁ ଓଡ଼ିଆ ବୋଲି ପରିଚୟ ଦିଅନ୍ତି ସେଥିପାଇଁ ଉଦ୍ଦିଷ୍ଟ ଫର୍ମ ପୂରଣ କରିବାକୁ ପ୍ରଶିକ୍ଷିତ କରାଯାଇଛି ।

ଏସବୁ କାର୍ଯ୍ୟର ତଦାରଖ କରିବାକୁ ଓ ପ୍ରୋତ୍ସାହନ ଯୋଗାଇବାକୁ ସିଂହଭୂମି· ଓଡ଼ିଆ ଶିକ୍ଷକ ସଂଘ, ନାଗରିକ କମିଟି ଓ ଓଡ଼ିଆ ଶିକ୍ଷା ସମିତି ଗଢ଼ାଯାଇଛି ଆମରି ଉଦ୍ୟମରେ ।

ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀ ମଣ୍ଡଳ ପ୍ରସ୍ତାବ କ୍ରମେ ଓଡ଼ିଶା ସରକାର ବଜେଟ୍ ବ୍ୟବସ୍ଥା କରି ବିତ୍ତ ରହିତ ଅଥଚ ସ୍ୱିକୃତି ପ୍ରାପ୍ତ ବହୁ ଓଡ଼ିଆ ମ.ଇ. ଓ ହାଇସ୍କୁଲକୁ ଅନୁଦାନ ବ୍ୟବସ୍ଥା କରାଇଛନ୍ତି ଯାହାକି ଉତ୍କଳ ସମ୍ମିଳନୀ ନେଇ ବଣ୍ଟନ କରିଛି ।

ଦୀର୍ଘ ବର୍ଷ ଧରି ଅବହେଳିତ ଏହି ବିରାଟ ଓଡ଼ିଆ ବହୁଳ ବିଚ୍ଛିନ୍ନାଞ୍ଚଳରେ ଏସବୁ ଯେଉଁମହାନ କାର୍ଯ୍ୟ କରାଯାଇଛି ତା ମୂଳରେ ସଚ୍ଚିଦାନନ୍ଦ ମିଶ୍ର, ଭଗବାନ ରଥଙ୍କ ପ୍ରେରଣା

ସହ ଈଶ୍ୱରଙ୍କର ପ୍ରଚଣ୍ଡ ଆଶିର୍ବାଦ ରହିଅଛି; ତା ନହେଲେ ଏତେ କ୍ଷୁଦ୍ର ଅନୁଷ୍ଠାନ ଦ୍ୱାରା ଏତେ ସବୁ ମହାନ କାର୍ଯ୍ୟ ଅସମ୍ଭବ । ନିଜେ ପଢ଼ିବାକୁ ବହିଖଣ୍ଡେ ପାଉନଥିବା ବେଳେ ମୋ ଭଳି କ୍ଷୁଦ୍ର ଜନର ଏହା କରାମତି ନୁହେଁ । ଏହା ହେଉଛି ଦୀନଜନବନ୍ଧୁ, ଓଡ଼ିଆ ଜାତିର ଗର୍ବ ଗୌରବର ପ୍ରତୀକ ; ଓଡ଼ିଶାର ଅଂଶଭାବେ ତାହା ଜଗନ୍ନାଥ ଦେଶ ; ତେଣୁ ସ୍ୱୟଂ ଜଗନ୍ନାଥଙ୍କର ଆଶିର୍ବାଦ ଓ ପ୍ରେରଣାର ଫଳ । ଏହି ସମସ୍ୟା ଘେରରୁ କେବେ ଉଦ୍ଧାର ମିଳିବ ତାହାଙ୍କୁ ହିଁ ଜଣା ।

ଏସବୁ କାମରୁ କିଛି ପାଇବାର ନାହିଁ । ମାତୃଭୂମି ଓ ମାତୃଭାଷାର ଉନ୍ନତି ପାଇଁ କର୍ତ୍ତବ୍ୟ ବୋଧରେ ହିଁ କଷ୍ଟ ସ୍ୱିକାର କରି କରାଯାଉଛି । "କର୍ମଣ୍ୟେ ବାଧିକାରସ୍ତେ- ମା ଫଳେଷୁ କଦାଚନ।" ଏଥିପାଇଁ ସରକାରୀ ଅର୍ଥ ସାହାଯ୍ୟ ମିଳିନି । କେବଳ ଲୋକ ସହଯୋଗକୁ ଆଧାର କରି ଏସବୁ କରାଯାଉଛି । ତଥାପି ପ୍ରତିବର୍ଷ ବାର୍ଷିକ ସାଧାରଣ ସଭା କରିବର୍ଷକର କାର୍ଯ୍ୟବିବରଣୀ ସହ ବର୍ଷକର ଆୟବ୍ୟୟର ଅଡ଼ିଟ୍ କରାଇ ସଭ୍ୟମାନଙ୍କୁ ଓ ସର୍ବସାଧାଣଙ୍କୁ ନିୟମିତ ଭାବେ ଜଣାଇ ଦିଆଯାଉଛି । ସେତିକି ନୁହେଁ ନିଜର ଓ ବହୁ ମାତୃଭୂମି ଓ ମାତୃଭାଷା ପ୍ରେମୀଙ୍କ ଲେଖାକୁ ସଂକଳିତ କରି ଆମ ବିଚ୍ଛିନ୍ନାଞ୍ଚଳ ୧ମ ଓ ୨ୟ ଭାଗ ସହ ଷଢ଼େଇକଳାର ଯୁବକବି ଜ୍ୟୋତିଲାଲ ସାହୁଙ୍କର ଛିନ୍ନମସ୍ତା କବିତା ପୁସ୍ତକ ଛପାଯାଇଛି । ଏଥିଲାଗି ପ୍ରାକ୍ତନ ମୁଖ୍ୟ ଶାସନ ସଚିବ ଶ୍ରୀଯୁକ୍ତ ରମାକାନ୍ତ ମିଶ୍ର ଟ୭୫୦୦ ଓ ଭଗବାନ ରଥ ଟ. ୨୦୦୦ ଓ ମୁଁ ନିଜେ ୨୦୦୦ ଦେଇଛି । ରମାକାନ୍ତବାବୁଙ୍କ ଭାଷାରେ ଏସବୁ ସାମାଜିକ କାର୍ଯ୍ୟର ବିବରଣୀ ଏବଂ ବିଚ୍ଛିନ୍ନାଞ୍ଚଳ ସମ୍ବନ୍ଧିୟ ତଥ୍ୟ ରାଜି ଅନ୍ତତଃ ପକ୍ଷେ ରେକର୍ଡ଼ ହୋଇ ରହିଯାଇଛି; ଆମର ଭବିଷ୍ୟତ ବଂଶଧର ମାନଙ୍କ ପାଇଁ । ସଚ୍ଚିବାବୁଙ୍କ ଭବିଷ୍ୟବାଣୀ ଓ ମୁଁ ମଧ ଏକମତ ଯେ ଚନ୍ଦ୍ରସୂର୍ଯ୍ୟ ଯଦି ସତ୍ୟ କେତେବେଳେ ହେଲେ ରାଜନୈତିକ ଇଚ୍ଛାଶକ୍ତି ଜାଗ୍ରତ ହେଲେ ଷଢ଼େଇକଳା ଓ ଖରସୂଆଁର ଓଡ଼ିଶା ସହ ପୁନଃମିଶ୍ରଣ ନିଶ୍ଚିତ । ସେଥିପାଇଁ ପୂର୍ଣ୍ଣାଙ୍ଗ ଉତ୍କଳ ତରଫରୁ ପ୍ରତିବର୍ଷ ସ୍ମାରକ ପତ୍ର ପଠା ଚାଲିଛି ଓ ଚାଲିଥିବ ମଧ । ତାକୁ କିଏ ପଢୁ କି ନପଢୁ ଆମ ଦାବୀ ରହିଛି ଓ ରହିଥିବ । ସ୍ୱାଧୀନତାର ସ୍ୱର୍ଣ୍ଣଜୟନ୍ତୀ ସମୟରେ ୩୦୦୦୦ ଦସ୍ତଖତ ସଂଗ୍ରହ କରାଯାଇଛି । ଅନ୍ତତଃ ବିହାରରୁ ଝାଡଖଣ୍ଡ ଅଲଗା ହେବା ବେଳେ ଓଡ଼ିଶାକୁ ଷଢ଼େଇକଳା ଖରସୁଆଁକୁ ଫେରାଇ ଦିଆଯିବାକୁ ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀଙ୍କୁ ଦରଖାସ୍ତ ପଠାଯାଇଛି । ୨୦୦୦ ମସିହାରେ ଝାଡ଼ଖଣ୍ଡ ରାଜ୍ୟଗଠନ ବେଳେ ଲେଖକ ନିଜେ ଓ ସିଦ୍ଧାର୍ଥ ଦାଶ ନାମକ ଆଉଜଣେ ନ୍ୟାସୀ ତୋଫାନୀ ଗ୍ରସ୍ତରେ ଯାଇ ଚକ୍ରଧରପୁର, ଷଢ଼େଇକଳା, ଖରସୂଆଁ ଓ ଜାମସେଦପୁରରେ ସଭା କରାଇଥିଲୁ । ଏସବୁ ସାମାଜିକ ଦାୟିତ୍ୱ ତୁଲାଇବାକୁ ପ୍ରତିବଦ୍ଧତା ଥିଲେ ଧନ ଅଭାବ ରହିବନି । ସେହି ନର ନାରାୟଣ ହିଁ ଭରସା ହେବେ । ଏ ଭରସାରହିଛି ଓ ରହିଥିବ ଶେଷ ନିଃଶ୍ୱାସ ଥାଏ ।

# ୧୪୩. ସାଇକାମରେ

ପଶୁ, ପକ୍ଷୀ, ମଣିଷ ଯେ ଯେଉଁ ବାତାବରଣରେ ଥାଏ ତାକୁ ସଜାଡ଼ିବା, ଉନ୍ନତ କରି ଗଢ଼ିବା ଓ ଚଳନକ୍ଷମ କରି ନିଜ ପାଇଁ ସୁବିଧା ସୃଷ୍ଟି କରାଇବା ତାର ସ୍ୱାଭାବିକ କର୍ମ। ଈଶ୍ୱର ଏ ଇଚ୍ଛା ଅଳ୍ପବହୁତେ ସମସ୍ତଙ୍କୁ ଦେଇ ଥିଲେ ମଧ ପାଞ୍ଚଭାଇଙ୍କୁ ଏକାଠି କରି ଏକାମ କରାଇବା ସହଜ ନୁହେଁ । ଆମର ଏ ବିମାନଘାଟୀ ଅଞ୍ଚଳରେ ୧୯୭୯ରୁ ୰ ଅଦ୍ୱୈତାନନ୍ଦ ଚମ୍ପତି, ୰ ବନମାଳୀ ରଥ, ୰ ରାଜକିଶୋର ଗୋସ୍ୱାମୀ, ମିର ହାଇଦର ଅଲ୍ଲୀ ଇତ୍ୟାଦି ଗୋଟିଏ କମିଟି ଗଠନ କରି ସାଇର ଉନ୍ନତି ପାଇଁ କିଛି କିଛି କାମ କରୁଥିଲେ ଓ ବାର୍ଷିକ ପାଞ୍ଚଟଙ୍କା କରି ଆଦାୟ କରୁଥିଲେ ମଧ ଏଥିପାଇଁ ନିୟମିତ ପଞ୍ଜିକୃତ ବିଧି ବ୍ୟବସ୍ଥା ନଥିଲା ୧୯୮୦ ମସିହାର କଥା । ମୁଁ ଛୁଟିରେ ଦି ଦିନ ପାଇଁ ଘରକୁ ଆସିଥିଲି । ଆମ ଘର ଆଗର ଡ଼ଃ ବଳଭଦ୍ର ମିଶ୍ର ଦିନେ ଦ୍ୱିପହର ବେଳା ସ୍କୁଲରେ ବସିଥିବା ମିଟିଂକୁ ଯିବାକୁ ଡ଼ାକିଲେ । ସେଠିକୁ ଯାଇ ମିଟିଂରେ ଯୋଗ ଦେବାରେ ଚମ୍ପତି ବାବୁ କହିଲେ ଯେ ସେ ଅନ୍ଧ ହୋଇ ଗଲେଣି । ତେଣୁ ସାଇ କମିଟିର ସଭାପତି ଦାୟିତ୍ୱ ଆଉ କେହି ନିଅନ୍ତୁ । ଏହିଠାରେ ବଳଭଦ୍ରବାବୁ ମୋ ନାମ ପ୍ରସ୍ତାବ କରିବାରେ ସମସ୍ତେ ଏକ ସ୍ୱରରେ ସମର୍ଥନ ଜଣାଇଲେ । ମୁଁ ବାହାରେ ରହୁଛି ଓ ଚାକିରୀ କରିଛି, ସମୟ ନାହିଁ ଇତ୍ୟାଦି ଯେତେଯାହା କହିଲେବି ଆଉ ଛାଡ଼ ମିଳିଲାନି । ସେହି ଦିନ ଏ ଅଞ୍ଚଳର ନାମାନୁଯାୟୀ କମିଟିର ନାମ କରଣ ହେଲା "ନିଉ ବାପୁଜୀ ନଗର କଲ୍ୟାଣ ସମିତି" । ତା ପାଇଁ ବାଇଲ ପ୍ରସ୍ତୁତି ଓ ପଞ୍ଜିକରଣ ଦାୟିତ୍ୱ ମଧ ମୋରି ଉପରେ ପଡ଼ିଗଲା । ଯୋଗକୁ ୧୯୮୧ରେ ଭୁବନେଶ୍ୱରକୁ ବଦଳି ହୋଇ ଆସିବାରୁ ଏ ଦୁଇଟି କାମ କରାଇବା ସହ କଲ୍ୟାଣ ସମିତିର କାଗଜପତ୍ର, ଅଡ଼ିଟ୍, ବାର୍ଷିକ ସଭା ଇତ୍ୟାଦି ନିୟମିତ କରାଗଲା ।



ସାଇକାମରେ ମନ୍ତ୍ରୀ ଶ୍ରୀ ଯଦୁନାଥ ଦାସ ମହାପାତ୍ର ନିଉ ବାପୁଜୀ ନଗର କଲ୍ୟାଣ ସମିତର ସଭାପତି ଲେଖକ - ପର୍ଶୁରାମ ଦ୍ୱିବେଦୀ ଓ ଅନ୍ୟମାନେ ।

ପ୍ରଥମେ ରାସ୍ତାକାମ ପାଇଁ ତତ୍‌କାଳୀନ ନଗରପାଳିକାର ନିର୍ବାହୀ ଅଧିକାରୀ ରାମଚନ୍ଦ୍ର ପଣ୍ଡାଙ୍କୁ ଦେଖାକରି ବାରମ୍ବାର କହିବାରେ ସବୁଗୁଡ଼ିକ ରାସ୍ତା ଏକା ବର୍ଷକେ ପିଚୁ ହୋଇଗଲା । ଏତକ ଦେଖିବା ପରେ ଆଉ କେହି ଛାଡ଼ିବାକୁ ନାରାଜ । ଶଙ୍କର ପ୍ରଧାନ ସଂପାଦକ ହେଲେ ମଧ୍ୟ କିଛି ଲେଖାଲେଖି କାମ କରନ୍ତିନି । ଅପର ପକ୍ଷେ ମୋତେ କ୍ଷିପ୍ର ଲେଖକ ମିଳିଥିବାରୁ ମୁଁ ଅଫିସ୍‌ରେ ପାଣି, ରାସ୍ତା ତିଆରି, ଡ୍ରେନେଜ, ନାଳ ନର୍ଦ୍ଦମା ସମ୍ବନ୍ଧେ ବାରମ୍ବାର ସହଜରେ ଚିଠି ଲେଖେ । ବାଇଲ କରି ପଞ୍ଜିକୃତ କରିବା ସହ ପ୍ରତି ପରିବାର ପ୍ରତି ମାସରେ ଏକ ଟଙ୍କା କରି ଚାନ୍ଦା ଦେବାର ମଧ୍ୟ ବ୍ୟବସ୍ଥା କରାଗଲା । ଏବେ ତାହା ବଦଳି ମାସକୁ ପାଞ୍ଚଟଙ୍କା କରାଯାଇଛି ଗତ ୪ବର୍ଷ ହେଲା । ଅଳ୍ପ କେତେ ଘରକୁ ଛାଡ଼ି ଲୋକେ ମଧ୍ୟ ଖୁସିରେ ଦେଇଦେଲେ । ଅବଶ୍ୟ ଏଥିପାଇଁ ବର୍ଷରେ ୩ଥର ସାହି ବୁଲି ମାଗି ଆଣିବାକୁ ପଡୁଛି । କଦଳୀ ବିକାକୁ ଯାତ୍ରା ଦେଖା ଦୁଇକାମ ହେଉଛି । କଲ୍ୟାଣ ସମିତି ପାଇଁ ଚାନ୍ଦା ଓ ଯଜ୍ଞ ପାଇଁ ଚାନ୍ଦା ଉଦ୍ଦେଶ୍ୟରେ ଓ ହୋଲିରେ ଅବିର ଦେବା ପାଇଁ ଏମିତି ବର୍ଷରେ ଅନ୍ତତଃ ସାଇର ସମସ୍ତଙ୍କ ଘରକୁ ତିନିଥର କରି ନିୟମିତ ପ୍ରତି ବର୍ଷ ବୁଲି ଯିବା ଫଳରେ ସମସ୍ତଙ୍କର ଅନ୍ତରଙ୍ଗ ଓ ପରିଚିତ ହୋଇଯାଇଛି । ଏବେ ମଧ୍ୟ ମୋତେ ଛାଡ଼ି ଚାନ୍ଦା ପାଇଁ ଆଉ କିଏ ସାଇକୁ ଗଲେ କେତେକ ପ୍ରଶ୍ନ କରିଥାନ୍ତି ।

## ୧୪୪. ପାନୀୟ ଜଳ ଓ ରାସ୍ତା

ସମସ୍ତେ କୂଅ ଖୋଳି ପାଣି ପିଉଥିଲେ । କଥା ପଡ଼ିଲା ଜନସ୍ୱାସ୍ଥ୍ୟ ବିଭାଗର ଜଳ ଯୋଗାଣ ପାଇଁ । ଏଥିପାଇଁ ସେତେବେଳେ ନଗରପାଳିକା ଓ ସରକାରର ଟଙ୍କାର ଅଭାବ ଥାଏ । ଥରେ ନଗର ଉନ୍ନୟନ ସଚିବ ଲୋକଙ୍କ ଠାରୁ ଚାନ୍ଦା ସଂଗ୍ରହ କରିବାକୁ ପରାମର୍ଶ ଦେଲେ । ଏଥିରେ ସମସ୍ତେ ଉତ୍ୟକ୍ତ ହୋଇଗଲେ । ସାରା ରାଜଧାନୀକୁ ସରକାର ପାଣି ଦେବେ ଆଉ ଆମେ ଚାନ୍ଦାକରି ପାଇପ୍ ପକାଇବୁ ? ଠାକୁରଙ୍କ ଇଚ୍ଛା ଅନ୍ୟ ପ୍ରକାର ଏତିକି ବେଳେ ମନ୍ତ୍ରୀ ବସନ୍ତ ବିଶ୍ୱାଳ ପ୍ରସ୍ତାବ ଦେଲେ ଯାହା ଟଙ୍କା ଅଛି ପଲିଥିନ୍ ପାଇପ୍ ପଡ଼ିପାରିବ । ଆମେ ସେଥିରେ ରାଜି ହୋଇଗଲୁ । କାମଟି ହୋଇଗଲାସିନା ପରେ ତାହା ଫାଟିବାରେ ବହୁତ ସମସ୍ୟା ଆସିଲା । କାଳକ୍ରମେ ତାହା ବଦଳି ଲୁହା ପାଇପ୍ ପଡ଼ିଗଲାଣି । ଆଉ ଅଳ୍ପକିଛି ଅଞ୍ଚଳ ବାକି ଅଛି । କିନ୍ତୁ ଲୋକ ସଂଖ୍ୟା ବୃଦ୍ଧି ଯୋଗୁଁ ଓ ନିୟମିତ ଯୋଗାଣ ନହେବାରୁ ସାମୟିକ ଅସୁବିଧା ଲାଗି ରହିଛି । ଛାଡ଼ିଯାଇଥିବା ଅଳ୍ପ କେତେକ ଅଞ୍ଚଳକୁ ମଧ୍ୟ ପାଇପ୍ ପଡ଼ିଗଲାଣି । ମୋଟ ଉପରେ ଏ କାମଟି ସଂପୂର୍ଣ୍ଣ ପ୍ରାୟ । ଏଥିପାଇଁ ବିଭାଗୀୟ ଯନ୍ତ୍ରୀଙ୍କ ସହ ଫିତା ଧରି ସାହି ସାହି ବୁଲି ମାପ କରିବା ନିଜେ କରିବାକୁ ପଡ଼ିଥିଲା ।

ରାସ୍ତା ମାନଙ୍କରେ ଅଳ୍ପ କେତୋଟି ଯାଗାରେ ବଲ୍ ଲାଗିଥିଲା । ଥରେ ଶଙ୍କର ବାବୁ ନଗରପାଳିକାରୁ ୫ଟି ବାରଲାଇଟ୍ ଆଣିବାରେ କେଉଁଠି ଲାଗିବ ତା ପାଇଁ କଳି

ଲାଗିଯାଇଥିଲା । ସେହି ଭଳି ଆମକୁ ବାରମ୍ବାର ଦଳବଳ ସହ ନଗରପାଳିକାକୁ ଦୌଡ଼ିବାରେ ସବୁରାସ୍ତାରେ ସବୁ ଖୁଣ୍ଟରେ ଏକ ବର୍ଷ ଭିତରେ ବାରଲାଇଟ୍ ଲାଗିଗଲା । ଏବେ ପ୍ରାୟ ସବୁ ଛକରେ ଉଜ୍ଜଳ ଆଲୋକ ହୋଇଗଲାଣି ।

## ୧୪୫. ମାଟିତଳ ନଳା

ରାଜଧାନୀର ସବୁ ଅଞ୍ଚଳରେ ମାଟିତଳେ (ସ୍ୱେରେଜ୍) ନାଳ ବ୍ୟବସ୍ଥା ଥିଲେ ମଧ୍ୟ ବିମାନଘାଟୀ ଅଞ୍ଚଳରେ ସେ ବ୍ୟବସ୍ଥା ନଥିଲା । ପ୍ରତ୍ୟେକ ପରିବାର ନିଜର ମଇଳା ଟାଙ୍କୀ କରିଥିଲେ । ମାଟି ତଳେ ପଥର ଚଟାଣ ଥିବାରୁ ସେସବୁ ଶୀଘ୍ର ଭରିଯାଏ । ଏହି ଅସୁବିଧାକୁ ଦୂର କିରବାକୁ ନଗରପାଳିକା, ସହରାଞ୍ଚଳ ବିଭାଗ, ବିଧାୟକ, ସାଂସଦ, ବିଜୁବାବୁଙ୍କ ଓଗେର ସବୁସ୍ତରକୁ ବାରମ୍ବାର ଦୌଡ଼ି ମଧ୍ୟ କିଛି ପ୍ରତିକାର ହୋଇ ପାରିଲାନି । ବିଜୁବାବୁ କିନ୍ତୁ କଥାଟିକୁ ମନେ ରଖିଥିଲେ । ଆମେ ମଧ୍ୟ ଶ୍ରୀ ବଟକୃଷ୍ଣ ଜେନା ନଗର ଉନ୍ନୟନ ମନ୍ତ୍ରୀ ଥିବା ବେଳେ ତାଙ୍କୁ ଡ଼ାକିଆଣି ଆମ ସ୍କୁଲଘରେ ମିଟିଂ କରି ସମ୍ବର୍ଦ୍ଧନା ଦେବା ସହ ଆମ ଅଞ୍ଚଳର ଅସୁବିଧା ବିଶେଷକରି ମାଟିତଳ ସ୍ୱେରେଜ ନାଳ କଥା କହିଥିଲୁ । ଯୋଗକୁ ସେତେବେଳେ ମୋ ଦଦେଇ ପୁଅ ଭାଇ ଧୀରେନ୍ଦ୍ର ନାଥ ଦ୍ୱିବେଦୀ ନିର୍ବାହୀ ଯନ୍ତ୍ରୀ ଥିଲେ ଓ ସେ ମନ୍ତ୍ରୀଙ୍କ ସହ ଆସିଥିଲେ । ମନ୍ତ୍ରୀ ଓ ନିର୍ବାହୀଯନ୍ତ୍ରୀ ସ୍ଥିର କଲେ ଯେ ସର୍ଭେକରି ଯୋଜନା ଓ ଅଟକଳ ପ୍ରସ୍ତୁତ ହେବ ଏବଂ ଟଙ୍କା ମିଳିଲେ କାମ ହେବ । ଧୀର ଭାଇନାଙ୍କ ଯୋଗୁଁ ତାଙ୍କର ଜଣେ ଜେଇ ପୃଷ୍ଟିବାବୁ ଆସି ମୋଠାରୁ ଏ ଅଞ୍ଚଳର ନକ୍ସା ନେଇ ଓ ମୋର ସହାୟତା ନେଇ ଫିତା ଲଗାଇ ମାପ କରିନେଲେ ଓ ଯୋଜନା ଏବଂ ଅଟକଳ ପ୍ରସ୍ତୁତ କରିଦେଲେ; ଯେ ଟ. ୪୯ ଲକ୍ଷ ଟଙ୍କା ଲାଗିବ । ପୁଣି ଦୁଇବର୍ଷ ଚାଲିଗଲା । ଟଙ୍କା ମିଳିଲାନି । ଆମେ ଯେବେ ବିଜୁବାବୁଙ୍କୁ ଭେଟୁଁ ତାଙ୍କୁ ମନେ ପକାଇ ଦେଉଁ । ଥରେ ମୁଁ ଖାଇ ବସିଛି । ଫୋନ୍ ଆସିଲା ସାର ଡ଼କାଇଛନ୍ତି ଦେଖା କରନ୍ତୁ । ମୁଁ ଆଉ ଦୁଇ ତିନି ଜଣଙ୍କୁ ଧରି ଯାଉ ଯାଉ ପୁଣି ଫୋନ ପାଇ ପହଞ୍ଚିବାରେ ଆମ ସହ ଆଲୋଚନା କରି ସ୍କୁଲ ପାଇଁ ତିନି ଲକ୍ଷ ପଚାଶ ହଜାର ଓ ସ୍ୱେରେଜ୍ ପାଇଁ ଏକତିରିଶ ଲକ୍ଷ ପଚାଶ ହଜାର ଏପରି ମୋଟ ଟ.୩୫ ଲକ୍ଷ ଏସ୍ ଆର ବୋମାଇଙ୍କ ଏମ.ପି. ଲ୍ୟାଡ଼୍‌ରୁ ଦେବାକୁ ସ୍ଥିର କଲେ । ହେଲେ ଯୋଜନା ଓ ଅଟକଳ ଚବିଶ ଘଣ୍ଟାମଧ୍ୟରେ ଦରକାର । ତା ପରଦିନଟି ଛୁଟି । ପଚାରି ବୁଝି ସେହି ଦିନ ରାତିରେ ଜନସ୍ୱାସ୍ଥ୍ୟ ବିଭାଗର ନିର୍ବାହୀ ଯନ୍ତ୍ରୀଙ୍କୁ ତାଙ୍କ ନୂଆପଲ୍ଲୀ ବାସଭବନରେ ଦେଖାକରିବାରୁ ସେ ପରଦିନ ଛୁଟି ଥିଲେବି ନକଲ ଯୋଗାଇ ଦେଲେ । ସାଙ୍ଗେ ସାଙ୍ଗେ ଫ୍ୟାକ୍ସରେ ପଠାଇ ଆଦେଶ ଅଣାଗଲା । ମାତ୍ର ଗୋଟିଏ କାମ ପାଇଁ ଦଶଲକ୍ଷରୁ ଅଧିକ ହେବନି ବୋଲି ନିର୍ଦ୍ଦେଶ ଥିବାରୁ ତାହା ଅଟକି ଗଲା । ତେଣୁ ପୁଣି ଥରେ ତାକୁ ଭାଙ୍ଗି ପାଞ୍ଚଟି ଅଟକଳ କରି ସେହି ଫ୍ୟାକ୍ସରେ ପଠାଇ ଆଦେଶ ଅଣାଗଲା । ରଘୁବାବୁ ଓ ମୁଁ ମେଟାଡୋର ଲାଇନ୍ ଗାଡ଼ିରେ ତିନିଥର ଖେର୍ଦ୍ଧା ଦୌଡ଼ି ସେ ଟଙ୍କା ନିର୍ବାହୀ ଯନ୍ତ୍ରୀଙ୍କ ପାଖରେ ଜମା କରାଇଲୁ । ପୁଣି ସ୍କୁଲରେ ମିଟିଂ ବସି, ନଡ଼ିଆ ଭାଙ୍ଗି, ଫଟୋ ଉଠାଇ କାମଟିର ଶୁଭ

ଦିଆଗଲା । ପାଞ୍ଚଟିକାମପାଇଁ ଚାରିଜଣ ଠିକାଦାର ଲାଗିଲେ । ଆମ ଘର ପାଖରେ ଖୋଳା ଆରମ୍ଭ ହେବାକ୍ଷଣି ପ୍ରଥମେ ଅଜୟ କର ଓ ପରେ ପ୍ରସନ୍ନ ମିଶ୍ର ଆପତ୍ତି ଦର୍ଶାଇଲେ । ତାର ତିନିଦିନ ପରେ ସବୁ ରାସ୍ତାର କାମ ଏକାଠି ଆରମ୍ଭ ହେଲା । କମ ଟଙ୍କା ହେତୁ କାମଟି ନସରିବାରୁ ପୁଣି ସବୁ ସ୍ତରକୁ ଦୌଡ଼ି ଦୌଡ଼ି ହାଲିଆ ହେବା ପରେ ନଗରାଞ୍ଚଳ କର୍ତ୍ତୃପକ୍ଷ ଟଙ୍କା ବ୍ୟବସ୍ଥା କରି ତାକୁ ଶେଷ କରି ପାଞ୍ଚବର୍ଷରେ କାର୍ଯ୍ୟକାରୀ କରାଇଲେ । ୧୯୯୫-୯୬ର ଟଙ୍କା ଦୁଇ ହଜାର ମସିହାରେ କାମରେ ଲାଗିଲା । ଯୁଗ ଯୁଗ ଓ ପରୁଷ ପୁରୁଷର ଅସୁବିଧା ଦୂର ହେଲା । ଦେଖନ୍ତୁ ଈଶ୍ୱରଙ୍କ ଇଚ୍ଛା ଥିଲେ ଧନର ଅଭାବ ରହିବନି । ସମୂହ ଇଚ୍ଛା ଓ ଚେଷ୍ଟା ବଳରେ ସବୁକିଛି ସମ୍ଭବ । ଈଶ୍ୱର ଏପରି ସତ୍ ଚେଷ୍ଟାକୁ ପୂରଣ କରନ୍ତି । ସମୂହ ଚିନ୍ତା, ସମୂହ ଚେଷ୍ଟା ଓ ସମୂହ କର୍ମ ହିଁ ଈଶ୍ୱରଙ୍କର ଯଜ୍ଞ କାର୍ଯ୍ୟ ।

## ୧୪୬ - ବିଦ୍ୟାଳୟ

ଛଅ ବର୍ଷତଳେ ସାହି ଚାନ୍ଦାରୁ ଯେତେବେଳେ ଗୋଟିଏ ବଖରା ଘର କରାଯାଉଥିଲା ବିଦ୍ୟାଧର ମିଶ୍ର ସେ କାମ ଦେଖୁଥିଲେ । ସେ ଝରକାର ସ୍ତରଯାଏଁ କରି ମଝିରୁ ଛାଡ଼ି ଦେଲେ । ହିସାବ ବି ଦେଲେନି । ଏଣେ ବିଜୁବାବୁ କହିଥିଲେ ଛାତଯାଏ କାମ କରିଦେଲେ ସେ ଛାତ ପାଇଁ ରଡରସବୁ ଟଙ୍କା ଦେବେ । ତେଣୁ ବାଧ ହୋଇ ହାତରୁ ଟଙ୍କା ଖର୍ଚ୍ଚ କରି ତାକୁ ଛାତଯାଏ କରାଇଲି । ବିଜୁବାବୁ ଆହ୍ମଦାବାଦ ବ୍ୟାଙ୍କରୁ ଚେକ୍‌ରେ ମୋ ହାତରେ ରଡ଼ ପାଇଁ ଟ. ୩୫୦୦ ଦେଲେ । ଛାତ ପଡ଼ିବା ପରେ ପୁଣି ବନ୍ଦ । ପୁଣି ଥରେ ଘରୁ ପଇସା ଖର୍ଚ୍ଚ କରି ପଲସ୍ତରା ଓ ମେଜିଆ କଲି । ଏକଥା ଶୁଣି ସ୍ୱର୍ଗୀୟ ବିଚାରପତି ବୀରେନ୍ଦ୍ରଚନ୍ଦ୍ର ଦାସ ଯେକି ସ୍କୁଲ ପାଇଁ ନିଜବାଡ଼ିରୁ ୧୧୦ ଡ଼େସିମିଲ ଜାଗା ଦାନ କରିଥିଲେ ମତେଡ଼କାଇ ଗାଳିଦେଲେ । କହିଲେ ଆପଣଙ୍କର ପାଞ୍ଚ ପିଲା । କମ୍ ଦରମା । ସାଇବାଲା ଯଥେଷ୍ଟ ଚାନ୍ଦା ଯଦି ନଦେଲେ କାମ ବନ୍ଦ ରହୁ । ଆପଣ କାହିଁକି ଏତେ ଟଙ୍କା ପିଲାଙ୍କ ଦାନାରୁ କାଟି ଦେଲେ ସ୍କୁଲ ପାଇଁ । ଏହା କହି ମୋତେ ଦୁଇହଜାର ଟଙ୍କା ଦେଲେ ଓ ଲେଖେଇ ନେଲେ ଯେ ଦାତାଙ୍କ ନାମ ମୁଁ କେଉଁଠି ପ୍ରକାଶ କରିବିନି । ପ୍ରକାଶ କଲେ ଟଙ୍କା ଫେରସ୍ତ କରିବାକୁ ହେବ । ବିଜୁବାବୁ ସ୍କୁଲ ପାଇଁ ଦେଇଥିବା ତିନିଲକ୍ଷ ପଚାଶ ହଜାର ଟଙ୍କାରେ ଘରକାମ ସାଇ ବା ସ୍କୁଲ କମିଟି କରୁ ବୋଲି କର ବାବୁ ଯିଦ୍ କରିବାରେ ତାହା ହିଁ ହେଲା । କରବାବୁ କାମ ଦେଖିଲେ । ମାତ୍ର ଅବୁନା ବୋଲି ଗୋଟିଏ ଠିକାଦାର କାମଟି କରାଇଲା । ତଳ ଘରର ଛାତକୁ ଭାଙ୍ଗିବାରେ କରବାବୁ ଓ ତାଙ୍କ ପୁଅ ଯେତିକି ଖଟିଛନ୍ତି ତାର ବର୍ଣ୍ଣନା କଲେ ଦୁଃଖ ଲାଗେ । ଆଗ ବଖରାଟି କଲାବେଳେ ମୁଁ ଛାତରେ ଚଢ଼ି ପାଣି ଦେବା ବେଳେ ଲୋକ ହସୁଥିଲେ । ସେହିପରି କରବାବୁଙ୍କ ଦୁଃଖରେ ମଧ ଲୋକ ହସିଲେ । ଯାହା ହେଉ ଖୁବ୍ ଶକ୍ତ ଭାବରେ ସେ କାମଟି ହେଲା । ଏଥିପାଇଁ ଅନ୍ୟୂନ ୫୦ଥର ଅବୁନା ଘର ଓ ବ୍ଲକ ଅଫିସ୍‌କୁ ଦୌଡ଼ିବାକୁ ପଡ଼ିଛି ମୋରି ସହଯୋଗରେ । ଉପର ମହଲା କାମକୁ ଆଉ ସାହସ ପାଇଲା ନାହିଁ । ଅବୁନା ବି ଛାଡ଼ି ଦେଲା । ବ୍ଲକ ବାଲା ଗୋଟେ ଠିକାଦାର ଦେଇ କରାଇଲେ । କାମତ ଭଲ ହେଲାନି । ପୁଣି ପାଚେରୀ ଅଧା ରହିଲା । ବାଧ ହୋଇ ସ୍କୁଲ ପାଣ୍ଠିରୁ ତିନି ହଜାର ଦେଲି କାନ ମୋଡ଼ି ହୋଇ । ଠାକୁରେ ଏମିତି କଷଟି ପଥରରେ

କଷନ୍ତି । ପଚିଶି ବର୍ଷର ଦୁଃଖ ଦୂର ହେଲା । ପୁରା ସ୍କୁଲ ଘର, କଳାପଟା, ରଙ୍ଗ, ଚୂନ, କବାଟ, ଝରକା ଲୁହା ଗେଟ୍ କାମ, ହୋଇଗଲା । ସ୍କୁଲ ପାଣ୍ଠିରୁ ମଧ୍ୟ ୨ୟରୁ ୭ମ ଯାଏଁ ବେଞ୍ଚ, ଡ଼େସ୍କ କରିଦିଆଗଲା । ପ୍ରସନ୍ନ ମିଶ୍ରଙ୍କ ଠାରୁ ତାଙ୍କ ବାପାଙ୍କ ନାମରେ ରମେଶ ଚନ୍ଦ୍ର ସ୍ମୃତି ପୁସ୍ତକାଗାର ଖୋଲି ଦୁଇଟି ଆଲମାରି ଓ ସାଇରୁ ମାଗି, କଟକରୁ ପ୍ରକାଶକ ମାନଙ୍କ ଠାରୁ ମାଗି ୩୦୦ରୁ ଅଧିକ ବହି ଦେଇ ପୁସ୍ତକାଗାର କରାଗଲା ।

ଏତେବେଳେକୁ ସ୍କୁଲରୁ ପ୍ରତିବର୍ଷ ପିଲାଏ ଭଲ ନମ୍ବର ରଖି ବୃତ୍ତି ନେଇ ପାଶ କରୁଥିଲେ । ଉଚ୍ଛଳିକା ବେହେରା ବୋଲି ପ୍ରଧାନ ଶିକ୍ଷୟିତ୍ରୀ ଥିଲେ । ଆରତୀ ପାଳ ଓ ଅନ୍ୟ ଶିକ୍ଷୟିତ୍ରୀ ମାନେ ମୋର ପ୍ରରୋଚନାରେ ସଙ୍ଗୀତ, ତର୍କସଭା, ବକ୍ତୃତା, ପ୍ରବନ୍ଧ ଲେଖା ଇତ୍ୟାଦି କରାଉଥିଲେ । ପ୍ରତିବର୍ଷ ବାର୍ଷିକ ଉତ୍ସବ ଓ ପୁରସ୍କାର ପ୍ରଦାନ କରାଯାଇ ପିଲାଙ୍କୁ ପ୍ରୋତ୍ସାହିତ କରାଯାଉଥିଲା । ରାଜ୍ୟ ସ୍ତରରେ ଗୀତ ଓ ବକ୍ତୃତା ପ୍ରତିଯୋଗିତାରେ ଆମ ପିଲାଏ କୃତିତ୍ୱ ଅର୍ଜନ କରୁଥିଲେ ।

ଏସବୁ କେତେ ଲୋକଙ୍କୁ ଗନ୍ଧେଇଲା । ଆରତୀ ପାଳ ସମେତ କେତେକ ଶିକ୍ଷୟିତ୍ରୀ ମଧ୍ୟ ତାଙ୍କ ସହ ଭିତିରି ହାତ ମିଳାଇ ଥିଲେ । ଆମରି ଭାଇ ଶରତ ଓ ଝୁନୁକୁ ଧରି ଆଉ ଜଣେ ପ୍ରଧାନ ଶିକ୍ଷୟିତ୍ରୀ ଆସିଲେ । ବହୁ କଷ୍ଟରେ କୋଡ଼ିଏ ବର୍ଷ କାଳ ସବୁ କଲା ପରେ ହାଠତ୍ ପୁରୁଣା କମିଟିକୁ ନପଚାରି ସରକାରୀ ସର୍କୁଲାର୍ ବଳରେ ଆମକୁ ଛାଡ଼ି ସ୍କୁଲ କମିଟି ପୁର୍ନଗଠନ କଲେ । ଆମେ ହୋଇଗଲୁ ବିଦେଶୀ ଓ ଜନସାଧାରଣ । ସ୍କୁଳ ଓ ସ୍କୁଲ ଶିକ୍ଷୟିତ୍ରୀ ହୋଇଗଲେ ସରକାରୀ । ଆମ ଭିତରୁ ଦୁଇଚାରି ଜଣଙ୍କ ବଳ ପାଇ ସେ ନାଚିଲେ । ଈଶ୍ୱରଙ୍କ ଇଚ୍ଛାରୁ ସ୍କୁଲର ସବୁକାମ ସରିଯାଇଥିଲା ଓ ସ୍କୁଲଟି ପୂର୍ଣ୍ଣାଙ୍ଗ ହୋଇ ଉପର ମହଲାରେ ହାଇସ୍କୁଲ ଆରମ୍ଭ ହୋଇ ଯାଇଥିଲା । ସେହି କରୁଣାମୟଙ୍କ ପ୍ରେରଣାରେ ନିମ୍ନପ୍ରାଥମିକ ବିଦ୍ୟାଳୟ ଭାବେ ଥିବା ବେଳେ (ପରେ ଉଚ୍ଚ ପ୍ରାଥମିକ ଓ ମଇ ସ୍କୁଲ ହେଲା )। ୧୯୮୧ ମସିହାରେ ଅଦ୍ୱୈତା ନନ୍ଦ ଚମ୍ପତି ଅନ୍ଧ ହୋଇଯିବାରେ ମୋତେ ସ୍କୁଲ ସଭାପତି କରିଯାଇଥିଲେ, ସେବେଠାରୁ ୨୦୦୦ ମସିହା ୨୦ ବର୍ଷର ଇତିହାସ ଏଇଠି ଶେଷ ହେଲା ।



ଏରୋଡ୍ରମ ଇଉ.ଜି ମ.ଇ. ବିଦ୍ୟାଳୟର ବାର୍ଷିକ ଉତ୍ସବରେ ବାମରୁ ହେ.ମି. ଉଚ୍ଛଳିନୀ ବେହେରା, ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ, ଶ୍ରୀ ରାଜକିଶୋର ନାୟକ ଓ ସ୍ୱାମୀ ବୈରାଗ୍ୟାନନ୍ଦ

## ୧୪୭. ବିଜୁ ପଟ୍ଟନାୟକ ଏରୋଡ୍ରମ (ହାଇସ୍କୁଲ) ଉଚ୍ଚ ବିଦ୍ୟାଳୟ

୧୯୯୪ ରୁ ୧୯୯୬ ଯାଏ ଲେଖା ଲେଖି ଓ ଦୌଡ଼ା ଦୌଡ଼ି କରି ୧୯୯୬ ରେ ହାଇସ୍କୁଲ ପାଇଁ ଅନୁମତି ଆସିଲା । ଉପର ମହଲା ଘର କରିବା ବେଳେ ହାଇସ୍କୁଲ କରିବାକୁ ବିଜୁବାବୁ ଆମର ପରାମର୍ଶ ଗ୍ରହଣ କରି ସୁବିଧା ହେବ ବୋଲି କହିଥିଲେ । ବ୍ୟକ୍ତିଗତ ଭାବେ ସୁର ରାଉତରାୟଙ୍କୁ କହିବାରୁ ସେ ମୋତେ ନେଇ ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ଜୟଦେବ ଜେନାଙ୍କ ସହ ଚିହ୍ନା କରାଇ ହାଇସ୍କୁଲ ପାଇଁ ସହାୟତା କରିବାକୁ କହିଥିଲେ । ତାରି ଫଳରେ ସେ ଅନୁମତି କରାଇ ମୋ ହାତରେ ହିଁ ଚିଠିଟି ଦେଇଥିଲେ । ତା ପରେ ମୁଁ ସାଇରେ ଗଢିଥିବା ସାଂସ୍କୃତିକ ଅନୁଷ୍ଠାନ ଜରୀଆରେ ସ୍କୁଲ କମିଟି ଗଢାଯାଇ ମୁଁ ସଭାପତି ଓ ଭଗବାନ ଷଡ଼ଙ୍ଗୀ ସମ୍ପାଦକ ରହିଲୁ । ସ୍କୁଲ ପାଇଁ ମଧ ଅସ୍ଥାୟୀ ସ୍ୱୀକୃତି ମିଳିଲା । ୧ମ ଛେକ ପିଲାଙ୍କ ମଧରୁ ଜଣେ ୧ମ ଶ୍ରେଣୀରେ ମାଟ୍ରିକ୍ ପାଶ୍ କଲେ । ହାଇସ୍କୁଲ ପାଇଁ ଜମି ଦେବାକୁ ତତ୍‌କାଳୀନ ବାଚସ୍ପତିଙ୍କ ସୁପାରିଶରେ ଆମ ଚିଠି ଉପରେ ମୁଖ୍ୟମନ୍ତ୍ରୀ ଭରସା ଦେଲେ । ଏହିପରି ହାଇସ୍କୁଲ ଆଗେଇ ଚାଲିଥିଲା ବେଳେ ସାହିରେ ଭଡ଼ାରେ ରହୁଥିବା ଜଣେ ଅଣ୍ଡାବିକାଳି ପିଲାକୁ ମାଇନର ସ୍କୁଲର ସଭାପତି ଭାବେ ଥାପନା କରି ଶିକ୍ଷୟିତ୍ରୀମାନେ ସ୍ୱେଚ୍ଛାଚାରୀ ହେବାରୁ ଆସ୍ତେ ଆସ୍ତେ ସ୍କୁଲ ଅବନତି ପଥରେ ଗତି କଲା ।

ହାଇସ୍କୁଲ ଓ ତାର ପରିଚଳନା କମିଟି ଓ ଶିକ୍ଷକ ଶିକ୍ଷୟିତ୍ରୀଙ୍କୁ ପରିପୂରକ ଭାବେ ନଦେଖି ଶତ୍ରୁଭାବେ ଦେଖି ଦିନେ ହଠାତ୍ ସ୍କୁଲଗେଟ୍‌ରେ ତାଲା ପକାଇ ହାଇସ୍କୁଲ ବନ୍ଦ କରିଦେଲେ । ଦୀର୍ଘ ୩ଦିନ ବନ୍ଦ ମଧରେ ଆନ୍ଦୋଳନ ଚଳାଇ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ସାକ୍ଷାତ କରିବାରେ ଶିକ୍ଷା ବିଭାଗର ଜିଲ୍ଲା ନୀରିକ୍ଷକ ଆସି ଚାବି ଦେଲେ ଓ ସକାଳ ବେଳା ହାଇସ୍କୁଲ ଏବଂ ମଧାହ୍ନରେ ମ.ଇ. ସ୍କୁଲ ହେବାର ବ୍ୟବସ୍ଥା କରିଗଲେ ।

ମଧ ଇଂରାଜୀ ବିଦ୍ୟାଳୟର ୨ୟରୁ ୭ମ ଯାଏଁ ଚାନ୍ଦାରୁ ଯୋଗାଇ ଦିଆଯାଇଥିବା ବେଞ୍ଚ ଡେସ୍କ ସବୁ ଭାଙ୍ଗିଯାଇଥିଲା । ଏବେ ସେ ପିଲାମାନେ ହାଇସ୍କୁଲ ୮ମରୁ ୧୦ମ ଯାଏଁ ପିଲାଙ୍କ ପାଇଁ ଚାନ୍ଦା କରି ଯୋଗାଇ ଦିଆଯାଇଥିବା ବେଞ୍ଚ ଓ ଡେସ୍କକୁ ମଧ ଭାଙ୍ଗିଗୁଣ୍ଡ କଲେ । ଜଣେ ସ୍ଥାନୀୟ ବ୍ୟକ୍ତି ଯେକି ଏସବୁ ଗଣ୍ଡଗୋଳ ମୂଳରେ ଥିଲେ ସେ ହାଇସ୍କୁଲର ସବୁ ଆସବାବ ଭାଙ୍ଗିଦେବାକୁ ଧମକାଇଥିଲେ । ତାଙ୍କ କଥା ସତ ହେଲା । ସେ ଓ ତାଙ୍କ ସହ ଆଉ ତିନିଜଣ ମାତ୍ର ମିଶି ମ.ଇ. ସ୍କୁଲ ଶିକ୍ଷୟିତ୍ରୀଙ୍କୁ କାମରେ ଠକିବାର ସୁଯୋଗ ଦେଇ ତାଙ୍କୁ ହାତ କରି ଏତେସବୁ କାଣ୍ଡ ଘଟାଇ ଦେଲେ । ଶେଷରେ ଏତେ ନୀଚତା ଅବଲମ୍ବନ କଲେ ଯେ, ମାଇନର ପାଶ୍ କରୁଥିବା ଏହି ସ୍କୁଲର ପିଲାଏ ନୂଆ ହାଇସ୍କୁଲରେ ନାମ ନଲେଖାଇବାକୁ ପ୍ରବର୍ତ୍ତାଇଲେ । ହାଇସ୍କୁଲର କମିଟି ବିଶେଷ କରି ସଂପାଦକ ଭଗବାନ ଷଡ଼ଙ୍ଗୀ ଏଥିରେ ପ୍ରତିବାଦ କରିବାରୁ ତାଙ୍କୁ ଡ଼ି.ଆଇ.ଙ୍କ ପାଖରେ ବଦନାମ କରାଗଲା ।

ଆମର ହାଇସ୍କୁଲ ଦରକାର । ପଦପଦବୀ ନୁହେଁ । ଏହି ନ୍ୟାୟରେ ମୁଁ ସଭାପତି ପଦ ଛାଡ଼ି ପଲାଶପଲ୍ଲୀର ଭାଗିରଥୀ ବଡ଼ଜେନାଙ୍କୁ ସଭାପତି ହେବାର ପ୍ରସ୍ତାବ ପାଶ୍ କରାଇ ତାଙ୍କୁ ଦାୟିତ୍ୱ ଦେଇଦେଲେ ମଧ ଏବେ ଯାଏ ପ୍ରତିମିଟିଂରେ ପ୍ରତି କାମରେ, ପ୍ରତିକଥାରେ

ସ୍କୁଲ ଖବର ବୁଝିବାକୁ ପଡୁଛି । ଭଗବାନ ଷଡଙ୍ଗୀ ମଧ ସଂପାଦକ ରହିବାକୁ ଓ ପ୍ରଧାନ ଶିକ୍ଷୟତ୍ରୀ ଦିପ୍ତୀ ସାମଲ ଇସ୍ତାଫା ଦେବାକୁ ଚାହିଁବାରୁ ତାହା ଗୃହୀତ ହେଲା ଓ ବୁହଘର ବୁଲି ବହୁତ ଲୋକଙ୍କୁ ବୁଝାଇ ମଧ କେହି ସଂପାଦକ ପାଇଁ ବାହାରିଲେନି । ଶେଷରେ ମୋ ଅନୁରୋଧରେ ଭୀମପୁରର ନିମାଇଁ ଚରଣ ରାଉତବାବୁ ରାଜିହେଲେ ମଧ ଭଗବାନ ଷଡ଼ଙ୍ଗୀ ତାଙ୍କୁ ଛଅ ମାସ ଧରି ଚାର୍ଜ ଦେଲେନି । ପ୍ରଧାନ ଶିକ୍ଷୟିତ୍ରୀ ସାମଲ ମଧ ନୂଆ ପ୍ରଧାନ ଶିକ୍ଷୟିତ୍ରୀଙ୍କ ଚାର୍ଜ ଦେଲେନି । ସେ କିନ୍ତୁ ବିନାପାରିଶ୍ରମିକରେ ୬ବର୍ଷ କାଳ କାମଚଳାଇ ଥିଲେ ।

କାଳ ସବୁ କଥାର ସମାଧାନ କରେ । ବିଳମ୍ବରେ ହେଲେ ମଧ କାମଚଳା ଭାବେ ବହୁକଷ୍ଟରେ ଚାର୍ଜ ଆଣି ପୁଣି ହାଇସ୍କୁଲ ଚାଲିଛି । ଆଜିକାଲିତ ସମସ୍ତେ ଇଂରାଜୀ ମାଧମ ସ୍କୁଲରେ ପିଲାଙ୍କୁ ପଢ଼ାଇବାକୁ ଆଗଭର । ତେଣୁ ଏଠାରେ କେବଳ ଦରିଦ୍ର ମାନଙ୍କର ପିଲାଏ ପଢ଼ନ୍ତି । ସେହି ଦରିଦ୍ର ନରାୟଣଙ୍କ ଗରମ ନିଃଶ୍ୱାସରେ (କାଳକୃତ୍ ସର୍ବକ୍ଷୟକୃତ) ମହାକାଳ ଭଗବାନ ସବୁ ସମସ୍ୟାର ସମାଧାନ କରି ଚାଲିଛନ୍ତି । ଭଲ କାମ ସବୁବେଳେ ଭଲକାମ । ତାହା ଠାକୁରଙ୍କ କାମ । ତାଙ୍କୁ ଯେଉଁ ଠାକୁରେ ପ୍ରେରଣା ଦେଇ ଆରମ୍ଭ କରାଇଥିଲେ ସେହି ଠାକୁରେ ହିଁ ଚଳାଇ ଚାଲିଛନ୍ତି । ଆମକୁ କେବଳ ନିମିତ୍ତ ମାତ୍ର କରି ଆମ ଦ୍ୱାରା ଯାହା ସମ୍ଭବ ଯନ୍ତପରି କରାଉଛନ୍ତି । "ନିମିତ୍ତ ମାତ୍ରଂ ଭବ ସବ୍ୟସାଚୀ" ବାକ୍ୟଟି ଏଠି ସତ୍ୟ ପ୍ରମାଣିତ ।

## ୧୪୮. ପଥର ନୁହଁନ୍ତି - ଠାକୁରାଣୀ

ଆମ ଭିତରୁ ବହୁତ ଲୋକଙ୍କର ଧାରାଣା ଯେ ମନ୍ଦୀରରେ ପୂଜା ପାଉଥିବା ପଥର ବା ପଥର ମୂର୍ତ୍ତୀରେ ଚିନ୍ମୟ ଦେବ ଦେବୀଙ୍କ ସତ୍ତା ନାହିଁ । ଗୋଟିଏ ଦୃଷ୍ଟିରୁ ଦେଖିଲେ ଈଶ୍ୱର ସର୍ବତ୍ର ବିଦ୍ୟମାନ । ତେଣୁ ପୂଜିତ ପଥରରେ ମଧ ଦେବାଦେବୀ ଅଛନ୍ତି । ଦ୍ୱିତୀୟରେ ଭକ୍ତ ମଣିଷଟି ଯେଉଁଠାରେ ଦୃଢ଼ତା ସହ ଈଶ୍ୱରଙ୍କୁ ଆରୋପ କରେ, ଉପାସନା କରେ ସେଠାରେ ହିଁ ଈଶ୍ୱର ଆବିର୍ଭୂତ ହୁଅନ୍ତି । ଯଥା:- ପ୍ରହ୍ଲାଦ ସ୍ତମ୍ଭରେ ଈଶ୍ୱରଙ୍କୁ ଦେଖି ଦେଖାଇବାରୁ ସେହି ଠାରୁ ହିଁ ନୃସିଂହଅବତାର ହୋଇଥିଲେ । ତୃତୀୟରେ ବିଶ୍ୱାସ ହିଁ ନିଜେ ଈଶ୍ୱରଙ୍କ ପ୍ରତିଷ୍ଠାତା । ବିଶ୍ୱାସ ନଥିଲେ ଈଶ୍ୱର କାଠ, ପଥର, ମଣିଷ ପରି । ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂର ।

ଦିନକର କଥା । ଖବର ଆସିଲା ଯେ ରାଜ କିଶୋର ଶିଶୁ ଗୋସ୍ୱାମୀ ଛ ନମ୍ବର ଡ଼ାକ୍ତରଖାନାରେ ଚିକିତ୍ସାଧୀନ । ସାଇବାଲାଙ୍କୁ ଡ଼କାଇଛନ୍ତି । କରବାବୁଙ୍କ ସମେତ ଆମେ ପ୍ରାୟ ପାଞ୍ଚଜଣ ଗଲୁ । ତାଙ୍କୁ ଦେଖା କରିବାରେ ସେ କହିଲେ ଆମ ସାଇର ଚେମେଣି ଠାକୁରାଣୀଙ୍କ ଖବର ମନ ପ୍ରାଣ ଦେଇ ସାଇବାଲା ବୁଝନ୍ତୁ; ତାହା ହିଁ ତାଙ୍କ ଇଚ୍ଛା । ସାଇ ମଝିରେ ବରମୂଳେ ସିନ୍ଦୁର ଲଗା ପଥର ହେଉଛନ୍ତି; ଚେମେଣେଇ ବା ଚାମୁଣ୍ଡେଶ୍ୱରୀ ଠାକୁରାଣୀ । ସମସ୍ତଙ୍କ ଗ୍ରାମ ଦେବତୀ । ନ୍ୟାୟ ନିମିତ୍ତ୍ୟରେ ସେହିଠି ଦିଅଁ ମଙ୍ଗୁଳା ହୁଏ । ବିଷୁବରେ ବାଉରୀସାଇଆ ସେଠି ଝାମୁ କରନ୍ତି । ଅନ୍ୟ ଦିନେ ସେ ଗୋସ୍ୱାମୀ ବୁଢ଼ା ପାଣିଟିକେ ଦିଅନ୍ତି । ପରେ ଗୋଟେ ପଣ୍ଡା ଆସି ପାଣି ଦେଲା । ତା ପରେ ଆଉ ଜଣେ । ଏପରି

ଅବସ୍ଥାରେ କାହ୍ନୁ ଲେଙ୍କାଙ୍କ ପୁତୁରା ଜିତୁବାବୁ ସେଠି ମଣ୍ଡପଟିଏ କରିଦେଲେ । ପ୍ରତିଦିନ ଜଣେ ଅଧେ ଲୋକ ମଧ୍ୟ ଗଡ଼ିଲେ । ଲୋକ ବସିତି ଏ ଅଞ୍ଚଳରେ ବଢ଼ିବା ସଙ୍ଗେ ସଙ୍ଗେ ଗତା ଗତ ମଧ୍ୟ ବଢ଼ିଲା । ଇତି ମଧ୍ୟରେ ଗୋସ୍ୱାମୀ ନିଜେ ଚେଷ୍ଟା କରି ଏଣ୍ଡାଓମେଣ୍ଟକୁ ଲେଖି ଗୋଟେ କମିଟି ଗଢ଼ି ମଞ୍ଜୁରୀ ଆଣିଥିଲେ ଓ କିଛି ପଇସା ମଧ୍ୟ ଦଶହରା ପୂଜାପାଇଁ ପାଇଥିଲେ । ତା ପରେ ସେ କମିଟି ଭାଙ୍ଗିଯାଇଥିଲା । କାରଣ ସେଥିରେ ବେଶୀ ବାହାର ଭଡ଼ାବାଲା ଥିଲେ । । ସେମାନେ ଘର ବଦଳାଇବା ଫଳରେ କମିଟି ଭାଙ୍ଗିଗଲା । ଇତି ମଧ୍ୟରେ ଗୋସ୍ୱାମୀ ବୁଢ଼ା ମଧ୍ୟ ଇହଧାମ ତ୍ୟାଗକଲେ । ଯେଉଁ ପଣ୍ଡା ପାଣି ଦେଉଥିଲା ସେ ଆସି ସାଇରେ ଡ଼ାକିଲା । ଖାତାରେ ନୋଟିସ୍ ଲେଖି ଲୋକଙ୍କୁ ଡ଼ାକିଲା । ଆମେ ସବୁ ଗଲୁ । ଗୋସ୍ୱାମୀ ବୁଢ଼ା ପୁଅମଧ୍ୟ ଥାଏ । ନୂଆ କମିଟି ଗଢ଼ାଗଲା । ସରକାରଙ୍କୁ ଲେଖି ମଞ୍ଜୁରୀ ଅଣାଗଲା । ମୁଁ ଥାଏ ସଭାପତି ବା ମ୍ୟାନେଜିଂ ଟ୍ରଷ୍ଟି, ହରେ କୃଷ୍ଣ ଦତ୍ତ କୋଷାଧ୍ୟକ୍ଷ, ଜୀବନ ପଟ୍ଟନାୟକ ସଂପାଦକ ଏମତି ମିଶି ୨୦ ଜଣ ଆମେ ସବୁ ପ୍ରତିମାସରେ ମିଟିଂ କରୁ । ପ୍ରତ୍ୟେକ ଟ. ୨୦/- କରି ଚାନ୍ଦା ଦେଇ ଜାକଜମକରେ ଦଶହରା ପୂଜା କରୁ । ବିଷୁବ ପଣା ହେଲା ଓ ଭୋଗ ରନ୍ଧା ହେଲା । ପ୍ରତି ସଂକ୍ରାନ୍ତିରେ ହୋମ ହେଲା । ଲୋକ ସମାଗମ ବଢ଼ିଲା । କମିଟି ତରଫରୁ ଦେବୋତ୍ତର ଓ ନଗରପାଳିକାକୁ ଲେଖି ଛାତପକା ଘରର ବନ୍ଦୋବସ୍ତ ହେଲା ।

ଗୋସ୍ୱାମୀ ବୁଢ଼ାର ବଡ଼ପୁଅ ମଧ୍ୟ କମିଟିରେ ଥିଲା । ତା ପାଖରେ ଆଗରୁ ଠାକୁରାଣୀଙ୍କର ଛଅ ହଜାର ଟଙ୍କା, ମୁକୁଟ, ଘଣ୍ଟ ଇତ୍ୟାଦି ଥିବାର ସେ କହିଥିଲା ଓ କମିଟିକୁ ଜମା ଦେବାକୁ କହିଥିଲା ମଧ୍ୟ । ଦତ୍ତବାବୁ ସବୁ ସଂକ୍ରାନ୍ତୀରେ ବସିରହି ଦାନ ସଂଗ୍ରହ ଓ ହୋମ ଇତ୍ୟାଦି କରାଇ ପ୍ରସାଦ ବ୍ୟବସ୍ଥା କରନ୍ତି । ଦଶହରାରେ ମୁଁ ବ୍ରହ୍ମାବାବୁ ଚଣ୍ଡୀପାଠ କରୁଁ ଏପରି ଚାଲିବା ଦେଖି ଗୋସ୍ୱାମୀର ଦୁଇପୁଅ ଯେକି ପରସ୍ପର କଳିରେ ବ୍ୟାପୃତ ଥିଲେ ସେମାନେ ସେ ପଣ୍ଡାସହ ହାତ ମିଳାଇଲେ । କାରଣ ଆମେ ସବୁଚାନ୍ଦା ରସିଦ୍ ଦେଇ ନେଇ ହିସାବ ରଖିଲୁ । ଦୈନିକ ସଙ୍ଖୁଡ଼ି ଭୋଗ ପାଇଁ ମୁଁ ନିଜେ ୪୫ ଘର ବୁଲି ସିଧା ଦେବାକୁ ତାଲିକା କରି ପଣ୍ଡାକୁ ଧରାଇଲି । ଛ ମାସ ଖଣ୍ଡେ ପରେ ପଣ୍ଡାକୁ ମଧ୍ୟ କାଟିଲା । ଗୋସ୍ୱାମୀ ପୁଅ ଓ ପଣ୍ଡାହାତକୁ ଆଉ ପଇସା ଗଲାନି । ଆମେ ଅବଶ୍ୟ ପଣ୍ଡାକୁ ମାସିକ ଟ. ୧୫୦/- ଦେଉ । ଆମ ଭିତରୁ ମାସକୁ ଜଣପିଛା ଟ. ୨୦/- (କରି ଆଦାୟ ପ୍ରାୟ ଟ. ୪୫୦୦/- ଓ ଆଉ କିଛି ସର୍ବସାଧାରଣ ଆଦାୟକୁ ମିଶାଇ ୩ଜଣଙ୍କ ନାମରେ ଇଣ୍ଡିଆନ ଓଭରସିଜ୍ ବ୍ୟାଙ୍କରେ ଜମା କରି ରଖିଲୁ । ଗୋସ୍ୱାମୀ ପୁଅକୁ କହି କହି ସେ ଆଉ ତା ପାଖରେ ଥିବା ଟଙ୍କା, ମୁକୁଟ ଓ ଜିନିଷ ଦେଲାନି । ମାସିକ ମିଟିଂକୁ ମଧ୍ୟ ଆସିଲାନି ।

ଅର୍ଥ ହିଁ ଅନର୍ଥର ମୂଳ । ଏବେତ ଦୈନିକ ପୂଜା ପାଇଁ ସିଧା ମିଳିଗଲା । ପଣ୍ଡାତ ମାସିକ କିଛି ପାଇଗଲା । ଘର କାମତ ହୋଇଗଲା । ତା ପରେ ଦିନେ ହଠାତ୍ ଆମେ ୨୦ ଜଣ ଯେକି କମିଟିରେ ଥିଲୁ ଗୋଟେ ଗୋଟେ ସମନ ପାଇଲୁ । ଏଣ୍ଡାଓମେଣ୍ଟ କମିସନରେ ଗୋସ୍ୱାମୀର ୨ ପୁଅ ପଣ୍ଡାକୁ ସାକ୍ଷୀ କରି ଠାକୁଣାଣୀ ତାଙ୍କ ନିଜସ୍ୱ ସମ୍ପତ୍ତି ଏବଂ ଟ୍ରଷ୍ଟବୋର୍ଡ଼ ଦରକାର ନାହିଁ ବୋଲି ଦାବୀ କରି ମକଦ୍ଦମା କରିଛି । ଆମେ ବାଧ୍ୟ ହୋଇ ମକଦ୍ଦମା

ଲଢ଼ିଲୁ । ତା ପୂର୍ବରୁ ତାକୁ ବିଭିନ୍ନ ମଧ୍ୟସ୍ଥି ଲଗାଇ ବୁଝାଇ କହିଲୁ ଯେ ତୁମ ବାପା, ତୁମେ ଓ ପଣ୍ଡା ଆମକୁ ଡ଼ାକିବାରୁ ଆମେ ଆସି କମିଟି ଗଢ଼ି ଏତେକାମ କଲୁ। ତୁମେ ଏବେ କାହିଁକି ମକଦ୍ଦମା କରୁଛ । ସେ ଆସିଲାନି, ବୁଝିଲାନି କି ମକଦ୍ଦମା ଉଠାଇଲାନି । କେଶ୍ ଚାଲି ବର୍ଷକ ଭିତରେ ତାର ଖାରଜ ହୋଇଗଲା । ପୁଣି ସେ ସେହି ଏଣ୍ଡାଉମେଣ୍ଟ କମିସନରଙ୍କ କୋର୍ଟରେ ଆଉଗୋଟେ କେଶ୍ କଲା । ବର୍ଷକ ପରେ ସେଥିରେ ମଧ ହାରିଗଲା । ଶେଷରେ ହାଇକୋର୍ଟରେ ମୋକଦ୍ଦମାଟିଏ କରିଦେଲା । ଯଦିଓ କୋର୍ଟ ଷ୍ଟେ ବା ରହିତାଦେଶ ଦେଇ ନାହାଁନ୍ତି ସେମାନେ ଜବରଦସ୍ତ ପଶି ପୂର୍ବପରି ବୁଝାବୁଝି କରିବାରେ ଆମେ ରହିଗଲୁ । ଏବେ ସେ କେଶ୍ ଖାରଜ ହୋଇଯାଇଥିଲେ ବି ଆମେ ମନ୍ଦିରକୁ ଯାଉନୁ । ନୂଆ ହୋଇ ଗଢ଼ାଯାଇଥିବା କିମିଟି (Trust Board) ର ମଧ ମଞ୍ଜୁରୀ ଆସିନି । ଆଇନି ମୁତାବକ ନୂଆ ବୋର୍ଡ଼ ହେବାଯାଏ ଆମେ କାର୍ଯ୍ୟ କରିବା କଥା ଥିଲେ ମଧ ସେ ପଣ୍ଡା ଗୋସ୍ୱାମୀ ପୁଅ ଦୁହେଁ ବଳେ ପଶି ସବୁ କରୁଛନ୍ତି । ଆୟ ନକଲ ଅଣା ଯାଇଛି ଓ ନୂଆକରି ଗଢା ଯାଇଥିବା (Trust Board) ମଞ୍ଜୁର ମିଳିବା ପରେ ପୁଣି ଠାକୁରାଣୀଙ୍କ ସେବା ଚାଲିବ; ତାଙ୍କରି ଇଛାରେ ।

ପ୍ରଥମରୁ ମକଦ୍ଦମା ଲାଗିବା ବେଳୁ ଆମେ କମିଟି ବସି ଠାକୁରାଣୀଙ୍କୁ ମୁଣ୍ଡିଆ ମାରି କହିଥିଲୁ ଯେ ଆମେ ତ ମାସକୁ ପ୍ରତ୍ୟେକ ଟ. ୨ ୦/- ଦେଇ ତୋର ସେବା କରୁଛୁ, ତୁ ଯଦି ପଥର ହୋଇଥିବୁ ଗୋସ୍ୱାମୀ ପୁଅର ଘରୋଇ ଠାକୁରାଣୀ ହେବୁ । ଆଉ ଯଦି ପ୍ରକୃତ ଠାକୁରାଣୀ ତେବେ ସେ କେଶରେ ହାରିବ । ପ୍ରକୃତରେ ୨ଥର ମଦ୍ଦମାରେ ଗୋସ୍ୱାମୀ ପୁଅ ହାରିଲା । ତୃତୀୟ ଥର କିଛି ନ କରି ବସିଥିଲା କେଶ୍‌ଟେ ଠୁଙ୍କି ଦେଇ । ଠାକୁରାଣୀଙ୍କ ଧନ ହଡ଼ପ କରୁଛି । ଏପରିକି ଠାକୁରାଣୀଙ୍କ ପାଇଁ ଭକ୍ତମାନେ ଦେଉଥିବା ଫୁଲ ନେଇ ସେ ତା ଘରେ ଠାକୁର ପୂଜା କରୁଛି । ଘର କାମ ସରି ମେଜିଆ ହେଉଥିବା ବେଳେ ମାର୍ବଲରେ ଲେଖି ଦେଇଛି "ରାଜକିଶୋର ଗୋସ୍ୱାମୀଙ୍କ ଦ୍ୱାରା ପ୍ରତିଷ୍ଠିତ" । ଦେଖାଯାଉ; ତୃତୀୟବାର ସତ୍ୟ ପରୀକ୍ଷାରେ ପ୍ରକୃତରେ ସେ ପଥର କି ଠାକୁରାଣୀ ତାର ମିମାଂସା ହେବ । ହେଲେ ଆଜିକାଲିତ ବିଚାର ହୋଇ ନ୍ୟାୟ ମିଳିବାକୁ ୨ ୦ ବର୍ଷ ଦରକାର । ସେତେବେଳକୁ ଆମେ ସବୁ ବୁଢ଼ାମାନେ ବଞ୍ଚିଥିବୁ କି ନା ଜଣାନାହିଁ । ହେଲେ ଠାକୁରଣୀଙ୍କ ଘର, ପୂଜା, ଦୈନିକ ସଙ୍କୁଡ଼ି ଭୋଗ, ଦଶହରା ପୂଜା ଓ ସଂକ୍ରାନ୍ତୀ ହେବାର ସ୍ଥାୟୀ ବ୍ୟବସ୍ଥା ହୋଇଯାଇଛି ଓ ଏବେ ମଧ ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କରେ ସ୍ଥାୟୀ ଜମା ମଧ ରହିଛି । ଆମେ ନାହୁଁ କିନ୍ତୁ ଆମ ନାମରେ ଟ୍ରଷ୍ଟବୋର୍ଡ଼ ଅଛି । ଠାକୁରାଣୀ ନିଶ୍ଚୟ ତାର ବ୍ୟବସ୍ଥା କରିବେ । ଇତି ମଧ୍ୟରେ ସେ ପଣ୍ଡାର ଝିଅଟି ତାଙ୍କ ସାହିର ବାଉରୀ ପିଲାଙ୍କ ସହିତ ପଳାଇଛି । ଆଉ ଜଣେ ଅଧାପାଠୁଆ ସଂଧାରେ ପୁରାଣପାଠ କରି ପ୍ରବଚନ ନମରେ ପ୍ରବଞ୍ଚନା କରୁଛି । ସାହିର କେତେ ମାଇପେ ଶୁଣୁଛନ୍ତି । ଗୋସ୍ୱାମୀ ପୁଅ ଦୁହେଁ ଭିନ୍ନେ ହୋଇ ଜୀବିକା ପାଇଁ ଗୋଟେ ଗୋଟେ ଛୋଟ ଦୋକାନ ଦେଇଛନ୍ତି । ଦେଖାଯାଉ ଠାକୁରାଣୀଙ୍କ ଇଛା କ'ଣ ? ସେତ ପଥର ନୁହଁନ୍ତି ବୋଲି ପ୍ରମାଣିତ କରିସାରିଛନ୍ତି ।

# ୧୪୯. ଅବୁଝା କଳାପାହାଡ଼

ସମୂହ କାର୍ଯ୍ୟରେ ଜଣେ କେହିଁ ଆଗୁଆ ହୋଇ ବାହାରି କିଛି ନିଃସ୍ୱାର୍ଥପର କାମ କଲେ ଲୋକ ସହଯୋଗ ମିଳିବା ସ୍ୱାଭାବିକ୍ । ସାଇ କାମରେ ଦୀର୍ଘ ୨ ୦ ବର୍ଷ କାଳ ନିଃସ୍ୱାର୍ଥ ଅବଦାନ ଯୋଗୁଁ ସବୁଲୋକ ନିଜର ପରିବାରର ଲୋକ ପରିମନେ ହେଲେ । ସେମାନଙ୍କ ପାଖରେ ମଧ ମୁଁ ଆପଣାର ହୋଇଗଲି । ଈଶ୍ୱର ସର୍ବଭୂତରେ ଅଛନ୍ତି । ସମସ୍ତେ ଆପଣାର ହେଲେ ମାନେ ଈଶ୍ୱର ଆପଣାର ହେଲେ । ତାଙ୍କର ଆଶିର୍ବାଦ, ସ୍ନେହ ଏଇମାନଙ୍କ ଜରିଆରେ ହିଁ ମିଳିଥାଏ । ଈଶ୍ୱରୀୟ ବିଦ୍ୟୁତ ଶକ୍ତିର ସୁପରିବାହାକ ହେଲେ ଈଶ୍ୱରଙ୍କ ସୃଷ୍ଟି ମାନବ ସମାଜ ।

ଦିନକର କଥା । ସ୍କୁଲ ଘରେ ସାଇର ଅର୍ଥାତ୍ ନୂଆ ବାପୁଜୀ ନଗର କଲ୍ୟାଣ ସମିତିର, ବାର୍ଷିକ ସାଧାରଣ ସଭା ବସିଥାଏ । କଥା ଉଠିଲା ସମିତିର ନିଜସ୍ୱ ଗୃହ ନାହିଁ । ମାସିକ ବୈଠକ ସ୍କୁଲଘରେ ବା ସର୍ଭ୍ୟ ବା ସଭାପତିଙ୍କ ଘରେ ବସୁଛି । । ଏଥିପାଇଁ ନିଜସ୍ୱ ଘରଖଣ୍ଡିଏ ଦରକାର ବୋଲି ସମସ୍ତେ ଅନୁଭବ କଲେ । ଆଗରୁ କେତେବାର କେବେବର୍ଷ ଦରଖାସ୍ତ କରି ମଧ ଜମିଖଣ୍ଡେ ମିଳିନି । ଆଉ ଘରୋଇ ଜମିଦାନ କିଏ କରିବ । ସମସ୍ତେ କଣ ନ୍ୟାୟମୂର୍ତ୍ତୀ ବି.ସି.ଦାସ ହୋଇଛନ୍ତି ଯେ ଅଧକୋଟିଏ ଟଙ୍କାର ସମ୍ପତ୍ତି ନିଜ ଘରବାଡ଼ିରୁ କାଟି ଦେଇ ସ୍କୁଲ ଘର କରାଇବେ ! ଆଉ ସରକାର ଜମି; ଏ ଅଞ୍ଚଳ ଦେବୋତ୍ତର ବିଭାଗର ଥିଲା । ଦେବୋତ୍ତର କମିଶନର ପ୍ରସ୍ତାବ ସରକାର ମଞ୍ଜୁର କରିବାରେ ଏହାକୁ ଖଣ୍ଡଖଣ୍ଡ କରି ବିକ୍ରୀ କରାଯାଇଛି ତତ୍କାଳୀନ ସରକାରୀ ଦରରେ ।

ନ୍ୟାୟ ବିଭାଗର ନ୍ୟାୟାଚାର୍ଯ୍ୟମାନେ ନ୍ୟାୟ ମାର୍ଗରେ ନିଜ ନାମରେ ମୁଖ୍ୟ ରାସ୍ତାକଡ଼ରେ ବଡ଼ ବଡ ଖଣ୍ଡ ଜମି ଅବଶ୍ୟ ନେଇଛନ୍ତି ଓ ତାଙ୍କ ବନ୍ଧୁବାନ୍ଧବ, ଚେଲା ଚାମୁଣ୍ଡା ଓ ପଛ ପେଲାଙ୍କୁ ମଧ ନ୍ୟାୟମାର୍ଗରେ କିଛି କିଛି ଦେଇଛନ୍ତି । ରାସ୍ତା ବ୍ୟବସ୍ଥା କରାଯାଇଛି । ହେଲେ ଗୋଷ୍ଠୀ ଉନ୍ନୟନ ପାଇଁ ସ୍କୁଲ, ଡ଼ାକ୍ତରଖାନା, କ୍ଲବ, ପାଠାଗାର, ପାର୍କ, ଖେଳପଡ଼ିଆ ପାଇଁ ଜମି ରଖାଯାଇନି । ଜମି ଅଛି । ବହୁତ ଥିଲା । ନ୍ୟାୟମୂର୍ତ୍ତୀମାନଙ୍କ ନ୍ୟାୟବଣ୍ଟନ ପରି ଠାକୁରଙ୍କ ପଣ୍ଡା, ପଢ଼ିଆରୀ ଓ ଗରାବଡୁ ମାନେ ଯେ ଯେତେ ପାରିଛନ୍ତି ଯୋର ଜବରଦସ୍ତି ମାଡ଼ିବସି ରଖିଛନ୍ତି ଓ ଲକ୍ଷ ଲକ୍ଷ ଟଙ୍କାରେ ଏବେ ମଧ ବିକୁଛନ୍ତି ।

ସମିତି ବୈଠକରେ ନୃସିଂହ ସାହୁଙ୍କ ପ୍ରସ୍ତାବ କ୍ରମେ ସର୍ବସମ୍ମତି କ୍ରମେ ସ୍ଥିର ହେଲାଯେ ତାଙ୍କ ଘର ଆଗରେ ଥିବା ଛୋଟ ସରକାରୀ ଜାଗାଖଣ୍ଡକରେ ସମିତି ଗୃହ ହେବ । ମୁଁ ଅବଶ୍ୟ ଏ ବେଆଇନି କାର୍ଯ୍ୟର ନିଷ୍ଫଳ ପ୍ରତିବାଦ କରି ହାରିଯାଇ ସମ୍ମତି ଦେଇଥିଲି । ସମସ୍ତେ ଯାଇ ଦେଖି ଜାଗାବାଛିଲେ । ଚିହ୍ନ ଦିଆଗଲା ଗୋଟିଏ ଫଳକ ଲଗାଯାଇ ଚାରିମାସ ରଖାଗଲା । ତା ପରେ ତ୍ରିଲୋଚନ ପଣ୍ଡାଙ୍କ ତତ୍ତ୍ୱାବଧାନରେ ଶୁଭ ଦିଆଯାଇ ନିଅଁ ପଡ଼ିଲା ।

ଏଗାର ହଜାର ଟଙ୍କା ଖର୍ଚ୍ଚ ପରେ ଦିନେ ଖରାବେଳେ ଅବୁନା ଆସିଲା କଳାପାହାଡ଼ ପରି । ହାତ କାଟି ଦେବ କହି କାମ ବନ୍ଦ କରିଦେଲା । ଗୋଳା ହୋଇଥିବା ମସଲା ନଷ୍ଟ ହେଲା । ଧାଇଁଧାଇଁ ବୁଲି ବୁଲି ପ୍ରତିବାଦ କରିବାକୁ ଡ଼ାକିବାରେ କେହି ବାହାରିଲେନି । ପରେ ମିଟିଂରେ ପକାଇ ଅବୁନା ଦରବାରରେ ହାଜର ହେବାରେ ସେ ଅନ୍ୟଗୋଟେ ଜାଗା ଓ ଖର୍ଚ୍ଚ ହୋଇଥିବା ଟ. ୧୧,୧୦୦/- ଙ୍କା ଦେଇଦେବାକୁ ରାଜି ହେଲା । ଅନ୍ୟ ସରକାରୀ ଜାଗାରେ ଆଉ ଖର୍ଚ୍ଚାନ୍ତ ହୋଇ ଦାୟିତ୍ୱ ନେବାକୁ କେହି ରାଜି ହେଲେନି । ତେଣୁ ଟଙ୍କା ଫେରସ୍ତ ପାଇଁ ଆରମ୍ଭ ହେଲା ମୋର ଧାଡ଼ି ଦେବା । ଆପଣଙ୍କୁ ମିଛ । ମତେ ସତ । କେତେବେଳେ କେତେଜଣଙ୍କୁ ଧରି ତ କେବେ ଏକା ଏପରି ୧୦୦ ଥର ଯିବା ପରେ ପାଞ୍ଚଥରରେ ଟଙ୍କା ଆଦାୟ ହୋଇ ସମିତି ପାଣ୍ଠିରେ ଜମାଦିଆ ଗଲା । ଗୋଟିଏ ଘରରୁ ଗୋଟିଏ ମାସକୁ ଗୋଟିଏ ଗୋଟିଏ କରି ଟଙ୍କା ଆଦାୟ କରି ଜମା ଥିବା ଟଙ୍କା କଳା ପାହାଡ଼ ଆକ୍ରମଣରେ ଚାଲିଯିବାର ଦୁଃଖ ସହି ନହେବାରୁ ସବୁ ଦୁଃଖ, କଷ୍ଟ, ମାନ ଅପମାନକୁ ହଜମ କରି ଅବନା ଦରବାରକୁ ଶହେଥର ଯିବାକୁ ପଡ଼ିଥିଲା ।

ସେତିକି ନୁହେଁପ୍ରାୟ ପାଞ୍ଚଜଣଙ୍କୁ ମୁହଁ ସାରି ହାତ ପାତି ବଖରାଏ ଘର ଅନ୍ଦାଜରେ ଜାଗା ସମିତି ଘର ପାଇଁ ମାଗିଛି । ସବୁ ନିଷ୍ଫଳ ହୋଇଛି । ଦୁଇ ବର୍ଷ ଧରି ସମିତିର ସଭାପତି ପଦ ଛାଡ଼ି ପୁଣି ସଭାପତି ହେବା ପରେ ମଧ ସେହି ଚେଷ୍ଟାରେ ଏବେ ବି ରହିଛି । ଏତକ ନହେଲେ ସେ ଯଜ୍ଞ ଅଧାରହିଯିବ । ଯେଉଁ ଠାକୁରେ ଏତେ ଦିନ ସମିତିକୁ ଅଶିର୍ବାଦ ଦେଇ ଚଳାଇଛନ୍ତି ତାଙ୍କରି ଦୟା ନହେଲେ ଏ ସମସ୍ୟାର ସମାଧାନ ଅସମ୍ଭବ । ଦୃଢ଼ ବିଶ୍ୱାସ ଯେ ସେହି ଦୟାମୟ କାହା କଣ୍ଠରେ ବସି ଏ ଦୁଃଖ ଅବଶ୍ୟ ଦୂର କରିବେ ।

## ୧୫୦. ଗୀତା ଜୟନ୍ତୀ

ଗୀତା ସୁଗୀତା କର୍ତ୍ତବ୍ୟା । ନିଜେ ସେହି ଗୀତା ମାତା ପିଲା ଦିନୁ ଆମ ଠାକୁର ଖଟୁଲୀରୁ ମୋତେ ପ୍ରାପ୍ତ ହୋଇଛନ୍ତି । ବାପା ତାକୁ ପଢୁଥିଲେ । ଏବେ ମଧ ମୋ ପାଖରେ ସେ ଅଛନ୍ତି; ଶେଷ ନିଃଶ୍ୱାସ ଯାଏ ଥିବେ ବୋଲି ଦୃଢ଼ ଆଶା । ସେ ଯେତେବେଳେ ବିନା ଚେଷ୍ଟାରେ ଆପଣା ଛାଏଁ ଦୟାକରି ଆସିଛନ୍ତି ପୁଣି ଯିବେ କାହିଁକି ? ଯିବେ ଯଦି ଯିବେ ଜୀବ ଯିବା ବେଳେ ।

୧୯୭୮ ମସିହାର କଥା । ବାଲିଗୁଡ଼ାରେ ଥାଏ । ସେଠା ତହସିଲଦାର ଏମ୍. ବାଲକୃଷ୍ଣ ରାଓଙ୍କ ସହ ମୋର ବନ୍ଧୁତା ବଢ଼ିଥାଏ । ସେ ଥାନ୍ତି ସ୍ଥାନୀୟ ଜଗନ୍ନାଥ ମନ୍ଦିରର ପରିଚାଳକ । ମନ୍ଦିର ବାଡ଼ି ବଜାରର ଝାଡ଼ାଫେରା ସ୍ଥାନ । ମନ୍ଦିର କଡ଼ ନାଳ ଆବର୍ଜନାମୟ । ବ୍ରାହ୍ମଣ ସଂଜ ସେକାଳେ ଯାଏ । ଦୁଇଟା ଖଇ ଭୋଗ ଦେଇ ଚାଲିଯାଏ । ଠାକୁରେ ରାଓ ବାବୁଙ୍କ କଣ୍ଠରେ ବସିଲେ । ସେ ଆସି ମୋ ସହିତ ପରାମର୍ଶ କଲେ ।

ଉଭୟେ ସ୍ଥିର କଲୁ ଜାଗାଟି ସଫାକରି ଗୋଟେ ଯଜ୍ଞ କରିବାକୁ । ନିକଟରେ ଥାଏ ଗୀତା ଜୟନ୍ତୀ । ଆଉ ଜଣେ ପର୍ଶୁରାମ ମହାରଣା ମଧ ଗୀତା ଯଜ୍ଞ ପାଇଁ ପରାମର୍ଶ ଦେଲେ । ପରଦିନଠାରୁ ରାଓ ବାବୁ ଓ ମୁଁ ଗାଁ ଶେଷରୁ ଚାନ୍ଦା ମଗା ଆରମ୍ଭ କରିଦେଲୁ । ଗାଁ ମୁଣ୍ଡ ଶେଷ ଘରୁ ଜଣେ ରୁଗ୍ଣ, ବିଧବା, ଦରିଦ୍ର ମହିଳା ଚାରଣା ଚାନ୍ଦା ଦେଲେ । ଆମର ଦୃଢ଼ ବିଶ୍ୱାସ ହେଲା ଗୀତା ଯଜ୍ଞ ଲୋକ ସହଯୋଗରେ ହୋଇଯିବ । ତା ପରେ ପରେ ଅନ୍ୟ ଚାରି ପାଞ୍ଚଜଣ ଆମ ସହ ମିଶିଲେ । ଆମ ଗାଁରୁ ଯଜ୍ଞ ପାଇଁ ବ୍ରାହ୍ମଣ ପଣ୍ଡିତ ୨ ଜଣ ଡ଼କାଇଲୁ । ଚକାପାଦର ସ୍ୱାମୀ ଲକ୍ଷ୍ମଣାନନ୍ଦ ସରସ୍ୱତୀ ଓ ଭୁବନେଶ୍ୱର ରାମକୃଷ୍ଣ ମଠର ସ୍ୱାମୀ ଭକ୍ତ୍ୟାନନ୍ଦଙ୍କୁ (୯ ବିଶ୍ୱନାଥ ମହାରାଜ) ପ୍ରବଚନ ପାଇଁ ଡ଼ାକିଲୁ । ଲକ୍ଷ୍ମଣାନନ୍ଦ ସରସ୍ୱତୀ ଯଜ୍ଞ ହେବାର ୨ ଦିନ ଆଗରୁ ଆସି ଆୟୋଜନ ସମ୍ବନ୍ଧରେ ପଚାରି ବୁଝିଲେ । ସକାଳେ ଯଜ୍ଞ ଓ ସଂଧ୍ୟାରେ ପ୍ରବଚନ ହେବ ଶୁଣି ସେ ଅନ୍ନଯଜ୍ଞ ପାଇଁ ପରାମର୍ଶ ଦେବା ସହ ବ୍ରାହ୍ମଣଙ୍କୁ ପ୍ରଚୁର ଦକ୍ଷିଣା ଦେବାକୁ ପରାମର୍ଶ ମଧ ଦେଲେ । ଟଙ୍କା କେଉଁଠୁ ଆସିବ ପ୍ରଶ୍ନରେ ସେ କହିଲେ ଈଶ୍ୱର ଯଜ୍ଞ କରାଉଛନ୍ତି ସେ ଦେବେ । ପ୍ରକୃତରେ ସେଇଆ ହେଲା । ପ୍ରଚୁର ଟଙ୍କା, ଚାଉଳ, ଡ଼ାଲି, ପରିବା, ପତ୍ର, ଜାଳ ଆସିଲା । ଦିନ ତମାମ ଅନ୍ନଯଜ୍ଞ ଚାଲିଲା । ସକାଳ ବେଳା ଗୀତା ପାଠ ସହ ଯଜ୍ଞାହୁତି ଓ ସଂଧ୍ୟାରେ ପ୍ରବଚନ ହେଲା । ଦୁଇସାଧୁଙ୍କୁ ଜିପ୍ ଉପରେ ବସାଇ ଶୋଭାଯାତ୍ରା ବଜାରରେ କରାଗଲା । ୨ୟ ଓ ୩ୟ ବର୍ଷ ଗୋଦାବରୀ ବାବା ଓ ରାମକୃଷ୍ଣ ମଠରୁ ସରୋଜ ମହାରାଜ ଯାଇଥିଲେ । ମୋର ଓ ରାଓ ବାବୁଙ୍କ ବଦଳି ପରେ ମଧ ସେଠାରେ ଗୀତା ଯଜ୍ଞ ହେଉଥିଲା ।

ସେଥିରେ ଲୋକ ସହଯୋଗ ଦେଖି ଜଗନ୍ନାଥଙ୍କ ରଥ ଓ ଗୁଣ୍ଡିଚା ଘରେ ଭାଗବତ ସପ୍ତାହ; ବିରୂପାକ୍ଷ ମାଷ୍ଟ୍ରଙ୍କ ସହାୟତାରେ ବିଷ୍ଣୁସହସ୍ରନାମ ଓ କାର୍ତ୍ତୀକ ମହାରାଜଙ୍କ ଦ୍ୱାରା ପ୍ରବଚନ କାର୍ଯ୍ୟ କରାଗଲା । ଜଣେ ଆଦିବାସୀଙ୍କୁ ପଚାରିଲି ତୁମେ କେଉଁ ଠାକୁରଙ୍କୁ ପ୍ରଣାମ କରୁଛ । ସେ କହିଲେ କାଳୀ । ପ୍ରକୃତରେ କଳା ଜଗନ୍ନାଥ ଯେ ଭୈରବ କାଳୀ ଏ ତତ୍ତ୍ୱର ସନ୍ଧାନ ବହୁତ ପରେ ପାଇଲି । ସରଳ ଆଦିବାସୀ ତାଙ୍କୁ ଠିକ୍ ଚିହ୍ନିଛନ୍ତି ଭାବି ପରେ ଲଜିତ ହେଲି । ଆମର ଜ୍ଞାନ ସୀମିତ । ତାଙ୍କର ସରଳତା ହିଁ ତାଙ୍କର ଜ୍ଞାନର ଗଭୀରତା । ଗୀତା ଯଜ୍ଞରେ ଭାରଭାର ପନିପରିବା, ଚାଉଳ ପତ୍ର, କାଠ ଭାର ବୋହି ଆଣି ନିଜେ ରାନ୍ଧି, ପରିବେଷଣ କରି ନିଜେ ଖାଇ ତିନିଦିନ ଧରି କେହି ଯଦିବେଶୀ ଆନନ୍ଦିତ ହୋଇଥାନ୍ତି ;ସେ ହେଉଛନ୍ତି ସେଠିକାର କନ୍ଧ ଆଦିବାସୀ ସମାଜ । ଲକ୍ଷ୍ମଣାନନ୍ଦ ସରସ୍ୱତୀଙ୍କ ପରାମର୍ଶ ନୁହେଁ; ତାହାଥିଲା ତାଙ୍କର ନିର୍ଦ୍ଦେଶ । ସାଧୁବାକ୍ୟ ଟଳେନା । ଟଙ୍କା ବା ଜିନିଷର ଅଭାବ ବୋଲି କିଛି ଜଣାପଡ଼େନା । ସେ ସବୁ କିପରି କଣ ହେଉଥିଲା ବା ଚଳୁଥିଲା ରାଓ ବାବୁ ଓ ମୁଁ ପ୍ରଥମ ଉଦ୍ୟୋକ୍ତା ହୋଇ ମଧ କିଛି ଜାଣି ପାରୁ ନଥିଲୁ । ଏହା ହିଁ ଦୈବୀ ସଂଯୋଗ । ଆଉ ଯଜ୍ଞ ସମୟରେ ଆକାଶରେ ଅଲୌକିକ ଶୋଭା ଦର୍ଶନ ବର୍ଣ୍ଣନା ଆଧାତ୍ମିକତା ଦୃଷ୍ଟିରୁ ଏଠାରେ କହିବା ସମ୍ଭବ ନୁହେଁ ।

ପରେ ଜଗନ୍ନାଥ ମନ୍ଦିର ପାଇଁ କେତେ ବଖରା ଘର କରି ଭଡ଼ା ଦୋକାନ କରାଇ ରାଓ ବାବୁ ନିୟମିତ ପୂଜାର୍ଚ୍ଚନାର ସୁବନ୍ଦୋବସ୍ତ କରିବାରେ ପରିତ୍ୟକ୍ତ ମନ୍ଦିର ଲୋକାରଣ୍ୟ ହୋଇଯାଇଥିଲା ସବୁଦିନ ପାଇଁ । ସେହି ଜଗନ୍ନାଥଙ୍କ କରୁଣାର ଅନ୍ତ ନାହିଁ । ସେ ହିଁ ତାଙ୍କ ପୂଜାର୍ଚ୍ଚନାର ସୁବନ୍ଦୋବସ୍ତ କରି ଦେଲେ ନୈଶ୍ୱର ଦେହଦ୍ୱାରା ।

## ୧୫୧. ପ୍ରାରବ୍ଧରୁ ଗୀତା ଯଜ୍ଞ

ମଣିଷ ମରିଗଲେ ପୁନର୍ଜନ୍ମ ହୁଏ । ଏହା ଗୀତାର ସିଦ୍ଧାନ୍ତ ଓ ପ୍ରତ୍ୟେକ ହିନ୍ଦୁର ବିଶ୍ୱାସ । ମରିଗଲା ପରେ ନଶ୍ୱର କ୍ଷିତି, ଆପ, ତେଜ, ମରୁତ୍ ଓ ବ୍ୟୋମରୁ ଉତ୍ପନ୍ନ ଦେହ ସାଙ୍ଗରେ ଯାଏନି । ମାତ୍ର ନିଜର କର୍ମଫଳ ଓ ବାସନା କାମନା ସାଙ୍ଗରେ ଯାଏ । ତାକୁ ହିଁ ସମ୍ବଳ କରି ପୁନର୍ଜନ୍ମର ଦେହ, ମନ, ବିଦ୍ୟାବୁଦ୍ଧି, ଧନ, ଜନ, ପୁତ୍ରକନ୍ୟା, ସ୍ତ୍ରୀ ଓ ପିତାମାତା ସହ କର୍ମସ୍ଥଳ ମିଳେ । ଠିକ୍ ସେହିପରି ଘଟିଲା ଏହି ଗୀତା ଯଜ୍ଞର ବାସନାର ପୁନରାବୃତ୍ତିରେ ।

ଆମର କ'ଣ ବଢ଼େଇ କାମ ହେଉଥାଏ । ରଙ୍ଗାମରା କାଠପାଟି ପଡ଼ିଥାଏ । ଦିନକର କଥା । ସକାଳେ ପଡ଼ିଶାର ଯୋଗେନ୍ଦ୍ର ଶତପଥୀ ଆସି ଯଜ୍ଞ କରିବାକୁ କିଛି ରଙ୍ଗା କାଠ ମାଗିବାରେ କି ଯଜ୍ଞ କରିବେ ? ରଙ୍ଗାକାଠରେ କ'ଣ ଯଜ୍ଞ ହୁଏ । କାଠ ଗଡ଼ ଓ ଚିରାକାଠ ଦରକାର କହିବାରେ ସେ ହୋମର କଥା କହିଲେ । ତା ସହ କହିଲେ ସାଇରେ ତ କିଛି ହେଉନି । ନିଜଘରେ ସଂକ୍ରାନ୍ତିରେ ଟିକେ ହୋମ କରିଦେଉଛି । ସେଥିପାଇଁ ଏ କାଠ ନେବି କହି ନେଲେ । ମୁଁ ତାଙ୍କୁ ମୋର ପୂର୍ବ ସ୍ମୃତିରୁ ଗୀତାଯଜ୍ଞ କଥା କହିବାରେ ସେ କହିଲେ ହଁ କରିବା । ତା ପରେ ମୁଁ ଆଉ କେତେ ବନ୍ଧୁଙ୍କୁ ମଧ୍ୟ ପଚାରି ତ୍ରିନାଥ ପାତ୍ରଙ୍କ ଘରେ ସଭାଟିଏ ଡ଼ାକି ପ୍ରସ୍ତାବ ଦେଲି । ସତରଜଣ ଥିଲେ । ୧୯୯୯ ମସିହାର କଥା । ସଦ୍ୟ ମହାବାତ୍ୟାରୁ ନିସ୍ତାର ମିଳିଥାଏ । ଅଟକଳ କରାଗଲା ୧୦,୦୦୦ଟଙ୍କା ଲାଗିବ । ଉପସ୍ଥିତ ସଭ୍ୟମାନେ ସ୍ୱଇଚ୍ଛାରେ ଯେଉଁ ଦାନ ଘୋଷଣା କଲେ ତାହା ପ୍ରାୟ ୭୦୦୦ଟଙ୍କା ହେବାରେ କରବାବୁ ବାକିତକ ପୂରଣ କରିଦେବାକୁ ରାଜିହେଲେ । ସାଇ ସାଇ ବୁଲି ଚାନ୍ଦା ଆଦାୟ କରଗଲା । ବହୁତ ଟଙ୍କା ଆଦାୟ ହେଲା । ସକାଳ ବେଳା ଗୀତା ପାଠ ସହ ଯଜ୍ଞାହୁତି । ମଧ୍ୟାହ୍ନରେ ସମୂହ ପ୍ରସାଦ ସେବନ ଓ ସଂନ୍ଧ୍ୟାରେ ପ୍ରବଚନ କାର୍ଯ୍ୟକ୍ରମ ରଖାଗଲା । ଆମନ୍ତ୍ରିତ ୩ଜଣ ବ୍ରାହ୍ମଣଙ୍କ ବ୍ୟତୀତ ସାଇରୁ ମଧ୍ୟ ୩ଜଣ ଯଜ୍ଞବେଦୀରେ ବସିଲେ । ସମସ୍ତଙ୍କୁ ନବବସ୍ତ୍ର, ନିମନ୍ତ୍ରିତ ବ୍ରାହ୍ମଣଙ୍କୁ ଦକ୍ଷୀଣା ଉପସ୍ଥିତ ସବୁ ଲୋକଙ୍କୁ ପ୍ରସାଦ ବଣ୍ଟନ ଓ ସନ୍ଧ୍ୟାରେ ପ୍ରବଚନ ଖୁବ୍ ଭଲରେ ହେଲା । ଚିନ୍ମୟ ମିଶନର ଗିତେଶ ଚୈତନ୍ୟ, ଗଜପତି ମହାରାଜା, ଇସ୍କନର ଅଧ୍ୟକ୍ଷ ଓ ସ୍ୱାମୀ ଚେତନାନନ୍ଦଙ୍କ ବ୍ୟତୀତ ଇଂ ମୃତ୍ୟୁଞ୍ଜୟ ଚୌଧୁରୀ, ଦାଶରଥୀ ସାମନ୍ତରାୟ ଅଧ୍ୟାପକ ପଦ୍ମନାଭ ମହାପାତ୍ର ଓ ପଣ୍ଡିତ ରାମକୃଷ୍ଣ ମହାପାତ୍ରଙ୍କ ପ୍ରବଚନ ୯ବର୍ଷ ଧରି ଚାଲିଛି । ପ୍ରାୟ ଏକଶହ ପାଖାପାଖି ସ୍ତ୍ରୀ ପୁରୁଷ ଗୀତା ବହି ଧରି ଶ୍ଳୋକାବୃତ୍ତି କରି ଶେଷରେ "ଓଁ ନମୋ

ଭଗବତେ ବାସୁଦେବାୟ" କହି ଆହୁତି ଦେବା ବେଳେ ଗଗନ ପବନ ମୁଖରିତ ଓ ପବିତ୍ରତାର ସ୍ପର୍ଶରେ ନିନାଦିତ ହେଉଛି ।

ଦ୍ୱିତୀୟ ବର୍ଷଠାରୁ ଯୋଗେନ୍ଦ୍ର ଶତପଥୀ ଓ ୪ର୍ଥ ବର୍ଷଠାରୁ ତ୍ରିଲୋଚନ ପଣ୍ଡା ନିଜେ ନ ମିଶୁଥିଲେ ମଧ୍ୟ ଚାନ୍ଦା ଦେଉଛନ୍ତି ଓ ତାଙ୍କ ପରିବାର ସଂପୂର୍ଣ୍ଣ, ସହଯୋଗ ଦେଉଛନ୍ତି । ପାଞ୍ଚବର୍ଷ ଧରି ଆମ ପାଞ୍ଚନମ୍ବର ରାସ୍ତାରେ ଯଜ୍ଞ ହେଉଥିବା ବେଳେ ଷଷ୍ଠବର୍ଷ ଠାରୁ ୮ମ ରାସ୍ତାର ଏକ ଘରୋଇ ସ୍ଥାନରେ ଯଜ୍ଞ ହେଉଛି । ତ୍ରିନାଥ ପାତ୍ର ପ୍ରଥମ ତିନିବର୍ଷ ଓ ୭ମ ବର୍ଷ କର୍ତ୍ତାଥିବା ବେଳେ ପ୍ରସନ୍ନଦାଶ ୪ର୍ଥ, ୫ମ ଓ ୬ଷ୍ଠ ବର୍ଷ କର୍ତ୍ତା ଥିଲେ । ଅଷ୍ଟମ ବର୍ଷରେ ଜଣେ ଆଦିବାସୀ ଗଣ୍ଡଲୋକ ସ୍ୱଇଛାରେ କର୍ତ୍ତା ହୋଇଥିଲେ । ଏବେ ନକୁଳ ପଣ୍ଡା କର୍ତ୍ତା ହେଉଛନ୍ତି ।

ଏବେ ଗୀତା ଜୟନ୍ତୀ, ଯଜ୍ଞ ଓ ପ୍ରସାଦ ସେବନ ଓ ପ୍ରବଚନ କାର୍ଯ୍ୟକ୍ରମ ଏ ଅଞ୍ଚଳରେ ଏକ ସମୂହ ଅନୁଷ୍ଠାନରେ ପରିଣତ ହୋଇ ସମସ୍ତଙ୍କ ସାହାଯ୍ୟ ସହଯୋଗ ଆଦିର ମିଳନ ପୀଠ ହୋଇଯାଇଛି । ଏସବୁ ସେହି ଯଜ୍ଞ ନାରାୟଣ ଓ ଗୀତା ମାତାଙ୍କ ଦାନ । ଏ ଅଞ୍ଚଳ ପାଇଁ ତାଙ୍କର ଏହି ମହତ୍ ଦାନ ପାଇଁ ସମସ୍ତେ ସୁଖ ଶାନ୍ତିରେ ରହିଛନ୍ତି ଓ ବ୍ୟକ୍ତିଗତ ଜୀବନରେ ଅଧାତ୍ମ୍ୟ ମାର୍ଗରେ ଉତ୍ତରୋତ୍ତର ଉନ୍ନତି କରି ଚାଲିଛନ୍ତି । ପୂର୍ଣ୍ଣାହୁତି ସମୟର ଓ ନମୋ ଭଗବତେ ବାସୁଦେବାୟ ସହ ହରିବୋଲ, ହୁଳହୁଳିର ନିନାଦ ସହ ଯଜ୍ଞାଗ୍ନିର ସଞ୍ଚାର ଏ ଅଞ୍ଚଳର ସମଗ୍ର ପରିବେଶକୁ ପବିତ୍ର କରିଦେଇଛି । ସେ ଚାହିଁଲେ ଏ ଅନୁଷ୍ଠାନ ବଞ୍ଚି ରହିଛି ଓ ରହିବ ତାଙ୍କରି ଯଶୋଗାନ ପାଇଁ ।

## ୧୫୨. ଜବର ଦଖଲ

ରାଜଧାନୀ ସମସ୍ତଙ୍କର । ହେଲେ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଓ ତତ୍ ସମ୍ପର୍କୀୟ ହଜାର ହଜାର ସାନବଡ଼ ମନ୍ଦିର ଓ ମଠର ଯେ ହେଲା ବିଜେସ୍ଥଳି । ତେଣୁ ତାଙ୍କ ପୂଜକ, ପାଳିଆ, ସେବକ ମାନଙ୍କୁ ଠାକୁରଙ୍କ ସେବା ପାଇଁ ବିଭିନ୍ନ ପ୍ରକାର ଜମିଭୂମି ଚୁକ୍ତି ଭିତିରେ କେବଳ ଫଳ ଭୋଗ ପାଇଁ ରାଜା ଲିଙ୍ଗରାଜଙ୍କ ଆଦେଶ ବା ଦୟାରେ ମିଳିଥିଲା । ସେମାନେ ମଧ୍ୟ ରାଜାଙ୍କ ଓ ତାଙ୍କ ପାର୍ଶ୍ୱ ମନ୍ଦିର, ଦେବାଦେବୀ ଏବଂ ମଠମାନଙ୍କର ବିଭିନ୍ନ ସେବାକାର୍ଯ୍ୟ ନିୟମିତ କରୁଥିଲେ । ଯେତେବେଳେ ସରକାର ମଧ୍ୟସତ୍ତ୍ୱାଧିକାର ଲୋପ କଲେ ସେତେବେଳେ ସେସବୁ ସେବାୟତ ମାନଙ୍କୁ ସିନା ଜମିଭୂମିର ଦଖଲ ଅଧିକାର ମଳିଲା ତାର ମାଲିକସତ୍ତ୍ୱ କାହାର ହେବ । ସେ ଦେଉଥିବା ସେବା ଠାକୁର କିପରି କେଉଁଠୁ ପାଇବେ ତାର ବ୍ୟବସ୍ଥା କରାଗଲାନି । ତା ପରେ ସେହି ସମୟରେ ବହୁତ ପୁରୁଣା ଜମିମାଲିକ ବା ତଥାକଥିତ ମାଲିକ ମିଛି ମିଛିକା ହାତ ପଟା ପାଉତି ପିଛିଲା ତାରିଖରେ ଦେଇ ଶାଗମାଛ ଦରରେ ବହୁ ଜମି ଅନ୍ୟକୁ ହସ୍ତାନ୍ତର କରିଦେଲେ । ସେସବୁ ସମସ୍ୟାର ସମାଧାନ ନହେଉଣୁ ବାହାରୁ ବ୍ୟବସାୟୀ, କାମଧନ୍ଦା ଇତ୍ୟାଦି କରି ଚଳିବା ପାଇଁ ଭୁବନେଶ୍ୱର ଆସିଥିବା ସାନରୁ ବଡ଼ଯାଏଁ, ବାବୁରୁ ମୂଲିଆ ଯାଏଁ ଯେ ଯେଉଁଠି ପାଇଲେ କୋଠାରୁ କୁଡ଼ିଆ ଯାଏଁ କରି ରହିଗଲେ । କ'ଣ ହେଉଛି ହେଉ ଆମ ଜୀବନ କାଳ ଓ ପିଲାଏ ରହି ଭୋଗ ଦଖଲ କରନ୍ତୁ ।

ପରେ ଯାହା ହେବ ଦେଖା ହେବ । ସେହି ନ୍ୟାୟରେ କୋଡ଼ିଏ ରୁ ତିରିଶି ବର୍ଷ ଭୋଗ ଦଖଲ କରି ରହିଥିବା ଅଳ୍ପ କେତୋଟି ଅଞ୍ଚଳରେ ବିଶାଳ ଆପାର୍ଟମେଣ୍ଟ ପାଇଁ, ବଜାର ପାଇଁ ଘର ଭଙ୍ଗାଯାଇଥିଲେ ମଧ ପଣ୍ଡା ପଢ଼ିଆରୀଙ୍କ ଦେହରେ ସରକାର ଭୋଟ ଆଶାରେ ହାତ ମାରି ନାହାଁନ୍ତି । ବିଭିନ୍ନ ସାହିରେ ଥିବା ଛୋଟ ବଡ଼ ଜମି, ରାସ୍ତା ଜବର ଦଖଲ ଏବେ ମଧ ରହିଛି ।

କଲ୍ୟାଣ ସମିତିରେ କେତେ ଥର ଏକଥା ପଡ଼ିଛି । ଥରେ ସ୍ଥିର ହେଲା ସାଧାରଣ ପ୍ରଶାସନ ବିଭାଗ ଏବଂ ବିଡ଼ିଏକୁ ତାଲିକା ଦେଇ ଜବର ଦଖଲ ହଟାଇବାକୁ ଲେଖାଯିବ । ମିଟିଂରେ ୧୦ ଜଣ ଥାଇ ସ୍ଥିର ହେଲା । ଲେଖା ଦେବାକୁ ବିଡ଼ିଏକୁ ଗଲେ ଛ ଜଣ । ମାପ କରିବାକୁ ଲୋକ ଆସିବା ବେଳକୁ ମୁଁ ଏକା । କର୍ତ୍ତବ୍ୟ ଦୃଷ୍ଟିରୁ ମୁଁ ଚିହ୍ନଟ କରିଦେଇ ଆସିବା ବାସି ଦିନ ମୋ ଉପରେ ଆରମ୍ଭ ହେଲା ଗାଳି ବର୍ଷା ମୋରି ଘରେ ଆସି । ଠାକୁରଙ୍କ ଦୟାରୁ ଟିକିଏ ଫଁ ଦେଖେଇ ସେଥିରୁ ମୁକ୍ତି ମିଳିଲା ହଣ୍ଡା ହଣ୍ଡା ଗାଳିକୁ ଆକଣ୍ଠ ପାନ କରି । ଏହା ହେଲା ଛୋଟ କାଟର ଘଟଣା । ଯେଉଁ ପଣ୍ଡା ପଢ଼ିଆରୀ ମାନେ ବଡ଼ବଡ଼ ଜବର ଦଖଲ କରି ରହିବା ଯୋଗୁଁ ଆମ ଅଞ୍ଚଳରେ ପାର୍କ, ଡ଼ାକ୍ତରଖାନା, ସମିତି ଗୃହ, ପାଠାଗାର, ସ୍କୁଲଘର ଓ ଖେଳପଡ଼ିଆ ପାଇଁ ଖଣ୍ଡେ ମିଳୁନି ତାଙ୍କ ଦେହରେ କିଏ ହାତ ଦେବ । ଦେଲେ ତୁମ ହାତ କଟିଯିବ । ତା ସାଙ୍ଗକୁ ଆମ ପରି ବାହାରୁ ଆସି ଜମିଭୂମି କିଣି ଘରକରି ରହିଥିବା କେତେ ଲୋକ ମଧ କୋଟି କୋଟି ଟଙ୍କାର ସମ୍ପତ୍ତି ଜବର ଦଖଲ କରି ସରକାରୀ ଅମିନ ଓ ଅଫିସରଙ୍କୁ ଧରି ଜବର ଦଖଲ ନୋଟ କରାଇ ନେଇ ଜାଲ ପଟ୍ଟା ପ୍ରସ୍ତୁତ କରି ସେ ଜମିକୁ ବିକି ମାଲାମାଲ ହୋଇଯାଉଛନ୍ତି ।

ସରକାର ବୋଲି ଗୋଟିଏ ଲୋକ ନାହିଁ । ସମୂହ ଶାସନ ହିଁ ସରକାରୀ ଶାସନ । ସେ ପୁଣି ବଦଳି ଯୋଗୁଁ ଅସ୍ଥାୟୀ । ତେଣୁ ଜଣେ ଲୋକ କେହି ନାହିଁ ଯେକି ଗୋଟିଏ ଦୃଷ୍ଟିରେ, ଗୋଟିଏ ନୀତିରେ ଓ ଗୋଟିଏ ନ୍ୟାୟରେ ସବୁକଥା ମନେ ରଖି ପୂର୍ବାପର ସମ୍ବନ୍ଧକୁ ନେଇ ନିଜ ବିଚାରରେ ଦେଶକୁ ଚଳାଇବ । ତେଣୁ ଘଡ଼ିକେ ଘୋଡ଼ା ଛୁଟିବାଟା କିଛି ବିଚିତ୍ର ନୁହେଁ; ଭାରତ ଭଳି ନୂଆ ଗଣତନ୍ତ୍ରରେ । ଅବଶ୍ୟ ପୁରୁଣା ଗଣତନ୍ତ୍ରରେ ପରମ୍ପରାକୁ ସମସ୍ତେ ସବୁଠି ଆଇନ୍‌ଠାରୁ ଅଧିକ ମାନନ୍ତି । ଆମେ ସେ ଅବସ୍ଥାକୁ ଆସିନୁ । ଅପରପକ୍ଷେ ଆମେ ଆଇନ୍ ଓ ପରମ୍ପରାର ଫାଙ୍କ ଖୋଜି ସ୍ୱାର୍ଥ ହାସଲ କରୁଛୁ ।

"ଈଶ୍ୱର ସର୍ବ ଭୂତାନାଂ, ହୃଦେଷୁ ଅର୍ଜ୍ଜନ ନିଷ୍ଠତି" । ସେହି ଈଶ୍ୱର ହିଁ ସଦ୍‌ବୁଦ୍ଧି ଦେଲେ ଯାଇ ଦେଶର ଅବସ୍ଥା ବଦଳିବ । ଯେଉଁମାନେ ଦେଶର ସ୍ୱାଧୀନତା ପାଇଁ ଧନ ଜୀବନ ମାନ ସମ୍ମାନ ଶିକ୍ଷା ସ୍ୱଚ୍ଛଳତାକୁ ତ୍ୟାଗ କରି ଲଢୁଥିଲେ ସେମାନେ ଚାଲିଯିବା ସହ ତାଙ୍କ ଆଦର୍ଶ ମଧ ଗଲାଣି । ବର୍ତ୍ତମାନ ତ୍ୟାଗ ନାହିଁ । ଦେଶଟାକୁ କିଏ କିପରି ଭୋଗ କରି ପାରିବ ତାର ପ୍ରତିଯୋଗୀତା ଚାଲିଛି । ସେହି ଧାଡ଼ିରୁ ବେଧାଡ଼ିକୁ ଯାଇ ଅର୍ଥାତ୍ ଅପାଂକ୍ତେୟ ହୋଇ ସରକାରୀ ଦୋଷରୁ ମୋତେ ମିଳିଛି ଗାଳି, ଧମକ ଓ କଷଣ ।

# ୧୫୩ - କବି ଓ ଲେଖକ ଭାବେ ପରିଚୟ

ଠାକୁରେ ପୂର୍ବଜନ୍ମର ପ୍ରାରବ୍ଧକୁ ନେଇ ଯାହାକୁ ଯେଉଁବାଟ ଦେଖାନ୍ତି ସେ ସେ ବାଟେ ଚାଲେ । ଯାହାକୁ ଯାହା ଦିଅନ୍ତି ସେ ପାଏ । "ଦାତାର ସର୍ବ ସମ୍ପଦାଂ ସର୍ବ ଲୋକ ମହେଶ୍ୱରଃ" । ସେ ନଦେଲେ ଆଉ କିଏ ଦେବ । କାହାକୁ ଧନୀ, କାହାକୁ ଗରିବ, କାହାକୁ ରୋଗୀ ତ କାହାକୁ ଭୋଗୀ, କାହାକୁ ଦୁଃଖୀତ କାହାକୁ ସୁଖୀ କରି ସେ ଗଢୁଛନ୍ତି ।

ପିଲାଦିନେ ଅନନ୍ତବ୍ରତ ବହି କଥାକୁ ଗୀତ ଆକାରରେ ଲେଖିଥିଲି । । ସେ ଲେଖା କୁଆଡ଼େ ହଜିଗଲା । ପୁଣି ହାଇସ୍କୁଲରେ ପଢ଼ିବା ବେଳେ କେତେପଦ ଛୋଟ କବିତା ଲେଖିଥିଲି । ସେ ମଧ୍ୟ କୁଆଡ଼େ ଗଲା । ସ୍କୁଲ ପତ୍ରିକାରେ କିଛି ଥାଇପାରେ । ଚାକିରୀ ସମୟରେ ପଞ୍ଚାୟତ ପତ୍ରିକାରେ ଦୁଇ ତିନୋଟି ସନ୍ଦର୍ଭ ଲେଖିଥିଲି । ଛୁଟି ହେଲେ କିମ୍ବା ବର୍ଷା ଦିନେ କୁଆଡ଼େ ଘରୁ ବାହାରି ନପାରିଲେ ଗୋଟି କବିତା ଲେଖି ମୋ ସ୍ତ୍ରୀ ଓ ପିଲାଙ୍କୁ ଶୁଣାଏ । ଭଲ ଲେଖା ହେଉଛି ଶୁଣି ପୁଣି ଲେଖେ । ଏସବୁ ସମ୍ବନ୍ଧରେ ପୂର୍ବରୁ ଲେଖିଛି । ରାଜଧାନୀରେ ରହିବା ପରେ ବ୍ରହ୍ମାବାବୁଙ୍କ ଡ଼ାକରାରେ ବର୍ଷକୁ ୨ ଥର ରାଜଧାନୀ ପୂଜା ସମିତିରୁ ଚିଠି ପାଇଥାଏ ଓ ସ୍ୱରଚିତ କବିତା ପାଠକରେ । ବର୍ଷେ ସଭାପତିତ୍ୱ କରିଥିଲି । ସାଧାରଣତଃ କେହି ସ୍ୱତନ୍ତ୍ର ନିମନ୍ତ୍ରଣ ନ ଦେଲେ କବିତା ପଢ଼ିବାକୁ ଯାଏନି । ସଂଯୋଜକ ଡ଼ ଦେବାଶିଷ ମହାପାତ୍ର; ଯେ କି ବିଦେଶରେ ବର୍ତ୍ତମାନ ଅଧାପନା କରୁଛନ୍ତି; କେଜାଣି କାହିଁକି ମୋ କବିତା ସମ୍ବନ୍ଧେ ମୋତେ ପ୍ରସଂଶା କରି କହନ୍ତି । ତା ଅଗାରୁ ଉଷା ମହାନ୍ତିଙ୍କ "ନିୟନ୍ତା" ଓ ଗୋକର୍ଣ୍ଣିକାରେ ମୋ କବିତା ପ୍ରକାଶ ପାଇଛି । ରାଜ୍ୟପାଳ ଯଜ୍ଞଦତ୍ତ ଶର୍ମାଙ୍କ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛି । "ଅଲୋଡ଼ା" କବିତା ବହି ମଧ୍ୟ ପୂର୍ବରୁ ପ୍ରକାଶିତ ହୋଇଛି । ଆହୁରି ପ୍ରକାଶିତ ହୋଇଛି "ବେଲ ଘରର ଲଙ୍ଗୁଳି ବାବା," "ଗୋନାସିକାର ଋଷି," " ଶିବ ଲୋକର ରୁଦ୍ରଗଣ", "ଏ ଯୁଗର ଭୀଷ୍ମ" ଇତ୍ୟାଦି । କିନ୍ତୁ କବିତା ଆସରକୁ ଯାଇ କବିତା ଲେଖି ପଢ଼ିବା ବ୍ରହ୍ମାବାବୁଙ୍କ ପ୍ରେରଣାରେ ବଢ଼ିଲା । ଭୁବନେଶ୍ୱରର ସାହିତ୍ୟ ସମାଜ, ନିଖିଳ ଓଡିଶା ପ୍ରଗତିଶୀଳ ଲେଖକ ମହାସଂଘ, ଉତ୍କଳ ସାହିତ୍ୟ ସମାଜ, ଗୋଦାବରୀଶ ସାହିତ୍ୟ ସଂସଦ, ସାହିତ୍ୟାୟନ -, ସଚିବାଳୟ ସାଂସ୍କୃତିକ ପରିଷଦ ଇତ୍ୟାଦି ବିଭିନ୍ନ ସ୍ତରରେ ପଢ଼ିବାରୁ ସେ ଆଡ଼େ ଆକର୍ଷଣ ସ୍ୱାଭାବିକ ଭାବେ ବଢ଼ିଲା । ଗୀତାଞ୍ଜଳୀ ପରି ୬୪ଟି "କବିତା ପୁଷ୍ପାଞ୍ଜଳୀ," ଛୋଟ ମୋର ଗାଁଟି ପରି "ବଡ଼ ମୋର ଗାଁଟି", ଅନ୍ୟାନ୍ୟ ଏପରି ତିନିଟି କବିତା ବହି ମଧ୍ୟ ପ୍ରସ୍ତୁତ ହୋଇଛି । ଗଳ୍ପ ସଂକଳନ ସହ ଆମ ବିଚ୍ଛିନ୍ନାଞ୍ଚଳ ସମ୍ବନ୍ଧେ ଦୁଇଟି ବହିରେ ମୋର ପୂର୍ବ ପ୍ରକାଶିତ ବହୁ ଲେଖା ସହ ଅନ୍ୟମାନଙ୍କ ଲେଖା ପ୍ରକାଶ କରିଛି । ଏତେ ସତ୍ତ୍ୱେ କବି ଭାବେ ମୋର ପରିଚୟ ବ୍ରାହ୍ମାବାବୁଙ୍କ ସାହଚର୍ଯ୍ୟରେ; କାରଣ ମୁଁ ଛାଏଁ ଓ ଏକାଯାଇ କବିତା ପଢ଼ିବାକୁ ପସନ୍ଦ କରେନି । ରାଜଧାନୀ ପୂଜା ସମିତିରେ କବିତା ପାଠୋତ୍ସବ ବନ୍ଦ ପରେ ଆମ ବିମାଘାଟୀ ଅଞ୍ଚଳରେ ଦୀନବନ୍ଧୁ କୁଟୀରରେ ଇଂରାଜୀ ନବବର୍ଷ ଦିନ ଓ ବିଷୁବ ସଂକ୍ରାନ୍ତୀ ଦିନ କବିତା ପାଠୋତ୍ସବ ହେଉଛି ଆମରି ଉଦ୍ୟୋଗରେ ପୂର୍ଣ୍ଣାଙ୍ଗ ଉଜ୍ଜଳ ସାମିଆନା ତଳେ । ଆଦିବାସୀମାନଙ୍କ ଉପରେ ଲିଖିତ ୩ଟି ବହିର ଏବେ ସୀମିତ ହେଲେ ମଧ୍ୟ ଚାହିଦା ରହିଛି । ବହିପାଇଁ ଚିଠି ମଝିରେ ମଝିରେ ଆସୁଛି । ଏହାର ପାଠ୍ୟ ଓ ସାମାଜିକ ଉପାଦେୟତା ରହିଛି । "ଗୋନାସିକାର ଋଷି" ବହିଟିର ଦ୍ୱିତୀୟ ସଂସ୍କରଣ ଏବେ ପ୍ରକାଶିତ ହେଲାଣି ।



ମନ୍ତ୍ରୀ ଭଜମନ ବେହେରାଙ୍କ ଦ୍ୱାରା "ବେଲ ଘରର ଲଙ୍ଗୁଳି ବାବା ପୁସ୍ତକ ଉନ୍ମୋଚନ
ବାମରେ ଲେଖକ- ଡାହାଣରେ ମାତୃଭୂମିର ସଂପାଦକ ✓ ବିଚିତ୍ରାନନ୍ଦ କର ।



"ଏ ଯୁଗର ଭୀଷ୍ମ" ପୁସ୍ତକ ଉନ୍ମୋଚନ ସଭାରେ ମଝିରେ ଝିଆରୀ ଜୋଇଁ
ଡ: ରଘୁନାଥ ପଣ୍ଡା ଓ ସାନଝିଅର ଦେଢଶୁର ଡ: ରାଧାମାଧବ ଦାଶ ଓ
ଡ଼ାହାଣରେ ବଡ଼ପୁଅ ଦୁର୍ଗା ପ୍ରସାଦ ଦ୍ୱିବେଦୀ



ରାଜଭବନରେ "ଏ ଯୁଗର ଭୀଷ୍ମ" ପୁସ୍ତକ ଉନ୍ମୋଚନ କରୁଛନ୍ତି ଓଡ଼ିଶାର ରାଜ୍ୟପାଳ ଶ୍ରୀଯୁକ୍ତ ଯଜ୍ଞଦତ୍ତ ଶର୍ମା ଓ ଅରୁଣାଞ୍ଚଳର ରାଜ୍ୟପାଳ ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ମନ୍ତ୍ରୀ ଶ୍ରୀ ଶରତ୍ କୁମାର କର ଉପସ୍ଥିତ - ଲେଖକ ସ୍ୱାଗତ ଭାଷଣ ଦେଉଛନ୍ତି ।



ମନ୍ତ୍ରୀ ଯଦୁନାଥ ଦାଶମହାପାତ୍ରଙ୍କ ଦ୍ୱାରା ଲେଖକଙ୍କ "ଗୋନାସିକାର ଋଷି" ପୁସ୍ତକ ଉନ୍ମୋଚନ ମଞ୍ଚରେ ବିଧାୟକ ରାଜକିଶୋର ନାଏକ ଏବଂ ବାମରେ ନାରାୟଣ ବ୍ରହ୍ମା ଓ ଜିତେନ୍ଦ୍ର ନାଥ ପୋଦାର



"ଅଲୋଡା" (କବିତା) ପୁସ୍ତକର ଉନ୍ମୋଚନ କରୁଛନ୍ତି -
ପ୍ରଫେସର ଶ୍ରୀମତୀ ଅନିମା କର ଆଗରେ ଡା: ଶୈଳେଶ୍ୱର ନନ୍ଦ ଓ ଲେଖକ

ଏତଦ୍‌ବ୍ୟତୀତ ସମାଜ, ସମ୍ବାଦ, ଉତ୍କଳିକା, ପ୍ରଜାତନ୍ତ୍ର, ମାତୃଭାଷା, ଧରିତ୍ରୀ, ପ୍ରଗତିବାଦୀ, ସମୟ, ମୁଁ ଓଡ଼ିଆ, ସାହାଣମେଲା, ଗୋଜଣ୍ଡିକା ଧାତ୍ରୀ, ସୁବାର୍ତ୍ତା, ଲୋକନୀତି ଇତ୍ୟାଦି ବହୁ ଦୈନିକ, ସାପ୍ତାହିକ, ପାକ୍ଷିକ ଓ ମାସିକ ପତ୍ରିକାରେ ପ୍ରାୟ ଶତାଧିକ ଲେଖା ପ୍ରକାଶିତ ହୋଇଛି, ବିଶେଷ ଭାବେ ସମାଜ, ସମ୍ବାଦ ଓ ସମୟରେ ବିଚ୍ଛିନ୍ନାଞ୍ଚଳ ସମସ୍ୟା, ପରିବହନ ନୀତି, ଖାଉଟି ସମସ୍ୟା ଇତ୍ୟାଦି ବିଷୟରେ ବାରମ୍ବାର ବିଭିନ୍ନ ସ୍ତମ୍ଭରେ ଲେଖା ପ୍ରକାଶିତ ହୋଇଛି । ଖାଲି ପ୍ରକାଶିତ ହୋଇନି; ଏହା ପଢ଼ି ବହୁ ପ୍ରଂଶସା ସୂଚକ ପତ୍ର ଆସିଛି । ସେତିକିରେ ସୀମାବଦ୍ଧ ନରହି ବହୁ ମାତୃଭୂମି ଓ ମାତୃଭାଷା ପ୍ରେମୀ ଟ. ୧୦୦୦ କରି ପଠାଇ ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀ ମଣ୍ଡଳରେ ଆଜୀବନ ସଭ୍ୟ ହୋଇଛନ୍ତି ।

ଯାହାଙ୍କ ତେଜରେ ସୂର୍ଯ୍ୟ ଚନ୍ଦ୍ର ତେଜୋଦୀପ୍ତ ସେହି ତେଜୋମୟଙ୍କର ପରମ କରୁଣାରୁ କବି, ଲେଖକ ଓ ସ୍ତମ୍ଭକାର ଭାବରେ ଯେ ଖ୍ୟାତି ମିଳିଛି ବା ଲୋକାଦର ମିଳିଛି ସେ ସବୁକୁ ତାଙ୍କରି ପାଦରେ ସମର୍ପଣ କରି ତୃପ୍ତି ମିଳୁଛି; କାରଣ ଯେ ସଂସାରରେ ମଣିଷ ପଦବାଚ୍ୟ ହେବାର ଅନୁପଯୁକ୍ତ ସେ କ'ଣ କବି, ଲେଖକ ଓ ସ୍ତମ୍ଭକାର ହେବ ? ସବୁ ତାଙ୍କରି କରୁଣା ।

## ୧୫୪- ହିନ୍ଦ୍‌କୁଷ୍ଠ ନିବାରଣ ସଂଘ ଓ ରେଡ଼୍‌କ୍ରସ

ଈଶ୍ୱରଙ୍କ ସୃଷ୍ଟିରେ ପେଟ ପୋଷିବାକୁ ସମସ୍ତେ କିଛି ନା କିଛି ବୃତ୍ତିକୁ ଅବଲମ୍ବନ କରିଛନ୍ତି । ଚାକିରୀ କାଳ ମଧ୍ୟରେ ଭଲ ପଦବୀରେ ଭଲ ଜାଗାରେ ରହିବାକୁ ସବୁବେଳେ ଗହଳି ଲାଗିଥାଏ । ବହୁ ପାରିବାର ଲୋକ ମଧ୍ୟ ସେସବୁଥିରେ ସଫଳକାମ ହୋଇ ନିଜ ଇଚ୍ଛାରେ ଭଲ ବିଭାଗ ଓ ଭଲ ସ୍ଥାନରେ ବହୁ ଦିନ ଚାକିରୀ ସୁଯୋଗ ପାଆନ୍ତି ।

ଅରକ୍ଷିତଙ୍କୁ ଦଇବ ସାହା । ଆଉ ମନ ଘେନି ଫଳ । ମୋର ମନରେ ତ ସେବାର ମଞ୍ଜିଟିଏ ବୁଣାଯାଇଥିଲା । ତେଣୁ ଚାକିରୀ କାଳରେ ହିନ୍ଦ୍‌କୁଷ୍ଠ ନିବାରଣ ସଂଘରେ ୩ବର୍ଷ ମୁଖ୍ୟ ଥଇଥାନ ଅଧିକାରୀ ଭାବେ ମନପ୍ରାଣ ଦେଇ କାମ କରିଥିଲି ଅବସର ପ୍ରାପ୍ତ ଆଇଏଏସ୍ ବିଶ୍ୱନାଥନଙ୍କ ଅଧୀନରେ । ସେ ସମ୍ବନ୍ଧରେ ବିବରଣୀ ପୂର୍ବରୁ ଦେଇଛି । ସେଠି କାମ କରିବା ବେଳେ ବହୁ କୁଷ୍ଠ କଲୋନୀବୁଲିଛି । ସେଠିକାର କାମକୁ ତ୍ୱରାନିତ କରିଛି ଓ ସଂଘର ଆଜୀବନ ସଭ୍ୟ ହୋଇଛି ମଧ୍ୟ ।

ଆମ ଅଞ୍ଚଳରେ ଥିବା କୁଷ୍ଠ ବସତି ସହ ସେହିଦିନୁ ଗୋଟିଏ ନିବିଡ଼ ସଂପର୍କ ଗଢ଼ି ଉଠିଛି । ତାଙ୍କର ଅଷ୍ଟ ପ୍ରହରୀ ପାଇଁ କାନାରା ବ୍ୟାଙ୍କ କର୍ମଚାରୀ ସଂଘ ଠାରୁ ଶାମିଆନାଟିଏ ଆଣି ଦେବା ସହ ପ୍ରତିବର୍ଷ ଅଷ୍ଟ ପ୍ରହରୀ ପାଇଁ ଚାନ୍ଦା ଦେବା, ତାଙ୍କ ଭଲ ମନ୍ଦ ବୁଝିବା କାମ ହୁଏ। ବିଜୁବାବୁ ଥିବା ବେଳେ ଦରଖାସ୍ତ ଲେଖି ଦେଇ ତାଙ୍କ ସମସ୍ତଙ୍କ ପାଇଁ କୋଠାଘର ବଖରାଏ କରି ବ୍ୟବସ୍ଥା କରିଦିଆଯାଇଛି । ପୁରୀ କୁଷ୍ଠାଶ୍ରମରେ ଫାଦରମେରିଆନଙ୍କ ସେବା ମନୋବୃତ୍ତି ଅନୁକରଣୀୟ । ମୁଁ ତାଙ୍କ ସହ କାମ କରିଛି । ସେ ଚାରିଭାଇ ଭଉଣୀ ନରୱେର । ସେମାନେ ସମସ୍ତେ କୁଷ୍ଠସେବା କ୍ଷେତ୍ରରେ । ସେ କହନ୍ତି କୁଷ୍ଠ ରୋଗକୁ ଭୟ ଯୋଗୁଁ ରୋଗୀ ପ୍ରତି ଘୃଣା ଆସେ । ନିକଟରେ ସେହି ଫାଦର ରାଷ୍ଟ୍ରୀୟ ପୁରସ୍କାର ପାଇଛନ୍ତି । ମୋରି ପ୍ରେରଣାରେ ଆଶା ହିନ୍ଦ୍‌କୁଷ୍ଠ ନିବାରଣ ସଂଘର ଆଜୀବନ ସଭ୍ୟ ହୋଇ କଟକ କୁଷ୍ଠାଶ୍ରମରେ ବହୁ ପ୍ରକାର ସେବାକାର୍ଯ୍ୟ ନିୟମିତ ଭାବରେ ମୃତ୍ୟୁଯାଏ କରିଯାଇଛି ।

ସେହିଠାରେ ଥିବା ବେଳେ ରେଡ଼୍‌କ୍ରସ୍‌ର ଆଜୀବନ ସଭ୍ୟ ମଧ୍ୟ ହୋଇ ୩ବର୍ଷ ବିଭିନ୍ନ ସେବାକାର୍ଯ୍ୟ କରିବାର ସୁଯୋଗ ନେଇଛି । ଆମ ମାଇନର ସ୍କୁଲରେ ମଧ୍ୟ ଜୁନିୟର ରେଡ଼କ୍ରସ ଶାଖା ଖୋଲାଇ ସାହାଯ୍ୟ ଆଦାୟ କରାଇଥିଲି । ୧୯୮୨ ବନ୍ୟା ଓ ୧୯୯୯ ମହାବାତ୍ୟା ବେଳେ ମଧ୍ୟ ସ୍ୱେଚ୍ଛାସେବୀ ଭାବେ କାମ କରିବାକୁ ସ୍ୱୀକୃତି ଦେଇଥିଲି । ନିଜ ଗାଁ ଓ ଏଠି ନିଜ ଅଞ୍ଚଳରେ ରାସ୍ତା ସଫେଇ ଇତ୍ୟାଦି କାମ ବାତ୍ୟା ବେଳେ କରାଇଛି ମଧ୍ୟ । କଟିଯାଇଥିବା ଫୋନ୍ ଜଳ ଯୋଗାଣ ଓ ବିଦ୍ୟୁତ୍ ଯୋଗାଣ ପାଇଁ ଲୋକ ସହଯୋଗ ସଂଗ୍ରହ ଘରେ ଘରେ ବୁଲି ବୁଲି କରାଇଛି।

ଏ ବୟସରେ ଦେହରେ ବଳ ନଥିଲେ ମଧ୍ୟ ଏସବୁ କାମ ଉପରକୁ ଡେଇଁ ପଡ଼ିବାକୁ ମନୋବଳ ରହିଛି । ଏମନ ଭାବୁଥାଇ ଯାହା - କାଳେ ପ୍ରାପତ ହୁଏ ତାହା । ସେହି ଦୁର୍ଗତ ସେବାରେ ଏ ଜୀବନ ଯାଉ ଏହାହିଁ ସେ ପତିତପାବନଙ୍କ ପାଦରେ ଗୁହାରୀ ।

# ୧୫୫- ଅସୁରେଶ୍ୱର ଗୋରକ୍ଷଣୀ

କୃଷି ଓ ଗୋ ପାଳନ ଆମର ସଂସ୍କୃତି ଓ କୃଷ୍ଟି । ହେଲେ ବୟସ ବେଳେ ଗାଈ ଗୋରୁଙ୍କ ଠାରୁ ସବୁ ଫାଇଦା ନେଇ ବାର୍ଦ୍ଧକ୍ୟରେ ତାଙ୍କୁ ଫିଙ୍ଗି ଦେବା ଓ ବିଶେଷ କରି କଂସେଇକୁ ବିକି ଦେବା ନିଶ୍ଚିତ ଭାବରେ ଘୋର ଅନ୍ୟାୟ । ଆମ ଗାଁ ପାଖ ଅସୁରେଶ୍ୱରରେ ୧୯୪୩ ମସିହାରୁ ରାଜୁବାବୁଙ୍କ ଶଶୁର ସ୍ୱର୍ଗତ ଜଳଧର ନାୟକ ଗୋଟିଏ ଗୋରରକ୍ଷଣୀ ସ୍ଥାପନ କରିଥିଲେ । ସ୍ୱର୍ଗତ କେଶବ ଷଡ଼ଙ୍ଗୀ ଥିଲେ ପ୍ରଥମ ଶ୍ରେଣୀର ସହଯୋଗୀ । ମୁଣ୍ଡରେ ପଗଡ଼ି, ତାଳ ପତ୍ର ଛତା, ଛାତିରେ ଗୋରକ୍ଷଣୀ ନାମଥିବା ହୋଦା ପିନ୍ଧି ଶ୍ଳୋକ ପଢ଼ି ଓ ଗୀତ ବୋଲି ଘର ଘର ବୁଲି ମୁଷ୍ଟି ଭିକ୍ଷା ସଂଗ୍ରହ କରି ସେ ଚଳାଇଥିଲେ ଗୋରକ୍ଷଣୀକୁ । ଏବେ ମଧ ପାଞ୍ଚ ଛ ଜଣ ସେବକ ସେପରି ପୋଷାକ ବା ମନୋବୃତ୍ତି ନଥିଲେ ମଧ ଶହ ଶହ ଗାଁକୁ ଯାଇ ଗୋ ରକ୍ଷଣୀ ପାଇଁ ମା ମାନଙ୍କ ଠାରୁ ମୁଷ୍ଟୀ ଭୀକ୍ଷା ଆଣୁଛନ୍ତି ।

ଜଳଧର ବାବୁଙ୍କ ପରେ ଧନେଶ୍ୱର ମହାନ୍ତି ଗୋ ରକ୍ଷଣୀ କଥା ବୁଝୁଥିଲେ । ବାରିପଦାଠାରେ ନିଗମାନନ୍ଦଙ୍କ ଜୟଗୁରୁ ଅଧିବେଶନରେ ସେ ପୋଡ଼ି ହୋଇ ମରିଗଲା ପରେ ମୋର ଶିକ୍ଷକଥିବା  ଶ୍ରୀ ରାଜକିଶୋର ନାୟକ ହେଲେ ତାର ସଂପାଦକ । ସେ ମୋତେ ସେହି ଗୋରକ୍ଷଣୀ ପରିଚାଳନା କମିଟିର ସଭ୍ୟ କରିନେଲେ । ମୁଁ ପ୍ରତି ମାସରେ ଯାଇ ବୈଠକରେ ଯୋଗଦିଏ । ସବୁ ଉତ୍ସବକୁ ମଧ ଯାଏ । ପାଖ ଲୋକେ ପହଞ୍ଚିବା ଆଗରୁ ମୁଁ ଯାଏଁ ଓ ପ୍ରତିକାମରେ ଅଂଶ ଗ୍ରହଣ କରେ । ଏସବୁ ଠାକୁରଙ୍କ କୃପାରୁ ଓ ରାଜୁବାବୁଙ୍କ ପ୍ରେରଣାରୁ ସମ୍ଭବ ହୋଇଥାଏ । ନିତ୍ୟ ସେବା ପାଣ୍ଠିକୁ ଟ. ୨୦୦୦ ଦାନ କରି ମୁଁ ମଧ ତାର ସ୍ଥାୟୀ ସଦସ୍ୟ ହୋଇଯାଇଛି । ସେହିପରି ଅସୁରେଶ୍ୱରର ରଘୁନାଥ ଜୀଉ ଓ ଦଧିବାମନ ଜୀଉଙ୍କ ମନ୍ଦିରର ନିତ୍ୟସେବା ପାଣ୍ଠିକୁ ସ୍ଥାୟୀ ଜମା ରାଶି ଦେଇ ମାଘଶୁକ୍ଳ ଦଶମୀରେ ଗଣିଆ କକେଇଙ୍କ ଶ୍ରାଦ୍ଧକୁ ଓ ତା ପରଦିନ ବଡ ଏକାଦଶୀର ବାପାଙ୍କ ଶ୍ରାଦ୍ଧ ଦିନରେ ସ୍ୱତନ୍ତ୍ର ପୂଜା ସହ ଅତିଥି ସେବା ବ୍ୟବସ୍ଥା କରାଯାଇଛି; ବନ୍ଧୁ କାର୍ତ୍ତିକ ଦାଶ ଓ ଖୁଣ୍ଟିଆ ବାବୁଙ୍କ ପ୍ରରୋଚନାରେ ।

ମୁଷ୍ଟି ଭୀକ୍ଷା ଆଦାୟ କମିଯିବାରୁ  କିପରି ଆଦାୟ ବଢ଼ିବ ସେଥିପାଇଁ ଗାଁକୁ ଗାଁ ଯାଇ ଲୋକଙ୍କୁ ବୁଝାଇଛି  ଅନ୍ୟବନ୍ଧୁ ମାନଙ୍କ ସହ । ଏହି ପରି ୨ଟି ଗାଁରେ ବୁଲି ବୁଝାଇ ଆଦାୟକୁ ତ୍ୱରାନ୍ୱିତ କରିଛି ।

ପୁଣି ଦୋକାନମାନଙ୍କରୁ ମାସିକ ଚାନ୍ଦା ଆଦାୟ କରିବାକୁ ଅନ୍ୟମାନଙ୍କ ସହ କଟିକଟା ଓ ଅସୁରେଶ୍ୱର ବଜାରରେ ବୁଲି ଚାନ୍ଦା ମାଗିଛି । ଏହା ଫଳରେ କମ୍ ହେଲେ ମଧ ଗୋଶାଳାର ଆୟ ବୃଦ୍ଧି ଘଟିଛି । ଗୋଶାଳାର ସମସ୍ତ ଲେଖା ପଢ଼ାକାମ ମୋ ଦାୟିତ୍ୱରେ ହୁଏ । ଯାହା କିଛି ଚିଠି ପତ୍ର ଆସିଲେ ବା ଗଲେ; ସାହାଯ୍ୟ ପାଇଁ ପ୍ରସ୍ତାବ ଗଲେ ନରହରି ଭାଇ ସଂପୃକ୍ତ କାଗଜ ପତ୍ର ସହ ପହଞ୍ଚିଯାନ୍ତି ରାଜୁବାବୁଙ୍କ ନିର୍ଦ୍ଦେଶରେ । ଆମେ ଦୁହେଁ ବସି

ଚିଠା ପ୍ରସ୍ତୁତି କରି ଦେବା ପରେ ନରହରି ଭାଇ ତାକୁ ଟାଇପ୍ କରି ରାଜୁବାବୁଙ୍କ ସ୍ୱାକ୍ଷରରେ ବିଭିନ୍ନ ଅନୁଷ୍ଠାନ, ବିଭାଗ ବା ସଂସ୍ଥାକୁ ପଠାନ୍ତି ।

୧୯୯୯ର ମହାବାତ୍ୟାରେ ବହୁତ ଘର ଭାଙ୍ଗିଯିବା ସହ ବହୁତ ଗୋଧନ ନଷ୍ଟ ହେଲେ । ସେ ପାଇଁ ବ୍ୟକ୍ତିଗତ ସହାୟତା ଦେବା ସହ ବନ୍ଧୁ ଲୋକଙ୍କୁ ମଧ୍ୟ ଅନୁରୋଧ କରିଛି । ଏବେ ଗୋ ରକ୍ଷଣୀର ସବୁ ଘରକାମ ପ୍ରାୟ ହୋଇଗଲାଣି । ଗୋ ସଂଖ୍ୟା ବଢ଼ିଗଲାଣି । ଗୋ-ସ୍ୱାସ୍ଥ୍ୟ ଖୁବ୍ ଉନ୍ନତ ହୋଇ ପାରିଛି । ଏଠାରେ କେବଳ ବୁଢ଼ା, ବୁଢ଼ୀ, ଛୋଟା, ଅନ୍ଧ, ବିକଳାଙ୍ଗ, ରୁଗ୍ଣ ଗାଈ ବଳଦ ବାଛୁରୀ ରହନ୍ତି । ଏହି ଜୀବମାନଙ୍କର ସେବା ମାଧବ ସେବା ପରି କରାଯାଏ । ଗୋଷ୍ଠାଷ୍ଟମୀ ବାର୍ଷିକ ଉତ୍ସବ ଦିନ ଫୁଲ, ଚନ୍ଦନ, ପକ୍ୱ ଖାଦ୍ୟ ଇତ୍ୟାଦି ଦିଆଯାଏ । ସଭା ଓ ଉତ୍ସବ ମଧ୍ୟ ହୁଏ ।

ଆଗେ ଯାହା ହେଉଥିଲା ଏବେ ତା ଠାରୁ ବହୁ ଗୁଣରେ ଏ ଅନୁଷ୍ଠାନର କାର୍ଯ୍ୟକଳାପ ବଢ଼ିଯାଇଛି । ଅବଶ୍ୟ ରାଜୁବାବୁଙ୍କ ମନପ୍ରାଣ ସଦାସର୍ବଦା ଏ ଅନୁଷ୍ଠାନ ପଛରେ ଅଛି । ତାଙ୍କରି ପ୍ରେରଣାରେ ସବୁ କାମ ହୁଏ । ଭାରତ ସରକାର ମଧ୍ୟ ଗୋସଦନ, ପାଣିଟାଙ୍କୀ, ନାଳ ଓ ପାଚେରୀ ପାଇଁ ଯଥେଷ୍ଟ ଅନୁଦାନ ଦେଇଛନ୍ତି । ପଶୁମଙ୍ଗଳ ପରିଷଦ ମଧ୍ୟ ବାର୍ଷିକ ଷ୍ଟାଫ୍ ଦରମା, ଗାଡି ଔଷଧ ଇତ୍ୟାଦି ଯୋଗାଇବାକୁ ଅନୁଦାନ ଦେଇଛନ୍ତି । ଦୀର୍ଘ ୬୦ବର୍ଷ ଧରି ଏ ଅଞ୍ଚଳରେ ମା ମାନଙ୍କ ଅନାବିଳ ମୁଷ୍ଟିଭୀକ୍ଷା ଦାନରେ ଏ ଅନୁଷ୍ଠାନଟି ଚାଲିଛି ଯାହାକି ବିଶ୍ୱାସଯୋଗ୍ୟ ନୁହେଁ । ଏଠାକାର ଅନ୍ତେବାସୀ ବୃଦ୍ଧ ରଗ୍ଣ ବିକଳାଙ୍ଗ ଗାଈ ଗୋରୁଙ୍କ ସାଙ୍ଗକୁ ଚୀରରୁଗ୍ଣ ରାଜୁବାବୁ ସଂପାଦକ, ଅନ୍ଧ ଶରତ ଭୂଷି କଟାଳି ଓ ବିକଳାଙ୍ଗ ଧୁନା ଗୋସେବକ ପରିଚାଳନା ପାଇଁ ଦୁଇ ବୃଦ୍ଧ କିଶୋର ପାଳ ଓ ନରହରିଭାଇ ମାଟିକାମୁଡି ପଡ଼ିଛନ୍ତି ।

କେତୋଟି ବୃଦ୍ଧ, ରୁଗ୍ଣ, ବିକଳାଙ୍ଗ ଗାଈ ଗୋରୁଙ୍କୁ ଧରି ତାଙ୍କ ସେବା କରିଦେଲେ ଏଭଳି ଲକ୍ଷ ଲକ୍ଷ ଗାଈଗୋରୁଙ୍କର କ'ଣ ସମସ୍ୟାର ସମାଧାନ ହେବ ? ତା ନୁହେଁ; ଏହାଦ୍ୱାରା ଏ ପ୍ରକାର ଈଶ୍ୱରମାନଙ୍କ ପ୍ରତି ସମାଜର ଦୟା ଦୃଷ୍ଟି ଓ ସେବା ମନୋବୃତ୍ତି ସୃଷ୍ଟି ହେଉଛି ଏହି ଅନୁଷ୍ଠାନର ଆଦର୍ଶ ।

## ୧୫୬. ପାହାଡ଼ ଉପରେ ପଦ୍ମ

ଠାକୁର ରାମକୃଷ୍ଣ ପରମହଂସ ଦେବ ସ୍ୱାମୀ ବିବେକାନନ୍ଦଙ୍କୁ ସ୍ପଷ୍ଟ ବୁଝାଇ ଦେଇଥିଲେ ଯେ ଜୀବେଦୟା ପରିବର୍ତ୍ତେ ଜୀବକୁ ଶିବ ଜ୍ଞାନରେ ସେବା କରିବାହିଁ , ପ୍ରତ୍ୟେକମାନବର କର୍ତ୍ତବ୍ୟ । ଚୈତନ୍ୟ ଭାଗବତରେ "ନାମେ ପ୍ରୀତି - ଜୀବେଦୟା" । କଥାଟିକୁ  ସଂଶୋଧନ କରି ଠାକୁରେ ଯାହା କହିଥିଲେ ସ୍ୱାମୀ ବିବେକାନନ୍ଦ ତାକୁ ଠିକ୍ ଭାବେ ବୁଝି ଅକ୍ଷରେ ଅକ୍ଷରେ ପାଳନ କରି ବିଶ୍ୱକୁ ଆଦର୍ଶ ଦେଖାଇ ଯାଇଛନ୍ତି । ତାଙ୍କରି ପରେ ହିଁ ଅନେକ ସନ୍ୟାସୀ ବିଦେଶ ଯାଇ ଧର୍ମ ଚର୍ଚ୍ଚା କରି, ଅର୍ଥ ସଂଗ୍ରହ କରି, ଶିବଜ୍ଞାନେ ଜୀବ ସେବାରେ ବ୍ରତୀ ହୋଇଛନ୍ତି ନିଜ ନିଜର ସଂସ୍ଥା ବା ମିଶନ ମାଧମରେ ।

ସ୍ୱାମୀ ବୈରାଗ୍ୟାନନ୍ଦ (ଅନନ୍ତ ମହାରାଜ) ' ପିଲାଦିନୁ ରାମକୃଷ୍ଣଙ୍କ ଆଦର୍ଶରେ ବିଶ୍ୱାସ ରଖି ପୁରୀରେ ବ୍ରହ୍ମଚାରୀ ଥିଲେ । ସନ୍ୟାସୀ ଦୀକ୍ଷା ପରେ ପୌଢ଼ାବସ୍ଥାରେ ଭୁବନେଶ୍ୱର ମଠକୁ ବଦଳି ହୋଇ ଆସିବା ପରେ ଏଠି ବହୁତ ଉନ୍ନୟନ କାମର ମୂଳଦୁଆ ପକାଇ ଥିଲେ । ବହୁ କଷ୍ଟରେ ବିବେକାନନ୍ଦ ଲାଇବ୍ରେରୀର ଉପର ତାଲା ହଲଟି ଚାନ୍ଦା ମାଗି କରାଇଥିଲେ । ସ୍ୱାମୀ ହରିଣ୍ୱାମ୍ୟାନନ୍ଦ ବେଲୁଡରେ ରାମକୃଷ୍ଣ ମିଶନର ସଂପାଦକ ଥିବା ବେଳେ ଥରେ ଭୁବନେଶ୍ୱର ଆସି କହିଲେ ଅନ୍ତ ତୁମେ ଯଦି ଏଠାକାର ବିରାଟ ଭୂମିଖଣ୍ଡର ସଦ୍‌ବ୍ୟବହାର ନକର, ବିଭିନ୍ନ ସେବାନୁଷ୍ଠାନ ନକର ତେବେ ଏସବୁ ଜମି ଚାଲିଯିବ । ତାଙ୍କରି ନିର୍ଦ୍ଦେଶରେ ଦିନ ରାତି ଲାଗି ଖଟି ଭ୍ରମଣଶୀଳ ଡ଼ାକ୍ତରଖାନା, ଆଦିବାସୀ ଛାତ୍ରାବାସ, ଉଚ୍ଚ ବିଦ୍ୟାଳୟ, ବିବେକାନନ୍ଦ, ସଭାକକ୍ଷ, ଧନ୍ଦାମୂଳକ ଶିକ୍ଷା, ପତ୍ରିକା ପ୍ରକାଶନ ଇତ୍ୟାଦି ପାଇଁ ତିନି କୋଟି ଟଙ୍କାର ଯୋଜନା ଅଟକଳ ପ୍ରସ୍ତୁତ କରିଥିଲୁ । ଇତି ମଧ୍ୟରେ ଭୁବନେଶ୍ୱରର ମହନ୍ତ ସ୍ୱାମୀ ସ୍ତୁତ୍ୟାନନ୍ଦ (ସୁନିଲ ମହାରାଜ) ବାର୍ଦ୍ଧକ୍ୟ ହେତୁ ବାରାଣସୀ ବିଶ୍ରାମ ଭବନକୁ ଚାଲିଗଲେ । ଅନନ୍ତ ମହାରାଜ (ସ୍ୱାମୀ ବୈରାଗ୍ୟା ନନ୍ଦ) ମଧ୍ୟ ବଦଳି ହୋଇଗଲେ । କେତେଦିନ ତପସ୍ୟା ଓ ହିମାଚଳ ଭୂକମ୍ପପୀଡ଼ିତଙ୍କ ସେବା ପରେ ତାଙ୍କର ଆସମ ବଦଳି କରାଗଲା । ସେ ସେଠାକୁ ନଯିବା ପାଇଁ ଯେତେ କହିଲେ କିଛି ଫଳ ମିଳିଲାନି । ସେ ସେଠୁଁ ଗୋଟେ ଦୀର୍ଘଚିଠି ମିଶନ ଛାଡ଼ିବା ଅଭିପ୍ରାୟରେ ମୋ ପାଖକୁ ଲେଖି ମତାମତ ଚାହିଁଥିଲେ । ମୁଁ ଅନ୍ୟ କଥା ସହ "ସେବିତବ୍ୟ ....... ମହାବୃକ୍ଷ ଫଳଛାୟା ସମନ୍ୱିତ- ଯଦି ଦୈବାତ୍ ଫଳଂ ନାସ୍ତି ଛାୟାକେନ ନିବାର୍ଯ୍ୟତେ" ନ୍ୟାୟ ଦେଖାଇ ଉତ୍ତର ଦେବା ସତ୍ତ୍ୱେ ସେ ମିଶନ ଛାଡ଼ି ଅନୁଗୁଳ, କୌଶଲ୍ୟାଗଙ୍ଗ ଓ ପରେ ବିଜୁବାବୁଙ୍କ ପ୍ରେରଣାରେ କଳାହାଣ୍ଡି ଯାଇ ମଦନରାମପୁର ଠାରେ ଶ୍ରୀ ରାମକୃଷ୍ଣ ଆଶ୍ରମ ପ୍ରତିଷ୍ଠା କଲେ । ସେ ଜଣେ ମହାନ ଉଦ୍ୟୋଗୀ ଓ କର୍ମଯୋଗୀ । ପାହାଡ଼ିଆ, ପଥୁରିଆ, ବଣୁଆ ଜାଗାକୁ ସେ ଫଳଫୁଲ ଓ ପନିବାରିବାରେ ଭରିଦେଇ ସାରା ରାଜ୍ୟର ଦୃଷ୍ଟି ଆକର୍ଷଣ କରିବାରେ ମୁଁ ପ୍ରଜାତନ୍ତ୍ରରେ ଗୋଟିଏ ସନ୍ଦର୍ଭ "ପାହାଡ଼ ଉପରେ ପଦ୍ମ" ଲେଖିଥିଲି । ମହାରାଜ ତାକୁ ପଢ଼ି ୨ ବର୍ଷ ପରେ ପ୍ରକୃତରେ ସେଠି ଗୋଟେ କୁଣ୍ଡ କରି ପାଣି କାଦୁଅ ଦେଇ ପଦ୍ମମୂଳ ପକାଇ ସେଠି ପାହାଡ଼ିଆ ଅଞ୍ଚଳରେ ପଦ୍ମଫୁଟାଇ ମା ଶାରଦା ଦେବୀଙ୍କୁ ଦେଇ ମୋତେ ଆଣି ଦେଖାଇଲେ । ତାଙ୍କ ଅନୁଷ୍ଠାନ ପରିଚାଳନା କମିଟିର ସଭ୍ୟ କରିଦେଲେ ଓ ମୋ ଉପରେ ଆଶ୍ରମର ସମସ୍ତ ଯୋଜନା ଓ ଚିଠିପତ୍ର ଲେଖା, ଚିଠାର ଦାୟିତ୍ୱ ପଡ଼ିଗଲା ।

ମୁଁ ପ୍ରତି ବର୍ଷ କେତେଥର ଯାଇ ଏକାମ କରେ ଓ ଯଥାସାଧ୍ୟ ପରାମର୍ଶ ଦିଏ । ଜରୁରୀ କାମ ପଡ଼ିଲେ ମହାରାଜ ମଧ୍ୟ ଆସି କାମ କରାଇ ନିଅନ୍ତି । ଅନନ୍ତ ମହାରାଜ ବା ସ୍ୱାମୀ ବୈରାଗ୍ୟା ନନ୍ଦ ହେଉଛନ୍ତି ଗୋଟିଏ ବୁଲଡୋଜର । ସେ ଦ୍ରୁତଗତିରେ ମାଡ଼ି ଚାଲିଲା ବେଳେ ତାଙ୍କୁ କେହିବାଧା ଦେଇ ପାରିବେନି ।

କିଛି ନାହିଁରୁ ଆରମ୍ଭ ହୋଇଥିବା ଶ୍ରୀ ରାମକୃଷ୍ଣ ଆଶ୍ରମ ବର୍ତ୍ତମାନ ଗୋଟେ ବିଶାଳ ଦ୍ରୁମ । ପଚାଶ ଆଦିବାସୀ ହରିଜନ ପିଲାଙ୍କୁ ନେଇ ଚାଲିଥିବା ଛାତ୍ରବାସ ଏବେ ସୁପ୍ରତିଷ୍ଠିତ ।

ତା ପାଇଁ ଘର ବ୍ୟବସ୍ଥା ସହ ପିଲାଙ୍କ ରହିବା, ଖାଇବା, ପିନ୍ଧିବା ଓ ପାଠପଢ଼ାର ସୁବନ୍ଦୋବସ୍ତ ହୋଇଯାଇଛି । ପିଲାଏ ବାଡି ବଗିଚା କାମରେ ଯେପରି ଆଗ୍ରହୀ ଘୁମୁରା ନାଚରେ ତଦ୍ରୂପ ପାରଙ୍ଗମ । ପତ୍ରିକା ପ୍ରକାଶ କରିବା, ବାଦ୍ୟ ବଜାଇ ଗୀତଗାଇବା, ବକ୍ତୃତା ଦେବା, ସେବା କାର୍ଯ୍ୟ କରିବା, ଦେବାର୍ଚ୍ଚନା ଇତାଦିରେ ପିଲାଏ ଧୁରନ୍ଧର । ଏବେ ପାଠରେ ମଧ ଭଲ କରୁଛନ୍ତି । ସଂଧା ଓ ପ୍ରତ୍ୟୁଷ ପ୍ରାର୍ଥନା ସହ ସଦ୍‌ଗ୍ରନ୍ଥ ପାଠରେ ଖୁବ୍ ତନ୍ମୟ ରହନ୍ତି ପିଲାଏ ।

ଚିକିତ୍ସା ପାଇଁ ଏଲୋପାଥି ଓ ହୋମିଓପାଥି ଦୁଇଟି ସ୍ଥାୟୀ ଓ ଭ୍ରାମ୍ୟମାଣ ଚିକିତ୍ସା କେନ୍ଦ୍ର ରହିଛି । ଗାଁକୁ ଔଷଧ ସହ ଯାଇ ରୋଗୀ ଦେଖି ଔଷଧ ଦେବା ସହ ଲୋକେ ଚାଷବାସ କରିବା ଓ ପରିଷ୍କାର ପରିଚ୍ଛନ୍ନ ରହିବାକୁ ପରାମର୍ଶ ଦିଆଯାଏ । ସଦରମହକୁମାରେ ଥିବା ଦିନ ବିଶେଷ କରି ହାଟଦିନ ବହୁ ସଂଖ୍ୟାରେ ରୋଗୀ ଆସି ଔଷଧ ନେଇ ଉପକୃତ ହେଉଛନ୍ତି ।

ଜରା ନିବାସରେ ୨୫ ଜଣ ବୃଦ୍ଧ ରହି ଦୈନିକ ଭାଗବତ ପାଠ ପରି ସଦଭ୍ୟାସ କରିଛନ୍ତି । ନିଜେ ପରିଷ୍କାର ପରିଚ୍ଛନ୍ନ ରହିବା ସହ ଆଶ୍ରମକୁ ମଧ ପରିଷ୍କାର ରଖନ୍ତି । ଚାଷବାସ ବିଶେଷ କରି ଫୁଲ ଗଛର ଯତ୍ନ ନିଅନ୍ତି । ସକାଳ ସଂଧା ପ୍ରାର୍ଥନାରେ ଯୋଗ ଦିଅନ୍ତି । ଅବଶ୍ୟ ଆଦିବାସୀ ସୁଲଭ ଅଭ୍ୟାସରେ ମଝିରେ ଘର ମୁହାଁ ହେଲେ ମଧ ରାମକୃଷ୍ଣ ଆଶ୍ରମକୁ ନିଜର ଘର ପରି ଖାଇବା, ରହିବା ଓ ଆଧାତ୍ମିକ ଆଶ୍ରୟସ୍ଥଳି ଭାବେ ଗ୍ରହଣ କରିନେଇଛନ୍ତି ।

ଗୋତିମୁକ୍ତ ୫୦ ଜଣ ପିଲା ଅନ୍ୟତ୍ର ଏକାଠି ରହି କୃଷିକାର୍ଯ୍ୟ ଶିକ୍ଷା ବ୍ୟତୀତ ନିୟମିତ ପାଠ ପଢୁଛନ୍ତି । ଏମାନଙ୍କ ପାଇଁ ଖାଇବା, ରହିବା, ପିନ୍ଧିବା ଓ ପାଠପଢ଼ାର ସୁବନ୍ଦୋବସ୍ତ ହୋଇଛି । ଏମାନେ ମଧ ପ୍ରାତଃ ଓ ସନ୍ଧ୍ୟା ପ୍ରାର୍ଥନା ସହ ପାଠପଢ଼ାରେ ଖୁବ୍ ଆଗ୍ରହୀ ହୋଇ ପାରିଛନ୍ତି ।

ସର୍ବସାଧାରଣ ପାଠାଗାର, ନିଶାମୁକ୍ତି ଆନ୍ଦୋଳନ, ବୃକ୍ଷ ରୋପଣ, ଗୋପାଳନ, କୁକୁଡ଼ା ଚାଷ ଓ ମାଛ ଚାଷ ପରି ସ୍ୱାବଲମ୍ବନ ବୃତ୍ତିର ସଫଳ ପ୍ରୟୋଗ ଏଠାରେ ହେଉଛି ।

ସବୁଠାରୁ ଆକର୍ଷଣୀୟ ହେଉଛି ୩୦ ଏକର ଜମିରେ ବର୍ଷ ସାରା ବାରମାସ ବିଭିନ୍ନ ଫସଲ ଲହଡ଼ି ମାରୁଛି ଓ ବିଭିନ୍ନ ଫଳ, ଫୁଲ, ପନିପରିବା, ଧାନ ଓ ତୈଳ ବୀଜ ଚାଷ ଖୁବ୍ ଆକର୍ଷଣୀୟ ହୋଇଛି । ଏପରିକି ସରକାରୀ ସ୍ତରରେ ତାଲିମ ପାଉଥିବା ପିଲା କ୍ଷେତ୍ର ପରିଦର୍ଶନ ପାଇଁ ଏଠାକୁ ଆସୁଛନ୍ତି ଓ ଦୃଢ଼ ସଫଳ ଅଭିଜ୍ଞତାର ସ୍ପର୍ଶ ନେଇ ଯାଉଛନ୍ତି । ଏଠାକୁ ନଗଲେ ସ୍ୱଚକ୍ଷୁରେ ନଦେଖିଥିଲେ ଏହାର ସଫଳତା ନୈସର୍ଗିକତା ଓ ଆକର୍ଷଣ ସମ୍ବନ୍ଧେ ଯେତେ ବର୍ଣ୍ଣନା କଲେବି ଉପଲବ୍ଧି କରିହେବନି ?

ଭାରତ ସରକାର ଏଠାରେ ଗୋଟିଏ କୃଷି ତାଲିମ୍ କେନ୍ଦ୍ର ଚଳାଉଛନ୍ତି । ପ୍ରତିବ୍ୟାଚରେ ୧୦୦ ଜଣ ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଯୁବକ ଆସି ରହିଖାଇ ସୁଶିକ୍ଷିତ କୃଷିବିତ୍‌ଙ୍କଠାରୁ ପୋଥି ପାଠଠାରୁ ବାଡିବାଇଗଣ ଚାଷ ନିଜେ କରି ଶିକ୍ଷିତ ହୋଇ ଫେରୁଛନ୍ତି ।

କଳାହାଣ୍ଡିର ଜମି ପାହାଡ଼ିଆ ଓ ଖାଲଢ଼ିପ । ଜଳ ସେଚନର ଆଦୌ ସୁବିଧା ନାହିଁ କହିଲେ ଚଳେ । ଫଳରେ ଲୋକେ ପୁରା ଅଳସୁଆ ହୋଇଯାଇ ଗୋଟି ଖଟନ୍ତି, ବସିରହନ୍ତି ବା ବର୍ଷକରେ ଖୁବ୍ ବେଶୀରେ ବର୍ଷାଦିନେ ଧାନ ଗଣ୍ଡେ ଚାଷ କରିଥାନ୍ତି । ତାରଫଳ ଇନ୍ଦ୍ରଙ୍କ

ହାତରେ । ଏବେ କିନ୍ତୁ ଏହି ସାଧୁଙ୍କର ସାଧୁ ଉଦାମ ଦେଖି ନୂଆ ଯୁଗର ସୂଚନା ମିଳିଛି । ବହୁ ବ୍ୟକ୍ତି ଚାଷବାସରେ ମନ ପ୍ରାଣ ଢାଳି ଦେଇ ଭଲରେ ଚଳୁଛନ୍ତି । "ଦେଖାଶିଖା ଓଡ଼ିଶା"- ଏଠାରେ କାମରେ ଆସୁଛି ।

ଏହିପରି ଏକ ସେବାମୂଳକ ଅନୁଷ୍ଠାନରେ ସାମିଲ ହେବା ଗୋଟିଏ ଭାଗ୍ୟର ବିଷୟ । ଏଥିପାଇଁ ମୁଁ ଯେତେ ଦାୟି ନୁହେଁ ମହାରାଜ ଅଧିକ ଦାୟି । ସେ ସବୁବେଳେ ଆସି ପଚାରନ୍ତି, ଡ଼ାକନ୍ତି, ଦେଖାନ୍ତି ଓ ପରାମର୍ଶ ଦିଅନ୍ତି ଓ ନିଅନ୍ତି । ବଳ ବା ସମୟ ନଥିଲେ କି ମନ ନଥିଲେ ମଧ ସେ ତାଙ୍କ ଜୀବନାଦର୍ଶରେ ଆଗ୍ରହ, ସମୟ ଓ ମନର ସୃଷ୍ଟି କରିଥାନ୍ତି । ତାଙ୍କର ଏ ଗୋଟିଏ ଈଶ୍ୱର ଦତ୍ତ ଗୁଣ । ସେ କେବେ କେଉଠି ସ୍ଥିର ହୋଇ ବସିପାରନ୍ତିନି । ନିଜେ କାମ କରିବା ସହ ସମସ୍ତଙ୍କୁ କାମରେ ଲଗାଇ ରଖିଥାନ୍ତି । ସେ ଅନନ୍ତ ମହାରାଜ ଅନନ୍ତଙ୍କ ପରି ରାଗି ଯାନ୍ତି ଭୁଲ ଦେଖିଲେ, ଆଳସ୍ୟ ଦେଖିଲେ ଓ ଅନାଗ୍ରହ ଦେଖିଲେ । ସନ୍ଧ ସକାଳେ ଦୁଇଓଳି ନିଜେ ପ୍ରାର୍ଥନା ସଭାରେ ରହି ସମସ୍ତଙ୍କୁ ଠାକୁର ମା ଓ ସ୍ୱାମୀଜୀଙ୍କ ଅମର ବାଣି ଶୁଣାନ୍ତି ଓ ଭଲ ବାଟରେ ଯିବାକୁ ସତ୍‌ଶିକ୍ଷା ଦିଅନ୍ତି । ବାସ୍ତବିକ୍ ପାହାଡ଼ ଉପରେ ପଦ୍ମ ଫୁଟାଇ ପାରିବାର ଶକ୍ତି ଓ ପ୍ରେରଣାର ଉତ୍ସ ତାଙ୍କ ଭିତରେ ଅଛି ।

ସେ କହନ୍ତି ମୁଁ ହେଉଛି ଆଶ୍ରମର ବହୁ ସମସ୍ୟା ବା ଦୁଃସ୍ଥିତି ସମୟର ପରିଚାଳକ । ବାସ୍ତବରେ ଆଶ୍ରମ ଉପରେ ଏଇ କେତେବର୍ଷ ମଧ୍ୟରେ ଦୈବିକୃତ ଓ ମଣିଷକୃତ ବହୁ ଦୁଃସ୍ଥିତି ମାଡ଼ି ଆସିଛି । ସେହି ପରମକାରୁଣିକ ଠାକୁର ଶ୍ରୀ ରାମକୃଷ୍ଣଙ୍କ ଦୟାରୁ ଡ଼ାକରାପାଇଁ ମୁଁ ଯାଇ ରାତି ରାତି ଅନିଦ୍ରା ରହିବହୁ ଆଲୋଚନା ଓ ଚେଷ୍ଟା କରିଛି ଏବଂ ସେହି ଠାକୁରଙ୍କ ଦୟାରୁ ସେ ସବୁ ସମସ୍ୟାର ସୁସମାଧାନ ହୋଇ ପାରିଛି । ଏବେ ବାର୍ଦ୍ଧକ୍ୟରେ ଆଉ ବେଶୀଥର ଯାଇ ନପାରିଲେ ମଧ ଏଇଠି ବସି ଆଶ୍ରମର ଚିତ୍ରପଟ ମୋ ଆଖିରେ ସର୍ବଦା ନୃତ୍ୟକରେ ଓ ମୁଁ ସେଥିରେ ସକ୍ରିୟ ଅଂଶ ଗ୍ରହଣ କରି ଆନନ୍ଦ ବିଭୋର ହୁଏ ପରମହଂସ ଶ୍ରୀ ରାମକୃଷ୍ଣ ଦେବଙ୍କ ଆଶୀର୍ବାଦ ଓ ପ୍ରେରଣା ବଳରେ । ମୁଁ ରଙ୍ଗିଲା ଟେବୁଲ ବତୀଟିଏ ହେଲେ ସେ ହେଉଛନ୍ତି ତାକୁ ଜଳାଉଥିବା ବିଜୁଳିଶକ୍ତି ।



କାଳାହଣ୍ଡିର ମ. ରାମପୁରସ୍ଥ ରାମକୃଷ୍ଣ ଆଶ୍ରମରେ
ଡ଼ାହାଣରେ ସ୍ୱାମୀ ବୈରାଗ୍ୟାନନ୍ଦଙ୍କ ସହ ଲେଖକ ଶ୍ରୀ ପର୍ଶୁରାମ ଦ୍ୱିବେଦୀ

# ଅଲୌକିକ ଅନୁଭୂତି

## ୧୫୭. ଡ଼କାୟତି

ଗଜକୁ ଗ୍ରାହଗ୍ରାସର ଜଳଧି ମଧ୍ୟରୁ ଚକ୍ର ପ୍ରେରଣ କରି ପ୍ରଭୁ ଉଦ୍ଧାର କରିବା, ମୃଗୁଣୀକୁ ଚାରିପଟର ଜାଲ, ନିଆଁ କୁକୁର ଓ ବ୍ୟାଧର ଅବରୋଧରୁ ଉଦ୍ଧାର କରିବା, କୁରୁରାଜ ସଭାତଳେ ରାଜବଧୂ ଦ୍ରୌପଦୀଙ୍କୁ ବସ୍ତ୍ରହରଣରୁ ରକ୍ଷା କରିବା ଇତ୍ୟାଦି ଅଲୌକିକ ଘଟଣା ଆମେ ଶାସ୍ତ୍ର ପୁରାଣରୁ ପଢ଼ିଛେ, ଭଜନରେ ଶୁଣିଛେ ଓ ଆମର ବିପତ୍ତି ବେଳେ ଠାକୁରଙ୍କୁ ମଧ୍ୟ ଏ ଉଦାହରଣ ଦେଇ ଡ଼ାକିଛେ । ଡ଼ାକିବା କାମ ଆମର ଆଉ ଶୁଣିବା ବା ପ୍ରତିକାର କରିବା ତାଙ୍କର କାମ । । ବେଳେବେଳେ ନଡ଼ାକିଲେ ମଧ୍ୟ ସେ ଶଙ୍ଖ ଚକ୍ର ଉଡ଼ାଳ କରି ରକ୍ଷା କରିଥାନ୍ତି ।

ବାଂଶପାଳ-ବ୍ଲକରେ ବିଡ଼ିଓ ଥାଏ । ପଚିଶି କିଲୋମିଟର ବାଟ ଜଙ୍ଗଲ ପାହାଡ ଦେଇ ଯିବାକୁ ହୁଏ । ରାସ୍ତା ନାହିଁ ଓ ପାଦଚଲା ରାସ୍ତା । ସେଇଥିରେ ଯିବାକୁ ପଦବାବୁଙ୍କ କାର ନହେଲେ ବ୍ଲକ ଗାଡ଼ି ବା ସାଇକେଲ । ଉଠାଣି ଗଡ଼ାଣି ରାସ୍ତା ଯୋଗୁଁ ଚାଲିବା ବରଂ ଶ୍ରେୟସ୍କର । କେନ୍ଦୁଝର ସହରର ୨୫ କିଲୋମିଟର ଦୂରରେ ଅବସ୍ଥିତ ବାଂଶପାଳର ଅବସ୍ଥା ଯେ ଏତେ ଶୋଚନୀୟ ହୋଇପାରେ ତାହା କଳ୍ପନାତୀତ । ଟ୍ରେଜେରୀ କାମ ସାଙ୍ଗକୁ ବିଭିନ୍ନ ସଭା ଓ ସରକାରୀ କାମ ପାଇଁ ଅନ୍ୟୁନ ତିନିଚାରି ଥର ଯେତେ କଷ୍ଟ ପଡ଼ିଲେ ବି ଯିବାକୁ ହୁଏ । ସାହା ହେଲା ବ୍ଲକ୍ ଜିପ୍ ।

ଥରକର ଘଟଣା । ଆଗ ଦିନ ଆମ କୋଷାଧକ୍ଷ ମହାପାତ୍ରବାବୁ ଓ ପିଅନ ଦୁଇଜଣ ସାଇକେଲରେ କେନ୍ଦୁଝର ଗଲେ । ସାଙ୍ଗରେ ଷାଠିଏ ହଜାର ଟଙ୍କାର ଚେକ୍ । ସେଦିନ ଯାଇ ଟ୍ରେଜେରୀରେ ଚେକ୍ ପାଶ୍ କରାଇ ସେଠି ରହିଲେ । ତହିଁ ଆରଦିନ ମୁଁ ମିଟିଂକୁ ଗଲେ ମୋ ସହ ବ୍ୟାଙ୍କରୁ ଟଙ୍କା ନେଇ ଫେରିବେ । ପରଦିନ ମୁଁ ମଧ୍ୟଗଲି । ସଭା ଆରମ୍ଭରେ ଆମ ଜିଲ୍ଲାପାଳ ଘୋଷଣା କଲେ ଯେ ସେ ଦିନ ରାତିରେ ଗୋଟିଏ ବିଧାନସଭାକମିଟି ଆଗରେ ହାଜର ହେବାକୁ ପଡ଼ିବ । ଦରକାର ହେଲେ ପରଦିନ ମିଟିଂ ହେବ । ତେଣୁ ମୁଁ ଆମ କୋଷାଧକ୍ଷଙ୍କୁ ଦିନ ୧୧ଟାରେ କହିଲି ଯେ ମୋତେ ରହିବାକୁ ହେବ । ଆପଣ ଟଙ୍କା ନେଇ ଚାଲିଯାନ୍ତୁ । ସେ ବ୍ୟାଙ୍କରେ ଚେକ ଭଙ୍ଗାଇ ଅଖାମୁଣିଟିରେ ସାଇକେଲରେ ଟଙ୍ଗାଇ ପିଅନକୁ ଧରି ବ୍ଲକକୁ ଫେରିଗଲେ । ଦିନସାରା ମିଟିଂ ଚାଲିଲା । ରାତିରେ ବିଧାନଭା କମିଟିରେ ସାକ୍ଷାତ୍କାର ହେଲା । ରାତି ୧୦ଟାରେ ହୋଟେଲରେ ଖାଇଲୁ । ସାଙ୍ଗରେ ଥାନ୍ତି ବ୍ଲକ ଚେୟାରମ୍ୟାନ କହ୍ନେଇ ଦେହୁରୀ, ଜେଇ ଗୁରୁବାରୀବାବୁ, ମଙ୍ଗଳ ସଂପ୍ରସାରଣ ଅଧିକାରୀ, ଡ୍ରାଇଭର ଓ ପିଅନଟିଏ । ମୁଁ କହିଲି ଆପଣମାନେ ଗାଡ଼ି ନେଇ ଚାଲିଯାନ୍ତୁ । ମୁଁ କାଲି ସଂଧାରେ ମିଟିଂସାରି ଫେରିବି । ଏଥିରେ ଖୁସି ହୋଇ ଆଗରେ ଡ୍ରାଇଭର, ବ୍ଲକ ଅଧ୍ୟକ୍ଷ ଓ ଜେଇ ଏବଂ ପଛରେ ମଙ୍ଗଳ ସଂପ୍ରସାରଣ ଅଧିକାରୀ ଓ ପିଅନ ବସିଲେ । ଏକ ଘଣ୍ଟା ଜିପ୍

ଚଳାଇବା ପରେ ସୁଆକଠି ଓ ବାଂଶପାଳ ମଧ୍ୟରେ ଅଗ୍ନାଗ୍ନି ବନସ୍ତରେ ରାସ୍ତାରେ କାଠଟିଏ ପଡ଼ିଥିବାରୁ ଗାଡ଼ି ଅଟକିଗଲା ପରେ ପଛରେ ମଧ୍ୟ କାଠଟିଏ ପଡ଼ିଗଲା । ଛଅଜଣ ଡ଼କାୟତ ଛୁରୀ, ବନ୍ଧୁକ, ହାମର ଓ ବାଡ଼ି ଧରି ଜିପ୍ ଉପରେ ଚଢ଼ାଉ କଲେ । ଡ୍ରାଇଭର ଛାତିରେ ବନ୍ଧୁକ, ଅଧ୍ୟକ୍ଷଙ୍କ ଛାତିରେ ଛୁରୀ ଲଗାଇ ଅନ୍ୟମାନଙ୍କୁ ରୋଲବାଡ଼ି ଓ ହାମରରେ ପିଟି ପିଟି ନୟାନ୍ତ କଲେ ଏବଂ ବିଡ଼ିଓ କାହିଁ ଟଙ୍କା କାହିଁ, ଦେଇଦିଅ ବୋଲି କହିଲେ । ବିଡ଼ିଓ ଆସି ନାହାନ୍ତି, ଟଙ୍କା ନାହିଁ ଇତ୍ୟାଦି ଯେତେ କହିଲେ ମଧ୍ୟ କିଛି ଶୁଣିଲେନି । ସମସ୍ତଙ୍କୁ ତଳକୁ ଓହ୍ଲାଇ ଜିପ୍‌ର ଟୁଲ ବକ୍ସ ଓ ଗାଡ଼ିରେ ଥିବା ନୂଆ ରେଡ୍‌କ୍ରସ୍ ବାକ୍ସ ଓ ଟଙ୍କା ୧୫୦, ଜେଇଙ୍କ ଘଣ୍ଟା ଓ ଟ.୨୫୦ ନେଲେ । ଇତି ମଧ୍ୟରେ କଲ୍ୟାଣ ଅଧିକାରୀ ଦରମା ପାଇ ଆଣିଥିବା ୬୦୦ ଟଙ୍କାକୁ ତାଙ୍କ ଜୋତା ତଳେ ରଖି ଦେଇଥିଲେ । ତାଙ୍କଠାରୁ କିଛି ନପାଇ ପିଅନ ହାତରେ ମୁଁ ପଠାଇଥିବା ମୁଗଡ଼ାଲି, ଖାତା, ପେନ୍‌ସିଲ୍ ଇତ୍ୟାଦିର ପ୍ୟାକେଟ୍‌ଟିକୁ ଖୋଲି ଫିଙ୍ଗିଦେଲେ । ଶେଷରେ ଗାଡ଼ିର ଆଲୁଅ ଓ ଚକାର ପମ୍ପ ଖୋଲି ଦେଲେ ଓ କହିଲେ ଏଇଠି ଗାଡ଼ିରେ ବସିଥିବ । ଓହ୍ଲାଇଲେ ବା ଡ଼କାଡ଼କି କଲେ ଗୁଳିକରିଦେବୁ ।

ଘୋର ଶୀତ ଦିନ । ଡ଼ିସେମ୍ବର ଶୀତ ରାତି । ପାହାଡ଼ ଉପର, ବଣ ଭିତରେ ହାଡ଼ଫଟା ଶୀତରେ ହାତୁଡ଼ି ମାଡ଼ ଖାଇ କାନ୍ଦୁଥିବା ଓ ଥରୁଥିବା ଅବସ୍ଥାରେ ଛାଡ଼ି ସେମାନେ ଚାଲିଗଲେ ପ୍ରାୟ ରାତି ଗୋଟାଏରେ । ଏମାନେ ରାତି ସାରା ସେଠି ପଡ଼ିରହି ସକାଳେ ଚାଲି ଚାଲି କେନ୍ଦୁଝର ଆଡ଼କୁ ଢ଼ିପେଇ ଢ଼ିପେଇ ଯାଉଥାନ୍ତି । ସମସ୍ତେ ମାଡ଼ ଖାଇଲା ବେଳେ ଓ କଷ୍ଟରେ ଚାଲିଲା ବେଳେ ମା' ତାରିଣୀଙ୍କୁ ଡ଼ାକୁଥାନ୍ତି ।

ସକାଳ ୮ଟାରେ ଜିଲ୍ଲାପାଳଙ୍କ କକ୍ଷରେ ପୁଣି ମିଟିଂ ଆରମ୍ଭ ହେଲା । ମୁଁ ପହଞ୍ଚିଲାକ୍ଷଣି ଅକ୍ଷୟବାବୁଙ୍କର ପ୍ରଶ୍ନ ଆରମ୍ଭ ହେଲା । ଅକ୍ଷୟ ବିଶ୍ୱାଳ ହେଉଛନ୍ତି ଜଣେ କର୍ମନିଷ୍ଠ, ସତ୍ୟବାଦୀ, ସ୍ୱାଭିମାନୀ, ସଚ୍ଚୋଟ ଅଫିସର । ନନ୍ଦିନି ଶତପଥୀ ମୁଖ୍ୟମନ୍ତ୍ରୀ ଥାଇ ତାଙ୍କୁ ଦେଇଥିବା ଅନ୍ୟାୟ ନିର୍ଦ୍ଦେଶ ବିରୋଧରେ ସେ ଯେପରି ପ୍ରତିବାଦ କରିଥିଲେ ସେହିପରି ତାଙ୍କ ସମୁଦି ନୀଳମଣି ରାଉତରାୟଙ୍କ ପାଖରେ ସେ ସଚିବଥିବା ସମୟରେ ଏକ ଅସମୀଚିନ ଆଦେଶ ପ୍ରତିବାଦରେ ଆଇଏସ୍ ଚାକିରୀକୁ ଛାଡ଼ି ଦେଇଗଲେ । ଏପରି ସତ୍ୟବାଦୀ, ସଚ୍ଚୋଟ, କର୍ମନିଷ୍ଠ ଓ ସ୍ୱାଭିମାନୀ ଅଫିସର ଯଦି ଆମର ଥାନ୍ତେ ଓ ଲୋକେ ଥାନ୍ତେ ଦେଶ ପ୍ରଗତିପଥରେ ନିଶ୍ଚିତ ଆଗେଇଥାନ୍ତା । ଆମର ପ୍ରାକୃତିକ ସଂପଦର ଅଭାବ ନାହିଁ । ଲୋକ ବଳର ମଧ୍ୟ ଅଭାବ ନାହିଁ । ଅଭାବ ଅଛି ସତ୍ ଚରିତ୍ର, ସ୍ୱାଭିମାନ, ସଚ୍ଚୋଟପଣିଆ ଓ ଦୃଢ଼ କର୍ତ୍ତବ୍ୟ ନିଷ୍ଠାରେ । ଏତକ ଗୁଣ ହାସଲ କରାଯାଇ ପାରିଲେ ଆମେ ସବୁଦିଗରୁ ଉନ୍ନତ ପ୍ରଗତିଶୀଳ ଓ ସ୍ୱାବଲମ୍ବୀ ହୋଇପାରନ୍ତେ । ତାଙ୍କ ସହ ଅବସର ଜୀବନରେ ମଧ୍ୟ ସତ୍ ସମ୍ପର୍କ ଏବେବି ରହିଛି । ସେ ହିଁ ପ୍ରଥମ ବ୍ୟକ୍ତି ଯିଏକି ତାଙ୍କ ଝିଅ ବାହାଘର ନିମନ୍ତ୍ରଣରେ କୌଣସି ପ୍ରକାର ଉପଢ଼ୌକନ ନ ଆଣିବାକୁ ଅନୁରୋଧ କରିଥିଲେ । ସେ ମୋ ପରି ହୋମିଓପ୍ୟାଥିକ୍ ଔଷଧ ରଖିଥାନ୍ତି ଓ ଦିଅନ୍ତି । ତାଙ୍କର ନିଷ୍କପଟ ବଂଧୁତା ମୋତେ ଖୁବ୍ ଭଲ ଲାଗେ । ସେହି ଜିଲ୍ଲାପାଳ କହିଲେ ଦ୍ୱିବେଦୀ ତୁମେ ଯାଇନ ? ମୁଁ କହିଲି ନା । ମୁଁ ଏଠି ସୀତା ରାମବାବୁଙ୍କ ଘରେ

ରହିଯାଇ ଜିପ୍ ପଠାଇ ଦେଇଛି । ତା ପରେ ପ୍ରଶ୍ନ ହେଲା ଟଙ୍କା କ'ଣ କଲ ? ମୁଁ କହିଲି ଟଙ୍କା କାଲି ଦିନ ୧୧ଟାରେ ଆମ କୋଷାଧ୍ୟକ୍ଷ ଓ ପିଅନ ସାଇକେଲରେ ନେଇଯାଇଛନ୍ତି । ତୁମର ଗ୍ରହ ଖୁବ୍ ଉଚ୍ଚରେ । କାଲି ରାତିରେ ତୁମ ଗାଡ଼ି ଉପରେ ବାଟରେ ଡ଼କାୟତି ହୋଇଛି । ତୁମେ ଅକ୍ଷୟ ଦାସ ପିତିଙ୍କ ସହ ସେଠାକୁ ଯାଅ । ଆମେ ଯାଇ ଦେଖିଲୁ ଏମାନେ ବାଟରେ ଚାଲି ଚାଲି ବହୁ କଷ୍ଟରେ ଆସୁଛନ୍ତି । ତାଙ୍କୁ ନେଇ ଘଟଣାସ୍ଥଳକୁ ଯାଇ ସେଠୁ ବ୍ଲକକୁ ଫେରିଲୁ । ଠାକୁର ଏତେବଡ଼ ବିପତ୍ତିକୁ ଟାଳିଦେଲେ । ଟଙ୍କା ତ ରହିଗଲା ଏ ପୈତୃକ ପ୍ରାଣ ମଧ୍ୟ ରହିଗଲା । ସେହିଦିନଠୁଁ ବ୍ଲକରେ ସନ୍ଧ୍ୟାରେ ସମୂହ ପ୍ରାର୍ଥନା ଓ ପୂଜାର୍ଚ୍ଚନା ପାଇଁ ବ୍ୟବସ୍ଥା କରାଗଲା ମଧ୍ୟ ।

ପ୍ରାୟ ଏକମାସ ପରେ ସେ ଡ଼କାୟତ ଦଳ, ହାଟଟିକରାର ମକର ଯାତ୍ରାରେ କୁଣ୍ଢେଇ ନାଚ କରୁଥିବା ବେଳେ ଧରାହେଲେ । ସେମାନେ ଦିନରେ ଫେରି ଓ ରାତିରେ ଚୋରି କରନ୍ତି । ପୂର୍ବଦିନ ଜଣେ ମାହାନ୍ତବୁଢ଼ୀ ଓ ତା ନାତୁଣୀକୁ ବୁଲା ବିକା ଫେରିରେ ଯାଇ ରିବନ ବିକି ଖବର ନେଇ ଥିଲେ ଯେ ଏମାନେ ଯାତ୍ରାକୁ ରାତିରେ ଯିବେ । ତାଙ୍କ ଘରେ ଚୋରିହେଲା ସେହି ରାତିରେ । ବୁଢ଼ୀ ଯୋଗକୁ ଥିଲା । ନାତୁଣୀ ଯାତ୍ରାକୁ ଯାଇଥିଲା । ସକାଳେ ଖବର ପାଇ ନାତୁଣୀ ଥାନାରେ ଏତଲା ଦେଲା ଓ ପୋଲିସ୍‌ବାବୁଙ୍କ ସହ ବୁଲି ଦିନରେ ରିବନ ବିକୁଥିବା ଓ ଯାତ୍ରାରେ କଣ୍ଢେଇ ନଚାଉଥିବା ଚୋରକୁ ଚିହ୍ନଟ କରିବାରେ ବହୁ ପୋଲିସ୍ ପୁରା ଯାତ୍ରାକୁ ଘେରାଉ କରି ସେ ସମସ୍ତଙ୍କୁ ଧରିଲେ ଓ ପରେ ସେମାନେ ଦଣ୍ଡିତ ହେଲେ । ଏ କଥାଟି ଠିକେ ଠିକେ ଲେଖାଗଲାସିନା ବୁଲେଇ ବଙ୍କେଇ ଚତୁରେଇ ଲେଖିଲେ ଡ଼ିଟେକ୍‌ଟିଭ୍ ଉପନ୍ୟାସଟିଏ ହେବ ସିନା ।

"ଯାହାକୁ ରଖେ ହରି- ତାକୁ କେ ପାରେ ମାରି" । ଏକଥାଟି ଏଠି ୧୦୦ ଭାଗ ସତ୍ୟ ପ୍ରମାଣିତ ହେଲା । କେତେ ଦୟାଳୁ ସେ । ଭାବିଲା ବେଳକୁ ଏହା ଅଲୌକିକତା ଛଡ଼ା ଆଉ କ'ଣ ହୋଇପାରେ ବୋଲି ମନେ ହୁଏ । ଧନ୍ୟ ସେ ଚୌରଚନ୍ଦ୍ର ବାଳମୁକୁନ୍ଦଙ୍କୁ । ସେ ଗାଡ଼ିରେ ମୁଁ ଥିଲେ ମୋର ମୃତ୍ୟୁ ନିଶ୍ଚିତ । ଟଙ୍କା ଥିଲେ ନିଶ୍ଚିତ ଟଙ୍କା ଓ ଜୀବନ ଉଭୟ ଯାଇଥାନ୍ତା । ଠାକୁରେ ଚକ୍ର ଉହାଡ଼ କରି ରକ୍ଷା କରିଦେଲେ; ଧନ ଓ ଜୀବନକୁ ।

## ୧୫୮ ହେ ରାମକୃଷ୍ଣ

ସେହି ବାଂଶପାଳ ବ୍ଲକରେ କାଦକଲା ଗ୍ରାମ ପଞ୍ଚାୟତରେ ଖଣ୍ଡାଧାର ପଡ଼େ । ତାକୁ ଦେଖିବାକୁ ରାଜ୍ୟ ଓ ଜିଲ୍ଲା ସ୍ତରରୁ ସବୁ ଅଧିକାରୀ, ତାଙ୍କ ପରିବାର, ବଂଧୁବାନ୍ଧବ ଧାଡ଼ି ଦିଅନ୍ତି । ଛୁଟି ଦିନେ ସେଠି ବଣ ଭୋଜି, ଫଟୋ ଉଠା ଇତ୍ୟାଦି ହୁଏ ।

ଯିଏବା ଆସନ୍ତି ସମସ୍ତେ ଡ଼ିଉଟି ପକାଇ ବ୍ଲକ, ପଞ୍ଚାୟତ ଅବା ଆଶ୍ରମ ସ୍କୁଲ, ଜଙ୍ଗଲ, ବୃକ୍ଷରୋପଣ ଇତ୍ୟାଦି ପରିଦର୍ଶନ ପାଇଁ ଆସନ୍ତି । ଜିପ୍ ସୁବିଧା ପାଇବାକୁ, ବାଟ ଦେଖାଇବାକୁ

ଅବା ଡ଼ିଉଟିର ସାକ୍ଷ ଦେବାକୁ ବିଡ଼ିଓଙ୍କୁ ଡ଼ାକରା ପଡ଼େ । ପ୍ରଥମେ କେତେଥର ଯିବା ପରେ ମୋର ବହୁତ କାମ ଅଛି ; ଯିବା ସମ୍ଭବ ନୁହେଁ କହି ଟାଳି ଦିଏ । ସବୁବେଳେ ତ ସେଟା ସମ୍ଭବ ନୁହେଁ । ତେଣୁ ବେଳେବେଳେ ବାଧ୍ୟ ହୋଇଥାଏ । ଥରକର ଘଟଣା ଜଣେ ବନ୍ଧୁ ଅଫିସର ଖଣ୍ଡାଧାର ପରିଦର୍ଶନରେ ଆସି ମୋତେ ଡ଼ାକିନେଲେ । ଆମ ଜିପ୍ ଖରାପ ଅଛି କହି ତାଙ୍କ ଗାଡ଼ିରେ ଗଲୁ । କାଦକଳା ପୂର୍ବରୁ ଛ'ଇଞ୍ଚ ପାଣିଥିବା ନାଳକୁ ପାରି ହୋଇ ଆଶ୍ରମ ସ୍କୁଲ ଦେଖି ଓ ତା ପରେ ଗାଡି ପାହାଡ ଉଠିଲା । ବଡ଼ ମଜା ଲାଗୁଥାଏ । ଘଁ ଘଁ ହୋଇ ଗାଡ଼ିଟି ଦୁଇ କଡ଼ର ଜଙ୍ଗଲ ପାର ହୋଇ ଆସ୍ତେ ଆସ୍ତେ ଯାଇ ପାହାଡ଼ ଉପରେ ପହଞ୍ଚିବା ପରେ ପଛକୁ ଗଡ଼ିଲା । ମୁଁ ବ୍ରେକ୍ ବ୍ରେକ୍ ବୋଲି ପାଟି କରିବାରେ ଡ୍ରାଇଭର କହିଲା ବ୍ରେକ୍ ଧରୁନି । ସମସ୍ତେ ଆଶ୍ଚର୍ଯ୍ୟ ଚକିତ ହୋଇଗଲେ ଓ ପ୍ରାଣର ଆଶା ତ୍ୟାଗ କରି ଇଷ୍ଟ ସ୍ମରଣ କଲେ । ଏତିକି ବେଳେ ମୋ ପାଟିରୁ ବାହାରି ପଡ଼ିଲା "ହେରାମ କୃଷ୍ଣ" । ଏହି 'ଷ୍ଣ' ଅକ୍ଷର ସରିବା ବେଳକୁ ଗାଡ଼ିଟି ପଛରେ ଗୋଟେ ଛୋଟ ଗଜା ବେଲଗଛରେ ଲାଗିଯାଇ ଅଟକି ଗଲା ।

ଆମେ ସବୁ ଭୁଷ୍ ଭାଷ୍ ଓଲ୍ହାଇ ପଡ଼ିଲୁ । ଠାକୁରେ ପ୍ରାଣରକ୍ଷା କରିଦେଲେ । ରକ୍ଷା ମଧ୍ୟ କରିଦେଲେ ଚାକିରିଟି । ଏ ପ୍ରସଙ୍ଗଟିକୁ ଭାବିଲେ ଓ ବିଚାର କଲେ ମନେହୁଏ ଏହା ସେହି ଅଦେଖା ହାତର କରାମତି । ଏଥିରେ ମଣିଷର ଚାତୁରୀ କିଛି ନାହିଁ । ଏ ଜୀବନରେ କିଛି ବାକି କାମ କରେଇ ନେବାକୁ ଠାକୁରଙ୍କର ଇଚ୍ଛା ଥିବାରୁ ସେ ତାକୁ ଅଳ୍ପକରେ ବଞ୍ଚାଇ ଦେଲେ । ପର୍ବତ ପରି ମାଡ଼ିଆସିଥିବା ବିପତ୍ତି ସୋରିଷ ପରି ଟଳିଗଲା; ତାଙ୍କର ଅଦେଖା ହାତର ସ୍ପର୍ଶରେ; କ୍ଷଣମାତ୍ରକରେ । ଆବର୍ତ୍ତର ପବନ ବେଗରେ ଉଡ଼ି ଉଡ଼ି ଉପରକୁ ଉଠୁଥିବା ଶୁଖିଲାପତ୍ରଟି ଯଦି ଗର୍ବରେ କହେଯେ ଦେଖ ମୁଁ କିପରି ଉପରକୁ ଉଠିଛି ତେବେ ତାକୁ ଲୋକେ ହସିବେ ସିନା । ଏହି ସୁରକ୍ଷାରେ ମଣିଷରକୌଣସି କରାମତି ନାହିଁ । ଈଶ୍ୱର ହିଁ ଏକମାତ୍ର ରକ୍ଷାକର୍ତ୍ତା । ସବୁଠାରୁ ଆଶ୍ଚର୍ଯ୍ୟ ବିଷୟ ହେଉଛି, ପାଟିରୁ "ରାମକୃଷ୍ଣ" ନାମ ଏ ବିପତ୍ତିବେଳେ ଉଚ୍ଚାରିତ ହେବା । ସାଧାରଣତଃ ଏଭଳି ସମୟରେ "ମରିଗଲି ବା ହେ ବାପା, ହେ ମାଆ" ପରି ଶବ୍ଦ ସବୁ ଉଚ୍ଚାରିତ ହୋଇଥାଏ । ଏ ଶବ୍ଦ ଉଚ୍ଚାରିତ ହେବା ଦ୍ୱାରା ଠାକୁରେ ରକ୍ଷା କବଚ ପିନ୍ଧାଇ ଦେଲେ । ମୃତ୍ୟୁ ହୋଇଥିଲେ ଠାକୁରଙ୍କ ନାମ ଉଚ୍ଚାରଣ ସହ ମୃତ୍ୟୁ ସ୍ୱର୍ଗର ପଥ ଉନ୍ମୋଚିତ କରିଥାନ୍ତା ।

ଏଥିରୁ ଗୋଟିଏ ଶିକ୍ଷା ମିଳିଲା । ବାଂଶପାଳରେ ଅବଶିଷ୍ଟ ଏକ ବର୍ଷର ରହଣି ମଧ୍ୟରେ ଯେ ଯେତେ ଅନୁରୋଧ କଲେ ମଧ୍ୟ ମୁଁ ବା ଆମଗାଡ଼ି ଆଉ ଖଣ୍ଡାଧାର ଯାଇନୁ । ଏହାଦ୍ୱାରା ସିନା ମଣିଷ ସନ୍ତୋଷ ହୁଅନ୍ତି, ଈଶ୍ୱର ବିମୁଖ ହୁଅନ୍ତି । ସରକାରୀ ସମୟ, ଶକ୍ତି, ଅର୍ଥ ଅପଚୟ କରି ଗାଡ଼ିର ଅପବ୍ୟବହାର କରି ଏ ଯେଉଁ ମଉଜ କରାଯାଏ ଏହା ପଛରେ କୌଣସି ଆଇନି, କର୍ତ୍ତବ୍ୟ ବା ଆଧ୍ୟାତ୍ମିକତାର ସମର୍ଥନ ନାହିଁ । ସମସ୍ତେ ଏହା ବୁଝିବା ଦରକାର । ଅନୁଭବ କରିବା ଦରକାର ଓ ଠାକୁରଙ୍କର ଅପାର କରୁଣାକୁ ପ୍ରଂଶସା କରିବା ଦରକାର ।

# ୧୫୯. ଶ୍ରୀମାଙ୍କ କୃପା କଟାକ୍ଷ

ଆପଣ ଶ୍ରୀମାଙ୍କ ଫଟୋକୁ ଲକ୍ଷ୍ୟକଲେ ଦେଖି ପାରିବେ ସତେ ଯେପରି ସେ ଆପଣଙ୍କୁ ହିଁ ଚାହିଁଛନ୍ତି । ଯେଉଁ ଦିଗରୁ ଦେଖନ୍ତୁ, ଯେତେ ଲୋକ ଦେଖନ୍ତୁ, ସେହିପରି ଦେଖାଯାନ୍ତି । ସେ କଟାକ୍ଷ କୃପାର କଟାକ୍ଷ । ସେଥିରେ ଭରି ରହିଛି କରୁଣା । ମା' ଙ୍କର କରୁଣା ହେଉଛି ଅପାର ସମୁଦ୍ର । ତାର ଶେଷ ନାହିଁ, ଅନ୍ତନାହିଁ, ଆଉ ନାହିଁ ତାର କଳନା ।

କିନ ବାହାଘର ମାତ୍ର ପାଞ୍ଚଦିନ ଆଗରୁ ଠିକ୍ ହେଲା । ଠିକ୍ ତା ଆଗରୁ ଗଣିଆ କନେଇଙ୍କ ଶୁଦ୍ଧିଘର ସରିଥାଏ । ମୋ ପାଖରେ ପଇସା ନଥାଏ । ବାହାଘର ଠିକ୍ ହେବାରୁ ଭାଇନାଙ୍କୁ ପଚାରିଲି ଜବାବ୍ ତ ପକ୍କା ହେଲା; ଟଙ୍କା କଥା କ'ଣ । ସେ କହିଲେ ତା ମା'ର ଗହଣା ଟିକ ଆଉ ପାଞ୍ଚହଜାର ଟଙ୍କା ଦେବି । ସେହି ଦିନ ସେ ଅଳଙ୍କାର ସବୁ ନେଇ ତାଙ୍କ ବଂଧୁ ଘରକୁ ବିନ୍ଧାଣିମାକୁ ଯାଇ ରାତିରେ ଫେରି ଆସି କହିଲେ ତା ଘର ପୋଡ଼ି ଯାଇଛି । ସେ କିଛି କରିପାରିବନି । ସାନ ଭାଇ ତା ପର ଦିନ ତା ସାଙ୍ଗ କଟକ ବଣିଆ ସାଇ ଯାଇ ସନ୍ଧ୍ୟାକୁ ଫେରି କହିଲା ତା ଘରୁ ଚୋରି ଯାଇଛି; ସେ କିଛି କରିପାରିବନି । ଆଉ ରହିଲା ୩ ଦିନ । ସେ ଦିନ ଥାଏ ଶନିବାର । ମୁଁ ତାକୁ ଧରି କଟକ ଗଲି । ମୋ ଚିହ୍ନା ଦୋକାନରେ ବଛା ବଛି ଓଜନ ସାରି ଅବଶିଷ୍ଟ ଟଙ୍କା ୩ ଦିନ ପରେ ଦେବାକୁ କହିବାରେ ସେ ରାଜି ହେଲାନି । ଆଉ ଗୋଟେ ଜାଗାରେ ସେଇ ଦଶା ହେଲା । ମୁଁ ସାରସ୍ୱତ ପ୍ରେସ୍ ଯାଇ ଶ୍ରୀ ବିଚିତ୍ରାନନ୍ଦ କରଙ୍କୁ କହିବା ବେଳକୁ ତାଙ୍କ କୋଷାଧକ୍ଷ ତାଲା ଦେଇ ଚାଲିଗଲେଣି ବୋଲି ସେ କହିବାରେ ମୁଁ ହତାଶ ହୋଇ ଆସି ସାରସ୍ୱତ ପ୍ରେସର ବଡ଼ ଦରଜା ପାଖରେ ମୁଣ୍ଡରେ ଦୁଇ ହାତ ଥୋଇ ବିଚାର କରୁଛି; କ'ଣ କରିବି ? ଏତିକି ବେଳେ ମୋର ପୁରୁଣା ପରିଚିତ ବନ୍ଧୁ ତ୍ରୈଲୋକ୍ୟ ମହାନ୍ତି ଖୁବ୍ ବେଗରେ ରିକ୍ସାରେ ଦୋଳମୁଣ୍ଡାଇ ଆଡ଼େ ଗଲାବେଳେ ଡ଼ାକ ମାରିଲେ- "ଏଠି କ'ଣ ଦ୍ୱିବେଦୀ ବାବୁ" । ମୁଁ ଡ଼ାକ ପକାଇଲି ରୁହନ୍ତୁ ରହନ୍ତୁ । ରିକ୍ସା ଅଟକି ଗଲା । ମୋର କିଛି ଟଙ୍କା ଦରକାର କହିବାରୁ ସେ ସେହି ରିକ୍ସାରେ ମୋତେ ବସାଇ ନେଇ ଟଙ୍କା ଦେଲେ । ତାଙ୍କ ସାମନାରେ ବସିଥିବା ବେଳେ ତାଙ୍କ ପଛରେ ଥିବା ଶ୍ରୀମାଙ୍କ ଫଟୋକୁ ଚାହିଁ କୃତଜ୍ଞତାରେ ପେଟ ପୁରିଯାଉଥାଏ । ଯେମିତି ହାତରେ ଟଙ୍କା ପଡ଼ିଛି ଆଖିବୁଜା ଧାଇଁଲି । ସନ୍ଧ୍ୟା ୬ ବା ୭ଟା ହେବ । ଶନିବାର । ୮ଟାରେ ଅଳଙ୍କାର ଦୋକାନ ବନ୍ଦ । ପରଦିନ ରବିବାର ବନ୍ଦ । ସୋମବାର ଆମର ବାହାଘର । ତେଣୁ ଟଙ୍କା ନେଇ ଗହଣା ଟିକ ୮ଟା ପୂର୍ବରୁ କିଣିବା ପାଇଁ ବ୍ୟଗ୍ରତାର ସହ ଧାଇଁ ଯିବା ବେଳେ ୧୦ ଫୁଟ ତଳକୁ ଗଳିପଡ଼ିଲି । ପାଟିରୁ ବାହାରିଗଲା "ହେ ମା" । ଦୌଡ଼ି ଆସିଲେ ମହାନ୍ତିବାବୁ । ଦୋକାନରୁ ରାସ୍ତାଯାଏ ସରୁକାଠ ପୋଲ । ତା ଦୁଇ କଡ଼ରେ ୧୦ ଫୁଟ ଖାଲ । କଣେଇ କରି ଶୀଘ୍ର ପଳାଇବା ବେଳେ ଗଳି ପଡ଼ିଥାଏ । ପାଖରେ କାଠ ଖୁଣ୍ଟି, ପଥର । କେଉଁଠି କିଛି ବାଜିନି । କାଦୁଅରେ ଗାଣ୍ଡିମାଡ଼ି ବସିପଡ଼ିଲା ପରି ପଡ଼ିଗଲି ।

ଟଙ୍କା ମିଳିବା ଓ ୧୦ ଫୁଟ ତଳକୁ ପଡ଼ି ମଧ୍ୟ ଆଘାତପ୍ରାପ୍ତ ନହେବା ବା ପ୍ରାଣ ନଯିବା କେବଳ ଅଲୌକିକତା ବ୍ୟତୀତ ଆଉ କଣ ହୋଇପାରେ ? ହେ ମା' ଡ଼ାକଟି ସେହିଁ କଣ୍ଠରେ ବସି ଡ଼କାଁଇ ଦେଇ ଏଣେ ତାଙ୍କର ଅଭୟ ପଣତକାନିକୁ ଘୋଡ଼ାଇ ଦେଇ ରକ୍ଷା କରିଦେଲେ । ଠିକ ଯେପରି ମା ରକ୍ଷାକରେ ତାର ଅକର୍ତ୍ତବ୍ୟ ଶିଶୁ ପୁତ୍ରକୁ ।

ଗହଣା କିଣାଗଲା । ବାହାଘର ହେଲା । ବାହାଘର ଦିନ ମୋର ଗୋଟେ ପୁତୁରା କଟକ ଆସୁଥାଏ । ତା ହାତରେ ତ୍ରୈଲୋକ୍ୟ ବାବୁଙ୍କ ଟଙ୍କା ପଠାଇଲି । ସେ ନେଇ ତାଙ୍କ ଘରେ ଟଙ୍କା ଦେଲା । ତାଙ୍କ ସ୍ତ୍ରୀ କହିଲେ କ'ଣ ଆଜିପରା ତାଙ୍କର ବାହାଘର । ନେଇଯା ସେ ଟଙ୍କା । ଦୟାକରି ତାଙ୍କୁ ଦେବ । ସେ ପରେ ସୁବିଧା ଦେଖି ଦେବେ । ସତକୁ ସତ ସଂଧ୍ୟାକୁ ସେ ପୁତୁରା ଟଙ୍କା ଆଣି ମୋତେ ଫେରାଇ ଦେଲା । ମୁଁ ବାହାଘରର ସମସ୍ତ ବ୍ୟସ୍ତତା ଭିତରେ ମା'ଙ୍କର କରୁଣା ହାତେ ହାତେ ଅନୁଭବ କରି ବାରମ୍ବାର ଅଭିଭୂତ ହୋଇଯାଉଥାଏ । ସେ ଯାହାକୁ ରଖିବେ ସବୁମନ୍ତେ ରଖିବେ । ସବୁ ଦିଗରୁ ରକ୍ଷା ନକଲେ ସେ କି ରକ୍ଷା । ତାଙ୍କର ବିଶାଳ ରାଜ୍ୟରେ ଅକ୍ଷୟ ଭଣ୍ଡାରରେ କ'ଣ ଅଭାବ ଅଛି ଯେ ସେ ଦୟା କଲା ବେଳେ କାର୍ପଣ୍ୟ ଦେଖାଇବେ ? ଆମେ ଯାହା ମାଗୁଁ ସେ ତାର ବହୁଗୁଣରେ ଦିଅନ୍ତି ଅଯାଚିତ ଭାବେ ।

## ୧୬୦. ମହାଯାତ୍ରାରେ ଆଲୋକ

"ଏ ମନ ଭାବୁଥାଇ ଯାହା- କାଳେ ପ୍ରାପତ ହୁଏ ତାହା" । ଏ ହେଲା ଭାଗବତ ବାଣୀ । ବାସ୍ତବରେ ମନର ଦୃଢ଼ତା ଥିଲେ, ପ୍ରବଳ ଇଚ୍ଛାଶକ୍ତି ଥିଲେ ଓ ବିଶ୍ୱାସ ଥିଲେ ଈଶ୍ୱର ନିର୍ଦ୍ଦୟ ନହୋଇ ମନର ଭାବନାକୁ ପୂରଣ କରିବାକୁ ଅବତରି ଆସନ୍ତି । ଏସବୁ ଗହନ କଥା । ଅନୁଭବୀ ବ୍ୟତୀତ ଏହାକୁ ବୁଝିବା, ମାନିବା, ସ୍ୱିକାର କରିବା, ଏଥିରୁ ରସ ଗ୍ରହଣ କରିବା ଅସମ୍ଭବ ।

ଜେଜେ ମା'ଙ୍କ ମୃତ୍ୟୁ ଠାରୁ ଦେଢ଼ବର୍ଷ ମଧ୍ୟରେ ଆମ ପରିବାରକୁ ସବୁ ଦୁର୍ଦ୍ଦିନ ମାଡ଼ି ଆସିଥିଲା; ବାପା, ଜେଜେ ବାପା ଓ ନାନୀଙ୍କ ମୃତ୍ୟୁରେ ଏବଂ କକେଇ କସ୍ତୁରୀ ଚରଣ ଦ୍ୱିବେଦୀଙ୍କ ଗୃହ ତ୍ୟାଗରେ । ସେ ଥିଲେ ଆମ ପରିବାରର ଆଶା ଭରସା । ପାଠପଢ଼ି, ଚାକିରି କରି ପରିବାର ପୋଷଣ କରିବେ । ଏହି ଆଶାରେ ଜେଜେ ଓ ସମସ୍ତ ପରିବାର ଅପେକ୍ଷାରେ ଥିବା ବେଳେ ସେ ପାଠଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ବାରମ୍ବାର ଗିରଫ ହେବା ଏବଂ ଜେଲ ଯିବାରେ ସେ ଆଶାଟିକକ ମଉଳି ଯାଇଥିଲା । ଜେଜି ମା'ଙ୍କ ମୃତ୍ୟୁପରେ ସେ ଜେଜେ ବାପାଙ୍କ କେଇ ପଦ କଡ଼ା କଥାରେ ଘର ଛାଡ଼ି ଚାଲିଗଲେ । ତାଙ୍କ ସମ୍ବନ୍ଧରେ ଏ ଯୁଗର ଭୀଷ୍ମ ପୁସ୍ତକ ଲେଖାଯାଇ ଓଡ଼ିଶାର ରାଜ୍ୟପାଳ ଯଜ୍ଞଦତ୍ତ ଶର୍ମା ଓ ତାଙ୍କ ପୁତୁରା ହିସାବ, ସମବୟସ୍କ, ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ ଅରୁଣାଚଳର ରାଜ୍ୟପାଳ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ଦ୍ୱାରା ଉନ୍ମୋଚିତ ହୋଇଛି ।

ସେ ସ୍ୱାଧୀନତା ପାଇଁ ପାଠଛାଡ଼ିଥିଲେ, କନ୍ୟାସୁନାର ପ୍ରତିବାଦରେ ଅବିବାହିତ ଥିଲେ, ଜେଜେଙ୍କ କଡ଼ା କଥାରେ ଘର ଛାଡ଼ିଥିଲେ, ସ୍ୱାଧୀନତା ପରେ ଯେଉଁ ଗଞ୍ଜେଇଟଣା ପରି ମନ୍ଦଅଭ୍ୟାସ କରିଥିଲେ ପଦେ କଥାରେ ତାକୁ ତ୍ୟାଗ କରିଥିଲେ ଓ ଆମ ମୁହଁକୁ ଚାହିଁ ତାଙ୍କ ଭାଗ ସମ୍ପତ୍ତିର ମୋହକୁ ତ୍ୟାଗ କରିଥିଲେ । ସେ ଥିଲେ ତ୍ୟାଗର ପ୍ରତିମୂର୍ତ୍ତୀ ଓ ଏ ଯୁଗର ବାସ୍ତବ ଭୀଷ୍ମ ।

ଶେଷ ଜୀବନରେ ସେ କର୍କଟ ରୋଗାଗ୍ରସ୍ତ ହୋଇ ମୋ ପାଖରେ ଥିଲେ । ମୃତ୍ୟୁର ୧ ମାସ ଆଗରୁ ସର୍ତ୍ତ କରିଥିଲେ ଯେ ତୁ ମୋ ସେବା କରିବୁ । ମୃତ୍ୟୁପରେ ସଜ ମଡ଼ାରେ ମୋତେ ନେଇ ପୁରୀ ସ୍ୱର୍ଗଦ୍ୱାରରେ ଦାହ କରିବୁ । ମୁଁ ହଁ କରିଥିଲି । ମୃତ୍ୟୁ ନିକଟ ହେବା ସହ ମୋ ମନରେ ଭୟହେଲା । କାଳେ ସତ୍ୟରକ୍ଷା କରିନପାରିବି ! ଗୋପିଆ ନନାଙ୍କୁ (ଗୋପୀନାଥ ନନ୍ଦ)କହିଲି । ସେ କକେଇଙ୍କ ମାମୁଁ ପୁଅ ଭାଇଙ୍କ ପୁଅ । ତାଙ୍କ ଉପରେ କକେଇଙ୍କର ବିଶ୍ୱାସ ଥାଏ । ଗୋପିଆ ନନା ତାଙ୍କୁ ବୁଝାଇଲେ ଯେ ତୁମେ ରାଜିହେଲେ ପୁରୀ ଡ଼ାକ୍ତରଖାନାରେ ରହନ୍ତ ଓ ମୃତ୍ୟୁ ପରେ ସହଜରେ ସ୍ୱର୍ଗଦ୍ୱାରରେ ସତ୍କାର ସମ୍ଭବ ହୁଅନ୍ତା । ରାତି ବିକାଳି ଗାଡ଼ି ଫାଡ଼ି ମିଳିବା ନ ମିଳିବାର ଆଶଙ୍କା ଦୂର ହୁଅନ୍ତା । କକେଇ ତାଙ୍କୁ ଗାଳିଦେଇ କହିଲେ ମୁଁ ପର୍ଶୁକୁ କହିଛି; ସେ ମୋର ସେବା କରିବ ଓ ସଜମଡ଼ାରେ ନେଇ ସ୍ୱର୍ଗଦ୍ୱାରରେ ସତ୍କାର କରିବ । ତୁ କାହିଁକି ମୋତେ ଭୁଲାଉଛୁ ।



(ସ୍ୱାଧୀନତା ସଂଗ୍ରାମୀ - ଏ ଯୁଗର ଭୀଷ୍ମ
କକେଇ ଶ୍ରୀ କସ୍ତୁରୀ ଚରଣ ଦ୍ୱିବେଦୀ)

ଦିନେ ସେ ଗାଁକୁ ଯାଇ ଥିବାବେଳେ ପରିଶ୍ରାରେ ସାମାନ୍ୟ ରକ୍ତ ଦେଖାଦେବାରୁ ଡା. ରମାନାଥ ମିଶ୍ର (ଡ଼ା. ବ୍ରଜନାଥଙ୍କର ପୁଅ) ଯେକି ସେତେ ବେଳେ କର୍କଟ ରୋଗର କଟକ ବଡ଼ ଡ଼ାକ୍ତରଖାନାରେ ଥିଲେ, ପରୀକ୍ଷା କରି ରୋଗ ନିର୍ଣ୍ଣୟ କରି, ଡ଼ାକ୍ତରଖାନାରେ ରଖି ରଞ୍ଜନରଶ୍ମୀ ଚିକିତ୍ସା କଲେ । ମୁଁ ଜଗି ରହିଲି । କିଛି ଫଳ ହେଲାନି । ମୋର ଶିକ୍ଷକ

ସ୍ୱର୍ଗୀୟ ଚନ୍ଦ୍ରମଣି ନାୟକଙ୍କ ପତ୍ନୀ ଡ଼ାକ୍ତର ନଳିନୀପ୍ରଭା ନାୟକଙ୍କ ପରାମର୍ଶରେ ଘରେ ଆଣି ରଖି ସେବା କରୁଥାଏ । ଡ଼ାକ୍ତରଖାନାରେ ଥିବା ବେଳେ ମହାତ୍ମାଙ୍କ ବାଣୀରେ ଉଦ୍‌ବୁଦ୍ଧ ହୋଇ କର୍କଟ ୱାର୍ଡ଼ର ବାରଣ୍ଡାରେ ଜମିଥିବା ଝାଡ଼ା, ପରିସ୍ରା ଓ ଆବର୍ଜନା ସଫା ନିଜେ ପ୍ରତିଦିନ କରୁଥିଲେ । ସ୍ୱାସ୍ଥ୍ୟ ମନ୍ତ୍ରୀ ଥିବା ପ୍ରଫୁଲ୍ଲ ଘଡ଼େଇଙ୍କୁ ଚିଠି ଲେଖିବାରୁ ସେ ପରିଦର୍ଶନ କରି ନିୟମିତ ସଫାଇର ବନ୍ଦୋବସ୍ତ କରିଥିଲେ ।

ପ୍ରତିଦିନ ମୁଁ ଅଫିସ୍ ଯିବା ପୂର୍ବରୁ ମଳମୂତ୍ର ସଫାକରି ତାଙ୍କୁ ସାବୁନ୍ ଲଗାଇ ଗାଧୋଇ ଦେଇ ସଫା ଖଦଡ଼ ପିନ୍ଧାଇ ଖାଦ୍ୟ ଖୁଆଇ ଦେଇଥାଏ । ସେ ମୋ ଫେରିବା ବାଟକୁ ଚାହିଁଥାନ୍ତି । ଗାଡ଼ି ଓ ଯୋତା ଶବ୍ଦ ଶୁଣିଲେ, "ମୋ ବାପା ଆସିଲାଣି- ତାକୁ ଡ଼ାକ" ବୋଲି କହନ୍ତି । ପୁଣି ତାଙ୍କୁ ସଫା କରାଇ ଖାଦ୍ୟ ଦେଇ ମୁଁ ସନ୍ଧ୍ୟାରେ ଜଳଖିଆ କରେ । ସେ ସେବାରେ ମୋ ପ୍ରତି ସନ୍ତୁଷ୍ଟ ଥିଲେ ଓ ପୁଣି ଡ଼ାକ୍ତରଖାନା ଯାଇ ଅପରିଷ୍କାର ନର୍କରେ ରହିବାକୁ ପସନ୍ଦ କରୁନଥିଲେ ।

ଆମରି ଘରେ ଥାଇ ତାଙ୍କର ମୃତ୍ୟୁ ହେଲା । ମୁଁ ଟେମାଣ୍ଡୋରେ ଖବର ପାଇ ମଧ୍ୟ ସରକାରୀ କାମରେ ଖୋର୍ଦ୍ଧାଯାଇ ଫେରି ଆସିଲି । ମୋ ପାଖରେ ଥିବା ଗାଡ଼ିର ଡ୍ରାଇଭର ମୁନା ଖାଁ ତେଲ ପକାଇ ଗାଡ଼ି ଚେକ କରି ଆସିବାକୁ କହି ଆଉ ଆସିଲାନି । ତତ୍କାଳୀନ ଅଧ୍ୟକ୍ଷ ଏସ୍ ଏଲ୍ ଚାଟାର୍ଜୀ ଆମ ସେକ୍ରେଟାରୀ ଦେବେନ୍ଦ୍ର ନନ୍ଦଙ୍କ ହାତରେ ଟଙ୍କା ଓ ଗାଡ଼ିଟିଏ ପଠାଇଲେ । ସନ୍ଧ୍ୟାରେ ଆମେ ଶବ ନେଇ ବାହାରିଲୁ ତାଙ୍କରି ଶେଷ ଇଚ୍ଛା ରକ୍ଷାକରିବାକୁ । ସାମନ୍ତରାପୁର, ପାଖରେ ଗାଡ଼ିର କିଛି ଲାଇଟ ନଜଳିବାରୁ ତାକୁ ଫେରାଇ ମରାମତି କରିନେଲୁ । ପିପିଲି ପାଖାପାଖି ପୁଣି ସେହି ଦଶା । ଗାଡ଼ି ଫେରାଇବାକୁ ମୁଁ କହିବାରେ ଡ୍ରାଇଭର ରାଜି ନହୋଇ ଧୀରେ ଧୀରେ ଗଲା । ପଛ ଗାଡ଼ି ସବୁର ଆଲୁଅରେ ଯାଉଥାଏ । ହେଲେ ଆମ ଧୀରତା ଯୋଗୁଁ ସେ ସବୁ ଗାଡ଼ି ଆଗେଇଯାଏ । ଏତିକି ବେଳେ ଲାଗିଗଲା ଜଗନ୍ନାଥଙ୍କ ଡ଼ୋରି । ଅଜ୍ଞାତ ଗୋଟିଏ ସଂପୂର୍ଣ୍ଣ ନୂଆ ଜିପ୍ ସଫା ଆଲୁଅ ପକାଇ ଆମ ପଛରୁ ଆସି ଧୀରେ ଧୀରେ କିଛିବାଟ ଯିବା ପରେ ମୁଁ ଓହ୍ଲାଇ ଆମ ଅସୁବିଧା କହିବାରେ ସେ କହିଲେ ଆମକୁ ସେ କଥା ଜଣା । ଆପଣ ଆରାମରେ ଗାଡ଼ି ଚଳାନ୍ତୁ ।

ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ବଡ଼ଦାଣ୍ଡର ଉଜ୍ଜ୍ୱଳ ଆଲୋକରେ ଆମ ଗାଡ଼ି ଚାଲିଲାବେଳେ ଆମେ ଗାଡ଼ି ଅଟକାଇ ଧନ୍ୟବାଦ ଦେବାକୁ ଚାହିଁବା ବେଳକୁ ଆମ ପଛରେ ସେ ଗାଡ଼ି ଆଉ ନଥିଲା । ଜଗନ୍ନାଥ ମନ୍ଦିର ଆଗ ଦେଇ ପତିତପାବନଙ୍କଦର୍ଶନ ପରେ ସ୍ୱର୍ଗଦ୍ୱାରରେ ନେଇ ଶବ ସତ୍କାର କରିବା ସହ ଆମ ବଡ଼ପଣିଆର ମଧ୍ୟ ସତ୍କାର କରିଦେଲୁ । ବାସ୍ତବରେ ସେହି ଜଗନ୍ନାଥ ହିଁ ବଡ଼ ଲୋକ । ଆମ, ସତ୍ୟ ସର୍ତ, ତାଙ୍କ ଇଚ୍ଛା ଓ ଦୃଢ଼ତାକୁ ସେ ହିଁ ପ୍ରତିପାଦିତ କଲେ ବା ରକ୍ଷା କଲେ । ଏବେ ବି ସେ ଅଲୌକିକ ଘଟଣା ହୃଦୟରେ ଜାଗ୍ରତ ହେଲେ ଯୁଗପତ୍ ବିସ୍ମୟରେ ମନ ଭରିଯାଏ ।

# ୧୬୧. କଇ ମାଉସୀ

ଏ ସଂସାରରେ କୌଣସି ଜିନିଷ, ଜୀବ, ବୃକ୍ଷଲତା, ପଶୁପକ୍ଷୀ ବା ଆବର୍ଜନା, କୀଟପତଙ୍ଗ ବା କୌଣସି ମଣିଷ ଅଲୋଡ଼ା ନୁହଁନ୍ତି । କେଉଁ ସମୟରେ କିଏ କିପରି କାହାର ସହାୟତା କେଉଁ ବାଟରେ ହୁଏ ତାହାର ଜ୍ଞାନ ଆମର ନଥିବାରୁ ଆମେ ଏଇଟା ଅଲୋଡ଼ା, ସେଇଟା ଭାରୀ ଉପକାରୀ ବୋଲି କହିଥାଉ । ସାପର ବିଷ ଔଷଧ ହୁଏ ଓ ପ୍ରାଣ ରକ୍ଷା କରେ । ତେଣୁ ଅଲୋଡ଼ା ବୋଲି କିଛି ନାହିଁ। ବରଂ ଅପକାରୀ କହି ଆମେ ବହୁ ଜୀବଙ୍କୁ ଅଲୋଡ଼ା କହୁ ଓ ଜିନିଷକୁ ବିନାଶ ବା ଉପେକ୍ଷା କରିଥାଉ । ଏହା ଆମର ଅଜ୍ଞତା ଛଡ଼ା କିଛି ନୁହେଁ ।

ଜେଜେ ଦୀନବନ୍ଧୁ ଦ୍ୱିବେଦୀଙ୍କର ୧୧ ପୁଅରୁ ପିଲାଦିନରୁ ମରି ମରି ରହିଥିଲେ ୩ ଜଣ। ଜଣେ ସନ୍ୟାସୀ ହୋଇ ଓ ଆଉ ଜଣେ ସ୍ୱାଧୀନତା ସଂଗ୍ରାମୀ ହୋଇ ଗୃହତ୍ୟାଗୀ ହେବା ପରେ ଚୀର ଶ୍ୱାସରୋଗୀ ଧଇଁଆ ଅନାମ ଦ୍ୱିବେଦୀ ଏକମାତ୍ର ଥିଲେ; ଯେକି ବଂଶ ରକ୍ଷା କଲେ । ସେହିପରି ଗୋଟିଏ ମାତ୍ର ଝିଅ ଉଦିଆ ବାଲ୍ୟ ବିଧବା ହୋଇ ଆମ ପରିବାର ଉପରେ ବୋଝ ହୋଇଗଲା। ବାପା ତା ପାଇଁ ଲଢ଼ି ଲଢ଼ି ଅଳ୍ପ କିଛି ଜମି ତା ନାଁରେ ଜୀବନ ସତ୍ତ୍ୱ କରାଇ ଦେବା ପରେ ସେ ବାର୍ଦ୍ଧକ୍ୟର ଠିକ୍ ପୂର୍ବରୁ ଆମ ଘର ଛାଡ଼ି ତା ଶଶୁର ଘର ଡ଼ିଅକୁ ଚମ୍ପତିପାଟଣା ଚାଲିଯାଇଥାଏ। ବହୁତ ଦୁଃଖ କଷ୍ଟରେ ଚଳେ । ସେ ବହୁତ କଥା କହେ ବୋଲି ତାକୁ କହନ୍ତି "କଇ ମାଉସୀ" । ଏକୁଟିଆ ରହି ରହି ଆଶ୍ରା କରିଥାଏ ବିରାଡ଼ିଟିଏ । ତା ନା ବୁଧୁନି । ଆମ ଘରକୁ ଅକାଳେ ବିକାଳେ ଆସିଲେ ବୁଧୁନିକୁ କାଖେଇ ଆଣିଥାଏ । ତା ପାଇଁ କ୍ଷୀର ଲାଗୁଆ ଓ ଶୁଖୁଆ ଥାଏ ଶିକାରେ। ଏକାକୀ ଜୀବନରେ ମଣିଷଟି ଗାଈ, ବିରାଡ଼ି, କୁକୁର, ଗଛ କିମ୍ବା ଠାକୁରଙ୍କ ଆଶ୍ରା କେଉଁ ଦୂର୍ବଳ ମୁହୂର୍ତ୍ତରେ କରିବସେ ତାକୁ ଜଣାନଥାଏ ।

ଯୋଗକୁ ମୁଁ ସାଲେପୁରରେ ପଢ଼ିବା ବେଳକୁ କେତେମାସ ତା ଘରେ ରହିବାକୁ ପଡ଼ିଥିଲା। ସେ ମତେ ଭାରି ଭଲ ପାଏ । ସକାଳୁ ଘଡ଼ିଟିରେ ଭାତ ବସାଇ ତା ସାଥିରେ ଆଳୁଟିଏ ସିଝାଇ ଦେଇଥାଏ । ଆଙ୍ଗୁଠିରେ ଘିଅଟିକେ ଛାଟିଦିଏ । ମୁଁ ଖୁବ୍ ତରତରରେ ଖାଇ ସ୍କୁଲକୁ ଚାଲେ ତିନି ମାଇଲି । ରାତିରେ ଫେରି ବଜୁଆନାଙ୍କ ଘରେ ପାଠପଢ଼ା ହୁଏ । ତାଙ୍କ ବଡଭାଇ ଉପିଆନା ଶିକ୍ଷକ ଥିଲେ । ଭାରି ଶୃଙ୍ଖଳା ଓ ବଜୁଆନାଙ୍କ ସ୍ତ୍ରୀ ଭାରି ସ୍ନେହୀ । ଲକ୍ଷ୍ମୀଙ୍କ ପରି ସଫା ସୁତୁରା, ସଜାସଜି, ପୂଜା ଉଜାରେ ତାଙ୍କର ଭାରି ଆଗ୍ରହ । ମୋ ଶୃଙ୍ଖଳା ତାଙ୍କ ପିଲାଙ୍କ ପାଇଁ ଉଦାହରଣ ଥାଏ ।

ପାଠପଢ଼ି ଚାକିରୀ କରିବା ପରେ ପ୍ରତିମାସରେ ସେହି ଉଦିଆ ନାନୀ ଘରକୁ ଯାଏ। ତାରି ଅନୁରୋଧରେ ମୁଣ୍ଡକୁ ଖରା ଦାଉରୁ ରଖିବାକୁ ସାହାବି ଟୋପିଟିଏ ଦେଇ ସାଇକେଲରେ ତା ଘରେ ପହଞ୍ଚିଗଲେ ତାର କୋଟିନିଧି । ତା ଘରେ ସବୁଦିନେ ଥାଏ ଚକୁଳି ଆଣ ଓ କ୍ଷୀର, ଦହି, ଘିଅ । ସେ ଖୁବ୍ ଆନନ୍ଦରେ ପାଖରେ ବସାଇ ଖୁଆଏ । ଦୋକାନବାକୀ, କ୍ଷୀରବାଲା ସବୁର ହିସାବ ଦିଏ । ମୁଁ ତାକୁ ଦୁଇଟଙ୍କା, ପାଞ୍ଚଟଙ୍କା ବା କେତେବେଳେ ଖୁବ୍ ବେଶୀରେ ୧୦ ଟଙ୍କା ଦେଲେ ତା ଖୁସିର ସୀମା ନଥାଏ । କେବେ ଯାଇ ନପାରିଲେ ଦୂରରେ ଥିଲେ ମନିଅର୍ଡ଼ର

କରିଦିଏ । ତା ଦେହ ଖରାପ ହେଲେ ପାଖ ଗାଁ କାଶୀପୁରର ମୋ ମଳାସୁର ସଦା ମାମୁଁଙ୍କ ପାଖକୁ ରିକ୍ସାରେ ବା ଚାଲିକରି ଯାଇ ଔଷଧ ଆଣିଥାଏ । ସେ ମୋ ପାଇଁ ବୋଝ ନଥିଲା । ବରଂ ସେ ବୋଧେ ଅଲୌକିକ ଭାବେ ଏତେ ଦୁଃଖ କଷ୍ଟରେ ବଞ୍ଚି ରହିଥିଲା ମୋ ପାଠପଢ଼ାରେ ସେତିକ ସହାୟତା ଯୋଗାଇବାକୁ ଓ ସ୍ନେହଶ୍ରଦ୍ଧା ଢାଳିଦେଇ ମୋର ଦରିଦ୍ର କର୍ମ ଓ କଠୋର ଜୀବନକୁ ସରସ କରି ଦେବାକୁ

କେଉଁଠି ଦୂର ଚାକିରୀରେ ଥିବା ଯୋଗୁଁ ତା ମୃତ୍ୟୁବେଳେ ଓ ଦାହକାର୍ଯ୍ୟରେ ଯୋଗଦେଇ ପାରି ନଥିଲି । ମାତ୍ର ତା'ର ଏକାଦଶ ଓ ଦ୍ୱାଦଶାହ ଦିନ ମହାପ୍ରସାଦ ନେଇ ତା ଘର ଠାରେ ବ୍ରାହ୍ମଣ ଭୋଜନ ଦେଇଥିଲି । ତା ପ୍ରତି ମୋ ଦରଦ ଦେଖି "ଚଇଁଥନା" ତା ପୁତୁରା ଯେକି ଏକୁଟିଆ ଥିଲା ସେ ବି ମୋତେ ଆଶ୍ରା କରିବାକୁ ଆରମ୍ଭ କରିଦେଇଥିଲା । ସେ ଗରିବ ନଥିଲା । ଏକଦମ୍ କୃପଣ । ଔଷଧ ନଦେଇ ପ୍ରଥମ ସ୍ତ୍ରୀ ହରାଇଥିଲା ସେ । ଦ୍ୱିତୀୟ ସ୍ତ୍ରୀ କାର୍ପଣ୍ୟର ପ୍ରଭାବରେ ତାକୁ ଛାଡ଼ିପଳାଇ ଯାଇଥିଲା । ଲୁଗା ତାର ଧୁଆ ହୁଏନି । କ୍ଷୀର ଦୁହେଁ ବିକେ ଓ ଖାଏ ଛେନା ପାଣି । ଗୋଟିଏ ଘଡ଼ିରେ ଚାଉଳ ଡ଼ାଲି ଓ ଆଳୁ ସିଝାଇ କାମ ଚଳାଇ ଦିଏ । ସେ ତା ସମ୍ପତ୍ତି ମୋତେ ଦେବାକୁ ଚାହୁଁଥିଲା । ମାତ୍ର ମୁଁ ତାର ପଠାଇଥିବା ଖବର ଖୁବ୍ ବିଳମ୍ବରେ ପାଇ ପହଞ୍ଚିଲା ବେଳକୁ ଶବସତ୍କାର ସରିଥିଲା । ମୋର କିଛି ବାକୀଥିଲା । ମହାପ୍ରସାଦ ନେଇତାର ସୁଧିକ୍ରିୟାରେ ଭାଇଆ ଓ ଗାଁ ବାଲାଙ୍କୁ ଖୁଆଇ ତାଙ୍କ ଆଶାରୁ ମୁକ୍ତହେଲି ଆଉ ସେ କୃପଣଧନ ସମ୍ପତ୍ତି ମୋତେ ନମିଳିବା ଈଶ୍ୱରଙ୍କର ଗୋଟିଏ ଆଶୀର୍ବାଦ ମଧ । ତାକୁ ନେଇଥିବା ଲୋକ ଭୋଗ କରିପାରିନଥିଲା । ବାପ ପୁଅ ଲଢେଇ କରି ଭିନେ ହୋଇ ପୁଅ ଆଗ ଓ ବାପପରେ ଗୃହତ୍ୟାଗୀ ହୋଇ ବାହାରେ ମଲା । "ଦୁଃଖେ ସଞ୍ଚିତ ଯେତେଧନ ସୁଖରେ ନୁହେଁ ପ୍ରୟୋଜନ" । ଏତେ ଦୁଃଖରେ ସଞ୍ଚୟ କରି ରଖିଥିବା ପଇସା, ଲକ୍ଷ୍ମୀନାରାୟଣଙ୍କ ପୂଜକ ଅନୁପସ୍ଥିରେ ତା ସ୍ଥାନରେ କାମକରି ଅର୍ଜିଥିବା ପଇସା, ଫସଲ ବିକ୍ରୟ ପଇସା, ଦୁଧଦହି, ଘିଅ, ଛେନା ବିକ୍ରୀ ପଇସା ସବୁ ଅଲଗା ଅଲଗା ବଣା ବା ମାଠିଆରେ ରଖାଯାଇ ତା ମୁହଁରେ ମାଟି ଲେସା ନଡ଼ିଆ ଷଢେଇ ଲଗାଯାଇଥିଲା । ନିଜେ ଭଲରେ ଦିନେ ରୋଗ ବେମାରରେ ଔଷଧ କିଣି ଖାଇ ନଥିଲା । ହେଲେ ମୃତ୍ୟୁଶଯ୍ୟାରେ ଦୁଃଖ ଦୂର କରିବାକୁ ତାଙ୍କ ପାଇଁ କିଣାଯାଇଥିବା ନିଶା ଔଷଧର ଅତିରିକ୍ତ ପ୍ରୟୋଗରେ ତାଙ୍କର ପ୍ରାଣ ଗଲା । ଯେ ଏପରି କରି ପାଞ୍ଚ ବଣା କଷ୍ଟୋପାର୍ଜିତ ପଇସା ରଖିଥିଲେ ସେ କେମିତି ତାକୁ ସୁଖରେ ଭୋଗ କରିପାରନ୍ତେ ? ଈଶ୍ୱର ମୋତେ ଦୟାକରି ସେ ଧନରୁ; ମୋ ମନ ଟିକେଟିକେ ଥିଲେମଧ; ରକ୍ଷା କରିଥିଲେ ।

## ୧୬୨. ଶଳା ପ୍ରସଙ୍ଗ

ଫକୀର ମୋହନଙ୍କ ଲେଖାରୁ ଓ ଅନ୍ୟ ଅନେକ ସ୍ଥାନରେ ଶଳାମାନଙ୍କ ପ୍ରାଦୁର୍ଭାବ ସମସ୍ତେ ପଢ଼ିଛନ୍ତି ଏବଂ ନପଢ଼ିଲା ଲୋକେ ନିଜ ଅନୁଭୂତିରେ ଜାଣିଛନ୍ତି । ଯେ ହେଉଛି ମୋହବତ୍ରୁ ଗର୍ଭଧାରଣ କରିବା ପ୍ରସଙ୍ଗ । ନିଜର ଅବସ୍ଥା ଯେତେ ଖରାପଥିଲେ ମଧଘରେ ଶଳାବନ୍ଧୁ ପହଞ୍ଚଗଲେ ବା ଥିଲେ ହାତଉଧାର କରି ବା ଦୋକାନବାକୀ କରି ଟିକେ କ'ଣ ଭଲମନ୍ଦ ତାଙ୍କ ପାଇଁ କରି ପରଷିବାକୁ ହୁଏ । ଭାଗବତକାର ଜଗନ୍ନାଥ ଦାସ ମଧ ଦ୍ୱାଦଶ

ସ୍ବପ୍ନରେ ଭବିଷ୍ୟ ବାଣୀ ଶୁଣାଇ କଳିଯୁଗରେ ବଂଧୁମାନଙ୍କ ମଧ୍ୟରେ ଶଳାକୁ ଉଚ୍ଚସ୍ଥାନଦେଇ ଲୋକେ ନିଜର ବୃଦ୍ଧ ବାପ ମାଙ୍କୁ ମଧ୍ୟ ଅବହେଳା କରିବେ ବୋଲି ଦର୍ଶାଇଛନ୍ତି । ଏକଥାଟି ଯୁଗେ ଯୁଗେ ଓ ଅକ୍ଷରେ ଅକ୍ଷରେ ସତ୍ୟ ।

ମୋ ଶଶୁର ପ୍ରଥମ ସ୍ତ୍ରୀଙ୍କ ମୃତ୍ୟୁପରେ ୨ୟ ଦାର ଗ୍ରହଣ କରିଥିଲେ । ୧ମ ପତ୍ନୀଙ୍କର ଗୋଟିଏ ପୁଅ ବସନ୍ତ । ସେ କେତେଦିନ କଲିକତା ଚାକିରୀପରେ ଆମ ଷ୍ଟେଟ୍ ଟ୍ରାନ୍ସ ପୋର୍ଟରେ ସହକାରୀ ଷ୍ଟେସନ ମାଷ୍ଟର ଥିଲେ । ଅବସର ନେବାପରେ ସଂସାର ଛାଡ଼ିଛନ୍ତି । ସେ ଥିଲେ ସ୍ନେହୀ,ପରିମାର୍ଜିତ ଓ ଠାକୁର ରାମକୃଷ୍ଣଙ୍କ ଭକ୍ତ ।

ଦ୍ୱିତୀୟ ପତ୍ନୀ ଅର୍ଥାତ ମୋ ଶାଶୁଙ୍କର ୩ ପୁଅ ଓ ଗୋଟିଏ ଝିଅ । ମୋ ସ୍ତ୍ରୀ-ଅନ୍ନପୂର୍ଣ୍ଣା ଉପରେ ଆଉ ଗୋଟିଏ ଝିଅ ଟାଇଫଏଡ୍‌ରେ ନଷ୍ଟ ହୋଇଯାଇଥିବାରୁ ଏଝିଅକୁ ସେ ଖୁବ୍ ଶ୍ରଦ୍ଧା କରୁଥିଲେ । ବଡ଼ ଶଳା ମାଟ୍ରିକ୍ ପାଶ୍ ପରେ ତାଙ୍କ ମଉସା ଡଃ ବଂଶୀଧର ସାମନ୍ତରାୟଙ୍କ ସୁପାରିସରେ ଉତ୍କଳ ବିଶ୍ୱବିଦ୍ୟାଳୟରେ କିରାନିଭାବେ ଚାକିରି ଆରମ୍ଭକରି ଅଫିସର ଭାବେ ଅବସର ପ୍ରାପ୍ତ । ମୋ ସ୍ତ୍ରୀ ତଳକୁ ମଝିଆ ଶଳା ମଧ୍ୟ ତଦ୍ରୂପ ସେହି ବିଶ୍ୱବିଦ୍ୟାଳୟରେ । ଆଉ ସାନଶଳା ବହୁ କଷ୍ଟେ ତିନିଥରରେ ବିଏ ପାଶ୍ କରିଥିଲା । ପ୍ରଥମେ ତା ବଡ଼ ଭାଇ ନିଜଲାଭ ପାଇଁ ତା ନାମରେ ଗୋଟେ ହୋଟେଲ ଖୋଲି ଫେଲ୍ ମାରିଲେ । ୨ୟରେ ମୋଠାରୁ କିଛି ଧାର ଓ ଆଉ କେଉଁଠୁ ସଂଗ୍ରହ କରି ତା ନାଁରେ ଗୋଟେ ପୁରୁଣାଟ୍ରକ କିଣି ସେଥିରେ ମଧ୍ୟଫେଲ୍ ମାରିଲେ । ସେହିଟଙ୍କା ଆମ ଘର କାମ ପାଇଁ ମୋ ସ୍ତ୍ରୀ ସାନ ଶଳାର ପ୍ରରୋଚନାରେ ବାରମ୍ବାର ମାଗି ତାଙ୍କ ସହ ବନ୍ଧୁ କାଟଯାଏ ଗଲା । ଅବଶ୍ୟ ବହୁ ବିଳମ୍ବରେ ସେ ଟଙ୍କା ସେ ସୁଝିଲେ । ତାଙ୍କ ସହ ମୋର ଭଲ ସଂପର୍କ ଥିଲା । ସେ ହିଁ ମୋର ଓ ତାଙ୍କ ଭଉଣୀର ବିଭାଘରରେ ସବୁ ପ୍ରକାର ସହାୟତା ଶ୍ୱଶୁରଙ୍କୁ କରିଥିଲେ । ତାଙ୍କରି ଘରେ ଉତ୍କଳ ବିଶ୍ୱବିଦ୍ୟାଳୟ ପରିସରରେ ମୋର ବଡ ଓ ୧ମ ଝିଅ ଜନ୍ମ ହୋଇଥିଲା । ମୁଁ ମଧ୍ୟ ଏମ. ଏ. ପରୀକ୍ଷାବେଳେ ତାଙ୍କରିଘରେ ରହି ପଢି ପରୀକ୍ଷା ଦେଇଥିଲି । ଉଭୟେ ପରିବାର ନିୟନ୍ତ୍ରଣ ଯୋଜନାରେ ଏକାଠି ଅପରେସନ୍ ହୋଇ ତାଙ୍କ ଘରେ ବିଶ୍ରାମ ନେଇଥିଲୁଁ । ଏତେସବୁ ସ୍ନେହ ସହଯୋଗ କଥା ସେ ସାନ ଶଳାର ପ୍ରରୋଚନାରେ ଟଙ୍କା ମାଗିବାରେ ଫସର ଫାଟିବନ୍ଧୁ କାଟରେ ପରିଣତ ହେଲା । ମଝିଆଁ ଶଳା ଆମଠୁଁ ସାନଭାବେ ଭଉଣୀର ନିକଟତମଥିଲା । ବଡଭାଇ କଟିଗଲେ ମଧ୍ୟ ସାନ ସହ ସେ ଥିବାରୁ ତା ଝିଅ ବାହାଘରରେ ମୋଶକ୍ତି ବାହାରେ ମୁଁ ତାକୁ ସହଯୋଗ କରିଥିଲି । ସେ ମଧ୍ୟ ଆମର ନ୍ୟାୟ ନିମିତ୍ୟରେ ଅଣ୍ଡାଭିତି ମୂଳରୁ ଶେଷଯାଏ ଖଟିଥାଏ । ଏଇ ସାନଶଳା ଆମଠାରୁ ଦୂରେଇଯାଇ ତାକୁମଧ୍ୟ ଆମ ସ୍ନେହର ପରିଧିରୁ କାଢିନେଲା ।

ତେଣୁ ସେ ସାନଶଳାକଥା କହିବା ଦରକାର । ସେହିଁ ମୋତେ ବିବାହ ରାତ୍ରିର ପାହାନ୍ତାରେ ଖବର ଦେଇଥିଲା ଯେ ମୋ ସ୍ତ୍ରୀ ୩ୟ ଯାଏ ପଢିଛି । ସେ ତିନି ଥରରେ ବିଏ ପାଶ୍‌ପରେ ଆମ୍ଭର ପଣ୍ଡା ସ୍ୱରୂପ ଗାଁର ଜଣେ ଠିକାଦାର ସହ ମିଶି ମାଟିକାମ କଲା ମୋ ବାରଣ ସତ୍ତ୍ୱେ । ସେଥିରେ ତାର ମୂଳ ଓ ମୋଠାରୁ ନେଇଥିବା ଧାର ବୁଡିଲା । ଦ୍ୱିତୀୟରେ ବ୍ୟାଙ୍କ୍ ଋଣ ଆଣି ଉନ୍ନତ ଚାଷ କରିବାରେ ମଧ୍ୟ ଫେଲ ମାରିଲା । ସେଥିରେ ମଧ୍ୟ ମୋର

ଅଳ୍ପ କିଛି ଧନ ଶ୍ରାଦ୍ଧହେଲା । ଶାଘ ଚେଷ୍ଟା ସ୍ୱରୂପ ଆରମ୍ଭ ହେଲା ଚାକିରି ସନ୍ଧାନ । ୧୯୭୨ରୁ ୧୯୮୧ଯାଏ ନଅ ବର୍ଷକାଳ ସେ ଗୋଟିଏ ଗ୍ରହପରି ମୋ ଗଣ୍ଡିରେ ଦୌଡିଲା । ମୋ ପିଲାଙ୍କ ଦାନାରୁ ସେ ଥାଏ ଭାଗିଦାର । ନିଲଠା ମୁହଁକରି ଗରମ ଗରମ ଭାତ ସାଙ୍ଗରେ ଘିଅ ନଦେଲେ ନହେଲେ ତା ହାତ ଉଠେନି । କେଉଁଝରର ମୃତ୍ତିକା ସଂରକ୍ଷଣ ବିଭାଗରେ ସାକ୍ଷାତ କାରରେ ମୋ ଶଳାବୋଲି ସ୍ୱୀକାରୋକ୍ତି ଦେଇ ମିଳିଥିବା ଚାକିରି ଦୂରସ୍ଥାନ ବୋଲି ତ୍ୟାଗକଲା । ବାଲି ଗୁଡାରେ ସମବାୟ ବିଭାଗର ଚାକିରି ଭିଡକାମ ବୋଲି ମୋର ନାମ କହି ପଶିଲା ଓ ମୋରି ନାଁ କହିଛାଡିଲା । ମୁଁ ବାଂଶପାଳ ଛାଡି ମାଲକାନଗିରି ଯିବାବେଳେ ପିଲାଏ ମୁଣ୍ଡ ଗୁଞ୍ଜିବାକୁ ଦିବଖରା ଘର ପାଇଁ ତାକୁ ଦେଇଥିବା ଟଙ୍କାର ହିସାବ ଆର ଜନ୍ମରେ ମିଳିବ । ଆମେ ଆସି ପାଣିକାଦୂଅରେ ଦୁଇମାସ ରହି ଘର କାମ ଶେଷ କଲୁ । ଏ ନଅ ବର୍ଷରେ ସେ ସବୁବେଳେ ମୋର ପିଛା ଧରିଥାଏ । ତା ଶଶୁର ଓ ମୋ ଶଶୁର ମଧ୍ୟ ମୋତେ ବାରମ୍ବାର ତାରି କଥା କହନ୍ତି । ଶେଷରେ ହରିଜନ ଉନ୍ନୟନ ସମବାୟ ନିଗମରେ ଚାକିରି ପାଇ ମଧ୍ୟ ଆଉ ତିନିବର୍ଷ ଆମମଠ ଛାଡି ନଥିଲା । ସେ ଆମ ମଠ ଛାଡିବା ପରେ ତା ଝିଅ ବାହାଘରକୁ ମଝିଆ ଭାଇ ଝିଅ ବାହାଘରରେ ମୁଁ କରିଥିବା ସହାୟତା ସହ ମୋ ଜ୍ୱାଇଁ, ବଡ ପୁଅ, ସାନଜ୍ୱାଇଁ ଓ ଭାଇଠାରୁ ତଦ୍ରୂପ ସାହାଯ୍ୟ ମାଗି ଫେଲ୍ ମାରିବାରୁ ଏକାକି ମୋର ସହାୟତା ଯଥେଷ୍ଟ ନୁହେଁ ଆଳରେ ମୋଠାରୁ ବନ୍ଧୁ ବେଭାର ନେଲାନି । ତଥାପି ବେହିଆ ମୁହଁରେ ମୁଁ ମୋ ସ୍ୱୀ, ଝିଅ, ପୁଅ ବାହାରେ ବସିରହି ତା ଝିଅକୁ ବିଦାକରି ରାତିପାହାନ୍ତାରେ ଘରକୁ ଫେରିଲୁ । ସେହିଦିନୁ ତା ସହ ସବୁ ସମ୍ପର୍କ ମଧ୍ୟ ତୁଟିଥିଲା । ସେ ଶକୁନି ବା ଛାର ପୋକଭାବେ ଲାଗିଥିବା ଶଳାନାମକ ଜୀବଟି ଛାଏଁ ରକ୍ତ ଖାଇ ଖସିପଡ଼ିଲା ଭାରିପେଟରେ ।

ଶେଷକୁ ସେ ତାର ଋଣ ପରିଶୋଧ କରିବାକୁ ମୋ ଶାଶୁକୁ ଖବର ଦେଲାଯେ ଶାଶୁ ଆମ ଘରେ ଥିବାବେଳେ ଶୋଇବା ଅବସ୍ଥାରେ ଟିପନେଇ ତାଙ୍କ ନାମରେ ଥିବା ଜମି ମୁଁ ନେଇ ଯାଇଥିଲି ଏବଂ ହଠାତ୍ ଦୁର୍ଘଟଣାରେ ପ୍ରାଣ ହରାଇଛି । ଏ ଖବର ପାଇ ବୟସାଧିକ୍ୟରେ ପୀଡ଼ିତ ବୁଢ଼ୀ ଶାଶୁ ପାଗଳ ପ୍ରାୟ ହୋଇ ମୋତେ ଗାଳି ଗୁଲଜ କରିବାକୁ ଆରମ୍ଭ କରିଦେଲେ । ଏ ଖବର ମୁଁ ବହୁ ବିଳମ୍ବରେ ସେ ଜମିକୁ ଆଗରୁ କିଣିବାକୁ ଇଚ୍ଛୁକ ମୋ ଶଶୁରଙ୍କ ମିତର ପୁଅଠାରୁ ନେଲା ବେଳକୁ ସେମାନେ ସେ ଜମିକୁ ନବେ ହଜାରେ ଟଙ୍କାରେ ବିକି ତିନି ଭାଇ ବାଣ୍ଟି ନେଇଛନ୍ତି ଓ ସାନଶଳା ସେ ଟଙ୍କାରେ ତା ସାନଝିଅର ବାହାଘର କରିଛି ।

ଶାଶୁ ଶଯ୍ୟାଶାୟୀ ହେବା ପୂର୍ବରୁ ମୋତେ ଥରେ ଦେଖିଲେ । ମୁଁ ତାଙ୍କଗାଁ ଶଙ୍କେରଶ୍ୱର ମହାଦେବଙ୍କ ଯନ୍ତ୍ରକୁ ପ୍ରତି ବର୍ଷ ଘିଅ ପାଇଁ ଟଙ୍କା ଦେବାକୁ ଯାଏ । ମୁଁ ତାଙ୍କୁ କହିଲି ମୁଁ ହେଉଛି ତୁମର ଜୋଇଁଙ୍କ ଭୂତ । ମୋ ପାଖରେ ତାଙ୍କ ଝିଅକୁ ଦେଖି ସେ ବିଧବା ହୋଇଛି କି ନାହିଁ ହାତବୁଲାଇ ଉଣ୍ଡାଳି ଦେଖିଲେ । ଶାଶୁଙ୍କ ମୃତ୍ୟୁ ଶଯ୍ୟାରେ ଫଳ ଆଦି ନେଇ ତିନିଥର ଦେଖି ଯାଇଯାଇଥିଲେ ମଧ୍ୟ ତାଙ୍କ ପୁଅଙ୍କୁ ଆମକୁ ଡାକିଲେନି ।

ଅଥଚ ୯ ୨ ବର୍ଷ ବୟସରେ ୧ ମ ଅସୁସ୍ଥତାରେ ଶଶୁରଙ୍କୁ ଆମ ଘରେ ମାସାଧିକ କାଳରଖି ଚିକିତ୍ସାକରି ତାଙ୍କ ଝିଅଙ୍କର ସେବାଦେଇ ବଞ୍ଚାଇଥିଲୁ । ଦ୍ୱିତୀୟଥର ବେମାର ପଡିବାବେଳେ ତିନିଜଣ ଯାକପୁଅ କେହି ପାଖରେ ନଥିଲେ । ଡାକ୍ତର ଖାନାରେ ପକାଇଦେଲେ ଓ ସେ ସେଠି ଦେହ ତ୍ୟାଗକଲେ । ମୋ ଗାଡିରେ ଶବନେଇ ଗାଁରେ ସତ୍କାର କଲେ । ତାଙ୍କର ସୁଧିକୁ ଗୋଟେ ପଣା ଦେବାପରେ ତିନିଭାଇ ତେଢା ତେଢି ହୋଇ ବାରପତ୍ର ଭୋଜୀ କଲେନି । ବଡଭାଇ ମୋତେ କହିବାରେ ମୁଁ ମୋର ଆର୍ଥିକ ଦୂରବସ୍ଥା ଦର୍ଶାଇ ଉତ୍ତର ପାଇଲି ମୋ ବଳ ତାଙ୍କୁ ବେଶ ଜଣା । ମୁଁ ବାଧ୍ୟ ହୋଇ ମହାପ୍ରସାଦ ଭୋଜନ କରାଇଲି । ମୋହବତ୍‌ରେ ଶଳାପ୍ରେମରେ ଫକୀର ମୋହାନ ଓ ଜଗନ୍ନାଥ ଦାସଙ୍କ ଭାଗବତକୁ କେହି ଭୁଲିବା ଅନୁଚିତ । ସଂକ୍ଷେପରେ ଏ ହେଲା ମୋ ଶଳା ପ୍ରସଙ୍ଗ ।

ଏଥିରେ ମଧ ଠାକୁରଙ୍କ ଅଲୌକିକତା ରହିଛି । ମୋ ସ୍ତ୍ରୀଙ୍କର ଇଚ୍ଛା ଥିଲା ଯେ ଶାଶୁଙ୍କ କ୍ରିୟାରେ ନାମଯଜ୍ଞ ଓ ଭୋଜି ଭାତ କରିବାକୁ । ଯୋଗ ଏମିତି ହେଲା ଯେ ଶଳାଏ ମୋତେ ଡ଼ାକିଲେନି । ମୋ ସ୍ତ୍ରୀ ବାପଘରକୁ ଯିବାକୁ ବାହାରିବାରୁ ମୁଁ ଦକ୍ଷ ଯଜ୍ଞରେ ବିନାନିମନ୍ତ୍ରଣରେ ଯାଇଥିବା ସତୀଙ୍କ ବିଷୟରେ ମନେ ପକାଇ ଦେବାରୁ ତାଙ୍କ ଦଶାହରେ ଏକମାତ୍ର ଝିଅ ନ ଥିଲେ କିଏ ମୁଣ୍ଡ ଧୋଇ କାନ୍ଦିବବୋଲି କହି ବ୍ୟସ୍ତ ହୋଇଥିଲେ । ଠାକୁରଙ୍କ ଇଚ୍ଛା ଦେଖନ୍ତୁ; ଅଚାନକ କାହୁଁକୁଆଡୁ କମଳ ମହାରାଜ ଆସି ପହଞ୍ଚି ସେହିଦିନ ରାମନାମ କରିବାର ପ୍ରସ୍ତାବ ଦେବାରୁ ସେହି ଏକାଦଶାହରେ ଆମଘରେ ତାହା କରାଗଲା ଓ ସାଇର ସବୁ ଲୋକ ପ୍ରସାଦ ଖାଇଲେ । ତାଙ୍କରି ନିଜାନ୍ତି ଭାୟା ବିଷ୍ଣୁନନ୍ଦ ତାଙ୍କସହ ଅପଟ ହୋଇଏଇଠି ସୁଧି ହେଲେ ଆମ ଘରେ । ଧନ୍ୟସେ ଈଶ୍ୱର । ଧନ୍ୟତାଙ୍କ ଅଲୌକିକ ଲୀଳା । ମୋତେ ମୋ ଶଶୁର ଘର ସ୍ନେହରୁ ବଞ୍ଚିତ କରିଥିବା ସାନ ଶଳା ତା ଶଶୁର ଘର ଗାଁ କୁ ମଧ ପାଦ ପକାଇବାର ବାଟ ରଖିନି ତାସ୍ତ୍ରୀକୁ ଧରି ଜମି ବିକିବା ଠାରୁ । ସେ ଠାକୁରଙ୍କର ଲୀଳା ମଣିଷ କଣ ବୁଝିବ !

## ୧୬୩. ମୋହ ମୁଦ୍‌ଗର

ଯାହାର କେହି ନାହିଁ ତାର ସତରେ କେହି ନାହିଁ । "ମୁଁ ଯାକୁ ହୁଅଇ ସଦୟ ଥୋକେ କରଇ ବଂଶକ୍ଷୟ" । ଠାକୁର ଯାହାକୁ ସହାୟ ହୁଅନ୍ତି ତାକୁ ଜ୍ଞାନ, ବୈରାଗ୍ୟ, ଭକ୍ତି, ମୁକ୍ତି, ସମ୍ପତ୍ତି, ଖାଲି ଦିଅନ୍ତିନି । ମୁକ୍ତି ମୁଖି ଜୀବର ମୋହଫାଶ କାଟିବାକୁ ବଂଶକ୍ଷୟ, ଧନକ୍ଷୟ, ମଧ ସ୍ଥାନ ବିଶେଷରେ କରିଥାଆନ୍ତି; ଏ ସବୁ ତା ପାଖରୁ ଦୂରେଇ ଦେଇଥାନ୍ତି । ଏସବୁ ତାଙ୍କର ଦୟା ବା କୃପାଛଡା ଅନ୍ୟ କିଛି ନୁହେଁ । ମୋ ମନରେ ମୋଘର, ମୋଭାଇ, ମୋ ପୁତୁରା ଇତ୍ୟାଦି ବହୁତ ମୋହ ଥିଲା । ସେଥିପାଇଁ ଠାକୁରେ ସେ ମୋହ ଭଙ୍ଗ କରିବାକୁ ମୋହ ମୁଦ୍ଗର ପ୍ରହାର କରି ସେ ମୋହ ଭଙ୍ଗ କରିଦେଇଛନ୍ତି ।

୧୯୫୪ରେ ମାଟ୍ରିକ ପାଶ୍‌ପରେ ଆୟ କରୁଥିବା ମାସିକ ଟ. ୪୦ ଟଙ୍କା ସାନ ଭାଇର ବ୍ରତ ଘରପାଇଁ ପଠାଇଦେଇଥିଲି । ନାହିଁ ନାହିଁର ଦୁନିଆକୁ ହଁ ହଁରେ ବଦଳାଇ ଦେବାକୁ ଯେଉଁ ଭାଇ ପୁତୁରା ଝିଆରି ମାନଙ୍କୁ ଅତି ଆପଣାର ବୋଲି ମନେକରି ବାୟାହୋଇ

ଧାଇଁଥିଲି ସେମାନଙ୍କ ସମ୍ବନ୍ଧରେ କିଛି ଶେଷକଥା ନକହିଲେ ଏବଂ ଏଥିରେ ଥିବା ଈଶ୍ୱରଙ୍କ ଆଲୌକିକତା ବର୍ଣ୍ଣନା ନକଲେ କଥାଟା ଅଧା ରହିଯିବ ।

ବଡ ଭାଇଙ୍କ ପ୍ରଥମ ସ୍ତ୍ରୀ ବିଷଖାଇ ଆତ୍ମହତ୍ୟା କରିବାର କାରଣ ସ୍ୱରୂପ ସେମାନେ କହିଥିଲେ ଯେ ପକେଟ୍‌ରେ ଥିବା ସାମାନ୍ୟ କେତେଟଙ୍କା ନେଇଥିବାରୁ ସେ ତାଙ୍କୁ ସାମାନ୍ୟ ଗାଳି ଦେବାରୁ ସେ ବିଷଖାଇ ମଲେ । ମୁଁ ସରଳ ପ୍ରାଣରେ ବିଶ୍ୱାସ କରିଥିଲି ୧୯୭୦ରେ । ଦୀର୍ଘ ୩୨ ବର୍ଷ ପରେ ୨୦୦୨ରେ ସତ୍ୟ ଉଦ୍‌ଘାଟିତ ହେଲା । ମୁଁ ଯାଇଥାଏ କୋଇଲ କାଠଚିରାଇବାକୁ । କରତ କଳ ଖରାପଥାଏ । ମୁଁ ବ୍ୟସ୍ତରେ ଥିବାବେଳେ ଭାଇନାଙ୍କ ସାନ ଶଳା କୁନିଆନା ଦେଖାହୋଇ ତାଙ୍କ ଘରକୁ ଯାଇ ଗାଧୁଆଖିଆ ପାଇଁ ଡାକିଲେ । ମୁଁ ଏ ବିଷୟ ଭାଇନାକୁ ଗାଁ କୁ ଫୋନ କରିବାବେଳେ ସେଠାକୁ ନଯିବାକୁ ଭାଇନା ପରାମର୍ଶଦେଲେ । ମୁଁ ଚେଷ୍ଟାକରିମଧ ଫେଲମାରିଲି ଓ ସେହି କୁନିଆ ଭାଇନାଙ୍କ ଘରକୁ ଯାଇ ଗାଧୋଇ ଖାଇବା ବେଳେ ତାଙ୍କ ସ୍ତ୍ରୀ ହାର- ଯେକି ଆମଗାଁ ଝିଅ ସେ କହିଲା ଯେ ଆମ ଭାଇନାଙ୍କ ସହ ତାଙ୍କର ବଂଧୁକଟିଯାଇଛି; କାରଣ ଆମ ନୂଆବୋଉ ମରିବାପୂର୍ବରୁ ଭାଇନାଙ୍କ ବିନା ପରାମର୍ଶରେ ତାଙ୍କ ବଡ ଭାଇ ଜଟିଆ ଭାଇନାଙ୍କ ପାଖକୁ ଟ୩୫୦୦ଙ୍କା ଅଳଙ୍କାର ପାଇଁ ପଠାଇଥିଲେ । ସେ ଟଙ୍କା ସାନଶଳା କୁନିଆ ଭାଇନାଙ୍କ ହାତରେ ପଠାଇଥିଲେ । ସେଇଥିପାଇଁ ଭାଇଙ୍କ ସାଙ୍ଗରେ କଳି ଓ ସେ ବିଷ ଖାଇ ମରିବା ଘଟଣା ଘଟିଥିଲା । ଟଙ୍କା ଆଣି ସାନ ଶଳା ବଡ ଶଳାକୁ ଦେଇଥିଲେ ମଧ ସେ ଫାର୍କିବାରୁ ଏକଳି । ଏଇଟା ଈଶ୍ୱରଙ୍କ ଚମତ୍କାରିତା ବା ଅଲୌକିକତା ନୂହେଁ ତ ଆଉ କ'ଣ ? ୩୨ ବର୍ଷ ପରେ ସତ୍ୟର ପ୍ରକାଶ କରାଇ ସେହି ସତ୍ୟନାରାୟଣ ମୋ ମନ କଥା ଶୁଣି ଈଶ୍ୱରଙ୍କ ପାଦପଦ୍ମରେ ଲୀନ କରିଦେଲେ, ଓ ମୁଁ ହାତରେ ଧରିଥିବା ଭାତଗୁଣ୍ଡା ଅଟକିଗଲା; ପାଣିପିଇ ସୁସ୍ଥ ହେଲି । ଜାଣିଲି ଏଇ ମୋର ଭାଇ । ତାଙ୍କ ୨ୟସ୍ତ୍ରୀ ଏଇଘର କଲାବେଳେ ଦିନେ ଚକୁଳି ପିଠା କରିଥିଲେ, ଖୁବ୍ କଁଅଳ ହୋଇଥିଲା ରାତିରେ ଖାଇଶୋଇଲୁ । ସକାଳେ ମୋ ସାନପୁଅ ଓ ମୁଁ ସେହିପିଠାକୁ ଆଉ ଖାଇପାରିଲୁନି । କାରଣ କଣ ପଚାରିବାରେ ରାତିରେ ବିରିସବୁ ଉପରକୁ ଉଠିଥିଲା ଓ ଏବେ କମିଯାଇଛି ବୋଲି ନୂଆ ବୋଉ କହିବାରେ ଆମ ଭାଇନା ତାଙ୍କୁ ସମର୍ଥନକରି ମୋତେ ବୁଝାଇ ଦେଲେ । ସବୁ ଜାଣି ଠିକ୍ ବୁଝିଗଲି । ଜୀବନରେ ଭୁଲିବାର ନାହିଁ ।

ଆଉ ପୁତୁରା । ବଡ ଡୁଲୁ ମାଟ୍ରିକ ଫେଲ୍ ହୋଇ ବୁଲୁଥାଏ । ତାକୁତ ପିଲାଦିନେ ମୋ ପାଖରେ କେନ୍ଦ୍ରାପଡାରେ ରଖି ପଢାଉଥିଲି । ଗୁଣାତାର ମୁଁ ଜାଣେ । ସେତେବେଳକୁ ସାନପୁତୁରା ମୋ ପାଖରେ ରହି ଆଇକମ୍ ପଢୁଥାଏ । ମୁଁ ରାତି ୯ ରୁ ୧୧ଟାଯାଏ ତାକୁ ଓ ମୋ ପିଲାଙ୍କୁ ପାଠପଢାଉଥାଏ । ସେ କହିଲା କକ, ଭାଇନାଙ୍କୁ ତୁମେ ଆଣି ନ ପଢାଇଲେ ସେ ରହିଯିବ । ମାଟ୍ରିକ୍ ପାଶ୍ କରିପାରିବନି । ତା ପରେ ତାକୁ ଆଣି ରଖି ପଢାଇଲି । ସେ ପାଶ୍ କଲା; ମୋତେ ଖବର ବି ଦେଲାନି, ତା ପରେ ପୁଣି ପିଇଟି ପଢିସାରି ଆସିଲା । ମୋ ବଡ ପୁଅ ରୁଟିକାରେ ତାକୁ ନେଇ ୧୫୦ଟଙ୍କାରେ ଚାକିରି କରେଇ ଦେଲା । ସେଠି ରହି ରହି ସେ ଉନ୍ନତିକଲା, ଭଲ ରୋଜଗାର ମଧ କଲା । ଦିନେ ବି ରାମଚନ୍ଦ୍ର ମୋତେ ଜଣାଇଲେ ଯେ ସେ ପ୍ରେମ ବିବାହ

କରୁଛି । ଆମୋ ଫୋଇରେ ଗୋଟିଏ ଗୁଡ଼ିଆ ଘର ଝିଅକୁ । ଭାଇନା ଆସି କାନ୍ଦି କାନ୍ଦି ଛାତିରେ ହାତ ବାଡେଇ ମୋ ପୁଅକୁ ନେଇଆ ବୋଲି କହି ଟାଙ୍କୁ ଡକାଇ କହିଲୁ ତୁ ଯାହା କରୁଛୁ କର କିନ୍ତୁ ଏ ବିଷୟ ତୋ ପିଉସି, ବାପା, ବୋଉ, ମାମୁଁ, ମାଇଁ ସମସ୍ତଙ୍କୁ ଜଣାଇଦେ । ଏତିକିରେ ସେ ରାଗିଯାଇ ମୋତେ ସବୁଦିନପାଇଁ ତ୍ୟାଗ କରିଦେଇ ସେଠି ବିବାହକରିଥିଲା । ତାରି ଭଉଣୀର ଅଭିଶାପ ଫଳରେ ସେ ପିଲାଟି ଝିଅଟିଏ ଜନ୍ମ ଦେଇ କ୍ୟାନସରରେ ପ୍ରାଣତ୍ୟାଗ କରିସାରିଛି । ଆଉ ସାନପୁତୁରା ବିକମ୍ ପାଶ୍ କରି ବୁଲୁଥାଏ । ମୁଁ କ୍ରୀଡା ମନ୍ତ୍ରୀଙ୍କ ଘରୋଇ ସଚିବ ଥିବାବେଳେ ପୂର୍ବାଞ୍ଚଳ କ୍ରୀଡା ନିର୍ଦ୍ଦେଶକ ଆସିଥିଲେ । ତାଙ୍କୁ ତା କଥା କହିବାରୁ ସେ ରାଜ୍ୟ ନିର୍ଦ୍ଦେଶକଙ୍କୁ ଲିଖିତ ନିର୍ଦ୍ଦେଶ ଦେଇଗଲେ ଓ ତା ଚାକିରୀ ହୋଇଗଲା ସାଇରେ । ଠିକ୍ ତା ପରଦିନ ସେ ପୂର୍ବାଞ୍ଚଳ ନିର୍ଦ୍ଦେଶକ ଗୋଟିଏ ହେଲିକପ୍ଟରରେ ଆଣ୍ଡାମାନ ଯିବାବେଳେ ଦୁର୍ଘଟଣାରେ ପ୍ରାଣ ହରାଇଲେ । ଈଶ୍ୱରଙ୍କ ଇଚ୍ଛାରେ ତାଙ୍କରି ଆଲୌକିକ ସହାୟତାରେ ସେ ସାନପୁତୁରା ଦାନା ପାଇଲା ଯାହାକି ୨୪ଘଣ୍ଟା ବ୍ୟବଧାନରେ ସମ୍ଭବ ହୋଇ ନଥାନ୍ତା ।

ତାର ବାହାଘର ଦେଖିଯିବାକୁ ଭାଇନା ଡକାଇଲେ । ଆମେ ଯାଇ ଯେଉଁଠି ଯାହାଙ୍କ ଘରେ ପହଞ୍ଚିଲୁ ସେ ହେଉଛନ୍ତି ମୋ ସ୍ତ୍ରୀର ଖୁଡ଼ୁତାଝିଅ ଭଉଣୀର ବର ବଡ ଭିଣୋଇ ଅର୍ଥାତ୍ ମୋ ସଡୁ । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ମୁଁ ବହୁତ ଭଲ ପ୍ରସ୍ତାବ ପଠାଇଥିଲି । ଯେ ଯାହାର ବର । ସେଇଠି ହେଲା । ମୁଁ ଭାଇନାଙ୍କୁ କହିଲି ମୋ ଶଳା ମାନଙ୍କ ସହ ସଂପର୍କନାହିଁ । ସେ ମୋତେ ତାଙ୍କ ନିମିତ୍ତ୍ୟକୁ ଡାକି ନାହାନ୍ତି । ତେଣୁ ତାଙ୍କୁ ଗୁଆ ଦେବନି । ସେ ମଧ ରାଜିହେଲେ । ମାତ୍ର ମୁଁ ସେ ପୁତୁରା ବିଭାଘରରେ ଅନ୍ୟମାନଙ୍କ ସହ ଯୋଗଦେବାକୁ ଯାଇଦେଖେ ଯେ ମୋ ଶଳାମାନଙ୍କୁ ଡକାଯାଇଛି । ମୁଁ ବିରକ୍ତ ହେବାରେ ପୁତୁରା କହିଲା ମୋ ବାହାଘର, ମୁଁ ଡାକିଛି, ତୁମେ ଚାଲିଯା । ମୁଁ ମୋପିଲାଓ ସ୍ତ୍ରୀଙ୍କ ସହ ଫେରି ଆସି ବ୍ରହ୍ମପୁରରେ ଭଉଣୀଘରେ ରହି ସେଦିନ ସେଠାରେ ମୋ ମାମୁଁପୁଅ ଭାଇଙ୍କ ଝିଅ ବାହାଘରରେ ଯୋଗଦେଲି । ତା ପରଦିନ ଗାଁର ପାଞ୍ଚଜଣ ଓ ମୋ ସାନ ଭିଣୋଇ ଭାଉନାଙ୍କୁ ନେଇ ଆସି ମୋତେ ଡାକିଲେ । ମୁଁ ଲୌକିକତା ଦୃଷ୍ଟିରୁ କିଛି ନକହି ତାଙ୍କ ଭୋଜିଦିନ ଯୋଗଦେଇ ନନ୍ଦଘରେ ରହି ଫେରିଲି । ଏହାପଛରେ ମଧ ସେହି ଠାକୁରଙ୍କ ଆଲୌକିକତା ରହିଛି ଓ ଲୁଚିରହିଛି ତାଙ୍କର ଅସୀମ ଅଦେଖା ଆଶିର୍ବାଦ । ଏସବୁ ଘଟଣା ଗୁଡିକ ଛୋଟ ହେଲେବି ସବୁ ମିଶି ମୋ ହୃଦୟରେ ବସା ବାନ୍ଧିବାରେ ବହୁକାଳର ମୋହ ଉପରେ କଠୋର ମୁଦ୍‌ଗର ପ୍ରହାର କଲା ଓ ମୋହର ଜଡତାକୁ କାଟି ଆଲୋକବର୍ତ୍ତିକା ଜଳାଇ ଦେଇ ତାଙ୍କୁ ହିଁ ଦେଖାଇ ଦେଲା; ଯେ କି ମୋହର ଜାଲକୁ ଛିଣ୍ଡାଇ ଦେଇଥିଲେ ।

## ୧୬୪. ତୀର୍ଥାଟନ

ହିନ୍ଦୁ ଧର୍ମାବଲମ୍ବୀମାନେ ସାଧାରଣତଃ ତୀର୍ଥ ପର୍ଯ୍ୟଟନେ କରନ୍ତି ଧର୍ମ ଉଦ୍ଦେଶ୍ୟରେ । ଅଧିକାଂଶ ଲୋକ ବାର୍ଦ୍ଧକ୍ୟରେ ଏହିପରି ତୀର୍ଥ କରନ୍ତି । କିଛି ନ ହେଲେ ଜୀବନ କାଳରେ ଚାରିଧାମ ଯିବା ଯେପରି ଆବଶ୍ୟକ ନିଜର ବାପ ମା ଓ ପିତୃପୁରୁଷଙ୍କୁ ପିଣ୍ଡଦାନ ପାଇଁ ଗଙ୍ଗା, ଗୟା ଓ ତ୍ରିବେଣୀ ସଙ୍ଗମକୁ ଯିବା ସେହିପରି ଆବଶ୍ୟକ । ବୁଢ଼ାଦିନେ ଏ ସବୁ ଦୂର ସ୍ଥାନକୁ

ଯିବା କଷ୍ଟ ଦାୟକ। ଏପରିକି ଏକା ଯିବା ଭୟ ଦାୟକ। ତେଣୁ କେତେ ଲୋକ ବହୁତ ପୂର୍ବରୁ ପିତାମାତାଙ୍କ ଅସ୍ଥି ବିସର୍ଜନ କରିଦିଅନ୍ତି ବା ଖୁବ୍ ବେଶୀରେ ତ୍ରିବେଣୀ ବା ଗଙ୍ଗା ସ୍ନାନ କରି ନିଅନ୍ତି। ଏତିକି କାମ ପାଇଁ ଚାରି ଧାମ ଯିବା ଅନାବଶ୍ୟକ। ଶ୍ରାଦ୍ଧ କରିବାର କଷ୍ଟରୁ ମୁକ୍ତି ପାଇଁ ଅସ୍ଥି ବିସର୍ଜନ ଓ ଗୟାଶ୍ରାଦ୍ଧ କରି ସହଜ, ଶୀଘ୍ର ସରଳରେ ଓଷା ଉଜେଇଁ ଦିଅନ୍ତି। ଠାକୁର ମୁଣ୍ଡାରେ ଥିବାବେଳେ ଦୀକ୍ଷା ପାଇଁ ବେଲୁଡ୍ ଯାଇ ନିରାଶରେ ଫେରିବାପରେ ଅନ୍ତତଃ ତ୍ରିବେଣୀରେ ଅସ୍ଥିବିସର୍ଜନ କରି ଗୟା ଶ୍ରାଦ୍ଧ କରି ଦେବାକୁ ଇଚ୍ଛାହେଲା। ସେଥିପାଇଁ ଗୋଟିଏ କାରରେ ଯିବାକୁ ସ୍ଥିରକରି ଗାଁକୁ ଯାଇ ଅସ୍ଥି ସଂଗ୍ରହ ସମୟରେ ଗଣିଆ କକେଇ ଖବର ପାଇ ବିରକ୍ତ ହୋଇ କହିଲେ ବୈଶାଖରେ କି ଗୟା, ଗୟା ଶ୍ରାଦ୍ଧ ଦୁଇଥର ହୁଏ। ଆଶ୍ୱିନ କୃଷ୍ଣ ପକ୍ଷରେ ପିତୃଗୟା ଓ ଚୈତ୍ରଶୁକ୍ଳ ପକ୍ଷରେ ମଧୁଗୟା ହୁଏ।ଅନ୍ୟ ସମୟରେ ଗୟାଶ୍ରାଦ୍ଧ ହୁଏ ନା। ସେତିକିରେ ସେ ଚେଷ୍ଟା ରହିଲା। ଇତିମଧ୍ୟରେ ଗଣିଆ କକେଇଙ୍କର କାଳ ହୋଇଗଲା।

୧୯୮୨ରେ ଗୋଟିଏ ତୀର୍ଥରେଳଗାଡିରେ ଯିବାକୁ ସ୍ଥିର କରି ମୋସ୍ତ୍ରୀ ଓ ମୋପାଇଁ ଟ୧୪୦୦ ଯିବା ଆସିବା ଟିକେଟ କଲୁ। ମାତ୍ର ବଢି ଯୋଗୁଁ ନିର୍ଦ୍ଦିଷ୍ଟ ଦିନରେ ଗାଡ଼ି ଛାଡ଼ିଲାନି। ମୁଁ ଗାଁରୁ ବାପା, ବୋଉ, ଜେଜେ, ମା,ନୂଆବୋଉ,ଗଣିଆ କକେଇ ଇତ୍ୟାଦିଙ୍କ ଅସ୍ଥିକୁନେଇ ଆସିଲି।ଯାହାଙ୍କର ଅସ୍ଥି ନ ମିଳିଲା ଶ୍ମଶାନ ମାଟି ନେଇ ଆସିଲି। କଟକ ଆସି ବୁଝିଲି ଯେ ସେ ଗାଡ଼ି ଛାଡୁନି। ଏମିତି ଦୁଇଥର ବୁଝିବା ପରେ ଅସ୍ଥିନେଇ କଟକ ଆସି ବୁଝିଲି ଯେ ପୁଣି ଗାଡ଼ି ଛାଡୁନି। ଦୁଇ ଦିନ କଟକରେ ନିଜ ବସାରେ ରହି ଭୁବନେଶ୍ୱର ଫେରି ଷ୍ଟେସନରେ ବୁଝିଲି ଯେ ମାତ୍ର ଟ୭୦୦ରେ ଦୁଇ ଜଣ ଯିବା ଆସିବା ୧୫ ଦିନ ମଧ୍ୟରେ ସମ୍ଭବ। ନୀଳାଚଳ ଟ୍ରେନ ସବୁତୀର୍ଥ ଦେଇ ଯାଉଛି। ଯେଉଁଠି ରାତି ରହଣି କରିବେ ସେଠି ଟିକେଟ୍‌ରେ ବ୍ରେକ ଜର୍ଣ୍ଣି ଲେଖାଇ ନେବେ ଓ ପରବର୍ତ୍ତୀ ଷ୍ଟେସନ ପାଇଁ ରିଜର୍ଭ କରାଇନେବେ। ସେ ମଧ୍ୟ ଆମକୁ ଯାତ୍ରାପଥ ବତାଇ ଦେଲେ।

ମୁଁ ଓ ମୋ ସ୍ତ୍ରୀ ଟିକେଟକରି ରିଜର୍ଭେସନ ସହ ଭୁବନେଶ୍ୱରରୁ ଅସ୍ଥିଧରି ବାହାରିଲୁ ପିତୃଗୟା ବା ଆଶ୍ୱିନ କୃଷ୍ଣ ପକ୍ଷରେ।ପରଦିନ ଯାଇ ଆହ୍ଲାବାଦରେ ପହଞ୍ଚି ସଂଗମ ହୋଟଲରେ ରାତ୍ରି ରହଣି କଲୁ। ସେହି ହୋଟେଲବାଲାଙ୍କ ସହ ପରାମର୍ଶକରି ଗୋଟେ ଡଙ୍ଗା ଟ୨୫ ରେ ଭଡ଼ାକଲୁ ଓ ଗୋଟେ ବ୍ରାହ୍ମଣ ଟ୧୫ ଛିଡ଼ାଇ ସାଙ୍ଗରେ ନେଲୁ। ଜଗବଟ ପାଖରୁ ଗୀତା ପାଠକରି ୯ମ ଅଧ୍ୟାୟ ଶେଷରେ ସଙ୍ଗମରେ ପହଞ୍ଚି ବୁଡ଼ ଦେଇ ଶ୍ରାଦ୍ଧ କରି ଆଉ ନଅ ଅଧ୍ୟାୟ ପଢି ଫେରି ହୋଟେଲରେ ପହଞ୍ଚିଲୁ। ସେହିଦିନ ସଂଧ୍ୟାରେ ଟ୍ରେନ ଧରି ଟୁଣ୍ଡେଲ ଷ୍ଟେସନରେ ପାହାନ୍ତା ବେଳକୁ ପହଞ୍ଚି ସେଠି ନିତ୍ୟକର୍ମ କରି ଅନ୍ୟ ଗୋଟେ ଟ୍ରେନ୍ ଧରି ମଥୁରାରେ ପହଞ୍ଚିଲୁ। ସେଦିନଟି ମଥୁରା ଓ ବୃନ୍ଦାବନ ବୁଲି ଗୋବର୍ଦ୍ଧନ ଦେଖି ବସ୍ ଯୋଗେ ଦିଲ୍ଲୀ ଗଲୁ। ହରଦ୍ୱାରରେ ସ୍ନାନ ଓ ପିଣ୍ଡ ଦାନ ପରେ ବସ୍‌ରେ ଯାଇ ହରିଦ୍ୱାର ପରେ ହୃଷିକେଶରେ ରହିଲୁ। ସେଠି ଶିବାନନ୍ଦ ଆଶ୍ରମ ହୃଷିକେଶ ଦେଖି ପୁଣି ବସ୍‌ରେ ଯାଇ ଯଶୀମଠରେ ରାତ୍ରି ରହଣି କରି ଭୋରରୁ ବଦ୍ରିନାଥ ଯାତ୍ରାକଲୁ। ସେଠି ୧ ଟାରେ ପହଞ୍ଚି ସେହି ଦିନ ହିଁ ସେଠାରେ ବ୍ରହ୍ମକପାଳିର ତପ୍ତ କୁଣ୍ଡରେ ସ୍ନାନ

କଲୁ ଓ ପିଣ୍ଡ ଦାନ କଲୁ । ଆମେ ପିଣ୍ଡ ଦେବାକୁ ଗଲାବେଳେ ଆମ ପଣ୍ଡାଙ୍କର ଜଣେ ବୃଦ୍ଧ ବ୍ରାହ୍ମଣ ଦଳେ ବଙ୍ଗାଳୀଙ୍କୁ ବସାଇ ବାରମ୍ବାର ସେମାନଙ୍କ ବାପ, ଗୋସିଂବାପା ମାଙ୍କ ନାମ କହିବାକୁ କହିବାରୁ ସେମାନେ ବିରକ୍ତ ହେଉଥାନ୍ତି । ତାଙ୍କୁ ବୁଝାଇ ଦେଲି ଯେ ବ୍ରାହ୍ମଣ ପିତୃ, ପିତାମହ, ପ୍ରପିତାମହ, କହିବାକ୍ଷଣି ନିଜ ନିଜର ପିତୃପିତାମହଙ୍କ ନାମ ଏକ କାଳୀନ କହିଦେଲେ ସମୟ ବେଶୀ ଲାଗିବନି । ଏହାଦ୍ୱାରା ବ୍ରାହ୍ମଣଙ୍କ କାର୍ଯ୍ୟ ସହଜ ହୋଇଗଲା । ସେ ଭାରୀ ଖୁସି ହୋଇଗଲେ । ବଙ୍ଗାଳୀ ଦଳଙ୍କ ଶ୍ରାଦ୍ଧପରେ ସେ କହିଲେ ତୁମେ ଦୁହେଁ ମୋ ପୁଅ ବୋହୂ । ମୁ ତୁମର ସ୍ୱତନ୍ତ୍ରଭାବେ ଶ୍ରାଦ୍ଧ କରାଇବି । ସତକୁ ସତ ସେ ତାହା ହିଁ କଲେ । ମୁଁ ଦହି, ଖସା, ଚାଉଳ, କୁଶପାତ୍ରୀ ନେଇଥିଲି । ନିଜେ ଯାଇ ଗଙ୍ଗୋତ୍ରୀରେ ତର୍ପଣ କଲି । ତର୍ପଣ ଶେଷରେ ବଦ୍ରିନାଥ ଦର୍ଶନ କଲୁ ଓ ପ୍ରସାଦ ପାଇଲୁ ।

ବଦ୍ରୀନାଥରେ ଆମ ଜଗନ୍ନାଥଙ୍କ ପରି ମାଟି କୁଡ଼ିଆ ପରିବର୍ତ୍ତେ ପିତଳ କୁଡ଼ିଆରେ ଅନ୍ନଭୋଗ ହୋଇବିକ୍ରୀ ହୁଏ । ସେଠି ଡ଼ାଲି ତରକାରୀ ହୁଏନା । ଭୀଷଣ ଶୀତ ଓ ବରଫ ଯୋଗୁଁ ଚାରିଆଡ଼େ ପାହାଡ଼ସବୁ ଚୂନ ଧଉଳା କୋଠାପରି ଦେଖାଯାଉଥାଏ । ହଠାତ୍ ମାଇକ୍‌ରେ ଘୋଷଣା କରାଗଲାଯେ ଶୀତ ଲହରି ଆସୁଛି । ମନ୍ଦିର ବନ୍ଦ ହୋଇଯିବ । ଦୋକାନ ଉଠି ଯିବ ।

ଆମେ ସେହିଦିନ ଏକ ସ୍ୱତନ୍ତ୍ର ବସ୍‌ରେ ବସି ପରଦିନ ୪ଟା ସୁଦ୍ଧା ହରି ଦ୍ୱାରରେ ପହଞ୍ଚିଗଲୁ । ଦେଖିଲା ବେଳକୁ ଆମର ତଥାକଥିତ ତୀର୍ଥଯାତ୍ରୀ ଗାଡି ସେଠି ପଡ଼ିଛି । ଦଳେ ବଦ୍ରୀନାଥ ଦର୍ଶନରେ ଆସିଛନ୍ତି । ଯାତ୍ରୀ ଓ ଗାଡ଼ି ମାଲିକଙ୍କ ମଧ୍ୟରେ କଳହ ଲାଗି ପୋଲିସକୁ ଯାଇଛି । ସେହି ରାତିରେ ଟ୍ରେନ ଧରି ଆମେ ପରଦିନ ସଂଧ୍ୟାରେ ବାରାଣାସୀରେ ପହଞ୍ଚିଲୁ । ଏଠାରେ ଏକ ଅଲୌକିକ ଘଟଣା ଘଟିଲା । ଆମେ ୮/୧୦ ଦିନ ଉତ୍ତର ଭାରତରେ ଭାତ ଗଣ୍ଡାଏ ଖାଇବାକୁ ନ ପାଇ ବ୍ୟସ୍ତ ବ୍ୟାକୁଳ ଥିଲୁ । ମୁଁ ଶୁଣିଥିଲି ଓ ପଢିଥିଲି ଯେ ବାରାଣାସୀ ଆସି କେହି ଅଭୁକ୍ତ ଫେରିବେନି । ଏହାଶୁଣି ଭାବିଲି ସେଠିତ କେହି ଅନ୍ନଛତ୍ର ଦେଉନି । ଯଦି ଜଣେ କିଛି ନ ଖାଇବ ତେବେ ତାକୁ କ'ଣ ଆଉ କିଏ ଖୋଇଦେବ । ଏହି ଭାବନାରେ କାଶୀରେ ପହଞ୍ଚି ଗୋଟେ ରିକ୍ସା ଧରିଲୁ । କାଶୀର ସବୁ ସ୍ଥାନ ବୁଲାଇ ଦେଖାଇବାକୁ କହିଲୁ । ବୁଝୁବୁଝୁ ସେ ଦାଢୀଆ ରିକ୍ସାବାଲା ଲୋକଟି ଓଡ଼ିଆ ଲୋକ । ସେ ସବୁ ସ୍ଥାନ ବୁଲାଇ ଦେଖାଇ ଦେଲା । କାଶୀବିଶ୍ୱ ନାଥ, ଅନ୍ନପୂର୍ଣ୍ଣା, କାଶୀବିଦ୍ୟାପୀଠ, ବିଭିନ୍ନ ଘାଟ ଓ ବନାରସ ଶାଢୀ ବଜାର ଇତ୍ୟାଦି । ବୁଲି ଦେଖି ଶାଢୀ କିଣି ଆମେ ଷ୍ଟେସନ ଫେରିବା ବାଟରେ ଖାଇବାକୁ ଗୋଟେ ହୋଟେଲକୁ ଯିବାକୁ କହିଲୁ ଓ ଭାତ ମିଳୁଥିବା ହୋଟେଲକୁ ଖାଇବାକୁ ନେବାକୁ ଇଙ୍ଗିତ କଲୁ । ସେ କହିଲା ଏତସବୁ ରୁଟିବାଲା । ଭାତ ଦେଲେ ଟାମଟେ ଦେବେ । ଯଦି କିଛି ନ ଭାବନ୍ତି ଷ୍ଟେସନରେ ଗୋଟେ ଖୋଲା ହୋଟେଲରେ ବେଞ୍ଚରେ ବସି ଭାତ ଡ଼ାଲି ତରକାରୀ ଖାଇ ପାରିବେ । ଆମେ ହଁ କହିବାରୁ ସେ ନେଇଗଲା । ପେଟେ ପେଟେ ଖାଇଲୁ । ସାଙ୍ଗରେ ରିକସାବାଲାକୁ ମଧ୍ୟ ଖୁଆଇଲୁ । ପଇସା ଦେବା ବେଳକୁ ହୋଟେଲ ବାଲା ଆଉ ନ ନିଏ । ବୁଝୁବୁଝୁ ସେ ମଧ୍ୟ ଜଣେ ଓଡିଆଲୋକ । ଆମକୁ ଡାବାପା ବୋଉ କହି କେତେ ପଇସା ନେଲାନି । ପଚାରି ବୁଝିଲି ଯାଯପୁର ଧର୍ମଶାଳା

ଅଞ୍ଚଳର ଲୋକ, ସେଠି ରହିଯାଇଛି । ଜଣେ ବଙ୍ଗାଳୀ ମହିଳାଙ୍କୁ ବିବାହ କରିଛି । ବହୁଦିନ ରହିଗଲାଣି । ପ୍ରାୟ ଘରକୁ ଆସୁନି ।ତାର ଠିକଣା ଆଣିଲୁ । ଓଡ଼ିଶା ଆସିଲେ ଆମ ଘରକୁ ଆସିବାକୁ ନିମନ୍ତ୍ରଣ କଲୁ ।ପରେ ଯେତେ ଚିଠି ଦେଲେ ମଧ୍ୟ ତାଙ୍କ ଠାରୁ ଉତ୍ତର ମିଳିନଥିଲା । ବୋଧହୁଏ ମା ଅନ୍ନପୂର୍ଣ୍ଣା ସେଇଠି ତାଙ୍କ ଲୀଳାର ମାୟା ଆମକୁ ଦେଖାଇ ଥିଲେ । ସେହି ରାତିରେ ଟ୍ରେନଧରି ସକାଳେ ଗୟାରେ ପହଞ୍ଚିଲୁ ଓ ଭାରତ ସେବକ ସମାଜକୁ ଯାଇ ଜଣେ ଓଡ଼ିଆ ପୁରୋହିତକୁ ନେଇ ୭ଟି ସ୍ଥାନରେ ପିଣ୍ଡ ଦେଲୁ । ସବୁ ସ୍ଥାନରେ ବାପା, ବୋଉ, ଜେଜେ,ମା, ପିଉସୀ, ଉଦିଆନାନୀ, ନୂଆବୋଉ,ରଣିଆକକେଇ,ମାମୁଁ ମାଇଁ,ଅଜା ଆଈ ଇତ୍ୟାଦି ସମସ୍ତଙ୍କୁ ମନେକରି ପିଣ୍ଡ ଦେଲୁ । ନୂଆବୋଉ ବିଷଖାଇ ମରିଥିବାରୁ ପ୍ରେତ ଗୟାରେ ମଧ୍ୟ ପିଣ୍ଡ ଦେଲୁ ।

ସେଠାରୁ ସେହି ନୀଳାଚଳ ଗାଡ଼ିରେ ସିଧା ପୁରୀ ଯାଇ ମହାଳୟା ସଂଧାରେ ନରେନ୍ଦ୍ରସ୍ନାନ,ପିଣ୍ଡ ଦାନ ଓ ଜଗନ୍ନାଥଦର୍ଶନ ପରେ ଘରକୁ ଫେରି ଗାଁରେ ସଫଳି ପିଣ୍ଡ ଦେଲୁ ଓ ଗାଁ ଲୋକଙ୍କୁ ବ୍ରାହ୍ମଣ ଭୋଜନ ଦେଲୁ ।

"ନିତ୍ୟାନନ୍ଦକରି ବରାଭୟ କରି ସୌନ୍ଦର୍ଯ୍ୟ ରତ୍ନାକରି
ନିର୍ଦ୍ଧୂତାଖିଳ ବିଶ୍ୱ ପାବନ କରି ମାତା ଅନ୍ନପୂର୍ଣ୍ଣେଶ୍ୱରୀ"।

ଯେଉଁ କଥାଟି ଶୁଣିଥିଲୁ ଯେ "ବାରାଣାସୀ ବା କାଶୀ ଗଲେ କେହି ଅଙ୍ଗୁଳି ଫେରିବନି" ତା ପ୍ରତି ଅବିଶ୍ୱାସ ଓ ତାଚ୍ଛଲ୍ୟ ଥିଲା; ମା ଅନ୍ନପୂର୍ଣ୍ଣାଙ୍କ ଦର୍ଶନପରେ ସେ କି କୌଶଳରେ କିପରି ଭାବରେ ବିନା ପଇସାରେ ଭାତପ୍ରିୟ ଓଡ଼ିଆ ଦମ୍ପତିଙ୍କୁ ପେଟପୁରା ଭାତ ଖୁଆଇ ତୃପ୍ତକରି ଦେଲେ ତାହା ଭାବିଲା ବେଳକୁ ଏହା ଅତିମାନୁଷ ବା ଅଲୌକିକ ଘଟଣା ବୋଲି ନିଶ୍ଚୟ ପ୍ରତୀତ ହୁଏ ।ତାଙ୍କର ସ୍ନେହୟା ବିଷୟ ଏବେ ଭାବିଲେ ବିସ୍ମୟାଭିଭୂତ ହେବାକୁ ପଡ଼େ ।

କୈଳାସାଚଳ କନ୍ଦରାଳୟ କରି ଗୌରୀଉମାଶଙ୍କରୀ
ପ୍ରାଳେୟାଚଳ ବଂଶ ପାବନ କରି କାଶୀପୁରାଧୀଶ୍ୱରୀ
ଭୀକ୍ଷାଂ ଦେହି କୃପାବଲମ୍ବନକରି ମାତାନ୍ନପୂର୍ଣ୍ଣେଶ୍ୱରୀ
"ତାଙ୍କର ଭୀକ୍ଷା ଏ ଭିକାରୀକୁ ସାରା ଜୀବନ ମିଳୁଥାଉ"

ଏହା ବ୍ୟତିତ ତୀର୍ଥସ୍ଥାନରେ ଆଉଯେଉଁ ଆଧ୍ୟାତ୍ମିକ ଅନୁଭୂତି ମିଳିଛି ତାହା ପ୍ରକାଶ ଯୋଗ୍ୟ ନୁହେଁ । ଏହାର ବହୁବର୍ଷ ପରେ ଦକ୍ଷିଣ ଭାରତ ଭ୍ରମଣର ସୁଯୋଗ ଜୁଟିଲା । ସେହି ପରି ମହାକୁମ୍ଭସ୍ନାନ ବିଷୟ ଅବଶ୍ୟ ବର୍ଣ୍ଣନୀୟ

## ୧୬୫. ମହାକୁମ୍ଭ ସ୍ନାନ ଯୋଗ

ଗତ ମହାକୁମ୍ଭ ଯୋଗ (୨୦୦୧)ରେ ପଡ଼ିଲା । ବହୁତ ଲୋକ ଯାଇ ସ୍ନାନାଦି କରିଲେ । ଦେଖା ଶିଖା ଓଡିଶା ପରି ମନ ଦୌଡିଲା । ଆମ କମଳବାବା ସେତେବେଳକୁ ଆମ ସାଇରୁ ଦଳେ ସ୍ନାନାର୍ଥୀଙ୍କୁ ନେଇ ଫେରିଥାନ୍ତି ।ତାଙ୍କଠାରୁ ଅନୁଭୂତି ଶୁଣିଲି । ମାଘ ପୂର୍ଣ୍ଣମୀର ଶେଷ ସ୍ନାନ ଯୋଗଥାଏ । ଦୁଇଦିନ ଆଗରୁ ବାହାରିଲୁ ସ୍ୱାମୀସ୍ତ୍ରୀ । ଯୋଗକୁ ମୋର ବନ୍ଧୁ ଶରତ ଚନ୍ଦ୍ର ତ୍ରିପାଠୀ ଓ ତାଙ୍କ ସ୍ତ୍ରୀ ମିଳିଗଲେ । ସାଙ୍ଗ ହୋଇ ଗୋଟିଏ ଟବାରେ

ରିଜର୍ଭେସନ କରିଥିଲୁ । ଅଳ୍ପ ବାଟ ଯିବାପରେ ବୁଲି ଦେଖିଲି ସେ ଡବାରେ ଆମ ଭୁବନେଶ୍ୱର ରାମକୃଷ୍ଣ ମଠର ଖାଜାଞ୍ଚି ମହାରାଜ ସ୍ୱାମୀଜୀ ବିନା ରିଜର୍ଭେସନରେ ତଳେ କମଳପକାଇ ବସିଯାଉଛନ୍ତି ।ତାଙ୍କର ଭାରି ମନ ଥିଲେ ମଧ୍ୟ ଶେଷ ମୂହୁର୍ତ୍ତରେ ତାଙ୍କ ମହନ୍ତ ଅନୁମତି ଦେଲେ ଓ ସେ ସିନା ବାହାରି ପଡିଲେ, ତାଙ୍କୁ ରିଜର୍ଭେସନ ମିଳିଲାନି । ତାଙ୍କୁଡାକି ନେଇ ଆମ ୪ଜଣଙ୍କ ସିଟ୍‌ରୁ ଗୋଟେ ସିଟ୍ ଛାଡିଲୁ । ତାଙ୍କର ରାତ୍ର ଭୋଜନ ବ୍ୟବସ୍ଥା ଆମ ଖାଦ୍ୟରୁ କଲୁ ଓ ସାଙ୍ଗହୋଇ ଏଲାହାବାଦ୍‌ରେ ପହଞ୍ଚିଲୁ । ଏକତରଫା ରାସ୍ତା ବ୍ୟବସ୍ଥା ଯୋଗୁଁ ସେଠୁ ଆମ ରହଣି ସ୍ଥଳ ସାନଛତା ମଠକୁ କେହି ରିକ୍ସା, ଘୋଡାଗାଡି ବା ଟ୍ୟାକ୍ସି ମିଳିଲେନି । ଅଧାବାଟ ରିକ୍ସାରେ ଯାଇ ଚାଲିଲୁ । ସେଠୁ ଅଖିଆ ଅପିଆ ବାଲିରେ ଚାଲି ଚାଲି ଦିନ ୧୨ଟାରେ ବହୁ କଷ୍ଟରେ ମଠରେ ପହଞ୍ଚିଲୁ । ମନେହେଉଥିଲା ବାଟରେ ପ୍ରାଣ ଛାଡିଯିବ । ସେତେବେଳକୁ ଯମୁନା ଘାଟପାଖରେ ଜଣେ ବାଳକ ଆମ ଅବସ୍ଥାଦେଖି ପାଣିଟିକେ ପିଇବାକୁ ଦେଇଥିଲା । ଯାହାହେଉ ପହଞ୍ଚିବା ପରେ ଆଗ କୁମ୍ଭସ୍ନାନ କରି ଫେରି ସେହି ମଠରେ ୩ ଦିନ ରହି ସେଠୁ ଅଯୋଧ୍ୟା ଓ ଚିତ୍ରକୂଟ ଯାଇ ଦର୍ଶନ ବ୍ରତ ଓ କାମଦାଗିରି ପରିକ୍ରମା କରି ଖୁବ୍ ଆନନ୍ଦ ପାଇଲୁ । ସେଠି ମଧ୍ୟ ଜଣେ ଓଡିଆ ବାବାଜୀ ଥିଲେ ।ସେ ତୀର୍ଥରେ କେଉଁଠି ମନ୍ଦାକିନି ସ୍ନାନ କେଉଁଠି କାମଦାଗିରି ପରିକ୍ରମା କେଉଁଠି କଣ ଦର୍ଶନ କରାଯିବ ସବୁ ବତାଇ ଦେଇଥିଲେ । ଅଯୋଧ୍ୟା ରାମଜନ୍ମଭୂମି,କନକ ମନ୍ଦିର,ମହାବୀରଗଡା ଓ ସରଜୁ ସ୍ନାନ ଇତ୍ୟାଦିହେଲା । ମୋଟ ଉପରେ ଏ ଥରର ତୀର୍ଥଯାତ୍ରା ଯିବାବେଳେ ଯେଉଁ ଶେଷ ପର୍ଯ୍ୟାୟରେ ବାଟଚାଲି ବହୁ କଷ୍ଟ ହୋଇଥିଲା ସେ ସୁନ୍ଦର ସ୍ଥାନ ବୁଲି ଦର୍ଶନ ପରେ ସବୁ କଷ୍ଟ ମେଣ୍ଟିଗଲା ।

ଉତ୍ତର ଭାରତ ତୀର୍ଥାଟନ ବେଳେ ଛାଡି ହୋଇଯାଇଥିବା ଅଯୋଧ୍ୟା ଭାଗଟି ଏଥର ପୂର୍ଣ୍ଣ ହେବାରେ ଅଶେଷ ଆନନ୍ଦ ମିଳିଥିଲା ।ଏହି ଜୀବନ କାଳରେ ଆଉଥରେ ମହାକୁମ୍ଭସ୍ନାନ ଯୋଗ ଜୁଟିବକି ନାହିଁ ଜଣା ନାହିଁ । ତେଣୁ ମନ ପୁରେଇ ୩ଦିନ ତ୍ରିବେଣୀ ସ୍ନାନ, ସାନଛତା ମଠରେ ରହଣି,ସଂକୀର୍ତ୍ତନ,ପ୍ରସାଦ ସେବନ ଓ ସେଠାରୁ ଅଯୋଧ୍ୟା ଓ ଚିତ୍ରକୂଟ ଦର୍ଶନ ସେହି ପରମକାରୁଣିକ ମର୍ଯ୍ୟାଦା ପୁରୁଷ ଶ୍ରୀ ରାମଚନ୍ଦ୍ରଙ୍କ ଦୟାରୁ ସମ୍ଭବ ହେଲା । ଏଠାରେ ମଧ୍ୟ ଅଲୌକିକ ଲୀଳା । ରାମ ଜନ୍ମଭୂମି ଦର୍ଶନ ପୂର୍ବରୁ ପେଟ ଖରାପ ହୋଇଝାଡା ଟିକେ ହୋଇଥାଏ । ରାମଜନ୍ମ ଭୂମି ଅଞ୍ଚଳରେ ପ୍ରବେଶ ପୂର୍ବରୁ ଖୁବ ଜୋରରେ ଝାଡା ଦେଖାଇଲା । ଅଜଣା ଗୋଟେ ବଣୁଆ ଜାଗାକୁ ଝାଡା.ଗଲି । ସୌଚ ନହୋଇ କିପରି ରାମ ଜନ୍ମ ଭୂମିକୁ ଯିବି ? ମନରେ ଭାବିଲି କଣ ଏଇ ଦିପତଳୁ ଅନ୍ଧାର ଦେଖି ଆଲୋକ ମୁଖରୁ ବଞ୍ଚିତ ହେବି । ପୁଣି ଲୁଗାପଟା ଗୋଟେ ସ୍ଥାନରେ ଛାଡି ଦେଇଥାଏ । ମନେପଡିଲେ ମହାବୀର । ମନେ ମନେ କହିଲି ଘର କାହିଁ ? ପାଣି କାହିଁ କିପରି ସୌଚ ହେବି ମହାବୀର ଜାଣନ୍ତି; ସେ ସବୁ କରିପାରନ୍ତି । ସେ ଅବା ଦୟା କରିବେ । ବାସ୍ ଏତିକି ଭାବି ଅଳ୍ପ ଟିକେ ବାଟ ଯାଇଛି ଗୋଟେ ହତାବାଡି ଦେଖାଗଲା । ସେଠିପାଖ ସାତଟି ଟ୍ୟାପ୍ ଧାଡି ହୋଇ ଲାଗିଛି ଘର ବାହାରେ । ସେଠାକୁ ଯାଇ ସବୁ ଟ୍ୟାପ୍ ଖୋଲିଗଲି । ପାଣି କାହିଁ ? ଶେଷରେ ଯେଉଁ ଟ୍ୟାପ୍‌ଟି ଖୋଲିଲି ସେଥିରେ ପାଣି ଥିଲା । ଟ୍ୟାପ୍ ଉଚ୍ଚାରେ ଅଛି । କଣ ଲଙ୍ଗଳା ହୋଇ ପଛକରି ସୌଚ ହେବି ।

ଠିକ୍ ଏତିକି ବେଳେ ସେଘରୁ ଜଣେ ମିଲିଟାରୀ ପୋଷାକ ଧାରୀ ଯୁବକ ଥାଳଟିଏ ଆଣି ବଢ଼ାଇଦେଇ ଆରାମରେ ସୌଚ ହେବାକୁ କହିଲେ ଓ ମୁଁ ସୌଚ ହୋଇ ଥାଳ ଫେରାଇବା ବେଳକୁ ସେ ନଥିଲେ । ଡାକିଲି; କେହି ଆସି ଥାଳ ନେଲେନି । ମୁଁ ସେହି ଦ୍ୱାର ଦେଶରେ ଥାଳଟିକୁ ରଖିଦେଇ ଆସି ଲୁଗା ପିନ୍ଧି ରାମ ଜନ୍ମଭୂମି ଦର୍ଶନ କଲି । ଏ ଗୋଟିଏ ଛୋଟିଆ କଥା ହେଲେ ମଧ ଅଲୌକିକ ଓ ବିସ୍ମୟକର । ଏସବୁ ସେହି ଲିଳାମୟଙ୍କର କ୍ଷୁଦ୍ର ମାନବ ସହ ଲୀଳା ଓ ମହାବୀରଙ୍କ କରାମତି ଛଡା ଅନ୍ୟ କିଛି ନୁହେଁ । ଏକଥା ମୁଁ ମୋ ସ୍ତ୍ରୀ ବା ସାଥୀ ଶରତ ତ୍ରିପାଠୀଙ୍କୁ ମଧ କହିନଥିଲି । କେବଳ ଏତେ ବିଳମ୍ବର କାରଣ ଝାଡାଯିବା ବୋଲି ବୁଝାଇ ଦେଇଥିଲି । ସାନଛତା ମଠ ପାଖରୁ ଯେଉଁ ସନ୍ୟାସୀ ଆମସହ ଚିତ୍ରକୁଟ ଓ ଅଯୋଧା ଯାଇଥିଲେ ତାଙ୍କ ପରାମର୍ଶରେ ଚାଲି ଚାଲି ଯାଇ ଗୋପୀନାଥ ଓ ମହାଦେବ ଦର୍ଶନ କରି ସଂଗମ ଦର୍ଶନ ସମ୍ପୂର୍ଣ୍ଣ କରିଥିଲୁ । ସଂଗମ ଦର୍ଶନ ସହ ଏ ଦୁଇ ଦର୍ଶନ ଶାସ୍ତ୍ର ସମ୍ମତ । ସାନଛତା ଫଳାହାରି ମଠର ମହନ୍ତ ଓ ସେ ମଠର ଓଡିଆ ସନ୍ୟାସୀଙ୍କୁ ଟଙ୍କା ଦେଲୁ । ସେ କମବେଶି ନକହି ନିର୍ବିକାର ଭାବେ ଗ୍ରହଣ କରିଥିଲେ । ସେଠି ରହିବା ଖାଇବା ପାଇଁ ଖର୍ଚ୍ଚଦେବାକୁ ପଡେନା । କେବଳ ଯେ ଯାହା ପ୍ରଣାମି ଦିଅନ୍ତି । କୁମ୍ଭ ମେଳାର ଶେଷଦିନରେ ସେ ମଠରେ ଆଶ୍ରୟ ନ ମିଳି ଥିଲେ ରହିବାଟା ଅସୁବିଧା ହୋଇଥାନ୍ତା ; କାରଣ ସବୁ ଅସ୍ଥାୟୀ ଶିବିର ଭଙ୍ଗା ଆରମ୍ଭ ହୋଇଯାଇଥିଲା ।

## ୧୬୬. ପଶ୍ଚିମରେ ରଣଛୋଡଜୀଙ୍କ ଦର୍ଶନ

ବିନାଚେଷ୍ଟା ଓ ବିନା ଯୋଜନାରେ ଚାରିଧାମ ଦର୍ଶନ ଈଶ୍ୱରଙ୍କ ଇଛାକୁ କିଏ ରୋକିବ । ହିନ୍ଦୁ ଜୀବନରେ ଚାରି ଧାମ ଏକାନ୍ତ ଆବଶ୍ୟକ । ତାକୁ ଛାଡି ଧର୍ମଜୀବନରେ ପୂର୍ଣ୍ଣତା ଆସେନି । ସବୁ ଧାମ ହୋଇ ଯାଇଥାଏ ବାକିଥାଏ ଦ୍ୱାରାକା; ବହୁତ ଦୂର । କେମିତି ଯିବି ନଗଲେ କଣ ହୋଇ ଯାଉଛି । ଏହିପରି ଆଶଙ୍କା ଓ ଅନିଛା ଥିଲା ।

ବଡ ପୁଅ ଟୁକୁ ପୁନେରେ ଥାଏ । ତା ପାଖକୁ ଯିବାକୁ ଡକେଇଥିଲା । ଆମେ ସ୍ୱାମୀ ସ୍ତ୍ରୀ ଗଲୁ । ସେଠି ଦିନା କେତେ ରହିଲୁ । ସେଠି ଅଳ୍ପ କିଛି ପୁରୁଣା ସ୍ଥାନ ଦେଖିଲୁ । ପୁଅ କହିଲା ଏଠୁ ଲୋକ ବସରେ ଦ୍ୱାରକା ଧାମ ଯାଉଛନ୍ତି । ମୁଁ ଟିକେଟ୍ କରିଦେବି । ଅହମଦାବାଦରେ ମୋର ଗୋଟେ ଚିହ୍ନା ହୋଟେଲରେ ରହି ସେଠୁ ଯିବ । ଆମେ ଅହମଦାବାଦ ଗଲୁ । ସେ ମୁସଲମାନ ହୋଟେଲରେ ରହି ସୌଭାଗ୍ୟ ବଶତଃ ମହାତ୍ମା ଗାନ୍ଧିଙ୍କ ସାବର ମତି ଆଶ୍ରମ ଦେଖିଲୁ ଓ ବସ୍‌ରେ ଯାଇ ଗୁଜୁରାଟର ଗାନ୍ଧିନଗର ମହାତ୍ମାଗାନ୍ଧିଙ୍କ ଜନ୍ମସ୍ଥାନ ପୋର ବନ୍ଦର, ଜୁନାଗଡ ଇତ୍ୟାଦି ସହ ସୌରାଷ୍ଟ୍ରର ସୋମନାଥ ମନ୍ଦିର ଓ ପୁରାନେ ପ୍ରଭାସତୀର୍ଥ ଦର୍ଶନର ସୌଭାଗ୍ୟ ମିଳିଲା । ପୋର ବନ୍ଦର ମହାତ୍ମାଗାନ୍ଧିଙ୍କ ଜନ୍ମସ୍ଥାନ ଓ ସୁଦାମା ମନ୍ଦିର ଦେଖି ଆମ୍ଭେ ବିସ୍ମିତ ହୋଇଯାଇଥିଲୁ । ତେଣେ ଆମ ଟ୍ୟୁରିଷ୍ଟ ବସ୍ ଆଗେଇ ଯାଇଥିବାରୁ ଦୌଡି ଦୌଡି ତାକୁ ଧରିଲୁ । ସୋମନାଥ ମନ୍ଦିର ଦର୍ଶନ ବେଳେ ଐତିହାସିକ ଲୁଣ୍ଠନ, ପ୍ରଭାସ ତୀର୍ଥ ଜଳରେ ସ୍ନାନ ଓ ଶ୍ରୀକୃଷ୍ଣଙ୍କ ଲୀଳା ସଂହାର ସ୍ଥଳ ଦେଖି ସେହିପରି ବିଭୋର ହୋଇଯାଇ

ନାମ କୀର୍ତ୍ତନ ଆରମ୍ଭ କରି ଦେଇଥିଲୁ ।

ଶେଷରେ ଦ୍ୱାରକାରେ ଗୋଟିଏ ରିକ୍ସାବାଲା ଆମକୁ ବୁଲାଇ ସବୁ ମନ୍ଦିର ଓ ଜ୍ୟୋତିର୍ଲିଙ୍ଗ ନାଗେଶ୍ୱର ମନ୍ଦିର ଦେଖାଇଥିଲା । ଛୋଟ ଷ୍ଟିମର ଜାହାଜରେ ଯାଇ ଭେଟଦ୍ୱାରକାରେ ଦ୍ୱାରକାଧୀଶ ମନ୍ଦିର ଦର୍ଶନ କରି ସଂପୂର୍ଣ୍ଣ ତୃପ୍ତିଲାଭ ସହିତ ତିନୋଟି ଧାମ ଦର୍ଶନ ସମାପ୍ତ କରିଥିଲୁ ।

ଠାକୁରେ' ତ ସବୁକିଛି ଦେଇଛନ୍ତି । ତାଙ୍କୁ ଏ କ୍ଷୁଦ୍ର ମାନବ କଣ ବା ମାଗିବ । ମାଗିବାଠାରୁ କଳ୍ପତରୁ ଅଧିକ ଦିଅନ୍ତି । ଏସବୁ ଜାଣିବା ସତ୍ତ୍ୱେ ମୁଁ ସିରିଡି ସାଇବାବାଙ୍କ ପାଦ ସ୍ପର୍ଶକରି ବିବେକାନନ୍ଦଙ୍କ ପରି ମାଗିଥିଲି ଜ୍ଞାନ, ବୈରାଗ୍ୟ ଓ ଶୁଦ୍ଧା ଭକ୍ତି । ଏହା ଏକ ବିସ୍ମୟ ବା ଅଲୌକିକ ଘଟଣା ଛଡା କଣ ହୋଇପାରେ । ଏହା ସିରିଡିର ଘଟଣା । ପୁନାରୁ କାର ଯୋଗେ ଦିନେ ଯାଇ ସିରିଡିସାଇ ବାବାଙ୍କ ଦର୍ଶନ କରି ସ୍ତ୍ରୀ, ପୁଅ ବୋହୁ, ନାତୀସହ ଫେରିଲୁ । ସେ ହେଉଛନ୍ତି ଦାତାରଂ ସର୍ବ ସମ୍ପଦାଂ । ଏବେ ପ୍ରତିଦିନ ସାଇବାଣୀ ପଢିବା ବେଳେ ତାହାହିଁ ମାଗୁଛି । ବୋଧହୁଏ ତାହାହିଁ ତାଙ୍କର ଇଚ୍ଛା । ମହାତ୍ମାଗାନ୍ଧୀଙ୍କ ସାବରମତି ଆଶ୍ରମ ଦେଖିବାକୁ ଯାଇ ସେଠାରେ ଚାରି ଘଣ୍ଟା ଅଟକି ଗଲୁ । ଗାନ୍ଧି, ବିନବାଙ୍କ ବାସଗୃହ ଓ ପରିଦର୍ଶକଙ୍କ ଗୃହ ଗାନ୍ଧିଜୀଙ୍କ ସମ୍ବନ୍ଧୀୟ ସଂଗ୍ରହାଳୟ ଯେତିକି ଦର୍ଶନୀୟ ସେତିକି ଶିକ୍ଷଣୀୟ ଓ ଆନନ୍ଦ ଦାୟକ, କାରଣ ସେଥିରେ ଏ ଜାତିର ଜନକଙ୍କ ଐତିହାସିକ ତଥ୍ୟାବଳୀ ସଂରକ୍ଷିତ । ତା ପରଦିନ ଥାଏ ଗାନ୍ଧି ଜୟନ୍ତୀ । ସେଥିରେ ଯୋଗ ଦେବାକୁ ମୋତେ ସେଠାକାର ଅଧିକାରୀ ଗୋଟେ ନିମନ୍ତ୍ରଣଦେଲେ ଓ ମୁଁ ସେଠାରୁ ଗାନ୍ଧିଜୀଙ୍କ ଇଂରାଜୀ ଲେଖା ସତ୍ୟର ପ୍ରୟୋଗ ବା ଜୀବନିଟିଏ କିଣି ଏବେ ଯାଏ ରଖି ଦୈନିକ ପଢୁଛି ।

## ୧୬୭. ଦକ୍ଷିଣାତ୍ୟରେ ଚାରି ଧାମ ଶେଷ

ତୁମର ଇଚ୍ଛାନଥିଲେ ବି ଈଶ୍ୱରଙ୍କର ଦୟାହେଲେ ସେ ସତ୍‌କାର୍ଯ୍ୟ କରାଇ ନିଅନ୍ତି । ତୁମେ ଇଚ୍ଛା କରି କେଉଁଠିକି ଯିବ କ'ଣ କରିବ ? ଏ କଥାର ମାନେନାହିଁ । ସେହି ଈଶ୍ୱର ଯିଏ କି ଇଚ୍ଛା ଶକ୍ତି ଜାଗ୍ରତ କରନ୍ତି ସେହି ତାର ପୂରଣ ପାଇଁ ସବୁ ବ୍ୟବସ୍ଥା କରିଦିଅନ୍ତି । ନିଜ ଇଚ୍ଛା ଯେ କି ତାଙ୍କ କରୁଣାରୁ ସମ୍ଭୁତ ଏକଥା ଆମେ ବୁଝିବା କଷ୍ଟକର । ତାଙ୍କ ଇଚ୍ଛା ବା ତାଙ୍କ କରୁଣା ଓ ଦାନ ସେହି ମାନଙ୍କୁ ମିଳେ ଯିଏ ତାଙ୍କୁ ଅନୁସରଣ କରନ୍ତି ।

"ଯେ ଯଥାମାଂ ପ୍ରପଦ୍ୟନ୍ତେ ତାଂ ସ୍ତଥୈବ ଭଜାମ୍ୟହଂ"

ସାନ ଭଉଣୀର ବଡପୁଅ ପୀତାମ୍ବର ତ୍ରିପାଠୀ ଗାଁରେ ରହି କେନ୍ଦ୍ରାପଡାରୁ ବି.ଏସ.ସି. ପାଶ ପରେ ଚାକିରି ଖୋଜୁଥାଏ । ମୁଁ ତାକୁ ବ୍ୟାଙ୍କ୍ ପରୀକ୍ଷା ପାଇଁ ବହିଖଣ୍ଡେ ଦେଲି ଓ ଦୈନିକ ଇଂରାଜୀ ଖବର କାଗଜ ପଢିବାକୁ କହିଲି । ମୋ କଥାକୁ ବେଦ ପରିସେ ମାନେ । ଏତକ କହିବା ପରେ ସେ ତିନୋଟି ବ୍ୟାଙ୍କ ପରୀକ୍ଷା ଦେଇ ସବୁଥିରେ କୃତକାର୍ଯ୍ୟ ହେଲେ ମଧ ବ୍ୟକ୍ତିଗତ ସାକ୍ଷାତ୍ କାରରେ କଟିଗଲା । ଏତିକି ବେଳେ ନାଗପୁର ସ୍ଥିତ ଜାତୀୟ ଅଗ୍ନି ସେବା

ସଂସ୍ଥାରେ ପଢ଼ିବାକୁ ସୁବିଧା ପାଇଗଲା । ତାର ପଢ଼ାଖର୍ଚ୍ଚ ପାଇଁ ଗ୍ୟାରେଣ୍ଟି ପଦି ଶିକ୍ଷା ବୃତ୍ତି କରେଇ ଦେବାରେ ତାର ପାଠପଢ଼ା ସୁଗମ ହୋଇଗଲା । ମଝିରେ ସାମାନ୍ୟ କିଛି କିଛି ଟଙ୍କା ଦେଇଥିଲେ ମଧ ପାଶ୍ ସାର୍ଟିଫିକେଟ ପାଇବାକୁ ଡ୍ରାଇଭିଂ ଟ୍ରେନିଂ ପ୍ରମାଣ ପତ୍ର ଦରକାର ପଡିବାରୁ ତା ପାଇଁ ଏକକାଳୀନ ହଜାରେ ଟଙ୍କା ଦେବାକୁ ପଡିଥିଲା । ଚାକିରୀ ପାଇଁ ମଧ ଦୁଇ ତିନି ଜାଗାରେ ପାଇବାବେଳେ ଭାରତୀୟ ତୈଳ ନିଗମ ପାଇଁ ମୁଁ ମନ୍ତ୍ରୀ ଙ୍କ ପାଖରେ ଥିବାରୁ ସୁପାରିଶ କରିବାର ସୁବିଧା ହୋଇଥିଲା ।

ସେ ଥାଏ ମାଡ୍ରାସରେ ; ଯାହାକି ବର୍ତ୍ତମାନ ଚେନ୍ନାଇ । ମୁଁ ରାମେଶ୍ୱର ଧାମ ଦର୍ଶନ ଇଚ୍ଛା କରିବାରୁ ସେ ତାମିଲନାଡୁ ପର୍ଯ୍ୟଟନ ନିଗମରେ ସାତ ଦିନିଆ ଟିକେଟ କରିଦେଲା । ମୁଁ ମାତ୍ର ଟ୧୫୦୦ ଦେଇଛି । ତା ଘରେ ରହି ସେଠୁ ୭ ଦିନ ମଧ୍ୟରେ ଶ୍ରୀରଙ୍ଗମ, ମହାବଳେଶ୍ୱର, ଭେଙ୍କଟେଶ୍ୱର, ନଟରାଜ, ରାମେଶ୍ୱର, କନ୍ୟାକୁମାରୀ, ମଦୁରାଇ, ମଣ୍ଡପମ୍ ଇତ୍ୟାଦି ବୁଲାଇବା ବ୍ୟବସ୍ଥା ସେ କରିଦେଲା । ବାଟରେ ମହାଲିଙ୍ଗ ପାଖରେ ଅନିଠାରୁ ପକେଟ୍‌ମାର ହୋଇ ଆମ ଆଟାଚିଚାବି ଓ ଅଳ୍ପ କିଛି ଟଙ୍କା ଚୋରିଗଲା । ସେ ଟୁରିଷ୍ଟ ବସ୍ ଅଟକାଇ ଚାବି ସଂଗ୍ରହ କରି ଆମେ ଖୁବ୍ ଖୁସିରେ ଦାକ୍ଷିଣାତ୍ୟ ଭ୍ରମଣ ଶେଷକରି ଏହିଠାରେ ଚାରିଧାମ ଦର୍ଶନ ଶେଷକଲୁ । ରାମେଶ୍ୱର ପୀଠରେ ସମୁଦ୍ରସ୍ନାନ କରି ବିଭିନ୍ନ କୁଣ୍ଡର ପାଣିଢାଳି ହୋଇ ଦର୍ଶନ ବେଳେ ସଂପୂର୍ଣ୍ଣ ଆତ୍ମ ବିସ୍ମୃତ ହୋଇଯିବା ସହ ସ୍ୱାମୀ ବିବେକାନନ୍ଦଙ୍କ ତପସ୍ୟାଶିଳା ଓ କନ୍ୟାକୁମାରୀ ମନ୍ଦୀରରେ ଧ୍ୟାନ ତଥା ଧ୍ୟାନ ମନ୍ଦିରରେ ୧୦ ମିନିଟ୍ ଯାଏ ଅଚଳାଧ୍ୟାନମଗ୍ନ ହୋଇଯାଇଥିଲି । ସେଠାରେ ଟ୨୫୦ଙ୍କା ଦେଇ ଆଜୀବନ ସଭ୍ୟ ହୋଇଥିବାରୁ ଆଜିଯାଏ ବାର୍ଷିକରିପୋଟ ଓ ଜନ୍ମଦିନର ଶୁଭେଚ୍ଛା ମୋ ପାଖକୁ ଆସୁଛି । ତାଙ୍କ ବାର୍ଷିକ ରିପୋର୍ଟରୁ କେତେ ଲୋକ ବିଭିନ୍ନ ଅଭିନବ ଯୋଜନାର ରୂପରେଖନେଇ ନିଜେ ମଧ ସେପରି କରିଛନ୍ତି ମୋରି ପରାମର୍ଶରେ ।

ଯେ ଏକ ଅଭୁଲା ସ୍ମୃତି । କେବଳ ଯିବା ବାଟରେ ପ୍ରଶାନ୍ତି ନିଳୟ ଯାଇ ସାଇବାବାଙ୍କୁ ଦେଖି ହେଲାନି; କାରଣ ସେତେବେଳେ ସେ ବାଙ୍ଗାଲୋରରେ ବୃନ୍ଦାବନ ଗାର୍ଡେନରେ ଥିଲେ ।

ବିବେକାନନ୍ଦ ଶିଳା ଓ କନ୍ୟାକୁମାରୀରେ ଅଳ୍ପ ସମୟ ପାଇଁ ହେଲେ ମଧ ଯେଉଁ ଧ୍ୟାନସ୍ଥ ଅବସ୍ଥା ପ୍ରାପ୍ତ ହୋଇଥିଲା ତାହା ମଧ ଅଲୌକିକ ଅନୁଭୁତି ପୂର୍ଣ୍ଣ ବା ବିସ୍ମୟକର ଘଟଣା । ଏହା ଈଶ୍ୱରଙ୍କ ସିଧାସଳଖ ବରଦାନ ସଦୃଶ । ତାଙ୍କର ଦୟାନହେଲେ ଏ ଅନୁଭୁତି ବିରଳ ।

## ୧୬୮. - ପିତୃଶ୍ରାଦ୍ଧ

ଶ୍ରଦ୍ଧା ଶବ୍ଦରୁ ଶ୍ରାଦ୍ଧ ବୋଲି ପ୍ରାୟ କୁହାଯାଏ । ଜେଜେ ବାପା ଓ ମା ଚାରିଧାମ ସହ ଗୟା ଶ୍ରାଦ୍ଧ କାର୍ଯ୍ୟ ବାବାଜୀ କଜେଇଙ୍କ ସହ ଯାଇ ୮ ମାସରେ ଶେଷ କରିଥିଲେ ତାଙ୍କର ୪ର୍ଥ ବୟସରେ । ଘରେମଧ ସେ ମୃତ୍ୟୁଯାଏ ଶ୍ରାଦ୍ଧକରୁଥିଲେ ।ତାଙ୍କରି ମୁହଁରୁ ଶୁଣି ତାଙ୍କ ବାପା ମା ଓ ଜେଜିବାପା ଓ ମାଙ୍କ ନାମାଦି ମନେ ରଖିଥିଲି ।ସଂସ୍କାର ବଶତଃଶ୍ରାଦ୍ଧପ୍ରତି ମୋର

ଶ୍ରଦ୍ଧା ଜନ୍ମି ଥିଲା । ଏହା ହିଁ ପ୍ରାୟ ପତ୍ୟେକ ପରିବାରରେ ଘଟେ । ଯାହାଙ୍କ ପରିବାରରେ ଏଭଳି ସଂସ୍କୃତି ବା ପରମ୍ପରା ନାହିଁ ସେ ନିଜର ବାପ ମାଙ୍କ ନାମ ମନେରଖିବା କଷ୍ଟ ।

ଉତ୍ତର ଭାରତ ଗସ୍ତ ସମୟରେ ବ୍ରହ୍ମକପାଳୀ, ଗୟା, ଗଙ୍ଗା, ତ୍ରିବେଣୀ ଓ ପୁରୀଧାମର ଶ୍ରାଦ୍ଧ ପରେ ଗାଁରେ ଯାଇଁ ସପଳିଶ୍ରାଦ୍ଧ କରିଥିଲି । ଭାଇନା ସେ ଶ୍ରାଦ୍ଧ ଓ ବ୍ରାହ୍ମଣ ଭୋଜନ ବ୍ୟବସ୍ଥା କରିଥିଲେ । ବେଶ୍ ତା ପରେ ସେ ସମସ୍ତଙ୍କ ବାର୍ଷିକ ଶ୍ରାଦ୍ଧ ବା ଭୋଜ୍ୟ ବନ୍ଦ କରିଦେଲେ । ମୁଁ ଏ କଥା ଜାଣେନା । ବର୍ଷେ କି ଦି ବର୍ଷ ପରେ ମାର୍ଗଶୀର ଏକାଦଶୀରେ ବୋଉ ଶ୍ରାଦ୍ଧର ଦିନକ ପୂର୍ବରୁ ସ୍ୱପ୍ନରେ ଦେଖିଲି ଯେ ବୋଉ କହୁଛି ମୋ ଶ୍ରାଦ୍ଧବନ୍ଦ କରିଦେଲ । ଗାଁକୁ ଯାଇ ଭାଇନାଙ୍କୁ ପଚାରିବାରେ ସେ କହିଲେ ତୁତ ଗୟା ଶ୍ରାଦ୍ଧ ଦେଲୁ ଆଉକି ଶ୍ରାଦ୍ଧ !ଆଉ କ'ଣ ଦରକାର । ମୁଁ ଧଡିଦାଶଙ୍କୁ ପଚାରିଲି ଓ ସେ ମନା କଲେ । ମୁଁ ସାଙ୍ଗେ ସାଙ୍ଗେ ଧଡି ଦାଶ(କକେଇ)ଙ୍କୁ ପଚାରିବାରେ ସେ କହିଲେ ମୁଁ ୨ ୦ ବର୍ଷ ତଳେ ଗୟା ଶ୍ରାଦ୍ଧ ଦେଇମଧ ଏବେ ଭୋଜ୍ୟ କରୁଛି ଆଉ ତାକୁ କାହିଁକି ବନ୍ଦ କରିବାକୁ ମୁଁ କହିବି । ମୁଁ କଥାଟା ବୁଝିଗଲି । ବାପା ଓ ଜେଜେ ମରିବା ବେଳକୁ ଆମ ପରିବାରରେ ଭାଇନା ଏକମାତ୍ର ପଇତା ନେଇ ବାହ୍ମଣ ହୋଇଥିବାରୁ ବହୁ ବର୍ଷ ଧରି ସେ ଶ୍ରାଦ୍ଧ ଭୋଜ୍ୟ ଦେଇ କ୍ଳାନ୍ତ ଥିଲେ ଓ ତାଙ୍କ ପଛ ସ୍ତୀଙ୍କରମଧ ଏପରି ଶ୍ରାଦ୍ଧ ପରମ୍ପରା ଓ ସଂସ୍କୃତି ପ୍ରତି ବୋଧେ ଶ୍ରଦ୍ଧା ନଥିବାରୁ ଏପରି ଘଟିଥାଇପାରେ । ଆଗରୁ ଭାଇନା ବାପା ବୋଉଙ୍କର ଶ୍ରାଦ୍ଧ କରୁଥିଲେ ମଧ ମୁଁ ବାପା ବୋଉଙ୍କଶ୍ରାଦ୍ଧରେ ମୋ କର୍ମ ସ୍ଥଳିରେ ଭୋଜି କରି ଖାଇବାକୁ ଦିଏ । ଏବେ ଠିକଣା ବାଟ ଦେଖାଗଲା ବା ମିଳିଗଲା ।

ଦୋଳରେ ଆମ ଘରକୁ ଠାକୁର ଭୋଗ ଖାଇବାକୁ ଆସିବାବେଳେ; "ଠାକୁର ଆସିଲେ ଭୋଗ ଆଣ" କହି ଜେଜେ ଦେହ ତ୍ୟାଗ କରିଥିଲେ । ଦୈବର ସଂଯୋଗ । ଜେଜେ ଆମର ଦୋଳ ତ୍ରୟୋଦଶୀର ତିଥିରେ ଠାକୁରଙ୍କୁ ଦେଖି ମରିଥିଲେ । ରାଜଧାନୀ ପୂଜା ସମିତିର ଦୋଳ ଠାକୁର ଦୀର୍ଘ ୨ ୫ ବର୍ଷଧରି ସେହି ତ୍ରୟୋଦଶୀ ତିଥିରେ ଆମ ଘରେ ସଂଧାରେ ଏବେ ଯାଏ ଭୋଗ ଖାଉଛନ୍ତି ଓ ତାଙ୍କ ସାଙ୍ଗରେ ଆସିଥିବା କାହିଆ ଗଉଡ, ଘଣ୍ଟିଆ,ଲାଇଟବାଲା, ପୂଜକ,ମେନେଜର ଓ କୀର୍ତ୍ତନିଆ ଇତ୍ୟାଦି ଆମ ଘରେ ପୁରୀ, ଖିରି, ତରକାରୀସହ ପେଟ ପୁରା ଭୋଗ ଓ ଚା ଖାଇ ରାତିସାରା ଏ ଅଞ୍ଚଳରେ ଠାକୁରଙ୍କୁ ଧରି ଭୋଗ ଖୁଆନ୍ତି । ଜେଜେଙ୍କ ମୃତ୍ୟୁ କାଳୀନ ସ୍ମୃତି ମୋର ଓ ପିଲାଙ୍କର ସ୍ୱତଃ ଜାଗ୍ରତ ହୁଏ । ପିତୃଲୋକରେ କି ସ୍ୱର୍ଗଲୋକରେ ଜେଜେ ଥାଇ ଏହାର ମାର୍ଗଦର୍ଶନ କରାଉଛନ୍ତି ଓ ଆଶୀର୍ବାଦ ଢାଳୁଛନ୍ତି ସର୍ବତୋଭାବେ ଦୀନବନ୍ଧୁ କୁଟୀରର ଅନ୍ତେବାସୀଙ୍କ ମୁଣ୍ଡରେ ଦିବ୍ୟଦୃଷ୍ଟିରେ ।

ଜେଜେ ମା ଭାଦ୍ର ବଡ ଏକାଦଶୀରେ ସ୍ୱର୍ଗାରୋହଣ କରିଥିଲେ । ବଡ ଏକାଦଶୀରେ କିଏ ଖାଇବଡାକିଲେ । ତେଣୁ ସେଦିନଟି ପୁରୀଯାଇ ନିଜେ ଅଭଡା ଖାଇବା ସହ ଜଣେ ଅଧେଙ୍କୁ ଖୁଆଏ ମଧ । ଏଥିରେ ବୁଢୀମାଙ୍କ ସ୍ମରଣ ସ୍ୱାଭାବିକ ଭାବେ ଆସେ ।

ତୃତୀୟରେ ବୋଉ ମୋର ମାର୍ଗଶୀର ଏକାଦଶୀରେ ଦେହତ୍ୟାଗ କରିଥିଲେ ଆମ ଅଶେଷ ଦୁଃଖର ନିଃଶେଷ ସ୍ୱଚକ୍ଷୁରେ ଦେଖି। ସେ ଦିନଟି ମୁଁ ମନେରଖି ପ୍ରତିବର୍ଷ ଭୋଜ୍ୟ କରିବା ସହ ଆମ ସାଇ ଶେଷରେ ଥିବା ଲିଙ୍ଗରାଜ କୁଷ୍ଠ କଲୋନିର ରୋଗୀମାନଙ୍କୁ ନିରାମିଷ ଭୂରି ଭୋଜନ, ଦକ୍ଷିଣାସହ କେଉଁ ବର୍ଷ ଗାମୁଛା ତ କେଉଁବର୍ଷ ଘୋଡାଇ ହେବା ଚଦର ଶକ୍ତିକୁ ଚାହିଁଦିଏ । ସେମାନେ ତ ଦୁଃଖୀ । ତେଣୁ ଏ ଦୁଃଖୀନୀ ସହ ସେମାନେ ସାଙ୍ଗ ବସି ଯାଇଛନ୍ତି ।

୪ର୍ଥରେ ଗଣିଆକେଇ ମାଘ ବଡଦଶମୀ ଓ ବାପା ମାଘ ବଡ ଏକାଦଶୀରେ ଯାଇଥିଲେ । ବଡ ଏକାଦଶୀରେ କିଏ ଖାଇବ କି ନାହିଁ । ତେଣୁ ଭୋଜ୍ୟପରେ କିଛି ଫଳ କିଣି ଡାକ୍ତରଖାନା ବାହାରେ ବାଣ୍ଟିଦିଏ ଲୁଚାଇ ଲୁଚାଇ । ସ୍ୱାମୀ ବ୍ରହ୍ମାନନ୍ଦଙ୍କର ରାମନାମ ମଧ ପାଠ ହୁଏ । ଆଉ ବଡଦଶମୀ ଦିନ ଭୋଜ୍ୟ ସହ ବହୁତ ଲୋକଙ୍କୁ ଡାକି ମଧାହ୍ନ ଭୋଜନ ଦିଏ । ଏ ମେଳାଟିରେ ଭୁବନେଶ୍ୱରରେ ଥିଲା ବେଳେ ଆମ କଲୋନି, ଆମ ଗାଁ ଲୋକ ଓ ପରିଚିତ ବନ୍ଧୁଙ୍କୁ ଡାକେ । ଏବେ ଗାଁରେ ୨୦୦୨ରେ ଘର କରିବାଠାରୁ ଗାଁରେ ଭୋଜ୍ୟ ଓ ଭୋଜୀ କରାଯାଉଛି ଓ ଗାଁରେ ସାଇ ଭାଇଙ୍କୁ ଭୋଜୀ ଦିଆଯାଉଛି ।ସେଥିପାଇଁ ଭୁବନେଶ୍ୱରରୁ ହାଣ୍ଡି ଚାଉଳ ସହ ରୋଷେୟା ମଧ ନେଇକରିଯାଏ । ସେଦିନ ଗାଁରେ ବସିଥିବା ଭାଗବତ ବଢା ମଧ ହୁଏ । ଗାଁରେ ନୂଆଘରେ ଦୈନିକ ଭାଗବତ ପଢା ଓ ଠାକୁର ପୂଜାର ବ୍ୟବସ୍ଥା ହୋଇଛି । ସେଦିନ ପାଠ ଦକ୍ଷିଣା ଓ ଲୁଗାପଟା ମଧ ଶ୍ରଦ୍ଧାର ସହ ପାଠକ ବନ୍ଧୁଙ୍କୁ ଦିଆଯାଏ ।

କିନ୍ତୁ ଆଗ ବୋଉ ଶ୍ରାଦ୍ଧରେ କରାଯାଉଥିବା ହରିହାଟ ବା ଅନନ୍ତମୁଖୀ ଆଉ ହେଉନି । ହେଲେ ସେ ଯେଉଁ ଭାଗବତକୁ ମୋ ପ୍ରେରଣାରେ ତା'ର ଜୀବନାଦର୍ଶ ଭାବି ପ୍ରତିଦିନ ପଢୁଥିଲା । ସେ ଭାଗବତ ବଢେ ସେହିଦିନ ।ଏସବୁ ସେହି ସ୍ୱର୍ଗବାସୀ ପିତୃଲୋକଙ୍କର କଲ୍ୟାଣରୁ ଓ ଅବଦାନରୁ ହୁଏ । ମୋସ୍ତ୍ରୀ ମୋ ସହ ସଂପୂର୍ଣ୍ଣ ସହଯୋଗ କରେ । ପିଲାଏ ଥିଲେ ମଧ ଖଟନ୍ତି ଓ ସହଯୋଗ ଦିଅନ୍ତି । ମୁଁ ମଲେ ବା ମୋ ସ୍ତ୍ରୀ ମଲେ ସେମାନେ କିପରି କ୍ରିୟା ,ସୁଧି ଓ ଶ୍ରାଦ୍ଧ କରିବେ ସେ କଥା ମୁଁ ଜାଣେନା । ସେଥିପାଇଁ ମୋର ମଧ ଲାଳଶା ନାହିଁ, କାରଣ ମୁଁ ମୋର ପିତୃଲୋକଙ୍କର ଶ୍ରାଦ୍ଧ ସଫଳତାର ସହ ନିୟମିତ କରିପାରୁ ଥିବାରୁ ସଂପୂର୍ଣ୍ଣ ତୃପ୍ତ । ତାହା ସେମାନଙ୍କ ପ୍ରତି ଏହି କ୍ୟୃତଜ୍ଞ ସନ୍ତାନର ପ୍ରତିଦାନ ନୁହେଁ; କୃତଜ୍ଞତାର ଭକ୍ତି ପୁଷ୍ପାଞ୍ଜଳୀ ମାତ୍ର ।

ଗୀତାର ପ୍ରଥମ ଅଧ୍ୟାୟରେ ଅର୍ଜୁନ ସୂଚେଇ ଦେଇଛନ୍ତି ଯେ କୁଳସ୍ତ୍ରୀ ପଥଭ୍ରଷ୍ଟ ହେଲେ ଯେଉଁ ସନ୍ତାନ ଜାତ ହୁଅନ୍ତି ସେମାନଙ୍କଦ୍ୱାରା ପିଣ୍ଡ ବା ଶ୍ରାଦ୍ଧତୀର୍ଥ କ୍ରିୟା ବିଲୁପ୍ତ ହୁଏ । ମୋର ମନେ ହୁଏ ଆମେ ସେ ଶ୍ରେଣୀର ନୋହୁଁ । ଚାକିରୀର ଯୋର କାମ ଓ କଷ୍ଟ ସମୟରେ ମଧ ପିତୃପକ୍ଷରେ ୧୫ ଦିନ ତର୍ପଣ କରେ ଦାଢୀରଖି ଓ ସ୍ତ୍ରୀଙ୍କ ରୋଷେଇରେ ଦୈନିକ

ବୈଶ୍ୱଦେବ କରେ । ଏ ବୈଶ୍ୱଦେବ କିଏ ? କାମ ସଂଗ୍ୟକ ବିଶ୍ୱଦେବା ସୃଷ୍ଟିର କର୍ତ୍ତା, କାରଣ ଓ ସ୍ରଷ୍ଟା । କାଳ ସଂଗ୍ୟକ ବିଶ୍ୱଦେବା ହେଉଛନ୍ତି ମହାକାଳ, ଅନ୍ତକ ଓ ନିୟାମକ । ତାଙ୍କୁ କିପରି କିଏ କାହିଁକି କେମିତି ଭୁଲି ପାରିବ ? ଭୁଲିବାଟା କ'ଣ ଅକୃତଜ୍ଞତାର ଲକ୍ଷଣ ନୁହେଁ ?

ଯଦି ଏହି ଶ୍ରାଦ୍ଧ, ଭୋଜ୍ୟ, ପିଣ୍ଡ, ତର୍ପଣ ମିଛ, ଭଣ୍ଡାମି ଓ ଅନାବଶ୍ୟକ ତେବେ ଏ ସମ୍ବନ୍ଧୀୟ ଅଲୌକିକ ଘଟଣା କ'ଣ ମିଛ ? ଫାଲ୍ଗୁନ ଦୋଳ ତ୍ରୟୋଦଶୀ ତିଥିରେ ଠାକୁରଙ୍କ ଆଗମନ ଓ ଭୋଗ ଗ୍ରହଣ କାକତାଳୀୟ ନ୍ୟାୟ ନୁହେଁ । ଏହା ଈଶ୍ୱରଙ୍କ ଇଚ୍ଛା ଓ ବରଦାନ । ସେହି ପରି ଶ୍ରାଦ୍ଧ ବନ୍ଦହେବାରୁ ବୋଉର ସ୍ୱପ୍ନାଦେଶ କ'ଣ ମିଛ । ମୁଁ ସେ ସ୍ୱପ୍ନାଦେଶର ଦ୍ରଷ୍ଟା । ଏ କେମିତି ମିଛ ହେବ । ବୋଉ ୧୯୬୦ ମସିହାରେ ମରିବା ପରେ ୧୯୮୩ ରେ କିପରି ସ୍ୱପ୍ନାଦେଶ ଦେଲା ! ଏ କୋଡ଼ିଏ ବର୍ଷ କୋଉଠି ଥିଲା । ଏସବୁ ଯେପରି ବିସ୍ମୟକର ସେହିପରି ଅଲୌକିକ ଓ ସାକ୍ଷାତ୍ ବରପ୍ରଦ । ଶ୍ରାଦ୍ଧ ମନ୍ତ୍ରରେ ଅଛି ଆଗଛନ୍ତୁ ମହାଭାଗା ପିତୃଲୋକ ବରପ୍ରଦା" । ସେମାନେ ଭୋକିଲା ରହି ଖାଇବାକୁ ଆସନ୍ତିନି । ଆସନ୍ତି ବରପ୍ରଦାନ କରିବାକୁ । ଏ ସବୁ ଉପଲବ୍ଧିର ବିଷୟ । ହଜାର ବର୍ଣ୍ଣନା କଲେ ଅନୁଭବି ହୋଇ ନଥିଲେ ଏକଥାର ମର୍ମ ବୁଝିବା କଷ୍ଟ । ମରିଯାଇଥିବା ଲୋକର ଅମରାତ୍ମା ତୁମ ଶରୀରସ୍ଥ ଆତ୍ମା ସହ ସମାନ ଏବଂ ତାକୁ ସେ ସ୍ନେହାଶିଷ, ବରଦାନ ଉତରୋତ୍ତର ଉନ୍ନତି ପାଇଁ ସତତ ଚେଷ୍ଟିତ ।

## ୧୬୯ . ଖୁଦଭଜା ନୁହେଁ ମୁଗମଣ୍ଡା

ଶ୍ରୀକୃଷ୍ଣଙ୍କର ବାଲ୍ୟ ସଖା ଯେକି ଗୁରୁକୁଳରେ ତାଙ୍କର ସହପାଠୀଥିଲେ ସେହି ସୁଦାମା ବ୍ରାହ୍ମଣ ଅତ୍ୟନ୍ତ ଦରିଦ୍ର ଥିଲେ । ତାଙ୍କର ସ୍ତ୍ରୀଙ୍କ ପରାମର୍ଶରେ ସେ କିଛି ଖୁଦଭଜା ଧରି ଦ୍ୱାରିକାଗଲେ ସଖାଙ୍କୁ ସାକ୍ଷାତ୍ କରି ଧନ ମାଗିବାକୁ । ଶ୍ରୀକୃଷ୍ଣ ତାଙ୍କର ପାଦସେବା କଲେ, ରୁକ୍ମଣୀ ବ୍ୟଞ୍ଜନ ପରସି ଦେଲେ । ମିଷ୍ଟାନ୍ନ ଖାଇବାକୁ ଦେଲେ । ହେଲେ ସୁଦାମା ଲାଜରେ ନେଇଥିବା ଖୁଦଭଜା ତାଙ୍କୁ ଦେଇପାରିଲେନି । ଅନ୍ତର୍ଯାମୀ ଶ୍ରୀକୃଷ୍ଣ ସେକଥା ଜାଣିପାରି ସୁଦାମାଙ୍କ ଖଣ୍ଡିତ ବସ୍ତ୍ରରୁ ଖୁଦଭଜା ବାହାରକରି ମୁଠାଏ ଆତ୍ମତୃପ୍ତିରେ ଖାଇବା ପରେ ୨ୟ ମୁଠା ଧରିବା ବେଳେ ରୁକ୍ମଣୀ ତାଙ୍କୁ ବାରଣ କଲେ । ଏ ରହସ୍ୟ ରହିଲା; ସୁଦାମା କିଛି ମାଗିଲେନି କି ଶ୍ରୀକୃଷ୍ଣ କିଛି ଦେଲେନି । ମାତ୍ର ସୁଦାମା ଘରକୁ ଫେରି ଦେଖିଲେ ତାଙ୍କୁ ସବୁକିଛି ମିଳିଯାଇଛି । ଆପଣାଛାଏଁ ଧନ ଜନ ଗୋପ ଲକ୍ଷ୍ମୀ କାହିଁରେ ଅଭାବ ନାହିଁ ।

ଆମର ଘୋର ଅଭାବ ସତ୍ତ୍ୱେ ବୋଉ ଗଣ୍ଡାଏ ଧାନ ଓଳିଆବାନ୍ଧି ରଖିଦିଏ ପଣ୍ଡୁଓଷା କରିବାକୁ । ସାତପୁର ଦେଇ ବଡ ଗଜପିଠା ହୁଏ । ଋରିପଟେ ଛୋଟ ମଣ୍ଡା ଥୁଆ ହୁଏ ଅଥାରରେ । ନଡିଆ, ଛେନା, ବିରି ସାଙ୍ଗକୁ ଆମର କଞ୍ଚାମୁଗ ଡାଲିକୁ ସିଝାଇ ସେଥିରେ ଅଳ୍ପଗୁଡ, ନଡିଆ ପାତି ଦେଇ ମଣ୍ଡା କରାଯାଏ । ମୋ ବୋଉ କୁନ୍ତୀଙ୍କ ପରି ଦୁଃଖୀ ଓ ପାଞ୍ଚଟି ପିଲାଙ୍କ ଦାୟିତ୍ୱ ତା'ରି ମୁଣ୍ଡରେ । ଦାରିଦ୍ର୍ୟର ଶେଷ ସୀମାରେ ଥିଲେବି ବୋଉ ପ୍ରତିବର୍ଷ

ପଣ୍ଡୁଓଷା କରେ । ଦୁଆର ଲିପି ନୂଆ ଅଥାଗରେ ଗଜ ବସାଏ । ଦିନସାରା ନିର୍ଜଳା ଉପବାସ ରହେ । ତାକୁ ଏ କାମରେ ତା'ର ବଉଳ ମୁଖ୍ୟତଃ ସାହାଯ୍ୟ କରେ । ଜଣିକିଆ କାମ ଏ ନୁହେଁ । ଆମ ଗାଁରେ କେବଳ ଆମରି ପରିବାରରେ ପଣ୍ଡୁଓଷା ହୁଏ । ସାଇପାଖ ସମସ୍ତଙ୍କ ଘରକୁ ଭୋଗ ଯାଏ । ମୋର ସେତେବେଳେ ଭାତ ପାଇଁ ଏକ ଅଦ୍ଭୁତ ଖିଆଲ ଓ ମୋହ ଥିଲା । ଯେତେ ଯାହା ହେଲେବି ମୋର ଦରକାର ଗଣ୍ଡେ ପଖାଳ ଭାତ । ହେଲେ ରାନ୍ଧିବା ବାଲାତ ଏକା ବୋଉ । ସେ ତ ଉଷୁନା ଛୁଇଁବନି । ତେଣୁ ମୁଁ ରାଗରେ ଢିଙ୍କିରେ ବାଡେଇ ନଡିଆ ଫଟେଇ ଖାଇ ରହେ; କାରଣ ମୋତେ ନଡିଆ ଛଡେଇ ଆସେନା ।

ବର୍ଷକର କଥା ଆମ ନୂଆ ହାଇସ୍କୁଲର ଶିକ୍ଷକ ଚନ୍ଦ୍ରମଣି ବାବୁ, ଋଷିବାବୁ ଓ ରାଜୁବାବୁ ଆମଘରେ ଆସି ପିଠା ଖାଇବାକୁ ପହଁଚିଲେ । ବୋଉ ସବୁ ପ୍ରକାର ପିଠା ବାଢି ଦେଲା । କିଏ ଫାଳେ କିଏ ଗୋଟେ ଖାଇଲେ; ହେଲେ ରାଜୁବାବୁ ସେହି ମୁଗମଣ୍ଡାରୁ ଦୁଇଟି ଖୁବ୍ ଆଦର ଓ ସ୍ନେହରେ ଖାଇଲା ବେଳେ ଚନ୍ଦ୍ରମଣି ବାବୁ ତାଙ୍କୁ କହିଲେ ପେଟ ଖରାପ ହେବ । ଗରିଷ୍ଠ ଖାଦ୍ୟ । ପ୍ରକୃତରେ ସିଝା ମଣ୍ଡାଠାରୁ ଆଦର୍ଶ ଖାଦ୍ୟ ନାହିଁ କହିଲେ ଚଳେ । ତେଲ ନାହିଁ, ଘିଅ ନାହିଁ, ନାହିଁ ମସଲା ମସଲି । ରାଜୁବାବୁ ସେଇ ଯେ ଦୁଇଟି ମୁଗମଣ୍ଡା ଖାଇ ପାଣି ଗିଲାସେ ପିଇ ତୃପ୍ତିରେ ନିଃଶ୍ୱାସ ମାରିଲେ ତାହା ସେ ଆଜି ଯାଏ ମନେ ରଖିଛନ୍ତି; କେତେଥର କହନ୍ତି ମଧ । ତାଙ୍କ ତୃପ୍ତିରେ ମୋର ଆନନ୍ଦର ସୀମା ନଥିଲା । ବୋଉ ତ କୃତକୃତ୍ୟ । ଏ ହେବ ୧୯୫୨ର କଥା । ୧୯୫୪ରେ ମାଟ୍ରିକ ପାସ୍ ପରେ ଆମ ଦୁଃଖ ସବୁ ଉଭେଇଗଲା । ସେହି ଦିନୁ ମୋର ମଧ ଜ୍ଞାନ ଚକ୍ଷୁର ସ୍ଫୁରଣ ହୋଇଗଲା । ଏହା ଏକ ଅଲୌକିକ ଘଟଣା । ଏହାକୁ ଉପଲବ୍ଧି କରି ନପାରିଲେ ଏକ ସାଧାରଣ ଘଟଣା । ମାତ୍ର ରାଜୁବାବୁଙ୍କର ଏହି ତୃପ୍ତି ପଛରେ ଥିଲା କେତେ ଆଶୀର୍ବାଦ ! ତା'ର ଫଳ ଥିଲା ଅମାପ । ଠିକ୍ ସୁଦାମାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ତୃପ୍ତିର ଫଳପରି ।

## ୧୭୦. ନଡିଆ ପିଟାଗଲା

ଦେଖନ୍ତୁ ଦୈବର ସଂଯୋଗ । ସାତବର୍ଷ ତଳର କଥା । ଆମ ନିଜ ବାପୁଜିନଗର କଲ୍ୟାଣ ସମିତିରେ କଥା ଉଠିଲା ଯେ ଆମ ଭିତରୁ ଅନେକ ଜବର ଦଖଲ କରିଥିବାରୁ ରାସ୍ତା ସଂକୁଚିତ ବା ଅବରୋଧ ହେଉଛି । ମୋର ବାରଣ ନମାନି ଉପସ୍ଥିତ ସବୁ ସଭ୍ୟ ଯିଦ୍ କଲେ ଯେ ଏ ବିଷୟ ବିଡିଏକୁ ଲେଖାହେବ । ସଭାରେ ପ୍ରାୟ ୧୦ଜଣ ଥିଲେ । କଥା ହେଲା ଲେଖା ନେଇ ବିଡିଏ ଯାଇ କହିବେ । ଗଲା ବେଳକୁ ମାତ୍ର ଥିଲେ (୬) ଛଅ ଜଣ । ମୁଁ ସେଠି କହିଲି ମିଟିଙ୍ଗ୍‌ରେ ୧୦ଜଣ ସ୍ଥିର କଲେ । ଫେରାଦ ଆସିଲେ ୬ ଜଣ । ପୁଣି ଜାଗା

ଉପରେ ସମସ୍ତେ ରହିବେ ତ ? ଆମର ବିଡିଏ (ଭୁବନେଶ୍ୱର ଉନ୍ନୟନ କର୍ତ୍ତୃପକ୍ଷ) ସହ ଆଲୋଚନା ପରେ ସେଠୁ ଜଣେ ଅଧିକାରୀ ଦିନକପରେ ଜାଗା ଦେଖି ଆସିଲେ । ସେ ସମୟ ଆଗରୁ ଧାର୍ଯ୍ୟ ଥିଲେବି କେହି ଆସିଲେ ନି । ମୁଁ ସଭାପତି ଭାବେ କର୍ତ୍ତବ୍ୟ ଜ୍ଞାନରେ ନିଜେ ଯାଇ ସବୁ ଜବର ଦଖଲ ଯାଗା ଦେଖାଇଲି । ସାମନ୍ତବାବୁଙ୍କ ଘର ପାଖରେ ୭ଫୁଟ ଓସାରରେ ପ୍ରାୟ ୫୦ଫୁଟ ଲମ୍ବର ଜବର ଦଖଲ ଯୋଗୁଁ ରାସ୍ତା ମାତ୍ର ଥିଲା ଖାଲୁଆ ନାଳ ୩ଫୁଟ । ଏହାକୁ ଦେଖାଇବା ବେଳେ ସାମାନ୍ତବାବୁ ନିଜ ବାଡିରେ ଥାଇ ଶୁଣାଇ କହିଲେ; କୋଉ ଶଳା ଦେଖାଉଛି । କେମିତି ମୋ ଜାଗା ନେବେ ମୁଁ ଦେଖିବି । ସେ ସେହି ୭ଫୁଟ୍‌ରେ ଆଜ୍‌ବେଷ୍ଟସ୍ ପକାଇ ୩ଟି ବଖରା ଘର କରି ମାସିକ ପ୍ରାୟ (ଟ.୧୦୦୦/-) ଏକ ହଜାର ଭଡା ପାଉଥିଲେ । ତେଣୁ ରାଗ ହେବା ସ୍ୱାଭାବିକ୍ । ଏତିକି ବେଳେ ଆମର ଜଣେ ସଭ୍ୟ ଅଜୟ କର ପଛକୁ ଡାକିଲେ ଯାହା କହୁଛନ୍ତି ଆଗକୁ ଆସି କହନ୍ତୁ । ପ୍ରାୟ ୩୦୦ଘରଙ୍କର ସେଇଟି ଫରେଷ୍ଟ ପାର୍କକୁ ଆସିବାକୁ ଏକମାତ୍ର ରାସ୍ତା । ବହୁ ବର୍ଷ ପୂର୍ବରୁ ମୋ ସହ ସାଇର ଅନେକ ଲୋକ ମିଶି ହୁଡା ମାଟି ଖୋଳାଇ, କିଆଗଛ କାଟି ରାସ୍ତାଟିଏ କରିଥିଲୁ । ସାମନ୍ତ ମୁହଁରେ ଏକଥା କହି ଲାଗିଗଲେ ନିଜ ଯୋଗାଡରେ । ଭିତିରିଆ ଯାଇ ଅମିନକୁ ଧରି ସବୁ କାମ ବନ୍ଦ କରିଦେଲେ । ପୁଣି ଆମେ କେତେ ବର୍ଷପରେ ବି.ଏମ୍.ସି. (ଭୁବନେଶ୍ୱର ମହାନଗର ନିଗମର) କମିଶନରଙ୍କୁ ସାକ୍ଷାତ୍ କଲୁ । ଜିଏକୁ ଗଲୁ । ବିଡିଏର ଉପାଧକ୍ଷଙ୍କୁ ଦେଖାକଲୁ । ତା'ପରେ ତାଙ୍କୁ ନୋଟିସ୍ ଓ ଉଚ୍ଛେଦ ଆଦେଶ ମିଳିଲା । ସେ ଯାଇ କୋର୍ଟରୁ ଗୋଟିଏ ସ୍ଥଗିତ ଆଦେଶ ଆଣିଲେ । ସମିତି ସେଥିରେ ପକ୍ଷ ହୋଇ କେଶ ଲଢି ଷ୍ଟେ ଉଠିବା ପରେ ବିଏମସି, ଜିଏ ଓ ବିଡିଏ ମିଶି ଜବର ଦଖଲ ଉଚ୍ଛେଦ କରିଦେଲେ । ଶେଷରେ ରାୟ ବାହାରିଲା ଯେ ଯାଗା ସରକାରଙ୍କର; ଜବର ଦଖଲ କାରୀଙ୍କୁ କସ୍ମିନ କାଳେ ମିଳିବନି । ତା'ପରେ ପୁଣି ମହାନଗର ନିଗମକୁ ଦୌଡି ପ୍ରାୟ ବାରଲକ୍ଷ ଟଙ୍କାରେ ରାସ୍ତା ଓ ପୋଲପାଇଁ କାର୍ଯ୍ୟାଦେଶ ମିଳିଲା । ଆମ କର୍ପୋରେଟର ମୋତେ ଡାକି ନେଇ ଗାମୁଛାଟିଏ ଓ କୋଡିଏ ଟଙ୍କା ଦେଇ ମୋରି ହାତରେ ନଡିଆଭାଙ୍ଗି ରାସ୍ତାର ଶୁଭ ଦେଲେ । ଦୀର୍ଘ ୭ବର୍ଷ ପରେ ଈଶ୍ୱରଙ୍କ ଇଚ୍ଛାରୁ ରାସ୍ତାଟିଏ ଖୋଲିଲା । ହଜାର ହଜାର ଲୋକ ଉପକୃତ ହେଲେ । ଏହା ଏକ ଦୈବୀ ଅଲୌକିକତା ଛଡା ଆଉ କଣ ହୋଇପାରେ । ସେହି ଈଶ୍ୱରଙ୍କ ଇଚ୍ଛା ବଳବାନ । ଏସବୁ ଘଟିଲା ମୁଁ ଦୁଇବର୍ଷ ସଭାପତି ପଦଛାଡି ପୁଣି ୨୦୦୬ରେ ସଭାପତି ହେବା ସମୟରେ ।

ଠିକ୍ ସେହିପରି ଆଉରି ଏକ ଅଲୌକିକ ବିରାଟ ଘଟଣା ସେହି ସାମନ୍ତଙ୍କ ଘର ପୂର୍ବପଟେ ଥିବା ଶିଖାରାଣୀ ସାମନ୍ତଙ୍କ ଦ୍ୱାରା ରାସ୍ତା ଜବର ଦଖଲ । ତାଙ୍କ ସ୍ୱାମୀ ମୁଖ୍ୟଯନ୍ତ୍ରୀ ଥିବାରୁ

ଧରାକୁ ସରା ମଣୁଥିଲେ । ରାସ୍ତା ଜମି ଛାଡି ଦେବାକୁ ଅନୁରୋଧ କରି ଯିବାରେ ତାଙ୍କ ସମାଦ୍ୱାନ ଲୋକ ନଆସିଲେ ସେ କଥା ହେବେନି କହିବାରେ ତାଙ୍କ ଫାଟକ ମୁହଁରେ ବସି ରହିବାପରେ ସେ ଆସି ହାତଧରି ଉଠାଇ ଆପୋଷ ଆଲୋଚନା ପାଇଁ ରାଜି ହେଲେ ମଧ ଭିତରିଆ ଯାଇ ହାଇକୋର୍ଟରେ ଗୋଟେ ମକଦ୍ଦମା କରି ସ୍ଥଗିତାଦେଶ ନେଇ ଆସିଲେ । କାରଣ ସେ ଜମିକୁ ପୁନର୍ବାର ରାସ୍ତା ଉଦ୍ଦେଶ୍ୟରେ ଅଧିଗ୍ରହଣ କରାଯାଇଥିଲା । ୧୯୯୨ରେ ଆମ ସମିତି ତରଫରୁ ମୁଁ ସେଥିରେ ଓକିଲ ଜଗନ୍ନାଥ ପଟ୍ଟନାୟକଙ୍କ ଜରିଆରେ ପକ୍ଷଭୁକ୍ତ ହେଲି । ୧୯୯୯ରେ ହାରିଯାଇ ଆମ ଅଜ୍ଞାତରେ ସେହି ମକଦ୍ଦମାର ନଥିଟିକୁ ଗାଏବ କରାଇଦେଲେ । ୨୦୦୬ରେ ପୁନଃ ସଭାପତି ନିର୍ବାଚିତ ହେବାପରେ ୭୩ ଥର ଦୌଡି ଦୌଡି ଓ ନିଜେ ମାନ୍ୟବର ହାଇକୋର୍ଟରେ ବ୍ୟକ୍ତିଗତଭାବେ ହାଜର ହୋଇ ପ୍ରାର୍ଥନା କରିବାରେ ସେହି ନଥି ପୁନର୍ଗଠିତ ହୋଇ ପୁନର୍ବିଚାର କରାଯାଇ ସାମନ୍ତଙ୍କ ଦରଖାସ୍ତକୁ ନାମଞ୍ଜୁର କରି ସେ ଜମିଉପରୁ ସ୍ଥଗିତାଦେଶ ଉଠାଗଲା । ଆମ ସମିତି ସଭାରେ ଏ ସଂପର୍କରେ ଆଗତ ଧନ୍ୟବାଦ ପ୍ରସ୍ତାବକୁ ମୁଁ ବିରୋଧ କରି ପାସ କରାଇ ଦେଇ ନଥିଲି; କାରଣ ଏହାଥିଲା ସେହି ସର୍ବମାନ୍ୟ ସଂସାର କର୍ତ୍ତାଙ୍କର କରାମତି । ସେ ୭୨ବର୍ଷ ବୟସର ବ୍ୟାଧିଗ୍ରସ୍ତ ଦେହକୁ କର୍ତ୍ତବ୍ୟର ନିଶାପିଆଇ ଦୌଡାଇ ଦୌଡାଇ କାମ କରାଇ ନେଇଥିଲେ; ଯେ ପୁଣି "ଏକଲା ଚଲୋ" ନ୍ୟାୟରେ । ତେଣୁ ସବୁ ଧନ୍ୟବାଦ ଓ କୃତଜ୍ଞତାର ପାତ୍ର ହେଉଛନ୍ତି ସେହି ଠାକୁରଙ୍କ ଅଦେଖାହାତ ।

## ୧୭୧. ଏବେବି ବଞ୍ଚିଛି

୧୯୩୮ ମସିହାରେ ରେଭେନ୍ସା କଲିଜିଏଟ୍ ଛାତ୍ରାବାସରେ ଗଠିତ ଉତ୍କଳ ଅବକାଶ ବାହିନୀ ଯାହା ପରେ ଉତ୍କଳ ବାହିନୀ ନାମରେ ନାମିତ ହୋଇଥିଲା ତାହା ଏବେବି ବଞ୍ଚିଛି । ତା ସହିତ ବଞ୍ଚିଛି ତା'ର ୧୯୮୨ ମସିହାରେ ଦାଖଲ ହୋଇଥିବା ହାଇକୋର୍ଟ କେଶ ।

ପ୍ରଥମେ ଉତ୍କଳ ଅବକାଶ ବାହିନୀ ଗଠିତ ହୋଇ ପ୍ରତି ସ୍କୁଲ ପିଲା ମାସରେ ଗୋଟିଏ ପଇସା ଉତ୍କଳମଣୀଙ୍କ ପଇସିକିଆ ପାଣ୍ଠିକୁ ଦାନକରି ବିଚ୍ଛିନ୍ନାଞ୍ଚଳରେ ଓଡିଆ ବିଦ୍ୟାଳୟ ଚଳାଉଥିଲେ । ସୁପ୍ରିମକୋର୍ଟର ପ୍ରାକ୍ତନ ପ୍ରଧାନ ବିଚାରପତି ତଥା ମାନବିକ ଅଧିକାର ପ୍ରଥମ କମିଶନର ନ୍ୟାୟମୂର୍ତ୍ତି ଶ୍ରୀ ରଙ୍ଗନାଥ ମିଶ୍ର ପ୍ୟାରି ମୋହନ ଏକାଡେମୀର ଛାତ୍ର ଥିବା ବେଳେ ପଇସିକିଆ ପାଣ୍ଠି ସଂଗ୍ରହ କରି ମାସକୁ ଟ୧୧ଙ୍କା ପଠାଉଥିଲେ ଓ ଟାଙ୍ଗୀ ବିଦ୍ୟାପୀଠର ପ୍ରାକ୍ତନ ପ୍ରଧାନଶିକ୍ଷକ ଶ୍ରୀ ଭଗବାନ ରଥ ସିଂହଭୂମିରେ ଗୋଟିଏ ବିଦ୍ୟାଳୟ ଚଳାଉଥିଲେ । ଏ ହେଲା ୧୯୩୯ ମସିହାର କଥା । ଉଭୟ ଶ୍ରୀ ଭଗବାନ ରଥ ଓ ଶ୍ରୀ ରଙ୍ଗନାଥ ମିଶ୍ର ଏହାର ଜୀବନ୍ତ ଐତିହାସିକ ସାକ୍ଷୀ ହୋଇ ରହିଛନ୍ତି ।

ପରବର୍ତ୍ତୀ କାଳରେ ଏହି ଉତ୍କଳ ବାହିନୀ କଲିକତା ସହରରେ ରହୁଥିବା ଲକ୍ଷ ଲକ୍ଷ ଓଡିଆଙ୍କ ଭାଷା, ସଂସ୍କୃତି ଓ ସ୍ୱାଭିମାନର ସୁରକ୍ଷା ପାଇଁ ମୁଣ୍ଡରେ ପଗଡିବାନ୍ଧି ଓ ହାତରେ ଠେଙ୍ଗାଧରି ଚିନ୍ତାମଣି ପାଣିଗ୍ରାହୀଙ୍କ ନେତୃତ୍ୱରେ କଲିକତା ସହରରେ ଶୋଭାଯାତ୍ରା (ମାର୍ଚ୍ଚ) କରି ଚାଲୁଥିଲେ ଛାତିଫୁଲାଇ । ଚିନ୍ତାମଣି ବାବୁ ସ୍ୱର୍ଗାରୋହଣ କଲେବି ଏବେ ଯାଏ ବଞ୍ଚିଥିଲେ ସେକାଳର ଉତ୍କଳ ବାହିନୀ ସୈନିକ ବୃଦ୍ଧ ଧନେଶ୍ୱର ମହାନ୍ତି । ସେ ମଧ୍ୟ ବାହୁଡି ଗଲେଣି ।

ସେହିପରି ବହୁଜନ ଗୁରୁ ଆଦର୍ଶ ପ୍ରଫେସର ସର୍ବେଶ୍ୱର ଦାଶ ଏବେବି ରହିଛନ୍ତି ଜୀବନ୍ତ ସାକ୍ଷୀ ହୋଇ । ଓଡିଆ ଭାଷା ଓ ସଂସ୍କୃତିର ସୁରକ୍ଷା ପାଇଁ ସାରା ମେଦିନିପୁର ଅଞ୍ଚଳକୁ ପଦବ୍ରଜରେ ବୁଲିଥିଲେ । ସ୍ୱର୍ଗୀୟ ସଚ୍ଚିଦାନନ୍ଦ ମିଶ୍ର ମଧ ଏହି ଉତ୍କଳ ବାହିନୀ ପାଇଁ କାମ କରିବାକୁ ୧୯୩୮ରେ ସିଂହଭୂମିର ହାଟ ଗମ୍ହାରିଆରେ ଓଡିଆ ବିଦ୍ୟାଳୟ ଗଢିଥିଲେ ।

ଏମାନେ ସମସ୍ତେ ମିଶି ତାଙ୍କର ଉତ୍ତର ବୟସରେ ଚିନ୍ତା କରିଥିଲେ ଗୋଟିଏ ଗ୍ରାମ୍ୟ ବିଶ୍ୱବିଦ୍ୟାଳୟ ଗଢିବେ । ସେଥିପାଇଁ ଋଷିପ୍ରତିମ ଆଚାର୍ଯ୍ୟ ହରିହର, ମା ରମା ଦେବୀଙ୍କର ମଧ ପ୍ରେରଣା ଥିଲା । ଶ୍ରୀ ଭଗବାନ ରଥଙ୍କ ପ୍ରେରଣାରେ ଏମାନେ କଟକ ଜିଲ୍ଲାର କେନ୍ଦ୍ରାପଡା କେନାଲ ଓ ମହାନଦୀ ମଧସ୍ଥ ଖଇରାର ଏକ ସ୍ଥାନରେ ଜଗତପୁର ପାଖରେ ୧୪୦ଏକର ଜମି ଦାନସୂତ୍ରେ ଅଧିଗ୍ରହଣ କରି ବଂଶୀଧର ଉପାଧ୍ୟାୟ ନାମକ ଅନ୍ୟଜଣେ ସ୍ୱାଧୀନତା ସଂଗ୍ରାମୀଙ୍କୁ ମିଶାଇ ଖଇରା ଠାରେ ଆରମ୍ଭ କରିଥିଲେ ବିଦ୍ୟାଳୟ । ଆଗେଇ ଥିଲେ ନବମ ଯାଏ । କିଛି ଅସ୍ଥାୟୀ ଘର ମଧ ତିଆରି ହୋଇଥିଲା । ସେଠାରେ ଗୋପାଳନ, ଚାଷ ଓ ଶିକ୍ଷା ଏକତ୍ର ଚାଲିଥିଲା । ଶିକ୍ଷକତା କରୁଥିଲେ ୰ ସଚ୍ଚିଦାନନ୍ଦ ମିଶ୍ର ଓ ଏବେବି ଜୀବିତ ଶ୍ରୀ ରାଜ କିଶୋର ନାୟକ । ସ୍ୱର୍ଗୀୟ ମାର୍କଣ୍ଡ ମିଶ୍ର ଏଠାରେ ପ୍ରାକୃତିକ ଚିକିତ୍ସା କେନ୍ଦ୍ରର ସ୍ୱପ୍ନ ଦେଖିଥିଲେ । ସ୍ୱର୍ଗୀୟ ବିଜୁ ପଟ୍ଟନାୟକ ଏହି ଆଶ୍ରମ ଦେଖି 'Somthing in nothing" ବୋଲି ମନ୍ତବ୍ୟ ଦେଇ କୋଠାବାଡି ଆରମ୍ଭ କରିବାକୁ ସର୍ଭେ କରାଇଥିଲେ ।

ସ୍ୱାର୍ଥ ମନୁଷ୍ୟକୁ ଗ୍ରାସ କରେ । ମାସିକ କିଛି ପାରିଶ୍ରମିକ ନେଇ ଏଠାରେ କାମ କରୁଥିବା ବଂଶୀଧର ଉପାଧ୍ୟାୟଙ୍କୁ ଲୋଭ ଗ୍ରାସ କଲା । ସେ ଭିତରେ ଭିତରେ ଚକବନ୍ଦୀ ଅଧିକାରୀଙ୍କୁ ଧରି ନିଜନାମରେ ପ୍ରାୟ ଚାରିଏକର ଜମି ନେଇଗଲେ ଓ ବାକୀଜମି ସରକାରଙ୍କ ନାମରେ ରେକର୍ଡ କରାଇ ଦେଲେ; ମାତ୍ର ୪୦ଡେସିମିଲ ଉତ୍କଳ ବାହିନୀ ନାମରେ ରଖି । ଏକଥା ଜଣାପଡିବା ପରେ ସଚ୍ଚିବାବୁ ସେଠାରେ ରହିବାରୁ ତାଙ୍କ ଉପରେ ଡକାୟତ ଆକ୍ରମଣ କରାଗଲା । ସେ ପଙ୍ଗୁ ହୋଇ ସର୍ବ ସାଧାରଣ ଶିକ୍ଷା ପ୍ରସାର ବ୍ରତରୁ ନିବୃତ୍ତ ହେଲେ । ଜମି ଫେରାଇ ଆଣିବାକୁ ମକଦ୍ଦମା ଚାଲିଲା; ସ୍ୱର୍ଗୀୟ ଆଡଭୋକେଟ କୈଳାସ ଲେଙ୍କାଙ୍କ ତତ୍ତ୍ୱାବଧାନରେ । ସବ୍ ଜଜ କୋର୍ଟରେ ହାରି ହାଇକୋର୍ଟରେ ରଙ୍ଗନାଥ ବାବୁଙ୍କ ଦୟାରୁ (ଯେ କି ଉତ୍କଳ ବାହିନୀ ବିଦ୍ୟାଳୟ ଚଳାଇବାକୁ ନିଜ ଶ୍ରେଣୀରୁ ୧୧ଟଙ୍କା

ସଂଗ୍ରହ କରି ପଠାଉଥିଲେ) ୧୯୮୨ରେ ଏକ ପପର ମକଦ୍ଦମା ଚାଲିଲା । ଇତି ମଧ୍ୟରେ ମହାନଦୀରେ ବହୁ ବନ୍ୟାପାଣି ବୋହିଗଲାଣି । ବଂଶୀଧର ଉପାଧ୍ୟାୟ, ସଚ୍ଚିଦାନନ୍ଦ ମିଶ୍ର, ବିଜୁପଟ୍ଟନାୟକ, ମାର୍କଣ୍ଡ ମିଶ୍ର ମଧ୍ୟ ଚାଲିଗଲେଣି । ଏ ଗପଶୁଣି ପ୍ର.ଧୀରେନ୍ଦ୍ରନାଥ ଶତପଥୀ ଧନେଶ୍ୱର ମହାନ୍ତିଙ୍କ ପ୍ରେରଣାରେ ବାହିନୀର ବାଇଲ ଆଣି ଖବର ବୁଝି ପୁଣି ଉତ୍କଳ ବାହିନୀକୁ ପୁନଃ ଜୀବିତ କରିବାକୁ ଓ ମକଦ୍ଦମା ଚଳାଇ ରଖିବାକୁ ଓ ଉତ୍କଳ ବାହିନୀ ନାମରେ ଏକ ପତ୍ରିକା ବାହାର କରିବାକୁ ପ୍ରସ୍ତାବ ଦେବାରେ ଟାଙ୍ଗୀ ଯାଇ ଭଗବାନ ବାବୁଙ୍କ ଠାରୁ ସବୁ ବୁଝି କାଗଜ ଦେଖି ତାଙ୍କର ଓ ପ୍ର. ସର୍ବେଶ୍ୱର ଦାଶଙ୍କ ସମ୍ମତି ନେଇ କାର୍ଯ୍ୟାରମ୍ଭ ହେଲା । ଭଗବାନ ବାବୁଙ୍କୁ ସ୍ଥାୟୀ ସଭାପତି, ପ୍ର. ଧୀରେନ୍ଦ୍ର ଶତପଥୀ କାର୍ଯ୍ୟକାରୀ ସଭାପତି ତଥା ପତ୍ରିକା ମୁଖ୍ୟ ସଂପାଦକ, ବିଜୟ ପୃଷ୍ଟି ସଂପାଦକ ଓ ମୁଁ କୋଷାଧ୍ୟକ୍ଷ ତଥା ପତ୍ରିକା ସଂପାଦକ ଏବଂ ଗୋପାଳକୃଷ୍ଣ ଶ୍ରୀଚନ୍ଦନଙ୍କୁ ନେଇ କାର୍ଯ୍ୟାରମ୍ଭ ହେଲା । ଭଗବାନ ବାବୁଙ୍କ ପ୍ରିୟ ଦିବାକର ଭୂୟାଁଙ୍କ ପୁତ୍ର ଆଡଭୋକେଟ ଶ୍ରୀ ବିବେକାନନ୍ଦ ଭୂୟାଁଙ୍କୁ ଧରି ବୁଝିଲା ବେଳକୁ ସେ ୧୯୮୨ର ହାଇକୋର୍ଟ କେସ୍‌ଟି ଏବେବି ଜୀବିତ ଅଛି । ଏଥିପାଇଁ ୰ସଚ୍ଚିବାବୁ ଟ୬୦୦/- ମୁଁ ଆଗରୁ ଟ୪୦୦/- ଓ ଏବେ ଟ ୧୦୦୦ଙ୍କା, ଭଗବାନବାବୁ ଟ ୨୦୦୦ଙ୍କା ଓ ପ୍ର.ସର୍ବେଶ୍ୱର ଦାଶ ଦୁଇ ଦଫାରେ ଟ୧୦୦୦/- ଦେଇଛନ୍ତି ।

ଦେଖନ୍ତୁ ଈଶ୍ୱରଙ୍କ ଚମତ୍କାରିତା । ସଦୁଦ୍ଦେଶ୍ୟରେ ଆରମ୍ଭ ହୋଇଥିବା ଏହି ପୁରାତନ ଅନୁଷ୍ଠାନର ଜମି ସଂକ୍ରାନ୍ତୀୟ ୧୯୮୨ରେ ଦାଖଲ ମକଦ୍ଦମାଟି କିପରି ଜୀବିତ ଅଛି । ଏହା ଏକ ଈଶ୍ୱରୀୟ ଚମତ୍କାରିତା ଛଡା ଆଉ କ'ଣ ହୋଇପାରେ । ଏହା ପଛରେ ଈଶ୍ୱରଙ୍କ ଆଶୀର୍ବାଦ ବିଦ୍ୟମାନ । ବର୍ତ୍ତମାନ ମୋ ସଂପାଦକତ୍ୱରେ ଚାଲୁଥିବା ପୂର୍ଣ୍ଣାଙ୍ଗ ଉତ୍କଳ ନ୍ୟାସୀ ମଣ୍ଡଳ ଏହି ଉତ୍କଳ ବାହିନୀର ଦ୍ୱିତୀୟପ୍ରସ୍ତ ବୋଲି ବାରମ୍ବାର ପ୍ରସ୍ତାବ ଗୃହିତ ହୋଇଥିଲେ ମଧ୍ୟ ଓ ନ୍ୟାସ ମଣ୍ଡଳ ଉତ୍କଳ ବାହିନୀର ପୁରାତନ କାର୍ଯ୍ୟାବଳୀକୁ ବଞ୍ଚାଇ ରଖିଥିଲେ ମଧ୍ୟ ଏହି ଠାରୁ ହିଁ ବାସ୍ତବ ଉତ୍ତର ଦାୟିତ୍ୱ ବହନ କଲା ବୋଲି ବୁଝିବାକୁ ପଡିବ । ଏହା ଈଶ୍ୱରଙ୍କର ଅକଳ୍ପନୀୟ ଚମତ୍କାରିତାର ଏକ ନିଖୁଣ ନିଦର୍ଶନ ।

## ୧୭୨. ବୋଝ ଉପରେ ନଳିତାବିଡା

ଈଶ୍ୱର ଯାହାକୁ ଯେଉଁ ବୋଝ ମୁଣ୍ଡାଇବାକୁ ଦିଅନ୍ତି ତାକୁ ସେ ବୋଝ ମୁଣ୍ଡାଇବାକୁ ହୁଏ । ସ୍ୱାମୀ ବିବେକାନନ୍ଦ ବାସ୍ତବରେ କହିଛନ୍ତି "ଯେ ସର୍ବଦା ନିଜର କର୍ତ୍ତବ୍ୟ ପାଳନ କରେ, ଚକରେ କାନ୍ଧକୁ ଲଗାଇ ଦିଏ, ସେ ନିଶ୍ଚୟ ଆଲୋକର ସନ୍ଧାନ ପାଇବ ଏବଂ ମହାନ୍‌ରୁ ମହତ୍ତର କାର୍ଯ୍ୟମାନ ତା ଭାଗରେ ପଡିବ" । ବାସ୍ତବ କ୍ଷେତ୍ରରେ ମୋ ଉପରେ କ୍ରମଶଃ ବହୁ

ସାମାଜିକ ଓ ପରୋପକାର କାମର ଦାୟିତ୍ୱ ବୋଧହୁଏ ଠାକୁର ସେଇଥିପାଇଁ ଦେଇଛନ୍ତି । ଏହି ଲେଖା ପ୍ରସ୍ତୁତ ସମୟକୁ କବି, ଲେଖକ ଓ ସ୍ତମ୍ଭକାର ଭାବରେ ମୋର ପରିଚୟ ସୃଷ୍ଟି ହେବା ସାଙ୍ଗକୁ ମୋର ଗୁରୁଦେବ ମୋତେ ଦେଇଯାଇଥିବା ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀ ମଣ୍ଡଳ ପ୍ରବର୍ତ୍ତିତ ଉତ୍କଳମଣି ଓଡିଆ ଶିକ୍ଷାପ୍ରସାର ପାଣ୍ଠିର ସାଧାରଣ ସଂପାଦକ ଦାୟିତ୍ୱ ସହ ଉତ୍କଳ ବାହିନୀର କୋଷାଧକ୍ଷ ଦାୟିତ୍ୱ ମୋଉପରେ ପଡିଅଛି । ଆମ ସ୍ଥାନୀୟ ନିଉ ବାପୁଜୀନଗର କଲ୍ୟାଣ ସମିତିର ସଭାପତି ଦାୟିତ୍ୱ, ହାଇସ୍କୁଲ ପରି ଏକ ଗୁଣ୍ଣ ତାରା ସଦୃଶ ଉଚ୍ଚ ବିଦ୍ୟାଳୟର ଦାୟିତ୍ୱ ରହିଅଛି । ଚାମୁଣ୍ଡେଶ୍ୱରୀ ମନ୍ଦୀରର ପରିଚାଳନା ନ୍ୟାସୀ ଦାୟିତ୍ୱ ମଧ ରହିଅଛି । ଏହା ବ୍ୟତୀତ ମଦନରାମପୁର ରାମକୃଷ୍ଣ ଆଶ୍ରମ, ଅଶୁରେଶ୍ୱର ଗୋ-ରକ୍ଷଣୀ, ଦଧିବାମନ ଜୀଉ ମନ୍ଦିର ଓ ନୀଳକଣ୍ଠ ସ୍ମୃତି ସମିତିର ପରିଚାଳନା ସମତିର ସଭ୍ୟ ମଧ ରହିଅଛି । ବହୁଦିନୁ ହିନ୍ଦ୍ କୃଷ୍ଣ ନିବାରଣ ସଙ୍ଘ, ଭାରତୀୟ ରେଡକ୍ରସ, କେଦାର ଗବେଷଣା କେନ୍ଦ୍ର, ଲେଖକ ସହଯୋଗ ସମତି, କନ୍ୟାକୁମାରୀ ସ୍ଥିତ ବିବେକାନନ୍ଦ ସ୍ମୃତିସ୍ମାରକୀର ଆଜୀବନ ସଭ୍ୟ ରହିଅଛି । ସ୍ଥାନୀୟ ଯଜ୍ଞ କମିଟିର ମଧ ସଭାପତି ଦାୟିତ୍ୱ ମୋର । ସେତିକି ନୁହେଁ ମୋର କ୍ଷୁଦ୍ର ନିବାସ ଯାହାକି ଦୀନବନ୍ଧୁ କୁଟୀର ନାମରେ ନାମିତରେ ହେଉଥିବା ବର୍ଷରେ ଦୁଇଥର କବି ସମ୍ମିଳନୀର ଆୟୋଜକ । ଉତ୍କଳ ସାହିତ୍ୟ ସମାଜର ସଭ୍ୟ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକ ତାଲିକାରେ ମଧ ରହିଅଛି ।

ଭୁବନେଶ୍ୱର ଗୋଦାବରୀଶ ସାହିତ୍ୟ ସଂସଦ, ସାହିତ୍ୟାୟନ, ଭୁବନେଶ୍ୱର ସାହିତ୍ୟ ସମାଜ, ନିଖିଳ ଉତ୍କଳ ପ୍ରଗତିଶୀଳ ଲେଖକ ମହାସଂଘ, ଇତ୍ୟାଦି ବହୁ ଅନୁଷ୍ଠାନରେ ନିୟମିତ ଯୋଗଦାନ ଓ କବିତା ପାଠୋତ୍ସବ ସହ ଓଡିଆ ଭାଷା ଓ ସଂସ୍କୃତିର ସୁରକ୍ଷା କରିବା, ସମାଜ ସେବା ପରି, ପରୋପକାରର ସୁଯୋଗ ଠାକୁରେ ମୋତେ ଦେଇ ଧନ୍ୟ କରିଛନ୍ତି ।

ପିଲାଏ ନିଜ ଡେଣାରେ ଉଡିସାରିବାପରେ ତାଙ୍କର ପାଠପଢା, ଚାକିରି, ବିବାହ ଓ ସନ୍ତାନ ସନ୍ତତି ହେବା ଶେଷ କରାଇ ଦେଇ ଜଗଦୀଶ୍ୱର ମୋର ଜୀବନକୁ, ଧନକୁ, ମନକୁ ସଂପୂର୍ଣ୍ଣ ଭାବରେ ସମାଜ ସେବା ଓ ପରକାମରେ ବିନିଯୋଗ କରାଇ ଦେଇ ତାଙ୍କରି ଅଭିମୁଖୀ କରାଇ ଦେଇଛନ୍ତି । ମୂଳ ଲାଗିବାକୁ ଆଶ୍ରୟ କରିଥିବା ଶୃଙ୍ଖଳା ଝଡିଲା ପତ୍ରକୁ ତାଙ୍କରି ବାୟୁ ପ୍ରବାହରେ ଉପରକୁ ଉଡାଇ ଦେଇ ସେହି ଯଶ ଶେଖର ନିଜର ପତିତପାବନ ବାନା ଉଡାଇଛନ୍ତି ସିନା !!! ଏସବୁ କେବଳ ଈଶ୍ୱରଙ୍କ ଅଲୌକିକତା ବ୍ୟତୀତ ଅନ୍ୟ କିଛି ନୁହେଁ । ଭାବିବସିଲେ ଯାଦୁକରର ଯାଦୁ ପରି ମନେ ହୁଏ- ମାୟାଧରଙ୍କ ମାୟାର ଅନ୍ତନାହିଁ - ଅନ୍ତନାହିଁ ତାଙ୍କରି ଯାଦୁକରୀ ସ୍ପର୍ଶର । ଯେ ଏତେ ବୋଝ ଦେଇଛନ୍ତି ସେହିଁ ଶକ୍ତି ଦେଇ ତାକୁ ବୁହାଇ ନେଉଛନ୍ତିଅକ୍ଳେଶରେ ।

# ୧୭୩. ମୋର ସେହି ଶିକ୍ଷା ଗୁରୁ ଓ ଆଦର୍ଶଗୁରୁ

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସଚ୍ଚିଦାନନ୍ଦ ମିଶ୍ର ଯେକି ବନ୍ଧୁ ଲୋକଙ୍କୁ ମୋର ପରିଚୟ ଦେଇ ବାରମ୍ବାର କହୁଥିଲେ ଯେ ପର୍ଶୁ ମୋର ଭାଇ, ମୋର ଛାତ୍ର ଓ ମୋର ପୁଅ । ସେହି ବିଶିଷ୍ଟ ବୟୋଜ୍ୟେଷ୍ଠ ସ୍ୱାଧୀନତା ସଂଗ୍ରାମୀ ଶିକ୍ଷାବିତ୍, ବିଚ୍ଛିନ୍ନାଞ୍ଚଳ କର୍ମୀ ଓ ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସମଣ୍ଡଳର ପ୍ରତିଷ୍ଠାତା ସଚ୍ଚିଦାନନ୍ଦ ମିଶ୍ରଙ୍କର ତା ୧୮.୮.୦୬ ଶୁକ୍ରବାର ସଂଧ୍ୟା ୭ ଟା ସମୟରେ ଏକାନବେ ବର୍ଷ ବୟସରେ ରାଉରକେଲାଠାରେ ଦେହାନ୍ତ ହୋଇଯାଇଛି । ସେଥିଲେ ଜଣେ ବିଶିଷ୍ଟ ଶିକ୍ଷାବିତ୍ । ସେ ୧୯୩୮ ମସିହାରେ ସିଂହଭୂମିର ହାଟ ଗମ୍ହାରିଆ ଠାରେ ଗୋଟିଏ ଓଡିଆ ବିଦ୍ୟାଳୟ ସ୍ଥାପନ କରିଥିଲେ । ଏତଦ୍ ବ୍ୟତୀତ କୋଗୁଆ ସ୍କୁଲରେ ଶିକ୍ଷକତା କରିବା ପରେ ଗାଙ୍ଗୀ ବିଦ୍ୟାପୀଠ, ଖଣ୍ଡସାହୀ ଜଗନ୍ନାଥ ବିଦ୍ୟାପୀଠ, କେନ୍ଦୁପାଟଣା ଘୋଷ୍ଟଚୋଦ ହାଇସ୍କୁଲ ଓ ଖଇରା ସ୍କୁଲ ତଥା ଜଗତପୁର ବିଦ୍ୟାପୀଠ ସ୍ଥାପନ କରିଥିଲେ । କଟକସ୍ଥ ଶ୍ରୀରାମକୃଷ୍ଣ କଲେଜ୍‌ର ସେ ଥିଲେ ଅଧକ୍ଷ । "କୃଷକ" ପ୍ରତିକାର ସେ ଥିଲେ ସଂପାଦକ । ରାମ ନାମ, ଛାତ୍ରଙ୍କ ପ୍ରତି ଗାନ୍ଧିଜୀ, ପ୍ରାକୃତିକ ଚିକିତ୍ସା ଇତ୍ୟାଦି ସାତଖଣ୍ଡ ବହି ସେ ଲେଖି ପ୍ରକାଶ କରିଛନ୍ତି । ତାଙ୍କ ଲିଖିତ "ଶ୍ରୀମଦ୍ ଭାଗବତ ଗୀତା"ର ଟୀକା, "ସତ୍ୟାଗ୍ରହୀ ଗାନ୍ଧିଜୀ"ଙ୍କ ଜୀବନି ଅପ୍ରକାଶିତ ରହିଅଛି । ୧୯୪୨ ଅଗଷ୍ଟ ବିପ୍ଳବ ସମୟରେ ସେ ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗୀୟ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ସହ ମିଶି କଟକ ସହରରୁ ଲୁକ୍‌କାୟିତ ଭାବେ ସ୍ୱାଧୀନତାର ବାର୍ତ୍ତା ବୁଲେଟିନ୍ ପ୍ରକାଶ ଓ ପ୍ରଚାର ଅପରାଧରେ କାରାବରଣ କରିଥିଲେ । ନିଜହାତରେ ସୂତାକାଟି ଲୁଗାବୁଣି ପିନ୍ଧୁଥିଲେ । ସେ ମଧ୍ୟ ୱାର୍ଦ୍ଧା ନଇ-ତାଲିମ ପାଇ ନିଜେ ଏକ ଶିକ୍ଷା ଯୋଜନା କରିବା ସହ ଓଡିଆ ଲିପି ସଂସ୍କାର ଯୋଜନା ପ୍ରସ୍ତୁତ କରିଥିଲେ । ସେ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ସ୍ୱାଧୀନତା ସୈନିକ ସମ୍ମାନ ଭତ୍ତା ପାଉଥିଲେ । ସେଥିଲେ ଜଣେ ସମାଜ ସଂସ୍କାରକ, ସାମ୍ବାଦିକ, ଗଠନାତ୍ମକ କର୍ମୀ ଓ ନିଷ୍ଠାପର ସମାଜ ସେବକ । କଳାହାଣ୍ଡିପାଇଁ ସେ ଭୂଦାନ ସଂଯୋଜକ ଥିଲେ । ସଚ୍ଚିଦାନନ୍ଦ ମିଶ୍ର କଟକ ଜିଲ୍ଲା, ସାଲେପୁର ଥାନା ଅନ୍ତର୍ଗତ, ପ୍ରସିଦ୍ଧ ଗ୍ରାମ ଖଣ୍ଡସାହୀ (ବଡଥାକନ) ଗ୍ରାମର ରାୟଗୁରୁ ବେଦଜ୍ଞ, ସୋମନାଥ ମିଶ୍ରଙ୍କର ୧ମ ସନ୍ତାନ ଥିଲେ । ତାଙ୍କର ଚାରିଝିଅ, ଜ୍ୱାଇଁ ଓ ନାତୀ ନାତୁଣୀ ଅଛନ୍ତି । ସିଂହଭୂମି ସମେତ ଷଢେଇକଳା ଓ ଖରସୁଆଁର ଓଡିଶାସହ ପୁନଃମିଶ୍ରଣର ସେଥିଲେ ଦୃଢପ୍ରବକ୍ତା । ସେଠାରେ ଓଡିଆଭାଷା ଓ ସଂସ୍କୃତିର ପୁନଃଉତ୍‌ଥାନ ପାଇଁ ସେ ପ୍ରତିଷ୍ଠା କରିଥିଲେ "ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସମଣ୍ଡଳ" ।

ତାଙ୍କର ଶୁଦ୍ଧି କ୍ରିୟା ତାଙ୍କ ବଡ଼ଜ୍ୱାଇଁ ରାଉରକେଲାଠାରେ କରିଥିଲେ । ସବୁ ଝିଅ ଜ୍ୱାଇଁ ସେଠାରେ ଉପସ୍ଥିତ ଥିଲେ । ଶ୍ରୀ ରାଜକିଶୋର ନାୟକ, ପୂର୍ବତନ ବିଧାୟକ ଓ ପୂର୍ବତନ ଖଦିବୋର୍ଡ୍‌ର ଅଧକ୍ଷ ଏବଂ ମୁଁ ଦୁହେଁ ମିଶି ଖୁବ୍ ଆଗ୍ରହରେ ଭୁବନେଶ୍ୱର ବାମ୍ଫାବାବା ମଠରେ ତା ୨୮/୮/୨୦୦୬ରିଖରେ ଏକାଦଶାହ ଓ ତାଙ୍କ ଜନ୍ମ ଓ କର୍ମଭୂମି ଖଣ୍ଡସାହୀରେ

ତା ୨୯/୮/୨୦୦୬ ରିଖ ଦ୍ୱାଦଶାହରେ ଖଣ୍ଡସାହି ଜଗନ୍ନାଥ ବିଦ୍ୟାପୀଠରେ ପାଳନ କଲୁ । ଭୁବନେଶ୍ୱର ସଭାରେ ପ୍ର.ସର୍ବେଶ୍ୱର ଦାଶ ସଭାପତିତ୍ୱ କରିଥିବା ବେଳେ ଶ୍ରୀ ଶକ୍ତି ପ୍ରସାଦ ମିଶ୍ର, ପଦ୍ମନାଭ ସାମଲ, ବିଷ୍ଣୁ ଚରଣ ଜେନା ପ୍ର.(ଡ଼) ଗୋପାଳ ଚନ୍ଦ୍ର କର, ଟାଟାରୁ ରବିନ୍ଦ୍ର କୁମାର ମିଶ୍ର ଓ ମୂଷାବଣୀରୁ ବନବିହାରୀ ପଟ୍ଟନାୟକ ଓ କବି କସ୍ତୁରୀ ଚରଣ ଦାସ, ନରସିଂହ ମିଶ୍ର, ମିନତୀ ଦାସ, ଟେନ୍‌ଜିଧି ଭଗବାନ ବିଶ୍ୱାଳ ଇତ୍ୟାଦି ବନ୍ଧୁ ବିଶିଷ୍ଟ ବ୍ୟକ୍ତି ଯୋଗ ଦେଇଥିଲେ । ତତ୍ ସହିତ ଖଣ୍ଡସାହି ସଭାରେ ମନ୍ତ୍ରୀ ଶ୍ରୀ କାଳିନ୍ଦୀ ବେହେରା, ପଣ୍ଡିତ ପ୍ରବୋଧ କୁମାର ମିଶ୍ର, ରାଜକିଶୋର ମିଶ୍ର, ବ୍ଲକ ସଭାପତି ଚନ୍ଦ୍ର ସାରଥୀ ବେହେରା, ଡ଼ା. ଗଗନ ବିହାରୀ ଦାଶ ଓ ଜଳଧର ରାଉତ, ହରିହର ରାଉତଙ୍କ ସହ ସମସ୍ତ ଶିକ୍ଷକ ଓ ଛାତ୍ରଛାତ୍ରୀ ଯୋଗ ଦେଇଥିଲେ । ଉଭୟ ଦିନ ଭୀଷଣ ବର୍ଷା ସତ୍ତ୍ୱେ ସଭାକାର୍ଯ୍ୟ ଠିକ୍ ଠାକ୍ ଚାଲିଥିଲା । ସ୍ମୃତି ପାଣ୍ଠି ଗଠନ, ସ୍ମରଣିକା ଉନ୍ମୋଚନ ଓ ମିଷ୍ଟାନ୍ନ ବଣ୍ଟନ ଉଭୟ ସ୍ଥାନରେ ହୋଇଥିଲା ।

ଗାଁ ହାଇସ୍କୁଲର ନୂଆ ଘରଟି ସଚ୍ଚିଦାନନ୍ଦ ଭବନ ଭାବେ ନାମିତ ହେବା ସହ ସଚ୍ଚିବାବୁଙ୍କର ଗୋଟିଏ ଆବକ୍ଷ ପ୍ରତିମୂର୍ତ୍ତି ସ୍ଥାପନ ପାଇଁ ସ୍ଥିର ହେଲା । ତାଙ୍କ ନାମରେ ବିଚ୍ଛିନ୍ନାଞ୍ଚଳରେ ସ୍କୁଲ ଚଳାଇବାକୁ ପଚାଶ ହାଜର ଟଙ୍କା ଓ ଗାଁ ସ୍କୁଲରେ ବୃତ୍ତି ପାଇଁ ୫ ହଜାର ଟଙ୍କା ସ୍ଥାୟୀଜମା ରଖିବାକୁ ସ୍ଥିର କରାଗଲା ।

ଗୁରୁ ଋଣ ସୁଝା ଯାଇ ପାରେନା । ମୁଁ ସବୁଦିନ ପାଇଁ ତାଙ୍କ ନିକଟରେ ଋଣୀ ହୋଇ ରହିଗଲି । ଏ ସମସ୍ତ ସଂଯୋଗ କେବଳ ଈଶ୍ୱରଙ୍କ ଚମତ୍କାରୀ ଆଶିର୍ବାଦ ଯୋଗୁ ସଂଭବ ହୋଇପାରିଛି ।

## ୧୭୪. ହେ ଜଗନ୍ନାଥେ

ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କର ସବୁ ଚିଠି, ଲେଖା ଓ କଥାରେ ଜଗନ୍ନାଥ ନକହି ନଲେଖି 'ଜଗନ୍ନାଥେ' ବୋଲି କହନ୍ତି ଓ ଲେଖନ୍ତି । ଜଗନ୍ନାଥଙ୍କୁ ସମ୍ବୋଧନରେ ଜଗନ୍ନାଥେ କହି ସେ ତାଙ୍କୁ ଆପଣାର କରିନେଇଥିଲେ ଜୀବନର ସବୁ କ୍ଷେତ୍ରରେ । ସେହି ଜଗନ୍ନାଥଙ୍କ ଶ୍ରୀମନ୍ଦିର ଚୂଡ଼ାରେ ସତ୍ୟ ଓ ନ୍ୟାୟର ବିଜୟରେ ପତିତପାବନ ବାନା ଉଡ଼ାଯାଇଥିଲା । ତାଙ୍କପ୍ରତି ଖୁବ୍ ଶ୍ରଦ୍ଧା, ଭକ୍ତି ଓ ନିଷ୍ଠାମଧ୍ୟ ସଦାସର୍ବଦା ରହିଛି । ଠାକୁରଘରେ ଜଗନ୍ନାଥଙ୍କୁ ମଧ୍ୟ ବହୁକାଳୁଁ ପୂଜାକରାଯାଉଛି । ପ୍ରତିବର୍ଷ କେତେଥର ଦଉଡ଼ିରେ ବନ୍ଧାହୋଇ ଟାଣି ହୋଇଗଲାପରି ଯାଇ ତାଙ୍କର ଦର୍ଶନ ହେଉଛି । ମାଘ, ବୈଶାଖ, ଭାଦ୍ରବ ଓ କାର୍ତ୍ତୀକରେ ଦର୍ଶନ ପ୍ରାୟ ହୁଏ । ତଥାପି ମନ ମାନେନା । ଗତ ନବକଳେବର ବର୍ଷ ଆମଦୁହିଁଙ୍କ ଛତା ବଡ଼ଝିଅ, ଜ୍ୱାଇଁ ଇତ୍ୟାଦି ଟ ୧୮୦୦ ଦେଇ ଭିଡ଼କୁ ଡରି ଗୋଟେ କୋଠାଉପରେ ଶ୍ରୀ ଜୀଉଙ୍କ ରଥଟଣା ଦେଖିବାର କାରଣ ଆଉ କାଳେ ଏ ଜନ୍ମରେ ନବକଳେବର ଦେଖି ନହେବ ?

ପୁଣି ଯାତ୍ରାଦିନ ବା ଭିଡ ଭିତରେ ନଯାଇ ପ୍ରାୟ ନିରୋଳା ଦିନରେ ଯାଇ ମନଭରି ଦର୍ଶନ ହୁଏ । ଜଗନ୍ନାଥେ ନିତ୍ୟଧ୍ୟେୟ ହୋଇଯାଇଥିଲେ ମଧ୍ୟ ତାଙ୍କ ପାଦରେ କିଛି ମାଗୁଣି ନଥିଲା । ତାଙ୍କରି ଦର୍ଶନହିଁ ତାଙ୍କୁ ମାଗେ ।

ଏଇ ନିକଟରେ ୨୦୦୮ ଅକ୍ଟୋବର ତା ୧୩ରିଖରେ ଲିଙ୍ଗରାଜଙ୍କ ଦର୍ଶନ ସାରିଲା ବେଳକୁ ଖୁବ୍ ହାଲିଆ ଲାଗିବାରେ ଗୋଟେ ଚକୋଲେଟ୍ ଖାଇ ଲୁନାରେ ଫେରିବା ବେଳେ ଆମ ଘର ପାଖ ଏକ ନମ୍ବର ଗଳି ଆଡ଼କୁ ପ୍ରାୟ ପାଞ୍ଚଫୁଟ ଆସିବାପରେ ପଛରୁ ଗୋଟେ ମଟର ସାଇକେଲ ଡାହାଣ କଡ଼ରୁ ଶକ୍ତ ଧକ୍କା ଦେବାରୁ ତଳେ ପଡ଼ିଗଲି । ବାମ ହାତ ଓ ଗୋଡ଼ରେ ଆଘାତ ଓ ଘାଉଡ଼୍ ହେଲା । ସେ ଭଦ୍ରଲୋକ ଘରେ ଛାଡ଼ିବା ପରେ ତାଙ୍କୁ ଶୀଘ୍ର ଫେରାଇଦେଲି କାଳେ କିଏ ଗାଳିଗୁଲଜ କରିବ । ଏ ଘଟଣାଟିର ବିଶେଷତ୍ୱ ହେଲା ଯେ ଠିକ୍ ଧକା ବାଜିବାମାତ୍ରେ ପଡ଼ଯିବା ବେଳେ ପାଟିରୁ "ହେ ଜଗନ୍ନାଥେ" ବୋଲି ବାହାରି ଥିଲା । ସେହିଁ ଶଙ୍ଖଚକ୍ର ଧରି ଉଦ୍ଧାର କରିଦେଲେ । ହାତ ଭାଙ୍ଗିନଥିଲା । ଗୁଲନ୍ ଆସି ଡାକ୍ତର ଦେଖାଇ ଔଷଧ ବ୍ୟବସ୍ଥା କରିଥିଲା ।

ଠିକ୍ ସେହିପରି ତା୧୫.୧୨.୨୦୦୮ରେ ଗଙ୍ଗନଗର ଛକରୁ ଲୁନା ଗଡ଼ାଇ ଗଡ଼ାଇ ଆସୁଥିବା ବେଳେ ପଛରୁ ଗୋଟେ ଅଟୋ ଆସି ଧକା ଦେଲା ଓ ଡାହାଣ ଗୋଡରେ ଶକ୍ତ ଆଘାତ ଲାଗିଲା । ସେ ପୁଅବୋଲି କହି ଭୁଲ୍ ମାଗିଲା । ତାଙ୍କୁ ଲୋକେ ମାରିବାକୁ ଆସିବାରୁ ବାରଣ କଲି । ସେ ଗାଡିରେ ଶିକ୍ଷାବିଭାଗର ଅବସରପ୍ରାପ୍ତ ମୋର ଜଣେ ବନ୍ଧୁ ଥିଲେ । ସେ ଓ ଅଟୋବାଲା ମୋତେ ଡାକ୍ତରଖାନା ନେବାବେଳେ ଆଖିକୁ କିଛି ଦେଖାଯାଉ ନଥାଏ । ଅତି ଆଶ୍ଚର୍ଯ୍ୟର କଥା ଠିକ୍ ଧକାବାଜିବାଠାରୁ ସେବେଯାଏ "ହେ ଜଗନ୍ନାଥେ" ବୋଲି ଡାକୁଥାଏ । ଦୁଇଘଣ୍ଟା ପରେ ପୁଅ ଗୁଲନ ଆସି ପୁଣି ଡାକ୍ତର ଦେଖାଇ ଔଷଧ ବ୍ୟବସ୍ଥା କଲା । ଏଥର ବି ହାତ ଭାଙ୍ଗିନଥିଲା । ଦୁଇ ଥରଯାକ ପନ୍ଦର ଦିନ ଲେଖାଏଁ ଦୁଃଖ ଭୋଗି ଉଠିଲି । ବନ୍ଧୁ ପରିଚିତ ବ୍ୟକ୍ତି ଆସିଦେଖି ଆଶୁ ଆରୋଗ୍ୟ କାମନା କରୁଥାନ୍ତି । କେବଳ ନାରାୟଣ ବ୍ରହ୍ମାବାବୁ କହିଲେ ଯେ ଆବଶ୍ୟକ ବେଳେ ମୋତେ ଡାକିବେ । ସମସ୍ୟା ଘେରରେ ଥାଇ ମଧ୍ୟ ତାଙ୍କଠାରୁ ଏ ଆଶ୍ୱାସନା ମିଳିବା ଈଶ୍ୱରଦତ୍ତ ।

ସବୁଠାରୁ ଚମତ୍କାର ଓ ଅଲୌକିକତା ହେଉଛି ଧକାବାଜିବା ମାତ୍ରେ କିପରି କାହିଁକି କାହାର ପ୍ରେରଣାରେ "ହେ ଜଗନ୍ନାଥେ" ବାହାରୁଥିଲା ବଡ଼ ପାଟିରେ । ମୁଁ ସେବେଳର ନିଃଶେଷ ଅବସ୍ଥାରେ ନିଶ୍ଚିତ ଯେ ସେହି ଜଗନ୍ନାଥେ ଚକ୍ର ଉହାତ କରି ବଞ୍ଚାଇ ଦେଇଥିଲେ । ସେ ପରା କହିଛନ୍ତି "ସର୍ବଧର୍ମାନ୍ ପରିତ୍ୟେଜ୍ୟ ମାମେକଂ ଶରଣଂ ବ୍ରଜ ।

ଅହଂ ତ୍ୱାଂ ସର୍ବ ପାପେଭ୍ୟ ମୋକ୍ଷୟିଷ୍ୟାମି ମାଶୋଚ ॥

## ୧୭୫. ମନ୍ଦାର

ଆମ ଓଡ଼ିଶାରେ ଖୁବ୍‌କମ୍ ସ୍ଥାନରେ ଜଗଦ୍ଧାତ୍ରୀ ପୂଜାହୁଏ । ପଶ୍ଚିମବଙ୍ଗରେ, ବିହାରର କେତେକାଂଶରେ ଓ ଓଡ଼ିଶାର ବାଲେଶ୍ୱର ଅଞ୍ଚଳରେ ଅଳ୍ପ କେତେସ୍ଥାନରେ ଏ ପୂଜା ହୁଏ । କାର୍ତ୍ତିକମାସ ସପ୍ତମୀରୁ ଦଶମୀଯାଏ ଠିକ୍ ଆଶ୍ୱିନର ଦଶହରା ଦୁର୍ଗାପୂଜା ଓ ଚୈତ୍ରର ବାସନ୍ତୀପୂଜା ପରି । ଜଗଦ୍ଧାତ୍ରୀ ମୂର୍ତ୍ତୀ ଗଜଉପରେ ସିଂହ ଓ ତା ଉପରେ ଗୋଟିଏ ପଦ୍ମ ଉପରେ ମା ବସିଥାନ୍ତି । ନାଗସାପକୁ ପଇତା କରି ପକାଇଥାନ୍ତି । ବାମ ଦୁଇ ହାତରେ ଶଂଖ ଓ ଧନୁ ଥାଏ । ଡାହାଣପଟ ଦୁଇହାତରେ ଚକ୍ର ଓ ଧନୁର୍ବାଣ ଥାଏ । ମୂଳତଃ ଏହି ପ୍ରତୀମା ଜଗଦ୍ଧାତ୍ରୀ ନାମରେ ପରିଚିତ ହେଲେ ମଧ ଯେଉଁ ସ୍ଥାନରେ ବିରାଜିତ ସେହିଠିକା ନାମରେ ମଧ ନାମିତ ହୁଅନ୍ତି । ବିହାର ବା ଏବକାର ଝାଡଖଣ୍ଡର ଚବିଶ ପ୍ରଗଣା (ବୈଦ୍ୟନାଥ ଧାମ)ରେ କୁଣ୍ଡାନାମକ ଗ୍ରାମରେ କୁଣ୍ଡେଶ୍ୱରୀ ନାମରେ ରାମମୟ ଆଶ୍ରମରେ ପୂଜାପାନ୍ତି । ଆମ ଓଡ଼ିଶାର କଟକ ଜିଲ୍ଲାର ମାହାଙ୍ଗା ଥାନାର କୁଣ୍ଡାଗ୍ରାମରେ ମଧ ପୂଜାହୁଏ । କୁହାଯାଏ ଚଉଦକୋଟି ରାମ ମନ୍ତ୍ର ଜପକରି ତାହାଙ୍କୁ ସିଦ୍ଧ କରାଯାଇଛି ବୈଦ୍ୟନାଥ ଧାମରେ । ଚାକିରୀ ଆରମ୍ଭରୁ ମୋର ବଡଭାଇ ଗୋପିଆନା (ଗୋପୀନାଥ ନନ୍ଦ)ଙ୍କ ପରିବାରରୁ ମୁଁ ତାଙ୍କର ପରିଚୟ ପାଇ ତାଙ୍କୁ ଇଷ୍ଟଦେବୀ ଭାବେ ପୂଜାକରେ । ଅସୁବିଧା ସୁବିଧାରେ ତାଙ୍କୁ ନିଷ୍ଠାର ସହ ଡାକିଲେ ସେ ଶୁଣନ୍ତି । ଆଉ ଯାହାଙ୍କୁ ତାଙ୍କ ମହିମା କହିଛି ସେ ମଧ ତାଙ୍କୁ ଡାକି ଉପକୃତ ହୋଇଛନ୍ତି । ଅବସର ପରେ ତାଙ୍କ ପାଖକୁ ଯାଇ ସେଠି ଚଣ୍ଡୀପାଠ କରି ଭୋଗରାନ୍ଧି ପୂଜାର୍ଚ୍ଚନା କରିଛୁ । ଅବଶ୍ୟ ତା ଆଗରୁ କେତେଥର ଯାଇଥିଲୁ । ଏବେଯାଏ ତାଙ୍କପ୍ରତି ମୋର ଦୃଢବିଶ୍ୱାସ ରହିଛି । ହେଲେ ମୁଁ ତାଙ୍କୁ ଆଉକିଛି ନମାଗି ଏବେ ଜ୍ଞାନ, ବୈରାଗ୍ୟ ଓ ଭକ୍ତି ମାଗେ । ପ୍ରତି ମଙ୍ଗଳବାର ତାଙ୍କୁ କଞ୍ଚାକ୍ଷୀର, କଦଳୀ ଓ ଚିନିର ପଣାଭୋଗ କରି ତାଙ୍କ ସ୍ତୋତ୍ର ପଢି ମୁଣ୍ଡିଆମାରେ । ପୂଜାପାଇଁ ବେଲପତ୍ର ଓ ମନ୍ଦାରଫୁଲ ଦରକାର । ଏବେ ଭାବୁଛି ମୂଳରୁ କାହିଁକି ଜ୍ଞାନବୈରାଗ୍ୟ ଓ ଭକ୍ତି ନମାଗିଲି ? ସେଥିରେ କ'ଣ ଅବା ନାହିଁ ? ଆମ ବାଡ଼ିରେ ୨ଟି ମନ୍ଦାର ଗଛ ଅଛି । ସେଥିରେ ଆଗେ ବହୁତ ମନ୍ଦାର ଫୁଟୁଥିଲା । ଏବେ ଆଉ ଫୁଟୁନି । ପୂଜାପାଇଁ କେଉଁଠୁ ମନ୍ଦାର ପାଇବି ବୋଲି ବ୍ୟସ୍ତ ଥିବାର ମା ଜାଣିପାରି ଠିକ୍ ମଙ୍ଗଳବାର ଦିନ ଗୋଟିଏ ବା ଦୁଇଟି ଫୁଲ ସେ ଗଛରେ ଫୁଟାଇ ତାଙ୍କ ପୂଜା ପାଇଁ ସେ ହିଁ ଦେଇଦିଅନ୍ତି । ଏହା ଏକ ଅଲୌକିକ ବରଦାନ । ମୁଁ ଏକଥା ଜାଣିଲେ ଓ ଉପଲବ୍ଧି କଲେ ମଧ ଆଉ କାହାକୁ କୁହେନା । ମୋ ସ୍ତ୍ରୀ ମନ୍ଦାରଫୁଲ ପାଇଁ ମଙ୍ଗଳବାର ଦିନ ବ୍ୟସ୍ତ ହେବାରେ ମୁଁ ତାଙ୍କୁ ଥରେ ଏ ରହସ୍ୟ କହିଦେଲି । ବାସ୍ ସେତିକିରେ ସେହିଦିନୁ ମଙ୍ଗଳବାର ମନ୍ଦାର ଫୁଟିବା ବନ୍ଦ ।

ଐଶ୍ୱରୀକ ଉପଲବ୍ଧି ବା ଆଧ୍ୟାତ୍ମିକ ଅନୁଭବ ଗୋପନୀୟ ବିଷୟ । ଏହା କାହାକୁ କୁହାଯାଏନି । ଭାଗବତରେ ମଧ୍ୟ ନିର୍ଦ୍ଦେଶ ଅଛି । ଆପଣା ସତ୍‌କର୍ମ ଓ ସତ୍‌ଅନୁଭୂତି ନିଜ ଲୋକଙ୍କୁ ମଧ୍ୟ କହିବା ମନା । ଯାହା ହେଲେବି ଯେ ଏକ ଅଲୌକିକ ଅନୁଭୂତି । ଏହା ନିଃସନ୍ଦେହ । "ଦୟାରୂପେ ଦୟାଦୃଷ୍ଟେ ଦୟାର୍ଦ୍ରେ ଦୁଃଖ ମୋଚିନି - ସର୍ବାପରାଗିକେ ଦେବୀ ନାରାୟଣୀ ନମୋସ୍ତୁତେ ॥"

## ୧୭୬. ଖଟାମିଠାର ସ୍ୱାଦ

ଏ ସଂସାର'ଟ ଦୁଃଖ ସୁଖର ଖେଚୁଡ଼ି । ତେବେ କେତେକ ଭାଗ୍ୟବାନ୍ ଲୋକ ସୁନାଚାମୁଚି ଧରି ଜନ୍ମ ହୋଇଥାନ୍ତି ଓ କ୍ଷୀର ସରରେ ବୁଡ଼ିରହି ସୁଖ ସମୁଦ୍ରରେ ଭାସୁଥାନ୍ତି । ସାରାଜୀବନ ସୁଖ ଆଉ ସୁଖ । ଅବଶ୍ୟ ଏ ସୁଖ ଆମେ ବାହାରୁ ଦେଖୁଁ । ଭିତରେ ତାଙ୍କର କ'ଣ ଦୁଃଖ ଆମେ କ'ଣ ଜାଣୁନ୍ନୁ ? ସେହିପରି କେତେକ ଦୁଃଖ ସାଗରରେ ଭାସିଭାସି ଆସିଥାନ୍ତି ଓ ସାରାଜୀବନ ତାଙ୍କୁ ସେହି ଦୁଃଖସାଗରରେ ଭାସି ବୁଡ଼ି ମରିବାକୁ ପଡ଼େ । ତା'ରି ଭିତରେ ଏ ସଂସାରରୁ କିସୁଖର ଆସ୍ୱାଦନ କରନ୍ତି ତାହା ତାଙ୍କୁହିଁ ଜଣା । ସେ ଲୋକଙ୍କୁ "ମରିଯା" କହିଲେ ହିଁ ବହୁତ କାଟେ । ଯେ ଜୀବନରେ ଦୁଃଖତ ମୂଳରୁ ସାଥୀ, ଅର୍ଥାଭାବ, ଅସାସ୍ଥ୍ୟାବସ୍ଥା ସାଙ୍ଗକୁ ପିତୃହୀନତା, ଗୃହହୀନତା ଇତ୍ୟାଦି ଇତ୍ୟାଦି ପ୍ରାରମ୍ଭରୁ ଯୁବାବସ୍ଥା ପ୍ରାପ୍ତିଯାଏ ମାଡ଼ିବସିଥିଲା । ତା'ପରେ ଟିକିଏ ପରିବର୍ତ୍ତନ ଆସିଛିତ ମାତୃବିୟୋଗ । ପୁଣି ଭାଉଜଙ୍କ ବିୟୋଗ ଦୁଃଖ ପାରିବାରିକ ଜୀବନର ପ୍ରାରମ୍ଭରେ । ଏ ଏକ କଟୁତୀକ୍ତ ଅନୁଭୂତିଛଡ଼ା ଆଉ କ'ଣ ହୋଇପାରେ ।

ଜୀବନର ସାୟାହ୍ନରେ କେତୋଟି ଅନୁଷ୍ଠାନ ତରଫରୁ ସମ୍ବର୍ଦ୍ଧନା ମିଳିଥିଲା । ସାମାଜିକ ସ୍ୱୀକୃତି ପାଇଁ ସମାଜସେବା ଓ ସାହିତ୍ୟ ସାଧନା କ୍ଷେତ୍ରରେ ସମ୍ମାନ ଓ ସମ୍ବର୍ଦ୍ଧନା ଦେବା ପାଇଁ ବିଭିନ୍ନ ଅନୁଷ୍ଠାନ ଯେଉଁ ବ୍ୟବସ୍ଥା ରଖୁଛନ୍ତି ବା କରୁଛନ୍ତି ତାହା ଖୁବ୍ ଭଲ । କାରଣ ତାହା ପ୍ରେରଣା ଯୋଗାଏ ନିଶ୍ଚୟ । ମାତ୍ର ଏସବୁ ଅନୁଷ୍ଠାନ ସେହି ସମାଜସେବା ଓ ସାହିତ୍ୟସାଧନା ପାଇଁ ସହାୟତା ଯୋଗାଇଦେଲେ ଅଧିକ ଉପକାର ମିଳନ୍ତା ସେହି କ୍ଷେତ୍ରରେ । ବିଶ୍ୱ ଭ୍ରାତୃତ୍ୱ ପରିଷଦ ୨୦୦୫ରେ "ଅଖଣ୍ଡ ଉତ୍କଳ ଅଗ୍ରଦୂତ", ନିଖିଳ ଉତ୍କଳ ପ୍ରଗତିଶୀଳ ଲେଖକ ସମାଜ ୨୦୦୬ ସମ୍ମାନ, ଗୋକର୍ଣ୍ଣିକା ସାହିତ୍ୟ ସମାଜ ୧୯୯୨ ସମ୍ମାନ, ଚିନ୍ତାମଣି ପାଣିଗ୍ରାହୀ ସ୍ମୃତି ସମିତିର ୨୦୦୮ ସମ୍ମାନ, ଷଢେଇକଳା ଜ୍ୟୋତିକଳା ପରିଷଦର ୨୦୦୭ ସମ୍ମାନ, ସହିତ ଆହୁରି ବହୁତ ଛୋଟ ଛୋଟ ସମ୍ମାନ ମିଳୁଛି ଓ ମିଳିବ ମାତ୍ର ମୋର ତିକ୍ତ ଅନୁଭୂତି ଯେ ସବୁଥର ସମ୍ମାନପ୍ରାପ୍ତି ବେଳକୁ କିଛିନାକିଛି ଦୁଃଖ ଲୁଚିରହିଛି । ୨୦୦୫ରେ ଦୀର୍ଘଜ୍ୱର, ୨୦୦୬ରେ ସ୍ତ୍ରୀ ଅସୁସ୍ଥ, ୧୯୯୨-୯୩ରେ ପୋଲିସ୍ ଅତ୍ୟାଚାର ସାଙ୍ଗକୁ ଡାଇବେଟିସ୍ ରୋଗଗ୍ରସ୍ତ, ୨୦୦୭ରେ ଦୁରାରୋଗ୍ୟ ଜ୍ୱରଗ୍ରସ୍ତ ୨୦୦୮ରେ ଦୁଇ

ଦୁଇଥର ଦୁର୍ଘଟଣା ଗ୍ରସ୍ତ ହେବା ସାଙ୍ଗକୁ ଉଚ୍ଚରକ୍ତ ଚାପ ରୋଗଗ୍ରସ୍ତ ହେବା ଲକ୍ଷକଲେ ମନେ ହୁଏ ବେଙ୍ଗ ପେଟରେ ଘିଅ ହଜମ ନହେବା ପରି ମୋର ଦଶା ହୋଇଛି ।

୨୦୦୮ରେ ହରିଶ୍ଚନ୍ଦ୍ର ବଡ଼ିପାତ୍ର ସମ୍ମାନ ପ୍ରତ୍ୟେକଟି ଓଡ଼ିଆ ଖବରକାଗଜ ପ୍ରକାଶ କରିବାରେ ବନ୍ଧୁ ଶୁଭେଚ୍ଛୁ ଫୋନ୍‌ରେ ଚିଠିରେ ଓ ବ୍ୟକ୍ତିଗତ ସମ୍ବର୍ଦ୍ଧନା ଜଣାଇବା ବେଳକୁ ମୁଁ ଦୁର୍ଘଟଣା ଗ୍ରସ୍ତ ହୋଇ ଅଚଳ ପ୍ରାୟ ଥିଲି । ବହୁଦିନ ପରେ ସୁସ୍ଥ ହେଲି ସତ; ମୋର ବାଲ୍ୟବନ୍ଧୁ (ସଙ୍ଗାତ) "ବଇନ" ବା ରାଜକିଶୋର ମିଶ୍ରଙ୍କ ଦେହାନ୍ତ ମୋତେ ସ୍ତବ୍ଧ କରିଦେଇଥିଲା ।

କାଳେ ମନରେ କିଛି ଗର୍ବ ଆସିଯିବ ସେଥିପାଇଁ ଠାକୁରେ ଗର୍ବଗଞ୍ଜନବାନା ଧରି ମାଡ଼ ଦେଉଛନ୍ତି ମାନସିକ ଓ ଶାରୀରିକ ପୀଡ଼ା ଦେଇ । ଯାହା ହେଉ ଈଶ୍ୱର ଏ ଜୀବନ ନାଆର ମଙ୍ଗ ଧରିଛନ୍ତି ଠିକ୍‌ବାଟରେ । ଏ ଜୀବନ ତାଙ୍କରି ପାଦରେ ଆଶ୍ରିତ । ସେ ଜାଣନ୍ତି କୁଆଡେ ଯିବ ଡଙ୍ଗା, କେଉଁଠି ଲାଗିବ ? ହେଲେ ଖାଲି ବଞ୍ଚିବା ପାଇଁ ବଞ୍ଚିରହିବା ଠାରୁ ବଳି ଆଉ ଅଧିକ ଦୁଃଖ କିଛି ନାହିଁ । ତେଣୁ ଠାକୁରେ ଯେତେଦିନ ବଞ୍ଚାଇ ରଖିଛନ୍ତି ଏ ଦେହଦ୍ୱାରା କିଛିନା କିଛି ଭଲକାମ ଓ ତାଙ୍କରି କାମ କରାଇ ନିଅନ୍ତୁ ଏତିକି ପାର୍ଥନା ।

## ୧୭୭. ଆଉ ଲେଖିବିନି

ଆଉ ଲେଖିବିନି । କାହିଁକି ଲେଖିବି ? କିଏସେ ପଢ଼ିବ ? ପଢ଼ିଲେ କି ଲାଭ ପାଇବ ? ଏ ଅଲୋଡ଼ା ଜୀବନର କଣ ବା ବିଶେଷତ୍ୱ । ମୁଁ 'ତ ପ୍ରତିଷ୍ଠିତ କବି ନୁହେଁ, ଲେଖକ ନୁହେଁ, ସମାଲୋଚକ ନୁହେଁ, ପ୍ରାବନ୍ଧିକ ନୁହେଁ, ଗାଳ୍ପିକ ନୁହେଁ , ଔପନ୍ୟାସିକ ନୁହେଁ , ନାଟ୍ୟକାର ନୁହେଁ, ନାଟ୍ୟ ଶିଳ୍ପୀନୁହେଁ, କଳାକାର ନୁହେଁ, ସମାଜସେବୀ ନୁହେଁ, ବୈଜ୍ଞାନିକ ନୁହେଁ, ଇଞ୍ଜିନିୟର ନୁହେଁ କି ଡାକ୍ତର ନୁହେଁ କିମ୍ବା ରାଜନେତା ନୁହେଁ । ଏ ସବୁ କ୍ଷେତ୍ରରେ ଖୁବ୍ ନାମ କମେଇଥିବା ଲୋକମାନେ ଏ ସଂସାରରୁ ବିଦାୟ ନେଇ ଯାଉଛନ୍ତି । କେହିବି ଚୀରଜୀବି ନୁହଁନ୍ତି । ପୁଣି ଏମାନେ ମରିଗଲା ପରେ ବା' ଯାଙ୍କୁ କିଏ ମାରି ଦେବା ପରେ ଏମାନଙ୍କ ନାମ, ଯଶକୀର୍ତ୍ତିକୁ ଲୋକେ ଭୁଲି ଯାଉଛନ୍ତି । ଫଟୋଟିଏ ରଖିଲେ ବ୍ୟସ୍ତ ବହୁଳ ପୁତ୍ରକନ୍ୟା ମଧ ତାକୁ ଦେଖିବାକୁ ସମୟପାଉ ନାହାନ୍ତି ଓ ନାତୀ ନାତୁଣୀ ସେ ଫଟୋକୁ ଚିହ୍ନୁ ନାହାନ୍ତି । ସେ ଫଟୋ ନଷ୍ଟ ହୋଇ ଫୋପଡା ହୋଇଯାଉଛି । ଆଉ ରହିଲା ପଥର, ସିମେଣ୍ଟ ବା କୌଣସି ଧାତୁର ମୂର୍ତ୍ତୀ । ଆଫଗାନିସ୍ଥାନରେ ଥିବା ସବୁଠୁଁ ବଡ଼ ବୁଦ୍ଧମୂର୍ତ୍ତୀକୁ ବୋମା ପକାଇ ଗୁଳି କରି ଭାଙ୍ଗି ଦିଆଗଲା । ମହାତ୍ମାଗାନ୍ଧି; ଯେ କି ଏ ଦେଶର ଓ ଏ ଜାତିର ପିତା, ଆମକୁ ଯେ ସ୍ୱାଧୀନ କଲେ ତାଙ୍କୁ ଆମେ ଗୁଳି କରି ମାରିଲେ । ସତ୍ୟ ଓ ଅହିଂସାର ପୂଜାରୀଙ୍କୁ ଆମେ ମିଛୁଆ କହିଲୁ । ତାଙ୍କର ମୂର୍ତ୍ତୀର ମୁଣ୍ଡକୁ କାଟୁଛୁ ଓ କଳାବୋଳୁଛୁ । ଏପରି ପରିସ୍ଥିତିରେ ଏ ଅକିଞ୍ଚନର ଜୀବନି ଲେଖି ଯିବାର ଆବଶ୍ୟକତା କଣ ? ମୁଁ ବହୁତ କିଛି ଲେଖି ସାରିବା

ପରେ ଅନୁଭବ କରୁଛି ଯେ ଏହା ସମୟ,ଶକ୍ତି ଓ ଅର୍ଥର ଅପଚୟ ମାତ୍ର । କାଳେ କିଏ ତାଙ୍କୁ ମନେ ପକାଇବ କି ନାହିଁ ସେଥିପାଇଁ ବ୍ୟାସକବି ଫକୀର ମୋହନ ନିଜେ ତାଙ୍କର ପ୍ରତିମୂର୍ତ୍ତୀ ପ୍ରତିଷ୍ଠା କରି ଯାଇଥିଲେ । ଯେପରି ଆମେ ଆମର ଫଟୋ ଉଠାଇ ରଖୁଛେ କି ଟାଙ୍ଗୁଛେ; ସମସ୍ତଙ୍କର ଇଚ୍ଛା ତାଙ୍କର ଫଟୋ ବା ସ୍ମୃତି ରହିଯାଉ । ହେଲେ କାହା ପାଇଁ ରହିବ ? କିଏ ପଢିବ ? ? କାହାର ସମୟ ଅଛି ? ? ? ପଢିଲେ କି ଲାଭ ମିଳିବ ? ? ? ? ଏ ସବୁ ପ୍ରଶ୍ନ ମନକୁ ଆସୁଛି ଆଜିକାର ହାଲ ଦେଖି । ଓଡିଆ ବହିର ପାଠକ ବହୁତ କମ୍ । ଆଉ କେତେ ବର୍ଷ ପରେ ବହି ସଂଖ୍ୟା ଓଡ଼ିଆରେ ସାକ୍ଷର ଲୋକ ସଂଖ୍ୟାକୁ ଟପିଯିବ । ହ୍ୟାରିପୋର୍ଟର ଛାଡି ଆମ ପିଲାଏ ଆମ ଜୀବନକୁ ପଢିବେନି । ପଢା ବହିରେ ଆଗରୁ ଥିବା ବହୁ ମହାତ୍ମାଙ୍କ ଜୀବନୀ ଏବେ ବାଦ୍ ପଡିଲାଣି । ମୁଁ ମଧ୍ୟ ମୋର ଫଟୋ ସାଙ୍ଗକୁ ବହୁ ମହାତ୍ମାଙ୍କ ଫଟୋ, ପାଇଥିବା ସବୁ ମାନିପତ୍ର ଓ ଉପଢୌକନ- ଫଳକ ଗୋଟିଏ ବଡ଼ ସୁ-ଦୃଶ୍ୟ (ହଲ) କକ୍ଷରେ "ବିଛିନ୍ନାଞ୍ଚଳ ଭବନ"ରେ ସଜାଇ ରଖିଛି । ବିଛିନ୍ନାଞ୍ଚଳର କେହି ଆସିଲେ ଏଠି ରହିବାର ସୁବିଧା ସହ ଏଠାରେ ପୂର୍ଣ୍ଣାଙ୍ଗ ଉତ୍କଳ ର ବାର୍ଷିକ ଅଧିବେଶନ, ଦୁଇଟି କବି ସମ୍ମିଳନୀ, ସାଇକମିଟିର ବାର୍ଷିକ ଅଧିବେଶନ ସାଙ୍ଗକୁ ଶ୍ରୀ ରାମଚରିତ ମାନସର ନବାହ୍ନ ପାରୟଣ ଓ ପ୍ରବଚନ କାର୍ଯକ୍ରମ ଚାଲିଛି । ଏହି ଶ୍ରୀରାମ ଚରିତ ମାନସ ପାଠରେ ସାଇର ୧୦/୧୨ ଜଣ ଶ୍ରଦ୍ଧାଳୁ ଯୋଗଦେବା ସହ କମଳ ବାବାଙ୍କ ନବଦିନ ବ୍ୟାପି ପ୍ରବଚନରେ ପ୍ରାୟ ପଚାଶଜଣ ଦୈନିକ ଯୋଗଦିଅନ୍ତି । ୧୯୯୯ ବାତ୍ୟାପରେ ଗୀତାଯଜ୍ଞ ପୂର୍ବରୁ ଦଶହରା ପୂର୍ବ ଦିନ ଯାଏ ଏହା ଚାଲେ ଓ ଶେଷଦିନ ପ୍ରସାଦ ସେବନ କାର୍ଯ୍ୟକ୍ରମ ଥାଏ । ଗୋଟିଏ ବର୍ଷ କୀର୍ତ୍ତନାନ୍ଦରେ କମଳବାବା ଟଳିପଡିଥିଲେ । ଆଗେ ବିଦ୍ୟାଳୟରେ, ମଝିରେ ଗୀତାଘର ସମ୍ମୁଖରେ ୫ବର୍ଷଚାଲିବା ପରେ ଆମଘରେ ଓ ଏବେ ଆମର ନୂଆହଲ (କକ୍ଷରେ) ଚାଲିଛି ଏହି ସାମୂହିକ ଧର୍ମାନୁଷ୍ଠାନ ଉତ୍ସବ । ହେଲେ, ଏ ଯୁଗରେ ଏ ସବୁର କିଛି ମୂଲ୍ୟନାହିଁ; ଯେତେବେଳେ ସମସ୍ତେ ଧନମାନ ପରି ବ୍ୟକ୍ତି - ସ୍ୱାର୍ଥପଛରେ ଅନ୍ଧପରି ଧାଇଁଛନ୍ତି । ତଥାପି ରମାକାନ୍ତ ବାବୁଙ୍କ ଭାଷାରେ "ଲେଖାହୋଇ ପଡିଥାଉ । ରେକର୍ଡ ରୁମ୍‌ରେ ପୁରୁଣା ରେକର୍ଡ ଧୂଳିରେ ପୋତି ହୋଇଥାଏ । ହଠାତ୍ କାହାର କାମରେ ଆସେ । ସେତେବେଳେ ତାର ମୂଲ୍ୟ ଲକ୍ଷେ ହୋଇଯାଏ । ଯଦି କେହିଜଣେ ତାକୁ ପଢି କିଞ୍ଚିତ ପ୍ରଭାବିତ ହୋଇ ପାରେ ତେବେ ସେ ଶ୍ରମ, ସେ ଶକ୍ତି ଓ ସେ ଅର୍ଥର ସଦୁପଯୋଗ ହୋଇଥାଏ ।"

ତେଣୁ ବହୁତ ଲେଖାଗଲା । ଯେତିକି ମନେପଡିଲା ଓ ଲେଖାଗଲା ତା'ର ସହସ୍ର ଗୁଣରେ ଛାଡି ହୋଇଗଲା । ଗୋଟିଏ ଦୀର୍ଘ ଜୀବନର ଇତିହାସ ସଂପୂର୍ଣ୍ଣଭାବେ ଲେଖିବା

ଅସମ୍ଭବ ଓ ଅନାବଶ୍ୟକ । ତେଣୁ ଯେତିକି ଆବଶ୍ୟକ ମନେ କରାଗଲା ତାହାହିଁ ଲିପିବଦ୍ଧ କରାଗଲା ଈଶ୍ୱରଙ୍କ ପ୍ରେରଣା ଓ ତାଙ୍କରି ଇଚ୍ଛାରେ । ସେତିକି ନୁହେଁ; ଯାହା କିଛି ଲେଖାଗଲା, ସେ ସବୁ ଯିଏ ଏ ଦେହଦ୍ୱାରା କରାଇ ନେଲେ ତାଙ୍କରି ପାଦ ପଦ୍ମରେ ସଭକ୍ତି ସଂପୂର୍ଣ୍ଣ ସମର୍ପଣ କରାଗଲା ।

"ସର୍ବ ଧର୍ମାନ୍ ପରିତ୍ୟେଜ୍ୟ ମାମେକଂ ଶରଣଂ ବ୍ରଜ
ଅହଂ ତ୍ୱାଂ ସର୍ବ ପାପେଭ୍ୟୋ ମୋକ୍ଷୟିଷ୍ୟାମି ମା "ଶୋଚ"

ଏହି ଦୃଢ ଆଶା,ବିଶ୍ୱାସ ଓ ଅଭିଳାଷନେଇ ପରାଧୀନ ଭାରତରେ ଜନ୍ମ ଓ ସ୍ୱାଧୀନ ଭାରତରେ ବର୍ଦ୍ଧିତ, ବିଖଣ୍ଡିତ ଓଡିଶାରେ ଜନ୍ମ ଓ ସ୍ୱତନ୍ତ୍ର ଓଡିଶାରେ ଲାଳିତ ପାଳିତ, ଦୀର୍ଘ ପଚସ୍ତରି ବର୍ଷର ଜୀବନ ନୁହେଁ ତତ୍କାଳିକ ସାମାଜିକ ଇତିହାସ ଲେଖିବା ବେଳେ ସ୍ପଷ୍ଟ ଅନୁଭବ କରିଛି ଯେ, ସମସ୍ତଙ୍କ ହୃଦୟରେ ସମାନ ରୂପରେ ଅଧିଷ୍ଠିତ ସେହି ସର୍ବାନ୍ତର୍ଯ୍ୟାମି ହିଁ ଏ ସବୁର ଯନ୍ତ୍ରୀହୋଇ ଯନ୍ତ୍ରବତ୍ କରାଇ ନେଇଛନ୍ତି । ତେଣୁ ସମସ୍ତଙ୍କ ମଙ୍ଗଳ ହେଲେ ଦେଶର କିପରି ମଙ୍ଗଳ ହେବ ଓ "ସର୍ବେ ଭବନ୍ତୁ ସୁଖୀନଃ" ହେଉଛି ମୋର ମାନବବାଦୀ ଧର୍ମର ଶେଷ ଧ୍ୟେୟ ଓ ଧ୍ୱନୀ ।

## ବନ୍ଦେ ଉତ୍କଳ ଜନନୀ